# ଅଭିଶପ୍ତ ଗନ୍ଧର୍ବ

( ୧୯୮୩ ରେ ଶାରଳା ପୁରସ୍କାର
ଓ
୧୯୮୪ ରେ କେନ୍ଦ୍ର ସାହିତ୍ୟ ଏକାଡେମି ପୁରସ୍କାର ପ୍ରାପ୍ତ )

ଲେଖକ :
ମହାପାତ୍ର ନୀଳମଣି ସାହୁ




ଅଗ୍ରଦୂତ
କଟକ-୨

# ଅଭିଶପ୍ତ ଗନ୍ଧର୍ବ

ଲେଖକ :

**ମହାପାତ୍ର ନୀଳମଣି ସାହୁ**

ପ୍ରକାଶକ :

**ଅଗ୍ରଦୂତ**

ବାଙ୍କାବଜାର, କଟକ-୨

ପ୍ରଥମ ପ୍ରକାଶ : ୧୯୮୧
ଦ୍ୱିତୀୟ ପ୍ରକାଶ : ୧୯୮୪
ତୃତୀୟ ପ୍ରକାଶ : ୧୯୯୦

ପ୍ରଚ୍ଛଦପଟ :

**ଶ୍ରୀ ଅସିତ୍ ମୁଖାର୍ଜୀ**

ମୁଦ୍ରଣ :

**ସ୍ୱରାଜ ପ୍ରେସ,**
ଝୋଲସାହି, କଟକ-୧

ମୂଲ୍ୟ :

**ପଇଁଚାଳିଶ ଟଙ୍କା ମାତ୍ର**

**ABHISAPTA GANDHARBA**

Written by :

**Mohapatra Nilamani Sahoo**

Publisher :

**Agraduta**

Bankabazar, Cuttack-2

Third Edition : 1990

Artist :

**Asit Mukherjee**

Price : **Rs. 45-00 Only**

ଶ୍ରୀ ଶାରବର ମହାପାତ୍ରଙ୍କ ବଡ଼ବୋହୂ—ମାଳମା, ସନତ, ଅନୁରାଧା ଓ ଗୁରୁପ୍ରସାଦଙ୍କର ବୋଉ—ସୁକାନ୍ତ, ହରି, ଧୀର, ଜମୁନ, ସୁମୁନ ହେରକାଙ୍କ ସାନବୋଉ—ରାମକୁମାରର ବଡ଼ଖୁଡ଼ୀ—ଚନ୍ଦ୍ରାମଣି, ଇନ୍ଦ୍ରମଣି, ଧାନମଣି ହେରକାଙ୍କର ନୂଆ'ଉ—ବନ୍ଧୁ ସ୍ନେହୀ ବନ୍ଧୁବାନ୍ଧବୀଙ୍କର ପାପା ନାମା ବା ପାପା ଭଉଜ—ଏବଂ ମୋର ପ୍ରାଣାଧିକା ଜୀବନ-ସଂଗିନୀ କଲ୍ୟାଣମୟୀ ଧର୍ମପତ୍ନୀ **ଶ୍ରୀମତୀ ପ୍ରସନ୍ନକୁମାରୀ ଦେବୀ** ପ୍ରିୟତମାସୁ······

ଶିବରାତ୍ରୀ
ତା ୪-୩-୧୯୮୧

ମହାପାତ୍ର ନୀଳମଣି ସାହୁ
ଭୁବନେଶ୍ୱର

# ପ୍ରାକ୍ ସୂଚନା

୧୯୭୮ ରୁ ୧୯୮୦ ଭିତରେ ମୁଁ ଲେଖିଥିବା ସମାନଧର୍ମୀ-କେତେକ ଗଳ୍ପକୁ ଏକତ୍ର କରି "ଅଭିଶପ୍ତ ଗନ୍ଧର୍ବ" ନାମରେ ଗୋଟିଏ ଗଳ୍ପ ସଙ୍କଳନ ପ୍ରକାଶ କରୁଛନ୍ତି କଟକର ଅଭିଜାତ ପ୍ରକାଶନୀ ସଂସ୍ଥା "ଅଗ୍ରଦୂତ" । ଏଥିପାଇଁ ମୁଁ ସର୍ବାଗ୍ରେ ମୋର ମାନନୀୟ ମଉସା ଶ୍ରୀଯୁକ୍ତ ଧୀରବର ମହାନ୍ତିଙ୍କୁ କୃତଜ୍ଞତା ଜଣାଉଅଛି ।

ଏଥିରୁ କେତେକ ଗଳ୍ପ ପ୍ରଥମେ ବିଭିନ୍ନ ପତ୍ରିକାରେ ଆତ୍ମଜୀବନୀ ମୂଳକ ଗଳ୍ପ ବୋଲି ଆଖ୍ୟାତ ହୋଇ ପ୍ରକାଶ ପାଇଥିଲା । ଏବଂ ପାଠକ ପାଠିକା ମହଲରେ ବେଶ୍ ଆଦୃତ ହୋଇଥିଲା । ମାତ୍ର ମୋର ପରମ ପ୍ରୀତିଭାଜନ ଓ ହିତୈଷୀ ଯୁଗସ୍ରଷ୍ଟା କବି ଶ୍ରୀଯୁକ୍ତ ରମାକାନ୍ତ ରଥ ମତ ଦେଲେ—"ତୁମର କୋଉ ଗଳ୍ପ ଆତ୍ମଜୀବନୀ ମୂଳକ ନୁହେଁ ଯେ ଏଗୁଡ଼ିକୁ ବିଶେଷ ଭାବରେ ଆତ୍ମଜୀବନୀ ମୂଳକ ବୋଲି, ଅଯଥାରେ ବିଜ୍ଞପ୍ତି ଦେଉଛ ?" ଶ୍ରୀଯୁକ୍ତ ରଥଙ୍କ ଭଳି ମାର୍ମିକ କବିଙ୍କ ମୂଲ୍ୟବାନ ମନ୍ତବ୍ୟକୁ ଯଥା ସମ୍ମାନ ଦେଇ ଅନ୍ୟ ଗଳ୍ପଗୁଡ଼ିକ ପତ୍ରରେ ଆଉ ସେମିତି ବିଜ୍ଞପ୍ତି ଦେଇନାହିଁ ।

କିନ୍ତୁ ମୁଁ ଜାଣେ; ମୋର ଅଧିକାଂଶ ଗଳ୍ପରେ ମୁଁ ପ୍ରତ୍ୟକ୍ଷଭାବେ ବା ପରୋକ୍ଷଭାବେ ଥିଲେ ବି ସେଗୁଡ଼ିକ ନିଶ୍ଚିନ୍ତଭାବେ ପରସ୍ମୈପଦୀ । ଆତ୍ମନେପଦୀ ନୁହନ୍ତି । ଏକଥା ନିଃସନ୍ଦେହ ଯେ ମୁଁ କୌଣସି ଗଳ୍ପ

ମନରୁ ଫାନ୍ଦି ଲେଖିନାହିଁ । ବାହାର ବିଶ୍ୱ ସଙ୍ଗେ ଭାବ-ରତି କରିବା ଫଳରେ ଅନ୍ତଃସତ୍ତ୍ୱା ପ୍ରକ୍ରିୟାରେ ସେ ଗୁଡ଼ିକ ମୋର ଭାବ-ଗର୍ଭରୁ ଶବ୍ଦ-ବିଗ୍ରହ ଧରି ଜନ୍ମ ହୋଇଛନ୍ତି । କିନ୍ତୁ ତା' ହେଲେ ବି, ମତେ ଲାଗେ, ସେଗୁଡ଼ିକ କେବଳ ଏକାନ୍ତ ଓ ଏକକ ଭାବେ ମୋର ନୁହନ୍ତି । ମୁଁ ସେଗୁଡ଼ିକର ମାତା । କିନ୍ତୁ ସେମାନେ ବିନା ପିତାରେ ଜନ୍ମି ନାହାନ୍ତି ଓ ସେମାନେ ବହୁ ପିତୃକ ।

କିନ୍ତୁ "ଅଭିଶପ୍ତ ଗନ୍ଧର୍ବ"ର ଗଳ୍ପ ଗୁଡ଼ିକର ପିତା ଓ ମାତା ସ୍ୱୟଂ ମୁଁ । ଏ ଗୁଡ଼ିକର ରକ୍ତରେ ଆଉ ଅନ୍ୟରକ୍ତ ମିଶି ନାହିଁ । ଅସ୍ମିରତିରୁ ହିଁ ସମ୍ଭୂତ ଏମାନେ । ସେଥିଲାଗି ସବୁଗଳ୍ପରେ "ମୁଁ କାର"ର ଲୀଳାଖେଳା ଅବଶ୍ୟମ୍ଭାବୀ ହୋଇ ଉଠିଛି ।

ଏକଦା ଜଗଦୀଶ ପାଣିଙ୍କ କ୍ଲାରିଟି ପ୍ରେସର ଉଦ୍ୟାନ ଭିତରେ ବସି କେତେଜଣ ସାହିତ୍ୟିକ ସନ୍ଧ୍ୟାଳାପରେ ମଗ୍ନ ଥିଲୁ । ମାର୍ମିକ କବି ଶ୍ରୀଯୁକ୍ତ ରାଜେନ୍ଦ୍ର କିଶୋର ପଣ୍ଡା ମତେ କହିଲେ—"ଆପଣଙ୍କ ଜୀବନରେ ଘଟିଥିବା ଚମତ୍କାର ଘଟଣା ଗୁଡ଼ିକ ଯଥାର୍ଥ ଭାବେ ଯଦି ଲେଖନ୍ତେ—ତାହେଲେ ସେଗୁଡ଼ିକ ଚମତ୍କାର ସାହିତ୍ୟ ହୋଇ ଉଠନ୍ତା ।" କଥାଟା ସେହି ବିଶେଷ ମୁହୂର୍ତ୍ତରେ ମୋର ଅନ୍ତଃସ୍ଥଳୀକୁ ଖୁବ୍ ସ୍ପର୍ଶ କଲା । ଏବଂ ମୋର ସତକୁସତ ମନେହେଲା ଯେ ମୋ ଜୀବନରେ ଏପରି କେତେକ ଘଟଣା ଘଟିଛି—ଯାହାର ଅର୍ଥ ଓ ରସ ଆବିଷ୍କାର କରି ପ୍ରକାଶ କଲେ ତାହା ନିଶ୍ଚିତଭାବେ ଉଚାଙ୍ଗ ସାହିତ୍ୟ ହୋଇ ପାରିବ । ଏବଂ ଆଜି-ପର୍ଯ୍ୟନ୍ତ ମୁଁ ସେହି ଅନ୍ତରଙ୍ଗ ଅଭିଜ୍ଞତାଗୁଡ଼ିକୁ ମୋର ଲେଖା ଲାଗି ନେଇ ନାହିଁ । ଶ୍ରୀଯୁକ୍ତ ପଣ୍ଡାଙ୍କୁ ଜବାବ୍ ଦେଲି—"ଲେଖିବି ନିଶ୍ଚୟ" ।

କିନ୍ତୁ ସବୁ ଘଟଣା ସାହିତ୍ୟ ପାଇଁ ଉପାଦେୟ ନୁହନ୍ତି—ସେଗୁଡ଼ିକର ମୋର ଜୀବନ ଲାଗି ଯେତେ ଗୁରୁତ୍ୱ ଥାଉ ପଛେ । ଏବଂ ସବୁ ଘଟଣା ମଧ୍ୟ ପ୍ରକାଶଯୋଗ୍ୟ ନୁହେଁ । ତା'ଛଡ଼ା—ବହୁ ଘଟଣା ଓ ଚରିତ୍ରଗୁଡ଼ିକୁ ମୁଁ ଏ ପର୍ଯ୍ୟନ୍ତ ନିଜେ ମଧ୍ୟ ବୁଝି ପାରିନାହିଁ । ତା ସତ୍ତ୍ୱେ ବି ମୋର ହେଜୁ ହେବା ଦିନୁଁ ଆଜି ପର୍ଯ୍ୟନ୍ତ ମୋର ସ୍ମୃତିଭଣ୍ଡାରରେ

ଏତେ ଚମତ୍କାର କଥା ସବୁ ଅଛି—ଯୋଉଗୁଡ଼ିକୁ ଯଥାଯଥ ଭାବେ ଅଥଚ କଳାତ୍ମକ କରି ପ୍ରକାଶ କରିବା ଲାଗି ମୋର ଶକ୍ତି ଓ ପରମାୟୁ ଯଥେଷ୍ଟ ହେବ କି ନାହିଁ ମୋତେ ଜଣାନାହିଁ । ତେଣୁ ମୋର ଆଠ ନଅ ବର୍ଷ ବୟସରୁ ତେର ଚଉଦ ବର୍ଷ ବୟସ ପର୍ଯ୍ୟନ୍ତ ଜୀବନକାଳ ଭିତରେ ଘଟିଥିବା କେତୋଟି ଅଭିଜ୍ଞତାକୁ ମୁଁ ଗଳ୍ପଛଳରେ ରୂପଦେଇ ବିଭିନ୍ନ ପତ୍ରିକାରେ ପ୍ରକାଶ କଲି । ଏବଂ ସେଗୁଡ଼ିକ ପାଠକ ପାଠିକାମାନଙ୍କ ଠାରୁ ଅଜସ୍ର ସାଧୁବାଦ ଅର୍ଜନ କଲେ । ବିଶିଷ୍ଟ ଲେଖକ ବନ୍ଧୁମାନଙ୍କ ଭିତରେ ଜାଜ୍ୱଲ୍ୟମାନ କଥାଶିଳ୍ପୀ ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟ ଓ ପ୍ରଖ୍ୟାତନାମା କବି ଶ୍ରୀ ସୀତାକାନ୍ତ ମହାପାତ୍ର ପ୍ରମୁଖଙ୍କ ତୁଣ୍ଡରୁ ଆନ୍ତରିକ ପ୍ରଶଂସା ଶୁଣିଲାପରେ ସେଗୁଡ଼ିକୁ ଏକତ୍ର ସଂକଳନ କରି "ଅଭିଶପ୍ତ ଗନ୍ଧର୍ବ" ନାମରେ ପୁସ୍ତକାକାରରେ ପ୍ରକାଶ କରିବାକୁ ଅନୁମତି ଦେଲି । ବହିଟିର ନାମକରଣପାଇଁ ଓଡ଼ିଶାର ବିଶିଷ୍ଟ ପ୍ରାବନ୍ଧିକ ଶ୍ରୀ ଶରତକୁମାର ମହାନ୍ତିଙ୍କୁ ଧନ୍ୟବାଦ ଜଣାଉଛି । ବହିଟିର ପ୍ରଚ୍ଛଦପଟ୍ଟ ଛବି ପାଇଁ ପ୍ରଖ୍ୟାତନାମା ଶିଳ୍ପୀ ଶ୍ରୀ ଅସୀତ ମୁଖାର୍ଜୀଙ୍କୁ ମଧ୍ୟ କୃତଜ୍ଞତା ଜଣାଉଛି ।

ଏ ବହିଟିର ସାହିତ୍ୟିକ ମୂଲ୍ୟ ସୁଧୀବୃନ୍ଦଙ୍କ ଦ୍ୱାରା ବିଚାରିତ ଓ ସାବ୍ୟସ୍ତ ହେବାର ଜାଣିଲେ—ଏହିଭଳି ଆଉ ଦୁଇଖଣ୍ଡି ସଙ୍କଳନ ପ୍ରକାଶ କରିବାର ବାସନା ଚରିତାର୍ଥ କରିବି ବୋଲି ସ୍ଥିର କରିଛି । ଏଗୁଡ଼ିକ ଲେଖିଲାବେଳେ, ମୁଁ ଭୟଙ୍କର ଆଚ୍ଛନ୍ନ ଅବସ୍ଥାରେ ଥାଏ । ଅନ୍ୟ ଭାଷାରେ କହିଲେ—ମୁଁ କାଳସ୍ରୋତର ପ୍ରତିଲୋମରେ ଭାସିଯାଏ ଓ ଅତୀତର ସ୍ୱପ୍ନ ଭିତରେ ବୁଡ଼ିଯାଏ । ସତେକି ମୁଁ ଚନ୍ଦ୍ରଲୋକରେ ରହିଛି ! ସତକଥା ! କୌଣସି ପ୍ରକାରେ ଯଦି ଅବଚେତନର ସ୍ମୃତି-ଭଣ୍ଡାର ଖୋଲିଯାଏ—ଆରେ ବାପ୍‌ରେ ! କି କି କଥା ସବୁ ବାହାରି-ଆସେ ଛୁଏଁ ଛୁଏଁ ! ସେଥିଯୋଗୁଁ ମୋର ବିଶ୍ୱାସ, ଘଟଣା ସବୁ ବାହାରେ କାଳଗ୍ରସ୍ତ ହୁଏ । କିନ୍ତୁ ସ୍ମୃତି ଭିତରେ ଆହୁରି ଜୀବନୀଶକ୍ତି ନେଇ ସେମିତି ବଞ୍ଚିଥାଏ ଓ ତା'ର ତାତ୍ପର୍ଯ୍ୟ ବୁଝାଉଥାଏ । ଏବଂ ସେଗୁଡ଼ିକ ଯଦି କଳାତ୍ମକ ରୂପ ଦେଇ ପୁନର୍ବାର ଗଢ଼ି ଦିଆଯାଏ, ତେବେ ସେଗୁଡ଼ିକ ଜୀବନ୍ୟାସ ପାଇ ଅମର ହୋଇଯାନ୍ତି । ମୋର

ଧାରଣା—ଆମ ଜୀବନରେ ଘଟୁଥିବା ଅସଂଖ୍ୟ ଘଟଣା ଭିତରୁ ଯୋଉ ଗୁଡ଼ିକ ଗଭୀର ଭାବେ ଆମ ଆତ୍ମା ସଙ୍ଗେ ସମ୍ପର୍କିତ ହୋଇ ଯାଇଥାନ୍ତି— ସେଗୁଡ଼ିକର ମୃତ୍ୟୁ ନାହିଁ ।

ନବଲିପି ପୂଜାସଂଖ୍ୟାରୁ "ଅଭିଶପ୍ତ ଗନ୍ଧର୍ବ" ଗଳ୍ପଟି ପଢ଼ି ମୋର ସାନପୁଅ ଶ୍ରୀମାନ୍ ଗୁରୁପ୍ରସାଦ ଦିଲ୍ଲୀରୁ ମୋ ପାଖକୁ ଖୁବ୍ ଭାବପ୍ରବଣ ହୋଇ ଚିଠି ଲେଖିଥିଲା—"ମୋର ମନେ ହେଉଛି—ତୁମେ ଓ ବୋଉ ବର୍ତ୍ତମାନ ସୁଦ୍ଧା ସେହି ଅଭିଶପ୍ତ ଗନ୍ଧର୍ବ ।" ତା' ଚିଠିଟି ପଢ଼ି ମୋତେ ପୀଡ଼ା ଲାଗିଲା ଓ ମୋ ଆଖିକୁ ଲୁହ ଆସିଗଲା । ପରେ ମୁଁ ତାକୁ "ଏମିତି କାହିଁକି ଲେଖିଲୁ ବୋଲି ବାରମ୍ବାର ପଚାରିଲି ।" ମାତ୍ର ସେ ଟୋକା ମୋ ପ୍ରଶ୍ନକୁ ଅଡ଼େଇ ଗଲା । ଉତ୍ତର ଦେଲାନାହିଁ । କ'ଣ ସେ ଭାବିଲା କେଜାଣି ? ଆଜି ମୁଁ ମଧ୍ୟ କାହିଁକି କାନ୍ଦିଲି କେଜାଣି ? ମୋର ଧାରଣା, ଗନ୍ଧର୍ବଟିଏ ଅଭିଶପ୍ତ ବୋଲି ଯେତେ ନ କାନ୍ଦେ, ତାକୁ କିଏ ଅଭିଶପ୍ତ ଗନ୍ଧର୍ବ ବୋଲି କହିଦେଲେ ତାକୁ ନିଶ୍ଚୟ କାନ୍ଦମାଡ଼େ । କିନ୍ତୁ ଜଣେ "ଅଭିଶପ୍ତ ଗନ୍ଧର୍ବ" ଉପରେ ଲେଖିଥିବା ଲେଖକକୁ ଯଦି ତା' ପୁଅ ଅଭିଶପ୍ତ ଗନ୍ଧର୍ବ ବୋଲି କହେ—ତା'ହେଲେ କେତେ ଦୁଃଖ ବେଦନାର କଥା କହନ୍ତୁ ତ !

ଯାଉନ୍ତୁ ! ବହିଟି ମୋର ଉପସ୍ଥିତ ଓ ଭବିଷ୍ୟତ କାଳର ପାଠକ ପାଠିକାଙ୍କ ହୃଦୟକୁ ରସମୟ କରି ପାରିଲେ କୃତାର୍ଥ ମନେ କରିବି । ଇତି ।

ଦୋଳପୂର୍ଣ୍ଣିମା
ତା ୨୦-୩-୧୯୮୧

ମହାପାତ୍ର ନୀଳମଣି ସାହୁ
ଭୁବନେଶ୍ୱର

# ସୂଚୀ





# ମୁଁ କପରି ଗଳ୍ପ ଲେଖିଲି

ମୁଁ କାହିଁକି ଗଳ୍ପ ଲେଖେ—ବା ମୁଁ କପରି ଗାଳ୍ପିକଟିଏ ହେଲି ଏସବୁ ପ୍ରଶ୍ନ ମତେ ପଚାରିଲେ—ମୁଁ ଭାରି ବ୍ୟସ୍ତ ହୋଇପଡ଼େ । କ'ଣ କହିବି ବା କପରି କହିବି—ମୋ ମୁଣ୍ଡ ଘୂରିଇଯାଏ । ମାତ୍ର "ଅଧୁନା" ପତ୍ରିକାର ସମ୍ପାଦକ ଶ୍ରୀମାନ ରଘୁନାଥ ମହାପାତ୍ର ବଡ଼ ନଚ୍ଛୋଡ଼ବନ୍ଧା ସମ୍ପାଦକ । ସେ ମୋ ଠାରୁ ଗଳ୍ପ ଶୁଣିବେ, ପୁଣି ମୋ ଗାଳ୍ପିକ ଜୀବନର କାହାଣୀ ବି ଶୁଣିବେ । ଏ ଜାଣ ରଜାଙ୍କଠାରୁ ତାଙ୍କ କନ୍ୟା ଏବଂ ତତ୍‌ସହ ଅର୍ଦ୍ଧେକ ରାଜ୍ୟ ପାଇବାର ଦାବୀ ବା କୌଶଳ ଯାହା ବୋଲ୍ । ଆକାଶବାଣୀବାଲା ସେମିତି ମୋତେ ଥରେ ଏଇରକମ ହଇରାଣରେ ପକାଇଥିଲେ । କିନ୍ତୁ ସେ ଥିଲା କେବଳ ବାକ୍‌ଚିତ୍—ଏ ହେଲା କାଳି କଲମରେ ଲେଖିଦବା ।

ତେବେ ମୋର ବକ୍ତବ୍ୟ ହେଉଛି—ମୂଳରୁ ମୁଁ କେମିତି ଗାଳ୍ପିକ ହେଲି କେଜାଣି ? ଏବେ ବି ମୁଁ ଆଶ୍ଚର୍ଯ୍ୟ ହେଲଣି—ମୁଁ ଏତେ ଗଳ୍ପ ପ୍ରକୃତରେ ଲେଖିଛି କେମିତି ? କୋଉଠୁ କପିଫପି କରିନାହିଁ ତ ! କେ ଜାଣେ ? ଜାଣିତରେ ସିନା କରିନାହିଁ—ମାତ୍ର ମୋର ଅବଚେତନ ଉପରେ ମୋର ବା ହାତ କ'ଣ ? ଜୀବନରେ ପଢ଼ିଛି ବହୁତ—ଦେଖିଛି ମଧ୍ୟ ବହୁତ । ତେଣୁ ତ ସନ୍ଦେହ ହୁଏ—ପଢ଼ାକଥାରୁ ବା ଦେଖା-କଥାରୁ ମୋର ଗଳ୍ପଗୁଡ଼ିକ ମୋର ଅଜାଣତରେ କାଳେ କପି ହୋଇ-ଥାଇପାରେ ।

ଏପରି ସନ୍ଦେହ କରିବାର କାରଣ କ'ଣ ଜାଣନ୍ତି ? ମୋର ସମସାମୟିକ କଥାକାରମାନଙ୍କ ସଙ୍ଗେ ନିଜକୁ ତୁଳନା କରି ମୁଁ ଦେଖିଛି—ସେମାନେ ସମସ୍ତେ ମୋଠାରୁ ଏ ଦିଗରେ ନିଶ୍ଚିତଭାବେ ଅଧିକ ପ୍ରତିଭବାନ । ସୁରେନ୍ଦ୍ର ମହାନ୍ତିଙ୍କର ଅଜସ୍ର ଅଭିଜ୍ଞତା ଓ ଅଖିଳ ପଟ୍ଟନାୟକଙ୍କର ଶାଳୀନ ରସିକତା ମୋଠାରେ ଅଛି କି ? ଅଛି ଭଳି ସ୍ୱର୍ଗତ ବାମା ଚରଣ ମିତ୍ର ବା କିଶୋରୀ ଚରଣ ଦାସଙ୍କର ପ୍ରତିଭାର ଗମ୍ଭୀରତା ? ବସନ୍ତକୁମାରୀଙ୍କର ସୁକୁମାର ରସବିଳାସ ମୋର କାହିଁ ? ମୋର ସାମାନ୍ୟ ପରବର୍ତ୍ତୀ କଥାକାରମାନଙ୍କୁ ମଧ୍ୟ ଦେଖନ୍ତୁ । ମନୋଜ ଦାସଙ୍କର ଜ୍ଞାନଦୀପ୍ତ ବିଦଗ୍ଧ ବାକ୍ ସଂଯମ, ଶାନ୍ତନୁ ଆଚାର୍ଯ୍ୟଙ୍କର ପ୍ରବେଗଯୁକ୍ତ ଅଦ୍ଭୁତ କଳ୍ପନା ଶକ୍ତି, କୃଷ୍ଣପ୍ରସାଦ ମିଶ୍ରଙ୍କର ସୂକ୍ଷ୍ମ ଚିନ୍ତାର ସାବଲୀଳତା ପ୍ରଭୃତି ଗୁଣ ପାଖରେ ମୁଁ କେତେ ମ୍ଳାନ ! ତଥାପି ଲୋକେ ଯେ ମୋର ଗଳ୍ପ ପଢ଼ନ୍ତି ଓ ମୋତେ ବିଚାରକୁ ଆଣନ୍ତି—ଏହା ମୋ ପକ୍ଷେ କମ୍ ସୌଭାଗ୍ୟର କଥା ନୁହେଁ । ଓଡ଼ିଶାରେ ଗାଳ୍ପିକଙ୍କର ସଂଖ୍ୟା ଏତେ କମ୍ ଯେ, ତା' ଭିତରେ ମୋ ଭଳି ଏରଣ୍ଡ ମଧ୍ୟ ଦ୍ରୁମାୟତେ ! ଯାକୁ ଯେ କହିବା ଭାଗ୍ୟ ।

କିଛି ବର୍ଷ ତଳେ ତ ଓଡ଼ିଆ ପାଠକ ପାଠିକା ଓ ଓଡ଼ିଆ ସାହିତ୍ୟର ଜ୍ଞାନ ସାଧକ ଅଧ୍ୟାପକମାନେ ମୋର ଯେ କୌଣସି ଗଳ୍ପ ପଢ଼ି ବା ନ ପଢ଼ି ହେଁ-ହେଁ ଠୋ ଠୋ ହସି ହସି ଗଡ଼ି ଯାଉଥିଲେ । ସମସ୍ତେ ଏକ ସ୍ୱରରେ କହୁଥିଲେ—ହାସ୍ୟରସିକ ମହାପାତ୍ର ନୀଳମଣିଙ୍କୁ ଓଡ଼ିଆ ସାହିତ୍ୟ ଏକାଡ଼େମୀ ଆଜଯାଏ "ଉତ୍କଳ ଭଣ୍ଡ" ଉପାଧି ଦେଇ ନାହାନ୍ତି କାହିଁକି ? ଏବେ ସିନା ସୁର୍ ବଦଳିଛି । ରସବିତ୍‌ମାନେ କହୁଛନ୍ତି—ମହାପାତ୍ର ନୀଳମଣିଙ୍କୁ ଆଜଯାଏ ଆମର ପୂର୍ବସୂରୀ ଦିଗ୍‌ଗଜମାନେ ଯାହା କହୁଥିଲେ –ତାହା ସେମାନଙ୍କର ବୁଦ୍ଧିମାନ୍ଦ୍ୟ ଓ ରସାମାନ୍ଦ୍ୟର ଫଳ । ମହାପାତ୍ର ନୀଳମଣି ସାହୁ ଓଡ଼ିଆ ଗଳ୍ପ ସାହିତ୍ୟରେ ଏକକ ପ୍ରତିଭାର ଅଧିକାରୀ ଓ ତାଙ୍କର ଗଳ୍ପଗୁଡ଼ିକର ବିଷୟବସ୍ତୁ, ଆଙ୍ଗିକ, ରଚନାଶୈଳୀ ଓ ରସ ବିଳାସ ଏକ ଅଦ୍‌ଭୁତ ହାସ୍ୟ କରୁଣାନୁଭୂତିର ସମ୍ବେଦନାରେ ମେଦୁର, ଗମ୍ଭୀର, ବିଚିତ୍ର ଓ ବା ମିଶ୍ର । ତାଙ୍କର ଭାଷାଜ୍ଞାନ ଅପୂର୍ବ ।

ଏକଥା ଏବେ ଶୁଣିବାକୁ ମୋତେ ଭଲ ଲାଗୁଛି । ପ୍ରକୃତରେ ମୋର ସମକାଳୀନ କେତେକ ବରିଷ୍ଠ ଓଡ଼ିଆ ଅଧ୍ୟାପକ ହିଁ ମୋର ତିରିଶି ବର୍ଷର ଗଳ୍ପ ଲେଖା ସାଧନାରେ ମୂଲ୍ୟାୟନରେ ବନ୍ଧ୍ୟ ସୃଷ୍ଟି କରିଛନ୍ତି । କିନ୍ତୁ ସମକାଳୀନ ବିଚାର ସବୁବେଳେ ଠିକ୍ ହୋଇପାରେ ନାହିଁ—ଏହି ସତ୍ୟଟିକୁ ମୁଁ ବୁଝିଥିବା ହେତୁ ମୋର ସମକାଳୀନ ସମାଲୋଚକମାନଙ୍କ ଉପରେ ମୁଁ ବାହାରେ ବିରକ୍ତ ହୋଇଥିଲେ ବି ଭିତରେ ଭିତରେ କ୍ଷମା ଦିଏ ।

ମୁଁ କେବେ କହିନି ବା ଦାବୀ କରିନି ଯେ ସ୍ୱାଧୀନତା ପରବର୍ତ୍ତୀ ଗାଳ୍ପିକମାନଙ୍କ ମଧ୍ୟରେ ବା ମୋର ସମକାଳୀନ ଗାଳ୍ପିକମାନଙ୍କ ମଧ୍ୟରେ ମୋତେ ଶ୍ରେଷ୍ଠ ଗାଳ୍ପିକର ସମ୍ମାନରେ ଭୂଷିତ କରାଯାଉ । କେହି ମଧ୍ୟ ଆମ ଭିତରେ ସେମିତି ଦାବୀ କରି ନ ପାରେ । ତେବେ ପ୍ରଥମ ଶ୍ରେଣୀର ଗାଳ୍ପିକମାନଙ୍କ ଭିତରେ ମୋତେ ନିଆଯାଇ ପାରେ କି ନାହିଁ, ସେ କଥା ପଣ୍ଡିତମାନେ ବା ସୁଧୀବୃନ୍ଦ ଅବଶ୍ୟ ବିଚାର କରନ୍ତୁ । ମୁଁ ପ୍ରଥମ ପାଞ୍ଚଜଣ ବା ଦଶଜଣଙ୍କ ଭିତରେ ଯିବାକୁ ଚାହେଁ । ଫାଷ୍ଟ କ୍ଲାସ ଫାଷ୍ଟ ହେବାକୁ ନୁହେଁ । ମାତ୍ର ଯଦି ନଯାଇ ପାରିଲି, ତେବେ ମୋର ଦୁଃଖ ନାହିଁ କି ଗ୍ଲାନି ନାହିଁ । କାରଣ ଦ୍ୱିତୀୟ ଶ୍ରେଣୀରେ ପାସ୍ କରିବା ମଧ୍ୟ କମ୍ ବାହାଦୁରି କାମ ନୁହେଁ ମୋ ପକ୍ଷରେ । ମୋ ଭଳି ଅମନଯୋଗୀ, ଖିଆଲି, ଉଦାସୀ ବ୍ୟକ୍ତି ଫେଲ ହୁଅନ୍ତା । କିନ୍ତୁ ମୁଁ ଯେ ନିଶ୍ଚୟ ଦ୍ୱିତୀୟ ଶ୍ରେଣୀରେ ସର୍ବୋଚ୍ଚ ନମ୍ବର ପାଇଥିବା ଗାଳ୍ପିକମାନଙ୍କ ମଧ୍ୟରୁ ଜଣେ—ଏ କଥା ମୋର ଅଧ୍ୟାପକ ବୁଦ୍ଧି ବ୍ୟକ୍ତିତ୍ୱ ମୋତେ ବାରମ୍ବାର ବୁଝେଇ ଦେଉଛି । କାରଣ—ଗଳ୍ପ ରଚନାରେ ମୁଁ ଯେଉଁ ଶ୍ରେଣୀର ହୁଏ ପଛେ, ଗଳ୍ପ ପଢ଼ି ବୁଝିବା କ୍ଷମତା ମୋର ଯେତିକି ଅଛି—ଓଡ଼ିଶାରେ ସେପରି କ୍ଷମତା ଆଉ କେତେଜଣଙ୍କର ଅଛି କେଜାଣି ? ଏଣୁ ମୁଁ ମୋ ସ୍ଥିତି ଓ ତା'ର ସୋପାନ ଉପରେ ଦୃଢ଼ ନିଶ୍ଚିନ୍ତ । ମୋର ଗଳ୍ପଗୁଡ଼ିକ ଜୀବନର ଅଭିଜ୍ଞତା ଉପରେ ଆଧାରିତ । ମୋର ସେମିତି ତୀବ୍ର ବା ଉତ୍ତୁଙ୍ଗ କଳ୍ପନା ଶକ୍ତି କେବେ ନଥିଲା ବା ଏବେ ମଧ୍ୟ ନାହିଁ । ଗଳ୍ପଟିଏ ଲେଖିବା ଲାଗି ମୁଁ ମୋର ଅଭିଜ୍ଞତା ଉପରେ ସର୍ବଦା ନିର୍ଭର କରିଥାଏ । ଜୀବନ ତ ବହୁ ଛୋଟ ବଡ଼ ବିଚିତ୍ର ଘଟଣାବଳୀରେ

ପୂର୍ଣ୍ଣ ହୋଇ ହୋଇ ଚାଲିଛି । ସାଧାରଣ ଲୋକେ ନିଜେ ଘଟଣା ସୃଷ୍ଟି କରନ୍ତି ଓ ନିଜେ ଘଟଣାମାନଙ୍କ ଦ୍ୱାରା ତାଡ଼ିତ ହୋଇ ଚାଲିଥାନ୍ତି । ମାତ୍ର ସେମାନେ ଘଟଣାଟିକୁ ବୁଝନ୍ତି ନାହିଁ ବା ଘଟଣା ଘଟାଉଥିବା ଭିନ୍ନ ଭିନ୍ନ ଶକ୍ତିଗୁଡ଼ିକୁ ମଧ୍ୟ ବୁଝନ୍ତି ନାହିଁ । ଘଟଣାକୁ ବୁଝିବାମାନେ ଘଟଣାଗୁଡ଼ିକର ଘଟିବା କ୍ରମଗୁଡ଼ିକ ଉପରେ ସୁଜାଣ ହେବା ଓ ତା'ର ମର୍ମକୁ ଉପଲବ୍ଧି କରିବା । ଦ୍ୱିତୀୟ କଥା ହେଲା—ଘଟଣା ଘଟାଉଥିବା ଶକ୍ତିଗୁଡ଼ିକୁ ଅର୍ଥାତ୍ ଚରିତ୍ରଗୁଡ଼ିକୁ ବା ବ୍ୟକ୍ତିଗୁଡ଼ିକୁ ବୁଝି ପାରିବା । ଗୋଟିଏ ମଣିଷ ବା ଗୋଟିଏ ଗଛ ବା ଗୋଟିଏ ଝିଣ୍ଟିକା ବା ଗୋଟାଏ ବିଲେଇ ମଧ୍ୟ ବଡ଼ ସାନ ଘଟଣାଗୁଡ଼ିକର ଗତିକୁ ନିୟନ୍ତ୍ରଣ କରିଦେଇ ପାରନ୍ତି । ଏକ ଅଦୃଶ୍ୟ ଅବୋଧ୍ୟ ବିଧାନ—ଯାହାକୁ ଆମେ ନିୟତି ବା ଅଦୃଷ୍ଟ କହୁଛୁ—ତାହା ମଧ୍ୟ ମଣିଷ ଜୀବନକୁ ନିୟନ୍ତ୍ରଣ କରିଥାଏ । ମୁଁ ସେଗୁଡ଼ିକୁ ବୁଝିବାର ଚେଷ୍ଟା କରେ । ପିଲାଦିନୁ ମୋର ଏହି ଗୁଣଟି ମୋଠାରେ ବିଶିଷ୍ଟ ହୋଇ ରହିଛି । ପିଲାଦିନୁ ମୁଁ ଜୀବନର ଘଟଣାଗୁଡ଼ିକ ସଙ୍ଗେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ସଂପୃକ୍ତ ହୋଇଯାଏ । ପ୍ରଥମେ ଜୀବନର ସବୁ କିଛି ଯାହା ମୋ ଆଗକୁ ଆସି ଯାଇଛି ଗୋଟାଏ ଚାଲେଞ୍ଜ ଭଳି—ତା' ପ୍ରତି ମୁଁ ଗୋଟାଏ ଆବେଗାତ୍ମକ ଆକର୍ଷଣ ବା ମୋହ ଅନୁଭବ କରେ । ନିଜେ ସେଥିରେ ସଂଶ୍ଳିଷ୍ଟ ହୋଇଯାଏ । ଗୁଡ଼ାଏ ଧକମ୍‌ଧକା ଖାଏ—ଗୁଡ଼ାଏ ହନ୍ତସନ୍ତ ହୋଇଯାଏ । ସେଇଠୁ ମୋ ଭିତରେ ଗୋଟାଏ ଦ୍ରଷ୍ଟା ପୁରୁଷ ବା ଗୋଟାଏ ଖୁବ୍ ସମ୍ବେଦନଶୀଳ ପୁରୁଷର ଆବିର୍ଭାବ ଘଟେ । ସବୁ କଥାକୁ ଏପରିକି ମୋତେ ନିଜକୁ ବି ମୁଁ ଦେଖି ପାରେ ଟିକିଏ ଦୂରରୁ ଥାଇ ବା ଟିକିଏ ବିଚ୍ଛିନ୍ନ ହୋଇ । ମୁଁ ମୋର ଅସହାୟତାକୁ ଅନୁଭବ କରେ—ବୁଝି ମଧ୍ୟ ପାରେ । ବୁଝିପାରେ କିପରି ମୁଁ ବଢ଼ିପାଣିରେ କୁଟାଖିଏ ଭଳି କେବଳ ଭାସି ଯାଇଛି—ପ୍ରତିରୋଧ କରିପାରି ନାହିଁ । ମୋଠାରୁ ଶକ୍ତିଶାଳୀ ଶକ୍ତିମାନଙ୍କ ହାତରେ ମୁଁ ଗୋଟାଏ ପୁତୁଳିକା ହୋଇଯାଇଛି । କେହି ଜଣେ କାମୁକା ରମଣୀ ମୋର ଇଚ୍ଛା ବିରୁଦ୍ଧରେ ମୋତେ ତାର ସନ୍ତୋଷ ପାଇବାର ଯନ୍ତ୍ରରୂପେ ବ୍ୟବହାର କରିଛି । କେଉଁ ମୁହୂର୍ତ୍ତରେ କେଉଁ ଏକ ଶକ୍ତିମାନ ସ୍ୱାର୍ଥ-ସିଦ୍ଧ ଟାଉଟରୀ ରାଜନୀତିବାଲାଙ୍କ କବଳରେ ପଡ଼ି ମୁଁ ତା'ର ବୋଲକରା ହୋଇ

ଅକାର୍ଯ୍ୟ ଗୁଡ଼ାଏ କରି ପକେଇଛି । ପୁଣି ନିଜର ସ୍ୱାର୍ଥ ଲାଗି ନିଜର ଦୁର୍ବାର ବାସନା ଗୁଡ଼ିକର ଚରିତାର୍ଥତା ଲାଗି ମଧ୍ୟ ମୁଁ ଯେତେବେଳେ କୋଉ ସରଳ ଅମାୟିକ ନାରୀ ପୁରୁଷଙ୍କୁ ନିଜର ଶକ୍ତିଗୂପ ତଳେ ପକାଇ ବ୍ୟବହାର କରିଛି ସେମାନଙ୍କୁ ମୋର ଆମୋଦ ଆହ୍ଲାଦର ଉପକରଣ ରୂପେ । ଏହା ଛଡ଼ା ମଧ୍ୟ ବହୁ ବଳବାନ୍ ଅଦୃଷ୍ଟ ବା ନିୟତି ହାତରେ ମୁଁ ବୃଥାଟାରେ କେତେ ଥର ଉତ୍ପୀଡ଼ିତ ହୋଇଛି—ତା'ର ପ୍ରରୋଚନାରେ କୁପଥଗାମୀ ହୋଇଛି—ତା'ର କିଛି ଠିକ୍ ଠିକଣା ନାହିଁ । ମୁଁ ଜାଣେ ବହୁ ବିଷୟରେ ମୁଁ ନିଜେ ଯେମିତି ଅସହାୟ, ଅନ୍ୟଲୋକେ ମଧ୍ୟ ତଦ୍ରୂପ ଅସହାୟ । ମଣିଷ ତା'ର ନିଜର ଆବେଗ ଓ ପ୍ରବେଗରେ ପରିଚାଳିତ ହୋଇଯାଏ—ତା' ନିଜର କୂଟବୁଦ୍ଧି ଦ୍ୱାରା ପରିଚାଳିତ ହୋଇଯାଏ । ବିଚାର ବୁଝିପାରେ ନାହିଁ ଯେ, ସେ ସ୍ୱାଧୀନ ଭାବରେ କିଛି କରିପାରୁ ନାହିଁ । ଏତେ ବଡ଼ ଜଣେ ବୁଦ୍ଧିମାନ୍ ରାଜନୀତିଜ୍ଞ ବା ଜଣେ ଜ୍ଞାନବନ୍ତ ଅଧ୍ୟାପକ, ଡାକ୍ତର ବା ଇଞ୍ଜିନିୟର—ବା ଏଡ଼େ ଚମତ୍କାର ସରଳ କୃଷକଟିଏ ବା ଶ୍ରମିକଟିଏ—ବା ଗ୍ରାମର ବୋଧା ମୁଖିଆ ଲୋକଟିଏ ଅସହାୟତାରେ ସର୍ବେ ସମାନାଃ । ଚୋର ଯାହା, ସାଧୁ ତାହା । ସମସ୍ତେ ପୁଣି ଏକ ବିରାଟ ରହସ୍ୟମୟ ଅବଚେତନକୁ ଭିତରେ ଧରି ବୁଲୁଛନ୍ତି । ସମସ୍ତେ ଅଧୀନ ସେହି ଅବଚେତନର ପ୍ରରୋଚନା ପାଖରେ । ମୋର ଓ ମଣିଷର ଏ ପ୍ରକାର ଅସହାୟତା ପିଲାଦିନୁଁ ଦେଖି ଆସିଛି—ବୁଝି ଆସିଛି—ବିରକ୍ତ ହୋଇଛି—ବିଦ୍ରୂପ କରିଛି—ପୁଣି କ୍ଷମା କରିଛି—କାନ୍ଦି କାନ୍ଦି କ୍ଷମା କରିଛି ମଣିଷକୁ । ଦିନେ ଦିନେ ଅଧରାତିରେ ବିଛଣାରୁ ଉଠିଯାଇ, ବାହାରେ ଆକାଶକୁ ଚାହିଁ ଶୂନ୍ୟତା ଉପରେ ବିଧା ପରେ ବିଧା କୁଟି ଦେଇଯାଏ । ଆକାଶକୁ ଚାହିଁ ପଚାରେ—ହେ ଏଇ-ସବୁ ଅସହାୟତାର ବଦମାସ ସ୍ରଷ୍ଟା ! କିଏ ତୁମେ କେଉଁଠି ଅଛ ? ମଣିଷକୁ ଏତେ ଅସହାୟ କଲ କାହିଁକି ? କଲ କାହିଁକି ?

ପ୍ରକୃତରେ ପଶୁ ଆମଠାରୁ ବେଶୀ ଅସହାୟ ନୁହେଁ । ତା'ର ଗାର୍ଜନ ଅଛନ୍ତି ପ୍ରକୃତିଦେବୀ । ଆମେ ପ୍ରକୃତିର ତ୍ୟାଜ୍ୟ ସନ୍ତାନ । ଆମର ମା' ବାପ କେହି ନାହିଁ । କିନ୍ତୁ ପଶୁ ଆମଠାରୁ ଅସହାୟ ନୁହେଁ ସିନା—କିନ୍ତୁ ଆମଠାରୁ ବେଶୀ ଅବୋଧ, ନିର୍ବୋଧ—ବେଶୀ ବୋକା ।

ପଶୁ ପ୍ରତି ଅନୁକମ୍ପା ଜାତ ହୁଏ । ମାତ୍ର ମନୁଷ୍ୟ ଲାଗି ଉଚ୍ଚକଣ୍ଠ ସ୍ୱରରେ କାନ୍ଦିବାକୁ ଇଚ୍ଛା ହୁଏ । ଆହା !! ଆମେ ଏତେ କଥା ବୁଝି-ପାରୁଛୁ । ଅଥଚ ଆମେ ଏତେ ଅସହାୟ !!

ଆମେ ଏତେ ଦୁଃଖୀ ! ଏଇ ସବୁ କଥା ବୁଝି ପାରିବା ହିଁ ମଣିଷର ଦୁଃଖ—ଏଇ ଅସହାୟତା ବୋଧ ହିଁ ମଣିଷର ଦୁଃଖ । ପିଲାଦିନୁ ଏ ହିସାବରେ ମୁଁ ବଡ଼ ଦୁଃଖୀ । ବୁଝିପାରିବାର ଗୋଟାଏ ସକରୁଣ ବିଷାଦବୋଧ ମୋର ଚେତନାକୁ ସର୍ବଦା ଘେରି ରହି ଆସିଛି—ଆଉ ସେତେ ମଣିଷ ସମ୍ପର୍କରେ ଗଳ୍ପ ଲେଖିବାକୁ ପ୍ରବର୍ତ୍ତାଇ ଆସିଛି । ଗଳ୍ପ ଲେଖିବା ମାନେ କ'ଣ ମଣିଷ ସମ୍ପର୍କରେ ସଫେଇ ଦେବା ? ନା—ଆଉ କ'ଣ ? କେଜାଣି ?

କେବଳ ମୋ ନିଜର ବା ମଣିଷର ନିର୍ବୋଧ ଅସହାୟତା ବା ସବୋଧ ଅସହାୟତାକୁ ଯେ ମୁଁ ଦେଖି ଆସିଛି, ତାହା ନୁହେଁ—ମୁଁ ମଧ୍ୟ ଦେଖି ଆସିଛି ମଣିଷର ଏକ ଦୁର୍ବାର ସବଳତାକୁ । ମୋ ଭିତରେ ମଧ୍ୟ ମୁଁ ଦେଖିଛି ବହୁବାର ଏକ ସବଳ ବ୍ୟକ୍ତିତ୍ୱକୁ । ଏକ ସବଳ ଦୁର୍ବାର ମାନବୀୟ ସଂକଳ୍ପ କିପରି ମଣିଷକୁ ଏକ ଉଦ୍ଧତ ଗୌରବମୟ ଭୂମିକାରେ ଅଟଳ ହୋଇ ଠିଆକରାଇ ଦେଇଛି—ତାହା ମଧ୍ୟ ମୁଁ ମୋ ଭିତରେ ଓ ଅପର ମଣିଷ ଭିତରେ ବାସ୍ତବ ରୂପେ ପ୍ରତ୍ୟକ୍ଷ କରିଛି । ବହୁ ଶକ୍ତିଶାଳୀ ଅମାନୁଷିକ ଶକ୍ତି ବା ଦୁର୍ଦ୍ଧର୍ଷ ନୃଶଂସ ନିୟତିର ଶତ ନିପୀଡ଼ନ ସତ୍ତ୍ୱେ ମନୁଷ୍ୟ ତାର ଅନମନୀୟ ଉଦ୍ଧତ ବୀରତ୍ୱ ହଙ୍କାରରେ ଉନ୍ନତ ଶିର ହୋଇ ଦଣ୍ଡାୟମାନ ହୋଇ ରହିଥିବାର ଦୃଶ୍ୟ ମୁଁ ସାଧାରଣ, ଅସାଧାରଣ ବହୁ ନର ନାରୀଙ୍କ ଜୀବନରେ ପ୍ରତ୍ୟକ୍ଷ କରିଛି । ପ୍ରତ୍ୟକ୍ଷ କରିଛି ମଧ୍ୟ ନିଜ ଜୀବନ କ୍ଷେତ୍ରରେ । ଅଟଳ ପଣରେ ବି ଚୋର ଓ ସାଧୁ ସର୍ବ ସମାନାଃ ।

ସବୁ ପ୍ରକାର ଗୁଣ ଦୁର୍ଗୁଣର ମିଶାମିଶି ଏକ ଚମତ୍କାର ଆକର୍ଷଣୀୟ ଚରିତ ଏଇ ମଣିଷ ସମାଜର । ସବୁ ବାଧାବିଘ୍ନ ସତ୍ତ୍ୱେ ସେ ଅଗ୍ରସର ହୋଇ ଚାଲିଛି ତାର ଏକକ ବିପର୍ଯ୍ୟୟ ବା ପରାଜୟ. ଭିତରେ ଫୁଟି ଦିଶୁଛି ଏକ ସମଷ୍ଟିର ସମୃଦ୍ଧି ଓ ବିଜୟ ।

ଏଇ ମଣିଷକୁ ମୁଁ ଭଲପାଇ ଆସିଛି ପିଲାଦିନୁ । ଭଲ ପାଉଛି ମୋ ନିଜକୁ ବି । ତେଣୁ ତା'ର ଜାଗିଁ ଆଉ ଅଜାଗିର କାହାଣୀକୁ ମୁଁ ଆଉ ଜଣକ ଆଗେ ବଖାଣିବାକୁ ନିଜ ଭିତରେ ପ୍ରେରଣା ପାଇ ଆସିଛି । ମଣିଷ ହିଁ ସିନା ଶୁଣିବାକୁ ଚାହେଁ ଅପର ମଣିଷଟିର କାହାଣୀ ! ଅମୁକ ରଜାପୁଅ କ'ଣ କଲାଟି ମାଷ୍ଟ୍ରେ ? ସମୁକ ଚଷାପୁଅ କ'ଣ କଲାଟି ମଉସା ? ଅମୁକ କଣ୍ଟିଆଳ ପୁଅ କ'ଣ କଲାଟି ଖୁଡ଼ୀ ? ତମୁକ ଘର ଝିଅ କାହିଁକି ଡିଙ୍କିଶାଳରେ ଦଉଡ଼ି ଦେଇ ମଲା ନାନି ? ଅମୁକ ସାହିର ସମୁକ ପଧାନପୁଅ କେଉଁଆଡ଼େ କାହିଁକି ଦେଶାନ୍ତରୀ ହୋଇଗଲା ହୋ ଭାଇ ? ହଇଓ ଦାମ ଖଣ୍ଡିଆ ? ତୁମ ପାନ ଗୁଆ କିଏ ନେଇଗଲା—ଏବେ ବୁଲୁଅଛ ଧରି ଖାଲି ବଟୁଆ ? କୁହ ବଳଦେବ ପଣ୍ଡା ! କଦଳୀ ଗଛର ଘଇଚା ନାହିଁ—ଭଲା ସେ କେମିତି କାଟିଲା ଭଣ୍ଡା ? ଅଳେଇଚ ମତେ ଦେଖି କଆଁ ଚଳେଇଚ ?

ଏମିତି ହଜାର ଉତ୍ସୁକତା ମଣିଷର ଅପର ମଣିଷଟି ବିଷୟରେ ଜାଣିବା ପାଇଁ । ସୁଖର କଥାଟି ଶୁଣିଲେ ହସିବା ପାଇଁ, ଦୁଃଖର କଥାଟି ଶୁଣିଲେ ହାହାକାର କରି କାନ୍ଦିବା ପାଇଁ । କାହିଁକି ଏ ଉତ୍ସୁକତା ? କାରଣ—ମଣିଷ ଭଲପାଏ ଅପର ମଣିଷଟିକୁ । ଶୁଣିବାକୁ ଚାହେଁ ଆରକ ମଣିଷର କଥା । ମଣିଷ ଦେଖିବାକୁ ଚାହେଁ ଆଉ ଗୋଟିଏ ମଣିଷକୁ । କାରଣ ମଣିଷ ଚାହେଁ ଅଜଣା ମଣିଷଟି ସଙ୍ଗେ ପ୍ରତ୍ୟକ୍ଷରେ ବା ପରୋକ୍ଷରେ ସମ୍ପର୍କ ଥାପିବା ପାଇଁ । ଆଉ—ସବୁପ୍ରକାର ଗଳ୍ପ ମଧ୍ୟ ମଣିଷର ମଣିଷ ସଙ୍ଗେ ବା ଆଉ କାହା ସଙ୍ଗେ ଏଇ ସମ୍ପର୍କ ଥାପିବାର କାହାଣୀ । ସମ୍ପର୍କ ଭାଙ୍ଗି ଯିବାର ବା ସମ୍ପର୍କ ଯୋଡ଼ି ହୋଇଯିବାର କାହାଣୀ ।

ଜଣେ ଗଳ୍ପ ଲେଖକ ହିସାବରେ ମୁଁ ମଣିଷର ଏଇ ସମ୍ପର୍କ ଥାପନାର କାରଣ ମଧ୍ୟ ଖୋଜି ଆସିଛି ମୋ ଜୀବନରୁ ଓ ଅପର ଜୀବନରୁ । ଏଇ ସମ୍ପର୍କ ଥାପନାର କେତେ ବୁକୁଫଟା ଓ ବୁକୁଭରା କାହାଣୀ ମୋର ମନ-ପେଡ଼ିରେ ସଞ୍ଚିତ ହୋଇ ରହିଛି—ସବୁ କଥା କହି ପାରିନି—କିଛି କହି ସାରିଲା ବେଳକୁ ଆହୁରି ପେଡ଼ି ଭିତରେ କେତେ କାହାଣୀ ଭର୍ତ୍ତିହୋଇ ଯାଇଛନ୍ତି ।

ପିଲାଦିନୁ ସବୁ ମଣିଷଙ୍କୁ ଦେଖି ଆସିଛୁ ଏଇ କଥା ଆଉ କାହାଣୀ ଜଗତର ନାୟକ ନାୟିକା ବା ଚରିତ୍ର ରୂପେ । ସବୁ ବ୍ୟକ୍ତି ମତେ ମନେ ହୋଇଛନ୍ତି ଚରିତ୍ର ରୂପେ, ବହୁତ ବହୁତ କଥା କାହାଣୀର । ଆମ ଗାଁର ସେହି ରାସ୍ତାରେ ରେଖା କରି ଦିନରେ ବନ୍ଧାହୋଇ ମାଡ଼ ଖାଉଥିବା ରସା ସାହୁ, ଯାହାର ଥିଲା ଏଡ଼େ ଏଡ଼େ ନାଲି ନାଲି ଉମା ଉମା ଆଖି, ଯେ ଗୋଟା ଗୋଟା ଛେଳିକୁ ବିଲରୁ ବାନ୍ଧିଆଣି ମୋଡ଼ିଦିଏ —ସାଗୁଆଳି କରି ରାନ୍ଧିରୁନ୍ଧି ଗୋଟାପାକ ଛେଳି ନିଜ ଗର୍ଭକୁ ଷେପି ଦିଏ—ରାକ୍ଷସ ଭଳି ଚେହେରା—ମାଇପ ନାହିଁ—ପିଲାଛିଲା ନାହିଁ— ଏକୁଟିଆ ଥାଏ—ସବୁବେଳେ ରାଗ ତମ ତମ—ଲୋକେ କହନ୍ତି—ସେ ଏଡ଼େ ନୃଶଂସ ଥିଲା ଯେ—ଭଜମା ସୋଇଁ ସାଙ୍ଗେ କଳି ଲଗାଇ ତା'ର ପାଞ୍ଚ ବରଷର ପୁଅକୁ ବେକ ମୋଡ଼ି ଗୋଟିଏ ଅମୁହାଁ କୂଅ ଭିତରେ ପକାଇ ଦେଇଥିଲା—ସେଇ ରସା ସାହୁ କାହିଁକି କେଜାଣି ଦିନେ ଦିନେ ମତେ ଡାକି ତାର ଏକୁଟିଆ ଘର ଭିତରେ ବସାଉଥିଲା । ମତେ ସେତେବେଳେ ମାତ୍ର ଛଅ ବରଷ—ମୁଁ ଡରି ଡରି ତା ଅନ୍ଧାରିଆ ଘର ଭିତରେ ପଶୁଥିଲି—ମତେ ସେ ଚାଟିଆ ଏ ମାଉଁସ ତରକାରି ଖୁଆଉଥିଲା —ତାପରେ ଚିରା ଭାଗବତ ବହିଟିଏ ଦେଖାଇ କହୁଥିଲା—ବୋଲି ଏଥିରୁ ଅଧ୍ୟାଏ । ମୁଁ ଖୁବ୍ ସୁନ୍ଦର କଣ୍ଠରେ ବୋଲୁଥିଲି—ଅବଶ୍ୟ ଡରି ଡରି । କୃଷ୍ଣଘାତକ ଜରା ଶବରର କାତର ଉକ୍ତି—

କାତରେ ବେନି କର ଯୋଡ଼ି । କୃଷ୍ଣ ଚରଣ ତଳେ ପଡ଼ି ॥
ଉଠି କପାଳେ ମାରେ କର । ବୋଲଇ ମୁହିଁ ଦୁରାଚାର ॥
ନ ଜାଣି କଲି ଏତେ କର୍ମ । କେ ମୋତେ କଲା ମତିଭ୍ରମ ॥
ମୁଁ ଯେ ପାମର ଦୁରାଚାର । ନରକେ ନିବାସ ମୋହର ॥
ତୁ ନାଥ ଜଗତ ସୋଦର । ଏ ଅପରାଧ କ୍ଷମାକର ॥

ମୁଁ ଏତିକି ବୋଲୁ ବୋଲୁ— ରସା ସାହୁର କ'ଣ ହୁଏ କେଜାଣି ସେହି ଅନ୍ଧାରିଆ ଘର ଭିତରେ ହୋ ହୋ ହୋଇ କାନ୍ଦି ଉଠେ—ଆଉ ଭୂଇଁ ଉପରେ ମୁଣ୍ଡ ବାଡ଼େଇ ଲମ୍ବ ହୋଇ ତଳେ ପଡ଼ିଯାଏ ।

ଅନ୍ଧାରିଆ ଘର ଭିତରୁ ଜୁଳୁଜୁଳୁ ହୋଇ ଦିଶୁଥାଏ କାନ୍ଥକୁ ଲାଗିଥିବା ଖଣ୍ଡିଏ ଫ୍ରେମ୍ ବନ୍ଧା ମଳିନ ଜଗନ୍ନାଥ ଫଟୋ ମାତ୍ର ।

ଏ ଘଟଣାର ଦୁଇ ତିନିଦିନ ପରେ ଦେଖାଯାଏ ପୁଣି ଯୋଉ କଥାକୁ ସେଇ କଥା । ରସା ସାହୁ ତାହାର କ'ଣ ଚୋର କରି ପୁଣି ବନ୍ଧା ହୋଇ ସାହୁଘରେ ବୁଲୁ ହେଲାଣି ।

ରସା ସାହୁ ଲାଗି ମୁଁ କ'ଣ କମ୍ କାନ୍ଦିଛି ? ତାକୁ ଗ୍ରାମରେ ସମସ୍ତେ ଘୃଣା କରୁଥିଲେ । ମାତ୍ର ସେ ଶିଶୁହନ୍ତା—ମତେ କାହିଁକି ଏତେ ଭଲ ପାଉଥିଲା ? ମୁଁ ଦିନେ ତାକୁ କହିଲି—ରସାଭାଇ ! ଏ ଚୋରି କାହିଁକି କରୁଛ ? ଏତେ ମାଡ଼ କାହିଁକି ଖାଉଛ ? ରସାସାହୁ ମୋତେ କୋଳରେ ଜାକି ମୋ ଗାଲକୁ ଚିପିଦେଇ ଗୋଟାଏ ଅଟ୍ଟହାସ୍ୟ କରି କହିଲା—

ହାଃ···ହାଃ ହାଃ··ଗରଲେ ଜାତକଲୁ ମତେ । ସ୍ୱଭାବ ଛାଡ଼ିବ କେମନ୍ତେ ? ତୁ ସେ କଥା କେମିତି ବୁଝିବୁରେ ପୁଅ ? ତୁ ତ ବସ୍ତୁ କଳାରେ ଜନ୍ମ ହୋଇଛୁ ।

ରସା ସାହୁ ଯେମିତି ମୋର ଜୀବନରେ ଏକ କରୁଣ ଚରିତ୍ର— ସେମିତି ଆଉ ଏକ ଚରିତ୍ର ଆମ ଗାଁର ଷାଠିଏ ବର୍ଷର ବୁଢ଼ା ବନ୍ଧିଆ ପାଢ଼ୀଙ୍କର ରୂପସୀ ଯୌବନବତୀ ସ୍ତ୍ରୀ ବୃନ୍ଦାନାନୀ । ଆମ ଗାଁରେ ତାକୁ ସମସ୍ତେ ଡାକନ୍ତି ବୁରୁନ୍ଦା ବୋଧ । ବୁରୁନ୍ଦା ନାନୀ ସାଙ୍ଗରେ ଯେତେବେଳେ ଆମ ଗ୍ରାମର ସମସ୍ତ ଯୁବା ପ୍ରୌଢ଼ ସ୍ନେହ ପ୍ରୀତିରେ ମାତିଥାନ୍ତି । ବୁରୁନ୍ଦା-ନାନୀ କାହାକୁ ନିରାଶ କରୁ ନ ଥିଲା । ଅଥଚ ସମସ୍ତେ ତାକୁ ଏତେ ହୀନ ମନେ କରନ୍ତି ଯେ, ମତେ ଭାରି ବିକଳ ଲାଗେ । ବୁରୁନ୍ଦାନାନୀ ହୋଇଥିଲା ଅଳ୍ପ ବୟସରେ ବିଧବା ଓ ସନ୍ତାନହୀନା । ତା'ଭଳି ସ୍ନେହଶୀଳା କୋମଳ ଭାଷିଣୀ ନାରୀ ମୁଁ ଖୁବ୍ କମ୍ ଦେଖିଛି । ତା'ଭଳି ପରଦୁଃଖ-କାତର ନାରୀ ମଧ୍ୟ ମୁଁ ଖୁବ୍ କମ୍ ଦେଖିଛି ।

ସେମିତି ଆମ ଗାଁର ବୁଢ଼ା ଚୌକିଦାର ଗଗନୀ କଣ୍ଡରା—ଆମ ଗାଁର ନ୍ୟାୟବନ୍ତ ପୁରୁଷ ବାଲେଇ ମିଆଁ—ଟାଉଟରୀରେ ଓସ୍ତାଦ

ମିଟ୍‌ବାବୁ, ମଦା ନଟକୁଟିଆ ବୁଢ଼ା ଗୋଲଖା ମହାପାତ୍ର—ଭଗବାନଙ୍କୁ ଦେଖିଥିବା ଓ ଅଲୌକିକ ଅନୁଭୂତିରେ ମଦା ଡୁବୁ ଡୁବୁ ବୃନ୍ଦାବନ ମିଶ୍ରେ, ଆମ ବାଉଗ ସାହର ବୁଧିଆ ଭୋଇ, ନଟିଆ କାଳେସୀ ଓ ଆମର ବିରାଟ ଏକାନ୍ନବର୍ତ୍ତୀ ପରିବାରର ମୋର ବାପା, କକା, ମା, ଖୁଡ଼ୀ ଓ ବିଧବା ପିଉସୀମାନେ ଏବଂ ଏହିଭଳି ଅସଂଖ୍ୟ ଅସଂଖ୍ୟ ଚରିତ୍ର ଛବି ଭଳି ମୋର ଏଯାବତ୍ ମନେ ଅଛନ୍ତି ଜୀବନ୍ତ ଭାବେ । ସେମାନଙ୍କ ସମ୍ପର୍କରେ ମୋର ଜିଜ୍ଞାସୁତା ଥିଲା ଖୁବ୍ ବେଶୀ । ବହୁକଥା ମୁଁ ଶୁଣିଛି ସେମାନଙ୍କ ବିଷୟରେ । ପ୍ରତିଟି ଚରିତ୍ର ଖୁବ୍ ରହସ୍ୟପୂର୍ଣ୍ଣ ଓ ଅତି ଚିତ୍ତାକର୍ଷକ । ମୋର ମନେହୁଏ ମଣିଷ ଚରିତ୍ରର ଏହି ଚିତ୍ତାକର୍ଷକ ଓ ରହସ୍ୟପୂର୍ଣ୍ଣ ବିଭବ ପ୍ରତି ମୋର ଗାଢ଼ ଆକର୍ଷଣ ଯୋଗୁଁ ମୁଁ ଗଳ୍ପ ଲେଖିବାରେ ପ୍ରବୃତ୍ତ ହେଲି । ଏହି ଜିଜ୍ଞାସୁତା ହିଁ ମତେ ଜୀବନରେ କେତେ ପୁଣ୍ୟ ଓ କେତେ ପାପ ଆଡ଼କୁ ଟାଣି ନେଇଛି ।

ପ୍ରକୃତରେ ମତେ ଗୋଟାଏ କଥା ଫାନ୍ଦକରି ଆସେ ନାହିଁ । ମୋର ପିଲମାନେ ଓ ମୋ ଭାଇମାନଙ୍କର ପିଲମାନେ ମୋତେ ପାଇଲେ ବହୁତ ଅଳି କରନ୍ତି କଥାଟିଏ ଶୁଣିବାକୁ । ମାତ୍ର ମୁଁ ପଢ଼ିଥିବା କୌଣସି କାହାଣୀ ମଧ୍ୟ ପୃବ ମନେରଖି ସେମାନଙ୍କୁ କହିପାରେ ନାହିଁ । ସେମାନେ କହନ୍ତି—ବାପା ! ଫାନ୍ଦକରି ତାହାଲେ ଗପଟିଏ କୁହ । ମୁଁ କହେ— ମୋତେ ଫାନ୍ଦକରି ମଧ୍ୟ ଆସୁନାହିଁ । ସେମାନେ ବିଶ୍ୱାସ କରନ୍ତି ନାହିଁ । ପଚାରନ୍ତି—ଫାନ୍ଦ ଆସେନି ତ ଏତେ ଗଳ୍ପ ଫାନ୍ଦକରି ଲେଖିଛ କେମିତି ?

ସେ ପିଲମାନଙ୍କୁ ମୁଁ ଏବେ କେମିତି ବୁଝାଇଥାନ୍ତି ଯେ— ବାବୁମାନେ ! ମୁଁ କୌଣସି ଗଳ୍ପ ଫାନ୍ଦକରି ଲେଖିନି । ସବୁଗୁଡ଼ାକ ସତ-ଗଳ୍ପ । ମୋର ବିଶେଷ ବାହାଦୁରୀ ନାହିଁ ।

ଏବେ ତ ମୋର ବଡ଼ ପିଲମାନେ ବେଳେ ବେଳେ ପଚାରନ୍ତି— ବାପା ! ଅମୁକ ଗପଟା ତୁମର କ'ଣ ସତ ? ମୁଁ କହେ—ହଁ । ସେଇଠୁ ପ୍ରଶ୍ନ ହୁଏ—ସତରେ କ'ଣ ତୁମ ଜୀବନରେ ଏଇଆ ଘଟିଥିଲା ? ମୁଁ

କହେ—ଆରେ ବାବୁ ! ସତକଥା କହିବାଲାଗି ମୋ ଜୀବନ ଆଉ ପର ଜୀବନ ଭିତରେ ପ୍ରଭେଦ କ'ଣ ?

ସତକଥା । ସବୁ ଗଳ୍ପର ବିଷୟବସ୍ତୁକୁ ବା ସବୁ ଗଳ୍ପର ଚରିତ୍ରକୁ ମୁଁ ଦେଖିଛି ଯେମିତି ବାହାର ଜଗତରେ, ଦେଖିଛି ବି ସେମିତି, ମୋର ନିଜର ଭିତର ଜଗତରେ ।

ମୁଁ ପିଲାଦିନେ କବିତା ଲେଖୁଥିଲି । କଲେଜରେ ପଢ଼ିବାଯାଏ ବି କବିତା ଲେଖୁଥିଲି । ଅତି ବାଜେ କବିତା ଅବଶ୍ୟ । ସେଥିରୁ କେତୋଟି 'ଦୈନିକ ଆଶା' ଆଉ ଅନ୍ୟ ପତ୍ରିକାରେ ଅବଶ୍ୟ ପ୍ରକାଶ ପାଇଥିଲା । ମାତ୍ର ସବୁଗୁଡ଼ାକ ବାଜେ କବିତା । ଅନୁକରଣ କବିତା । ସେଗୁଡ଼ିକରେ ମୋର ସ୍ୱାତନ୍ତ୍ର୍ୟ କିଛି ନ ଥିଲା । ମୁଁ ତା ଜାଣି ପାରୁଥିଲି । ମୋ ଭିତରେ ଅନ୍ୟମାନଙ୍କ ଅପେକ୍ଷା ଖୁବ୍ ଇମୋସନ ଓ ଅନୁଭୂତିର ତରଙ୍ଗମାନ ଉଠୁଥିଲା । ମାତ୍ର ତାକୁ ପ୍ରକାଶ କରିବା ଲାଗି କବିତା ନ ଥିଲା ମୋର ଉପଯୁକ୍ତ ମାଧ୍ୟମ । ମାତ୍ର କେଉଁ ମାଧ୍ୟମ ମୋର ଉପଯୁକ୍ତ ହେବ, ତାହା ମଧ୍ୟ ମୋତେ ଜଣା ନ ଥିଲା । ମୋତେ ମୂଳରୁ—ମାନେ ସ୍କୁଲ ଜୀବନର ସାଙ୍ଗମାନେ କେହି ସାହିତ୍ୟିକ ବୋଲି ଖାତିର କରୁ ନ ଥିଲେ । ମୁଁ ମାଟ୍ରିକ୍ ପଢ଼ିଲା ବେଳେ କେବଳ କବିତା ଲେଖୁଥିଲି । ମାତ୍ର ସେଗୁଡ଼ିକ ଥିଲା ନିତାନ୍ତ ବାଜେ । ମୋ ଠାରୁ ଅତି ଚମତ୍କାର କବିତା ଲେଖିଲାବାଲା ମୋର ସହପାଠୀମାନେ ଥିଲେ । ସେମାନେ ମୋତେ ବଡ଼ ହୀନ ଦୃଷ୍ଟିରେ ଦେଖୁଥିଲେ । ମୋତେ ଗଣିତ ଆସେନାହିଁ ବୋଲି ତ ସହଜେ ମୁଁ ସମସ୍ତଙ୍କ ଆଖିରେ ବୁଦ୍ଧିହୀନ ପର୍ଯ୍ୟାୟରେ ଥିଲି । ଆଜି ସିନା ବୁଝୁଛି ଯେ, ସେତେବେଳର ଗଣିତ ବିଦ୍ୟାରେ ପାରଦର୍ଶୀ ବହୁ ତଥାକଥିତ ବୁଦ୍ଧିମାନଙ୍କଠାରୁ ଆଜି କଂପ୍ୟୁଟର୍ ଯନ୍ତ୍ର କୋଟିଗୁଣରେ ବୁଦ୍ଧିମାନ ବୋଲି ! ମାତ୍ର କଂପ୍ୟୁଟର୍ କ'ଣ ରସା ସାହୁର ବେଦନା ବୁଝି ପାରିବ ? ବୁରୁଦା ବେଧର ମର୍ମ କଥା ବୁଝିପାରି ହା-ହାକାର କରି ପାରିବ ! "କପୋତ ପକ୍ଷୀ ଗୁ ରୁ ମୋର" ଗଳ୍ପ ଲେଖି ପାରିବ ? ଲେଖି ପାରିବ "ଅନ୍ଧ ରାତିର ସୂର୍ଯ୍ୟ" ଭଳି ଗଳ୍ପ ?

ମୋର ଶିକ୍ଷକ ବା ଅଧ୍ୟାପକମାନେ ମଧ୍ୟ ମୋର ସାହିତ୍ୟିକ ଜୀବନ ଗଢ଼ିବାରେ କେହି ସାହାଯ୍ୟ କରି ନାହାନ୍ତି । ଯଦିଓ ଅନ୍ୟ ଦିଗରୁ ମୁଁ କତିପୟ ଶିକ୍ଷକ ଓ ଅଧ୍ୟାପକଙ୍କ ଦ୍ୱାରା ବହୁ ଉପକୃତ ହୋଇଛି । ମୋର ଇଚ୍ଛା ଥିଲା ଗୋଟିଏ ଭଲ କବି ହେବି । ମାତ୍ର ଭଲ କବିତାଟିଏ ଲେଖିବା କ'ଣ କମ୍ କଷ୍ଟ ? ଏବେ ମଧ୍ୟ ମୋତେ ଦୁଇଜଣ ବ୍ୟକ୍ତିଙ୍କ ପାଖେ ବଡ଼ ହୀନମନ୍ୟ ଲାଗେ । ଜଣେ ଗଣିତଜ୍ଞ ଓ ଜଣେ କବିଙ୍କ ପାଖରେ ମୁଁ ନିଜକୁ ଭାରି ଛୋଟିଆ ମନେ କରେ । ଯଦିଓ ମୋର ବହୁ ସ୍ତାବକ ଓ ସମାଲୋଚକଙ୍କ ମତରେ ମୁଁ କୁଆଡ଼େ ଗଦ୍ୟରେ ଗଳ୍ପ ଲେଖିଲେ ବି ମୋର ଗଳ୍ପପାକ ରସାଳ କବିତା-ଧର୍ମରେ ଜୁଡ଼ୁବୁଡ଼ୁ । ଏତେକ ଶୁଣିଲେ ପ୍ରାଣ ପୂରିଯାଏ । ମାତ୍ର ତଥାପି ମନରେ ଟିକିଏ ଜାଗା ରୁଗୁ ରୁଗୁ ହୋଇ ପୋଡ଼ୁଥାଏ । ମୁଁ କ'ଣ କବି ରମାକାନ୍ତ ରଥଙ୍କ "ଚନ୍ଦ୍ରମାର ଚୂଡ଼ୀ" କବିତାକୁ ଗଳ୍ପରେ ଲେଖି ପାରନ୍ତି ? କବି ବେଣୁଧର ରାଉତଙ୍କର "ପିଙ୍ଗଳାର ସୂର୍ଯ୍ୟ" ବା କବି ସୀତାକାନ୍ତ ମହାପାତ୍ରଙ୍କର "କୁବୁଜା ପାଇଁ ଗୋଟିଏ ସଙ୍ଗୀତ"ର ମର୍ମ ଉଦ୍‌ଘାଟନ କରିବା ପାଇଁ ମୁଁ ଯେତେ ପୃଷ୍ଠା ଗଳ୍ପ ଲେଖିଲେ ବି ସେହି ଆବେଦନ କେବେ ଆଣି ପାରନ୍ତି ନାହିଁ । ମୋର ମୁଗଧ ସ୍ତାବକମାନେ ମୋତେ ଯେତେ ସ୍ୱର୍ଗ ଉପରେ ବସାନ୍ତୁ ପଛକେ ।

ପରବର୍ତ୍ତୀ ଜୀବନରେ ଅବଶ୍ୟ ମୁଁ କେତୋଟି ଚଳନୀୟ କବିତା ଲେଖି କିଛି ପ୍ରଶଂସା ପାଇଛି । ମାତ୍ର ସେ ପ୍ରଶଂସା ମୋର ହୀନମନ୍ୟତାକୁ ଆହୁରି ବଢ଼ାଇ ଦିଏ । ଅଥଚ ଆଶ୍ଚର୍ଯ୍ୟ କଥା ଓଡ଼ିଆ ସାହିତ୍ୟର ବିଶିଷ୍ଟ ସମାଲୋଚକ, 'ପ୍ରଜ୍ଞା' ପତ୍ରିକାର ପ୍ରାଜ୍ଞ ସମ୍ପାଦକ ଅଧ୍ୟାପକ ଯତୀନ୍ଦ୍ର ମୋହନ ମହାନ୍ତି ମୋତେ କବିତା ଲେଖିବାକୁ ବେଶୀ ପ୍ରବର୍ତ୍ତାନ୍ତି ।

ମୋର ପ୍ରିୟତମା ସ୍ତ୍ରୀ ଶ୍ରୀମତୀ ପ୍ରସନ୍ନ କୁମାରୀ ଦେବୀ ମୋର ପ୍ରାୟ ସମସ୍ତ ଗଳ୍ପର ଆଦ୍ୟ ପାଠିକା । ତାଙ୍କୁ ଭଲ ଲାଗିଲେ ବା ସେ ଭଲ ବୋଲି କହିଦେଲେ ମୁଁ ଗଳ୍ପଟି ସମ୍ବନ୍ଧେ ବେଶ୍ ନିଶ୍ଚିନ୍ତ ହୋଇଯାଏ । ତାଙ୍କର ଗଳ୍ପ ବୁଝିବାର କ୍ଷମତା ମୋ ମତରେ ଖୁବ୍ ତୀକ୍ଷ୍ଣ । ଅତି ଗୂଢ଼ କଥାକୁ ମଧ୍ୟ ସେ ଚଟ୍‌କିନା ଧରି ନିଅନ୍ତି । ପ୍ରଥମ ପାଠରେ ଯଦି ଦେଖେ

ତାଙ୍କର ବୁଝିବାରେ ଟିକିଏ କୋଉଠି ଅସୁବିଧା ରହିଗଲା—ମୁଁ ଦ୍ୱିତୀୟ-ବାର ଲେଖାରେ ତାକୁ ଆଉ ଟିକିଏ ବିଶ୍ଳେଷଣ କରିଦିଏ । ଏହା ଫଳରେ ମୋର ଗଳ୍ପଗୁଡ଼ିକ ପ୍ରାୟ ସର୍ବସାଧାରଣ ମୋଟାମୋଟି ବୁଝି-ଯାନ୍ତି ସେହି ମାର୍ଗରେ ।

କିନ୍ତୁ ଏହା ଫଳରେ ମୋର ଗଳ୍ପ ଗୋଟିଏ ଦୁର୍ନାମ ମଧ୍ୟ ଅର୍ଜନ କରିଛି । ବହୁ ପଣ୍ଡିତ ଓ ବିଦଗ୍ଧ ସମାଲୋଚକ ଏବଂ କରିତ୍ରକର୍ମୀ ଟାଲ୍ଟିକଙ୍କ ମତରେ ମୁଁ ବୃଥା ଗୁଡ଼ାଏ ପୃଷ୍ଠା ଖାଲି ବକ୍‌ବାଜି କରେ । ସଂକ୍ଷିପ୍ତ ଶିଳ୍ପକଳା ଏବଂ ବାକ୍‌ସଂଯମ ମୋତେ ଜଣାନାହିଁ ।

ମୁଁ ମୋ ସ୍ତ୍ରୀ ଓ ବିଦଗ୍ଧ ପଣ୍ଡିତମାନଙ୍କୁ ଏକାଥରକେ ସନ୍ତୁଷ୍ଟ କରି ପାରି ନାହିଁ—ପାରିବି ମଧ୍ୟ ନାହିଁ । ମୋ ଗଳ୍ପଗୁଡ଼ିକର ଦୋଷ ଲାଗି ମଧ୍ୟ ମୋର ଗ୍ଲାନି ନାହିଁ । ମୁଁ ଯାହା—ମୋ ଗଳ୍ପରେ ତାହାହିଁ ସ୍ୱାଭାବିକ ଭାବେ ପ୍ରକାଶ ପାଉ । ଏତିକି ମାତ୍ର ମୋର ସତତା—ଏତିକି ମାତ୍ର ମୋର ଆନ୍ତରିକତା । ମୁଁ ବେଳେବେଳେ ରମ୍ ବା ବିଅର ଟିକିଏ ପିଇଦିଏ । ମୋର ସ୍ତ୍ରୀ ଓ ପିଲାମାନେ ଏଥିଲାଗି ମୋ ଉପରେ ଖପା ହୁଅନ୍ତି । କହନ୍ତି —ଏହା ମୋ ଚରିତ୍ରର ଦୋଷ । ମୁଁ କହେ—ଦେଖ, ମୁଁ ଏ ଦୋଷ ଆଉ ବେଶୀ ବଢ଼ାଇବି ନାହିଁ । ଏତିକି ମାତ୍ର ତୁମେମାନେ ମୋ ଠାରୁ ଆଶା କର । କିନ୍ତୁ ତୁମର ସ୍ୱାମୀ ଏବଂ ବାପା ଯେ ବହୁ ଗୁଣ ଓ ଅଳ୍ପ-କିଛି ଦୋଷ ସମ୍ପନ୍ନ ବ୍ୟକ୍ତି—ଏତିକି ଜାଣି ଖୁସି ହୁଅ । ଅଧିକ ଆଶା କର ନାହିଁ । ମୋ ଗଳ୍ପ ଉପନ୍ୟାସ ସମ୍ପର୍କରେ ମଧ୍ୟ ସେଇ କଥା ମୁଁ କହୁଛି । ସୁଧୀବୃନ୍ଦ ! ଆପଣମାନେ ହଂସ ସଦୃଶ—ମୋର ଲେଖାରୁ ଦୋଷତକ ବାଦ୍ ଦେଇ ଆପଣମାନଙ୍କ ଉଦାର ଗୁଣରେ କେବଳ ଗୁଣତକ ଗ୍ରହଣ କରନ୍ତୁ । ମୋର ପାଠକ ପାଠିକାଙ୍କୁ ମଧ୍ୟ ଧନ୍ୟ କହିବା । ସେମାନେ ମୋର ଲେଖାର ଦୋଷତକ ଯଦି ଧରି ବସିଥାନ୍ତେ —ମୁଁ ଆଉ ଲେଖନ୍ତି ?

ହଁ, ଆଉ ଗୋଟିଏ କଥା । ମୁଁ ବହୁ ପ୍ରକାର ଗଳ୍ପ ଲେଖିଛି—ବହୁ ପ୍ରକାର ଶୈଳୀ ଓ ଆଙ୍ଗିକର ପ୍ରୟୋଗ କରିଛି—ବହୁ ପ୍ରକାର ଭାଷା

ଓ ଶୈଳୀ ବ୍ୟବହାର କରିଛି । ବହୁ ରସର "ମିଶ୍ର ପାକ" ପ୍ରସ୍ତୁତ କରିଛି । ମୋର ସମସାମୟିକ ପ୍ରଥମ ଶ୍ରେଣୀର ଗାଳ୍ପିକମାନଙ୍କ ଗଳ୍ପ ଉପନ୍ୟାସରେ ମୋର ଏ ପ୍ରକାର ବିଶେଷତ୍ୱ ମୁଁ ଲକ୍ଷ୍ୟ କରିନାହିଁ । ଉଦାହରଣ ସ୍ୱରୂପ—ମୋର 'କପୋତ ପକ୍ଷୀ ଗୁ ରୁ ମୋର'—'ସୋନେ କା ହରିନ୍ ସୋନେ କା ସୀତା', 'ଅସ୍ତ ସୂର୍ଯ୍ୟର ରଙ୍ଗ' ଓ 'ଆକାଶ ପାତାଳ' ଗଳ୍ପଗୁଡ଼ିକର ଲେଖକ ଜଣେ ମଧ୍ୟାପାର ମାଳମଣି ବୋଲି କହିବା ଏତେ ସହଜ ହେବନାହିଁ । ମୁଁ ମୋର ସମସାମୟିକ ପ୍ରତିଭାବାନ ଗାଳ୍ପିକମାନଙ୍କ ଠାରୁ ଏତିକ ମାତ୍ର ବାହାଦୁରୀ ଦାବୀ କରୁଛି । ଏତିକି ବାହାଦୁରୀ ଜାହିର ନ କଲେ ମୁଁ ଭଲା ସେମାନଙ୍କ ସାଙ୍ଗେ ଏକା ଆସନରେ ବସିବି କପରି ? କିନ୍ତୁ ଏଥିପାଇଁ ମଧ୍ୟ ବହୁ ସ୍କୁଲ ପାଠକ-ପାଠିକା ଓ ଅଧ୍ୟାପକ, ସମାଲୋଚକ ମୋର ଗଳ୍ପକୁ କଦର୍ଥ କରିଛନ୍ତି । 'ଦାନ୍ତ ଓ ବେଦାନ୍ତ' ଓ 'ସୁମିତ୍ରାର ହସ' ଗଳ୍ପ ପଢ଼ି ସାରି ଜଣେ ଓଡ଼ିଆ ସାହିତ୍ୟର ଦିଗ୍‌ଗଜ ଅଧ୍ୟାପକ ମତେ କହିଲେ ଏତେ ସୁନ୍ଦର ହାସ୍ୟରସାତ୍ମକ କାହାଣୀ ଗୋପାଳଭଣ୍ଡଙ୍କ ପରେ ଆମ ସାହିତ୍ୟରେ ଆଉ କେହି ଲେଖି ନାହାନ୍ତି ! ମୋର ତ ହସି ହସି ପେଟ ଫାଟି ଯାଇଥାନ୍ତା !!

ମୁଁ ସେ ମୂର୍ଖ ଗାଲରେ ଦୁଇଟା ମୁଠି ମାରିବାକୁ ବସିଥିଲି । ମାତ୍ର ସାଙ୍ଗେ ସାଙ୍ଗେ ହାତ ଉହିଗଲା । ମୋତେ ଦେଖାଗଲା—ସେ ଗୋଟିଏ ବୋକା ଚରିତ୍ର ଭଳି । ସେଇଠୁ ରାଗ ଗୁଳିଯାଇ କରୁଣା ହେଲା । ମୁଁ ହସି ହସି କହିଲି—

'ମହାଶୟ ! କେବଳ ହାସ୍ୟରସର ସ୍ଥାୟୀଭାବ ହେଉଛି ହାସ୍ୟ ! କରୁଣ ରସର ସ୍ଥାୟୀଭାବ ହେଲା ଶୋକ । ଆପଣ ଦାନ୍ତୁଡ଼ୀ ସ୍ତ୍ରୀ ଲୋକର କାନ୍ଦକୁ ଯଦି ବୁଝିବେ ସେ ହସୁଛି ବୋଲି ତେବେ ବିଗୁଷି ମଲି । ଗଣ୍ଡମୂର୍ଖ ଅଧ୍ୟାପକ ତଥାତ କିଛି ବୁଝିପାରିଲେ ନାହିଁ । ଖାଲି ହେଁ-ହେଁ ହୋଇ ହସିଲେ ଓ ମତେ ଦେଖାଇବାକୁ ବସିଲେ ଯେ ସେ ତଥାତ ମୋର କଥାର ମର୍ମ ବୁଝି ହସୁଛନ୍ତି । ଓଡ଼ିଆ ସାହିତ୍ୟ ଜଗତରେ ଏ ଧରଣର ଗଣ୍ଡ ଅଧ୍ୟାପକଙ୍କ ସଂଖ୍ୟା ଅଗଣନ । ଏମାନେ ଜାଣ ଓଡ଼ିଆ

ସାହିତ୍ୟକୁ ମାରି ଶେଷ କରି ସାରନ୍ତେଣି । ଉତ୍କଳ-ଭାରତୀଙ୍କର ଭାଗ୍ୟ ଭଲ । ତଥାପି ମଧ୍ୟ ଏ ବିଭାଗରେ କେତେଜଣ ବୁଦ୍ଧିମାନ ଓ ବିଦଗ୍ଧ ପଣ୍ଡିତ ସମାଲୋଚକ ଏବେ ବି ଅଛନ୍ତି । ଭବିଷ୍ୟତ କଥା କିଏ ବା କହିପାରିବ ?

ବହୁତ କଥା ଗପିଲିଣି । ଗପୁଡ଼ୀ ସ୍ୱଭାବ ତ ! ଗଳ୍ପ ଲେଖି ଆନନ୍ଦ ପାଉଛି—ମାତ୍ର ସନ୍ତୋଷ ପାଉନାହିଁ । ଭଗବାନ ମତେ ଆପଣା ଜନ୍ମରେ କବିତା ଲେଖିବାର କ୍ଷମତା ଦିଅନ୍ତୁ । ଗଳ୍ପ ଲେଖିବା ପ୍ରବୃତ୍ତି ମୋର ଜୀବନକୁ ନାନାଦି ଅଭିଜ୍ଞତାର ସ୍ୱର୍ଗ ଓ ନରକ ଭିତରେ ଉଠାପକା କରୁଛି । ତାହାର ମୁଁ ଅଭିଜ୍ଞ ହୋଇଛି—ଅନୁଭବୀ ହୋଇଛି । ମୋର ଖୁବ୍ ଆତ୍ମପ୍ରତ୍ୟୟ ମଧ୍ୟ ବଢ଼ିଯାଇଛି । ବଢ଼ିଯାଇଛି ମଧ୍ୟ ସାହସ । ଗଳ୍ପ ଲେଖା ମତେ ଜୀବନମୁଖୀ କରିଛି— ସମାଜ ସଚେତନ କରିଛି—ଦାୟିତ୍ୱ ନେବାରେ ପ୍ରବର୍ତ୍ତନା ଦେଇଛି । ମାତ୍ର ମୋର ଆତ୍ମା ପିଲାଦିନରୁ ଖୋଜି ଆସିଛି—ଗୋଟିଏ ନିଃସଙ୍ଗ ଯୋଗୀର ଜୀବନ । ଏକ ଉଦାସୀ ସର୍ବତ୍ୟାଗୀ ସନ୍ନ୍ୟାସୀ ଜୀବନ ପ୍ରତି ମୋର ଆତ୍ମା ଗଭୀର ଭାବେ ଆଶା କରି ଆସିଛି । ମାତ୍ର ମୁଁ ଜାଣେ—ଏ ଗଳ୍ପ ଲେଖାର ପ୍ରବୃତ୍ତି ମୋର ଯେତେଦିନ ଥିବ—ମୁଁ ସେ ଜୀବନ ପୂର୍ଣ୍ଣଭାବେ ଗ୍ରହଣ କରି ପାରିବି ନାହିଁ । ଈଶ୍ୱର ଜାଣନ୍ତି କେଉଁଦିନ ମୋର ଆତ୍ମାର ଏ ବାସନା ପୂର୍ଣ୍ଣ ହେବ । କିନ୍ତୁ ଗାଳ୍ପିକଟିଏ ଉଣାଅଧିକେ କଣ ନିଃସଙ୍ଗତା ଅନୁଭବ କରେନାହିଁ କି ? ଭଲ ଗାଳ୍ପିକଟିଏ ଗ୍ଲେଠକାଟିଆ ଯୋଗୀଟିଏ ନୁହଁ କି ?

ଆଜି ଗୋଟିଏ କଥା କହିଦିଏ । ମୁଁ ତ ବୃତ୍ତିରେ ଥିଲି ପଚିଶି ବର୍ଷ ଧରି ଶିକ୍ଷକ । ଶିକ୍ଷକର ମାପ୍ତ ନିୟମନିଷ୍ଠ ଜୀବନ ସଙ୍ଗେ ଗାଳ୍ପିକର ମୁକ୍ତ ଜୀବନ ଖାପେ ନାହିଁ । ମୁଁ ଦୁଇଟାକୁ ରକ୍ଷାକରିଛି ଆଜିଯାଏ ପ୍ରାଣପଣେ । ତେଣୁ ତା'ର ଫଳ ହୋଇଛି ଏଇଆ ଯେ—ମୁଁ ଦ୍ୱିତୀୟ ଶ୍ରେଣୀର ଶିକ୍ଷକଟିଏ ଓ ଦ୍ୱିତୀୟ ଶ୍ରେଣୀର ଗାଳ୍ପିକଟିଏ ହୋଇ ଉଡ଼ିଆ ଆକାଶରେ ମିଞ୍ଜି ମିଞ୍ଜି ହୋଇ ଜଳିଲି । ଜାଜ୍ଜ୍ୱଲ୍ୟମାନ ହେଲିନାହିଁ । କିନ୍ତୁ ସେଥିପାଇଁ ମଧ୍ୟ ମୋର ଗ୍ଲାନି ନାହିଁ । ଦ୍ୱିତୀୟ ଶ୍ରେଣୀରେ ପାସ୍

କରିବା କ'ଣ କମ୍ କଷ୍ଟ ? ଓଃ ମୋ ଭଳି ଖିଆଲି ଉଦାସୀ ଅମନଯୋଗୀ ପକ୍ଷରେ ତ କୋଟି ଗୁଣେ କଷ୍ଟ ।

ମୋର ସମସାମୟିକ ଗାଳ୍ପିକମାନଙ୍କ ମଧ୍ୟରୁ ମନୋଜ ଦାସ ମୋର ମୁଣ୍ଡରେ ବସିଛନ୍ତି । ଶାନ୍ତନୁ ଆଚାର୍ଯ୍ୟ ଓ କିଶୋରୀ ଦାସ ବସିଛନ୍ତି ମୋର ଦୁଇ କାନ୍ଧରେ—ବାମା ମିଶ୍ର ଓ ବସନ୍ତ କୁମାରୀ ଦେବୀ ମୋର ହୃଦୟରେ—ସୁରେନ୍ଦ୍ର ମହାନ୍ତି ଓ ଅଖିଳ ପଟ୍ଟନାୟକ ମୋର ଦୁଇ କାଖରେ ଓ କୃଷ୍ଣ ପ୍ରସାଦ ମୋର ପିଠି ଉପରେ ସବାର ହୋଇଛନ୍ତି । ଏମାନେ ସବୁ ମୋର ନମସ୍ୟ ଗାଳ୍ପିକ । ଏମାନଙ୍କ ଧାଡ଼ିରେ ମୋତେ ଜଣେ ବୋଲି ବସାଇଥିବାରୁ ମୁଁ ମୋର ପାଠକ-ପାଠିକାଙ୍କୁ ଅଜସ୍ର ଧନ୍ୟବାଦ ଦେଉଛି ଓ ନିଜକୁ ପରମ କୃତାର୍ଥ ମନେ କରୁଛି ।

ମୋର ପୂର୍ବବର୍ତ୍ତୀ ଗାଳ୍ପିକମାନଙ୍କ ମଧ୍ୟରେ ମୁଁ ଗୋପୀନାଥ ମହାନ୍ତି, ରାଜକିଶୋର ପଟ୍ଟନାୟକ ଓ ନିତ୍ୟାନନ୍ଦ ମହାପାତ୍ରଙ୍କୁ ଗଭୀର ଭାବେ ଶ୍ରଦ୍ଧା କରେ । ଦ୍ୱିତୀୟ ମହାଯୁଦ୍ଧ କାଳର ଓ ତତ୍ପରବର୍ତ୍ତୀ କାଳର ଓଡ଼ିଆ ଗଳ୍ପ ସାହିତ୍ୟ ତା'ର ସ୍ୱଗୁଣରେ ଯେ ଆନ୍ତର୍ଜାତିକ ଗଳ୍ପ ସାହିତ୍ୟର ସମକକ୍ଷ ହୋଇଗଲାଣି—ଏ କଥା ଆଉ କେହି ଅସ୍ୱୀକାର କରି ପାରିବେ ନାହିଁ ।



# ଭାରତମାତା ଜାଗତିଆର— ହୁସିଆର ଭାଇ ହୁସିଆର

(ଉଦ୍ଧବ ମଲ୍ଲିକ ଚରିତ)

ଆଜିକୁ ପ୍ରାୟ ଅଶୀ ବୟାଳିଶି ବର୍ଷ ତଳର କଥା କହୁଛି । ସେତେବେଳେ ମୁଁ ଆଠ ନଅ ବର୍ଷର ପିଲା । କଟକ ଠାରୁ ପଚାଶ ପଞ୍ଚାବନ କିଲୋମିଟର ଦୂର ଆମ ଗାଁ । ସେତେବେଳେ ଜିଲ୍ଲାବୋର୍ଡ଼ ନିର୍ମିତ କଚ୍ଚା ସଡ଼କଟିଏ ଥିଲା । ବର୍ଷା ଚାରିମାସ କାଦୁଅ ହୋଇଯାଏ । କଚ୍ଚା ରାସ୍ତା କଡ଼େ କଡ଼େ ଥିଲା ବହୁତ ବୁଦା ଆଉ ବଣ । ଆମ ଗାଁ କଡ଼େ କଡ଼େ ପୁଣ୍ୟତୋୟା ପ୍ରାଚୀନଦୀ ବହି ଯାଉଥାଏ ସମୁଦ୍ର ପର୍ଯ୍ୟନ୍ତ । ନଦୀ କୂଳେ କୂଳେ ବହୁ ତୀର୍ଥ ଜାଗା । ପୁଣି ଜଙ୍ଗଲଟିଏ ମଧ୍ୟ ପାଞ୍ଚ ଛଅ କିଲୋମିଟର ଉତ୍ତରରୁ ସେଇ କୂଳେ କୂଳେ ସମୁଦ୍ରଯାଏ ଲମ୍ବିଥାଏ । ସେଇ ଜଙ୍ଗଲ ଭିତରେ ଥାନ୍ତି କଳାମୁହାଁ ଚଉରିଆ ଆଉ ଚିତା ବାଘ କେତୋଟି । ଭାଲୁ, ଗଧିଆ ଆଉ ବାଘୁଁ ଆଠ ଦଶଟି ଥାନ୍ତି । ହରିଣ ଥାନ୍ତି କେତେ ନା କେତେ । ଖାଣ୍ଟି ଜଙ୍ଗଲ ଛାଡ଼ିଦେଲେ ବି କହିବାକୁ ଗଲେ ଆମ ଗାଁଟାଯାକ ମଧ୍ୟ ଗୋଟିଏ ଜଙ୍ଗଲିଆ ଜାଗା ବୋଲି ମନେ ହେଉଥିଲା । ଏବେ ସିନା ଗଛବୃକ୍ଷ କାଟି ଗାଁଟାକୁ ପଦା କରିଦେଲେଣି । ମରୁଭୂମି ଭଳି ଖାଁ ଖାଁ ହୋଉଛି ଗାଁଟା । ଫଳରେ ଏବେ ବର୍ଷା ମଧ୍ୟ

କମିଗଲାଣି । ଆମ ପିଲାଦିନେ କିନ୍ତୁ ଖୁବ ବର୍ଷା ହେଉଥିଲା । ବର୍ଷେ ବର୍ଷେ ଦଦର ଦିନପାଏ ଝଡ଼ ହୁଏ । ସୂର୍ଯ୍ୟ ଦେଖାଯାନ୍ତି ନାହିଁ । ସେତେବେଳେ ଗାଁପାଖ ଗହଳଣା ବଣବୁଦାରେ ଘୁଞ୍ଚି ହୋଇଯାଇଥିଲା । ବର, ଓଶଥ, ଆମ୍ବ, ପଣସ, ଚକ୍ରାଶ, କେନ୍ଦୁ, ଅରଖ, ଉଦୁମ୍ବର, କଦମ୍ବ, ଡିମିରି, କୋଚିଲା, ଭିଲୁଅ, ଗୁକୁଣ୍ଡା, ନଡ଼ିଆ, ତାଳ, ବାଉଁଶ, ଛତିଆନା, ପୋଲାଙ୍ଗ ଆଦି ବଡ଼ ବଡ଼ ମହୀରୂହ ସାଙ୍ଗକୁ ବରକୋଳି, ନରକୋଳି, ସାହାଡ଼ା, ପଣ୍ଡାମ୍ବା, ଜେଉଣ, ଆମ୍ବେଡ଼ା, ମିଶ୍ବଙ୍ଗା କୋଳି, ଆଷାଢ଼ିଆ ଆଦି ଗଛବୃକ୍ଷମାନ ଗାଁଟାକୁ ଗ୍ରୁଡ଼ପଟୁ ଘୋଡ଼େଇ ପୋଡ଼େଇ ରଖିଥିଲେ । ନଈପାଖ ଗୋଚର ଆଉ ଗହୀର ଦଣ୍ଡାମାନଙ୍କରେ ଯେମିତି କଣ୍ଟେଇ-କୋଳି, ବେତକୋଳି, ଭଇଁଚକୋଳି, କ୍ଷୀରକୋଳି, ଶଗଡ଼ପାଟୁଆ କୋଳି, ଆଉ କିଆ, କେତକୀ ଭୁତିଆସି ବଣବୁଦାରେ ପୂର୍ଣ୍ଣଥିଲା । ସେଇ ସବୁ ବଣବୁଦା ଭିତରେ ଦିନରାତି କଚର ମିଚର ହେଉଥାନ୍ତି ହରେକ ରକମର ଚଢ଼େଇ—କୁଆ, କୋଇଲି, ହଳଦୀବସନ୍ତ, ଗୋବରା, ବଣି, କୁଣ୍ଡାଖିଆ, ଡାହୁକ, କୁମ୍ଭାଟୁଆ, ମହୁପିଆ, ଚୁଂଚୁମୁନିଆ ଚୂଳିଆ, ଗଙ୍ଗେଇ, ଧୋବଣୀ ଶଙ୍ଖଚିଲ, ମାଛିଆଚିଲ, ବଗ, ଶୁଆ, ଶାରୀ, ହରଡ଼ ଚଢ଼େଇ, ଗୁଣ୍ଡୁରି ଚଢ଼େଇ ପ୍ରଭୃତି ଚଢ଼େଇମାନେ । ଏଣେ ଗହୀର ଭିତରେ ଥାଏ ଦୁଇଟି ବଡ଼ ପୋଖରୀ—ଖଜୁରିଆ ଆଉ ଦାମୁହାଁ । ତା ଭିତରେ କଇଁ, ପଦ୍ମ ଆଉ କଳମ ନଟା ମାଡ଼ିଥାଏ । ଆଉ ସେଥିରେ ପହଁରୁଥାନ୍ତି ମାଛରଙ୍କା, ପାଣିକୁଆ, ଆଉ ହଂସରାଳ, ସରାଳୀ ପ୍ରଭୃତି ଜଳଚର ପକ୍ଷୀମାନେ । ଆମେ ଛୁଟିଦିନମାନଙ୍କରେ ଏଇସବୁ ବଣବୁଦା ବୁଲୁଥାଉଁ । କୋଳି, କୁଇଁମାନ ଖାଉଥାଉଁ । ଚଢ଼େଇ ଧରୁଥାଉଁ । ଗାଁରେ ବହୁ ବହୁ ବିଷାକ୍ତ ଜାତୀୟ ପ୍ରାଣୀମାନେ ବି ଥିଲେ । ନାଗ, ଚନ୍ଦ୍ର, ଡେମଣା, ମାଟିହିରାଡ଼, ଧେଣ୍ଡ, ଅଢ଼େଇକିଆରିଆ, ବୋଡ଼ା, ଚିତି, ରଣା, ଶଙ୍ଖଚୂଡ଼, ମଣିଚୂଡ଼, ଅଲ୍ଲରାଜ, ଅଜଗର ଆଦିଙ୍କର ବହୁ ପ୍ରାଦୁର୍ଭାବ ଥିଲା । ପ୍ରାୟ ପ୍ରତିଦିନ ବାଟ ଅବାଟରେ ସେମାନଙ୍କ ଭିତରୁ କାହା କାହାର ଦେଖା ମିଳିଯାଉଥିଲା । ଗୋଧି, ନେଉଳ, ଗୁଡ଼ଖାଇ, ଓଧ, କଣ୍ଟାପ, ଶାଳଆପତ୍ତମ ଆଦି କୌତୁକିଆ ପ୍ରାଣୀମାନେ ପ୍ରାୟଶଃ ଦୃଶ୍ୟମାନ ହେଉଥିଲେ । ତା'ଛଡ଼ା ଗାଁରେ ବିଶେଷ ବିଶେଷ ଜାଗାରେ

ବିଶେଷ ବିଶେଷ ଗଛମାନଙ୍କରେ ନାନାଦି ଭୂତପ୍ରେତ ଡାହାଣୀ ଚିରୁଗୁଣୀ ଖପିଧ, ବ୍ରହ୍ମଦୈତ୍ୟ, ସଇତାନ, ପଠାଣ ଓ ଖୀରସ୍ତାନ ପ୍ରେତ ମଧ୍ୟ ପବନସୋରୂପୀ ହୋଇ ବସବାସ କରି ରହୁଥିଲେ ଓ ମଧ୍ୟେ ମଧ୍ୟେ ଗ୍ରସ୍ତ ପଗଳା ଲୋକଙ୍କୁ ଡରଉଥିଲେ । ଜଣେ ଅଧେ ବି ଭୂତାକ୍ରାନ୍ତ ହୋଇ ଦୁଇ ଘଣ୍ଟା ମାତ୍ର ଝାଡ଼ା ବା ରକ୍ତ ବାନ୍ତି କରି ମରୁଥିଲେ । ଏମାନଙ୍କ ବ୍ୟତୀତ ଚୋର-ଖଣ୍ଟ-ଡାକୁ ଓ ମଣିଷମାରୁମାନେ ବି ଛକ ଜାଗାମାନଙ୍କରେ ଲୁଚି ରହି ବାଟୋଇମାନଙ୍କୁ ଆକ୍ରମଣ କରୁଥିଲେ ।

ଆମ ଗାଁ ଆଉ ବଜାର ଭିତରେ ଥିଲା ଗୋଟିଏ ପୋଖରୀ । ସେ ପୋଖରୀର ଗୋଟିଏ ପାଖରେ ଅନ୍ଧାରିଆ ଆମ୍ବ ପଣସର ତୋଟା—ଏବଂ ଆଉ ଗୋଟିଏ ପାଖରେ ମସ୍ତ ଏକ ବାଉଁଶ ବଣିଆ । ବାଉଁଶବଣ ଆରପଟକୁ ବୁଦାଳିଆ ଜଙ୍ଗଲ । ସେହି ପୋଖରୀ ହୁଡ଼ାରେ ଗୋଟିଏ ଘୋଟ ମାଟି କୁଡ଼ିଆ ଭିତରେ ରହୁଥିଲେ ବୁଢ଼ାଟିଏ । ଜାତିରେ କଣ୍ଡରା । ନାଁ ଥିଲା ଉଦ୍ଧବ ମଲିକ । ନିଜର ହୋଇ ଏ ସଂସାରରେ ଆଉ କେହି ନ ଥିଲେ । ପୁଅଝିଅ ତାଙ୍କର ମୂଳରୁ ନ ଥିଲେ । ସ୍ତ୍ରୀ ମରିଥିଲେ ବହୁ-କାଳୁ । ଖୁବ୍ ଡେଙ୍ଗା ଆଉ ପତଳା ହୋଇ ମଣିଷଟିଏ । ସେତେବେଳକୁ ତାଙ୍କୁ ବୟସ ଷାଠିଏ ପର୍ଯ୍ୟନ୍ତ ହୋଇଥିବାର ଅନୁମାନ । କଡ଼ାଛଡ଼ା ନଡ଼ଆଟିଏ ପରି ଚେହେରିଆ ଲଣ୍ଡା ମୁଣ୍ଡଟିଏ । ପଛପଟେ କେନ୍ଦୁ ପାଞ୍ଚ ଛଅ ଇଞ୍ଚ ଲମ୍ବର କେବଳ ପାଚିଲା ଚୁଟି । ବେଳେବେଳେ ପବନରେ ଫୁରୁ-ଫୁରୁ ଉଡ଼ୁଥାଏ । ବେକରେ ପିନ୍ଧିଥାନ୍ତି ଗୋଟିଏ ମୋଟା ତୁଳସୀ ମାଳି । ଉଦ୍ଧବ ମଲିକ ବୈଷ୍ଣବ ଦୀକ୍ଷା ନେଇଥିଲେ । ସେଇ କୁଡ଼ିଆ ଭିତରେ ରାଧାକୃଷ୍ଣଙ୍କ ଫଟୋ ରଖି ସେ ପୂଜା କରୁଥିଲେ । ସେତେବେଳେ ବ୍ରିଟିଶ ସରକାରଙ୍କ ଅମଳ । ଉଦ୍ଧବା ପୁଣି ଥିଲେ ଆମ ଗାଁର ଚୌକିଦାର । କାମକୁ ବାହାରିଲାବେଳେ, କମ୍ବା ଗାଁକୁ ମୁନସିବାବୁ ଆସିଲେ ଉଦ୍ଧବା ମଲିକ ତାଙ୍କର ସରକାରୀ ବେଶ ପିନ୍ଧି ବାହାରନ୍ତି । ଅଧା ମଇଳା ଆଣ୍ଠୁ ଲୁଚୁ ନ ଥିବା ଧୋତିଟି ଉପରେ ସେ ପିନ୍ଧିଥାନ୍ତି ନେଳିଆ ଫତେଇଟିଏ । ନେଳିଆ ଝୁଲିଟିଏ ବି କାନ୍ଧରେ ଗଳାଇଥାନ୍ତି । ହାତରେ ଧରିଥାନ୍ତି ମଜବୁତ ଠେଙ୍ଗାଟିଏ । ଆଉ ମୁଣ୍ଡରେ ନେଳିଆ ପଗଡ଼ିଟିଏ ମଧ୍ୟ

ବେଳେବେଳେ ପିନ୍ଧିବାର ଆମେ ଦେଖିଛୁ । ଅନ୍ୟ ସମୟରେ କନ୍ଥ ଖାଲି ଦେହରେ ଖଣ୍ଡିଏ ଗାମୁଛା ପିନ୍ଧି ଉଦ୍ଧବ ପୋଖରୀ ତୁଠରେ ବସି ବନଶୀ ପକାଉଥାନ୍ତି । ନଇଲେ ଟୋଟାମାଳ ବଣବୁଦା ବୁଲି ବଉଳ କୋଳି ବା ଆମ୍ବ, ପିଜୁଳି, କଇଥ, ଜେଉଠାଦି ଫଳ ଆଣି ଘରେ ଜମା କରନ୍ତି । ଆମେ ପିଲାମାନେ ଇସ୍କୁଲ ଛୁଟି ହେଲେ ତାଙ୍କ ପାଖକୁ ଆସୁ । ମୋତେ ଉଦ୍ଧବ ମଲିକ ପାଖକୁ ଆସିବାକୁ ଖୁବ ଭଲ ଲାଗୁଥିଲା । ପିଲାମାନଙ୍କୁ ସେ ଖୁବ୍ ସ୍ନେହ କରୁଥିଲେ । ବିଶେଷତଃ ମୋତେ ସେ ଖୁବ୍ ଆଦର କରୁଥିଲେ । ଆମେ ତାଙ୍କ କୁଡ଼ିଆ ପାଖେ ପହଞ୍ଚିଲେ ସେ ଆମକୁ ପାଖରେ ବସେଇ ବଣବୁଦାରୁ ତୋଳିଥିବା ଫଳମୂଳ ଖାଇବାକୁ ଦିଅନ୍ତି ଏବଂ ନାନାଦି କଥା ଗପନ୍ତି । ବିଶେଷତଃ ଭୂତପ୍ରେତ, ଚୋର ଡାକୁମାନଙ୍କ ସମ୍ପର୍କରେ ଲୋମହର୍ଷକ କାହାଣୀମାନ ସେ ବଡ଼ ଚମତ୍କାର ଢଙ୍ଗରେ ଶୁଣାନ୍ତି । ତାଙ୍କ ପାଟିରୁ ପ୍ରାୟ ସବୁତକ ଦାନ୍ତ ପଡ଼ି ଯାଇଥିଲା । ଅଳ୍ପ କେତୋଟି ଦାନ୍ତ ମାତ୍ର ଥାଏ । କଥା କହିଲାବେଳେ ସେ ନାନାଦି ଅଙ୍ଗଭଙ୍ଗୀ କରି ନାଟକୀୟ ଢଙ୍ଗରେ ତାଙ୍କ ଅଭିଜ୍ଞତାମାନ ବଖାଣିଯାନ୍ତି । ସେ ଥରେ ସାବିତ୍ରୀ ଅମାବାସ୍ୟା ଦିନ ରାତିଅଧରେ ଏକୁଟିଆ ପନ୍ଦର ମାଇଲ ବାଟ ଥାନାରୁ ଫେରୁଥିଲାବେଳେ ଗୋଟାଏ ଗୋରୁଭୂତ କେମିତି ତାଙ୍କୁ ବାଟ ଆଗୁଳି ଠିଆହେଲା ଏବଂ ସଁ ସଁ ହୋଇ ଖୁରରେ ଆଉ ଶିଙ୍ଗରେ ମାଟି ଖୋଳି ଖୋଳିକା ଲଞ୍ଜ ଟେକି ସେ କେମିତି ତାଙ୍କ ପୃଷ୍ଠପଟେ ଖୁରାଖାଇଲା —ଏବଂ ସେ କେମିତି ତା' ହାବୁଡ଼ରୁ ବର୍ତ୍ତିଲେ—ସେ କାହାଣୀ କହିଲାବେଳେ ଆମେ ଭୟବିହ୍ୱଳିତ ରୋମାଞ୍ଚକର ମନ ନେଇ ତାହା ବେଶ୍ ଉପଭୋଗ କରୁ । କେମିତି ମଝିଖଣ୍ଡ ପୋଇଁ ଘରେ ସିନ୍ଧିକାଟି ଚୋରି କରୁଥିବାବେଳେ ଦୁଇଜଣ ଡକାଏତଙ୍କୁ ରାତି ଅଧରେ ସେ ମାଡ଼ିବସିଲେ ଓ ସେମାନଙ୍କ ସାଙ୍ଗେ ଧରାପରା ହୋଇ ଶେଷରେ ସେମାନଙ୍କୁ କାବୁ କରି ହାତକଡ଼ି ପକାଇ ଦେଲେ—ପୁଣି ଶାସନ ବାରିତଳେ ଗୁହବଣିଆରେ ପାହାନ୍ତା ପହରକୁ କେମିତି ବୃରଜଣ ବ୍ରାହ୍ମଣୀ କଣ୍ଡାଡାହାଣୀଙ୍କୁ ଲଙ୍ଗଳା ହୋଇ ଗୋଡ଼ମାନ ଉପରକୁ ଟେକି ଦୁଇହାତରେ ଠିଆହୋଇ ପାଟିରେ ଗୁହ ଖାଉଥିବାର ଦେଖି, ସେ ଲୁଚି ଲୁଚି ସେମାନଙ୍କ ଶାଢ଼ୀ ସବୁ ସାଉଁଟି ଆଣିଥିଲେ—ସେ ସବୁ କାହାଣୀ କହିଲାବେଳେ ସେ ଯେମିତି

ଉଚ୍ଚାଟ ହୋଇ ଗପି ଚାଲିଥାନ୍ତି– ଆମେ ବି ସେମିତି ଉଚ୍ଚାଟ ହୋଇ କାନବାଟେ ସବୁ ପିଇ ଯାଉଥାଉ ।

କିନ୍ତୁ ମୁଁ ଯେତେବେଳେ ଏକୁଟିଆ ଯାଏ, ସେତେବେଳେ ଉଦ୍ଧବ ମଲିକ ମୋ ଆଗରେ ଏସବୁ କାହାଣୀ ଗପନ୍ତି ନାହିଁ – ଯଦିଓ ମୋର ସେଇସବୁ କାହାଣୀ ଶୁଣିବାକୁ ଖୁବ୍ ଆଗ୍ରହ ଥାଏ । ଉଦ୍ଧବ ମୋ ଭିତରେ କଣ ଦେଖିଥାନ୍ତି କେଜାଣି, ମୋତେ ଦେଖିଲେ ଖାଲି ଧର୍ମ କଥା ପକେଇବେ । କୃଷ୍ଣ କେମିତି ପୂତନା ରାକ୍ଷସୀକୁ ମାରିଲେ, କେମିତି ବକାସୁରର ଦୁଇ ଥଣ୍ଟକୁ ଧରି ତାକୁ ଦୁଇଫାଳ କରି ଚିରିଦେଲେ— କେମିତି କାଳୀୟନାଗକୁ ଦଳନ କଲେ – କେମିତି ଗୋବର୍ଦ୍ଧନ ପାହାଡ଼କୁ କାଣୀ ଆଙ୍ଗୁଠିରେ ସାତଦିନ କାଳ ଟେକି ଧରିଲେ – ଏଇସବୁ କଥା ସେ ଖୁବ୍ ହୃଦୟ ଦେଇ ଗପନ୍ତି । ମତେ ମଧ୍ୟ ସେସବୁ ଶୁଣିବାକୁ ଖୁବ ଭଲ-ଲାଗେ । ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ ବୋଲି ଯେତେ ଲୋକ ପିଲାଦିନେ ମୋ ଭିତରେ ପ୍ରତ୍ୟୟ ସୃଷ୍ଟି କରିଥିଲେ – ତା’ ଭିତରେ ଉଦ୍ଧବା ମଲିକ ପ୍ରଧାନ ବୋଲି କହିବାକୁ ମୋର ଦ୍ୱିଧା ନାହିଁ । ଅବଶ୍ୟ ଆମ ଗାଁ ପାଖ ଟୋଲା ଗୋପୀନାଥପୁର ନିବାସୀ ବୈଷ୍ଣବପ୍ରବର ଭାଇଗୀ ମିଶ୍ରଙ୍କ ଅବଦାନ ମଧ୍ୟ ଏ ଦିଗରେ କିଛି କମ୍ ନୁହେଁ – କମା ବାଉରୀସାହିର ବୈଷ୍ଣବପ୍ରବର ଭଜମା ଦାସଙ୍କର ଅବଦାନ ମଧ୍ୟ କିଛି କମ୍ ନୁହେଁ । ସେମିତି ଆମ ଗାଁର ତତ୍କାଳୀନ ବୁଢ଼ା ଦଫାଦାର ସାଧୁ ନାଏକ ଓରଫ ସାଧ ଦଫାଦାର ମଧ୍ୟ ମତେ କୃଷ୍ଣଙ୍କ ପ୍ରତି ଉଦ୍‌ବୁଦ୍ଧ କରାଇଥିଲେ । ସେମିତି ବାରିକ ସାହିର ନୃସିଂହ ବାରିକ ବୁଢ଼ାଙ୍କର ସଙ୍କୀର୍ତ୍ତନ ବେଳେ ଓ ରାସଉତ୍ସବବେଳେ “ହା କୃଷ୍ଣ ହା କୃଷ୍ଣ” ବୋଲି ଚିତ୍କାର କରି ଗ୍ରୀବା ବାଙ୍କେଇ ମୂର୍ଚ୍ଛା ଯାଇ ତଳେ କଚଡ଼ି ପଡ଼ିବାର ଅଲୌକିକ ଦୃଶ୍ୟ ମଧ୍ୟ ମତେ କୃଷ୍ଣଙ୍କ ପ୍ରତି ବହୁ ଭାବରେ ଆକୃଷ୍ଟ କରିଛି । ମୋ ବାପାଙ୍କର ସଙ୍ଗାତ ଲୋକନାଥ ମହାପାତ୍ର ଏବଂ ଦୀନବନ୍ଧୁ ସାହୁ (ତେଲି)ଙ୍କର କୃଷ୍ଣ ଓ ଯଶୋଦା ସାଜି କୀର୍ତ୍ତନ କରୁ କରୁ କାନ୍ଦିବା ଦୃଶ୍ୟ ମୋର ହୃଦୟକୁ ବହୁ-ବାର ବିଗଳିତ କରିଛି । ଏମିତି ଏମିତି ସେ ସମ୍ପର୍କୀୟ ବହୁକଥା ମୁଁ ବାରମ୍ବାରରେ ବର୍ଣ୍ଣନା କରିବି । ବର୍ତ୍ତମାନ ଉଦ୍ଧବା ମଲିକ କଥା କହିସାରେ ।

ବୈଷ୍ଣବମାନେ ମାଛ, ମାଂସ ନ ଖାଇବା କଥା ମୁଁ ଜାଣିଥିଲି । କିନ୍ତୁ ଉଦ୍ଧବା ମଳିକ ବନସୀ ପକାଇ ମାଛଧରି ଖାଇବା ବ୍ୟାପାରଟି ମୋତେ ବିସଦୃଶ ମନେହେଲାରୁ ମୁଁ ଦିନେ ତାଙ୍କୁ ପଚାରିଲି—ଉଦ୍ଧବା ଅଜା ! ତେମେ ବଇଷମ ହୋଇ ମାଛଧରି ଖାଉଛ କେମିତି ? ଉଦ୍ଧବା ଅଜାଙ୍କୁ ପ୍ରଶ୍ନଟିଏ ପଚାରିଲେ ସେ ଭାରି ଖୁସି ହୋଇ ହସି ହସି ଉତ୍ତର ଦିଅନ୍ତି । ସେ କହିଲେ— "ନାତି ! ଯାହା ପଚାରିଲୁ ଠିକ୍ କଥା । ହେଲେ ଆମ ପାଇଁ ଆଇଁଷ ମନା ନାହିଁ । ମହାପ୍ରଭୁ (ଶ୍ରୀ ଚୈତନ୍ୟ) ବିଧାନ ଦେଇଛନ୍ତି— ଶୂଦ୍ର ହରିଜନାଦି ବୈଷ୍ଣବମାନେ ଆମିଷଖାଇ ହରିନାମ କଲେ ସବୁ ଦୋଷ କଟିଯିବ । କିନ୍ତୁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟମାନେ ବଇଷମ ହୋଇ ଆଇଁଷ ଖାଇଲେ ଭ୍ରଷ୍ଟ ହୋଇଯିବେ । "ମାଗୁର୍ ମାଛେର ଝୋଲ୍ —ଯୁବାସ୍ତ୍ରୀର କୋଲ୍—ବୋଲ ! ହରିଆ ହରିଆ ବୋଲ୍ ।" ଏହି ବାକ୍ୟଟି ମୁଁ ପ୍ରଥମେ ତାଙ୍କରି ଠାରୁ ଶୁଣିଥିଲି ଓ ଆଜଯାଏ ମନେ ରଖିଛି । ଏବେ ଜଣେ ତତ୍ତ୍ୱଜ୍ଞାନୀ ଭକ୍ତ ଏହାର ଗୂଢ଼ଅର୍ଥ ବ୍ୟାଖ୍ୟାକରି ଭକ୍ତମାନଙ୍କୁ ବୁଝାଉଥିଲେ—ମାଗୁର୍ ମାଛେର୍ ଝୋଲ୍ ହେଲା—ଭକ୍ତର ଆଖିରୁ ଅନବରତ ଅଶ୍ରୁ ବହିବ । ଯୁବାସ୍ତ୍ରୀର କୋଳ ହେଲା—ଏଇ ଚିରଯୌବନା ପୃଥିବୀ ମାତା ଉପରେ ହରି ହରି ବା କୃଷ୍ଣ କୃଷ୍ଣ ବୋଲି ଉଚ୍ଚସ୍ୱରରେ ଚିତ୍କାର କରି ଗଡ଼ିବ । ଏମିତି ଗୂଢ଼ଅର୍ଥ ମତେ ଭଲ ଲାଗେ-ନାହିଁ । ବରଂ ମୋର ଧାରଣା ଏକଧାରରେ ଆମିଷଲୋଭୀ ଓ କୃଷ୍ଣଭାବ-ଲୋଲୁପୀ ବୈଷ୍ଣବ ଚୌକିଦାର ଉଦ୍ଧବା ମଳିକ ଏ ଶ୍ଳୋକର ଅର୍ଥ ଠିକ୍ ବୁଝିଥିଲେ । ଉଦ୍ଧବା ମଳିକ ସେଇ ପୋଖରୀ ହୁଡ଼ା ଉପରେ ତାଙ୍କ କୁଡ଼ିଆ ଆଗରେ ମାଟି ପକାଇ ଗୋଟିଏ ଉଚ୍ଚା ବେଦୀ କରିଥିଲେ । ସେଇ ବେଦୀ ମଝିରେ ଗୋଟିଏ ତୁଳସୀ ଚଉରା ମଧ୍ୟ କରିଥିଲେ । ଆମେ ସେଇ ଚଉରା ମୂଳେ ବସି ଗପସପ କରୁ । ଉଦ୍ଧବା ମଳିକ ମୋତେ ପାଇଲେ ବହୁ ତତ୍ତ୍ୱକଥା ମଧ୍ୟ ଗପୁଥିଲେ । ପିଣ୍ଡବ୍ରହ୍ମାଣ୍ଡ, କାମକ୍ରୋଧାଦି ଷଡ଼ରିପୁ, ସ୍ୱର୍ଗ-ମର୍ତ୍ତ୍ୟ-ନରକ, ଯମଯାତନା, ଚିତ୍ରଗୁପ୍ତ ଆଦି ବିଷୟରେ ସେ ଯେମିତି ମୋ ଆଗରେ ଗପୁଥିଲେ ସତେ କି ମୁଁ ଗୋଟିଏ ପୋଖତ ମଣିଷ ବା ଶ୍ରୋତା ତାଙ୍କୁ ଜୁଟିଥିଲି । ସେ ମତେ ଜମା ପିଲା ବୋଲି ଜ୍ଞାନ କରୁ ନ ଥିଲେ । ମୁଁ ମଧ୍ୟ ଆଠ ନଅ ବର୍ଷ ବୟସ ବେଳକୁ ସତକୁ ସତ

ଝୁବ୍ ପୋଖରୀ ହୋଇ ଯାଇଥିଲା । ମତେ ଲାଗୁଥିଲା—ଯେମିତି ମୁଁ ମଞ୍ଚ ତଳୁ ଠକ୍ ବୁଝି ଯାଉଛି । କହିବା ବାହୁଲ୍ୟ—ଶାନ୍ତନୁ ଆଚାର୍ଯ୍ୟଙ୍କ "ନର କିନ୍ନର" ଉପନ୍ୟାସର ନାୟକ ଜର୍ଜ ପରି ମୁଁ ଆବାଲ୍ୟରୁ ବହୁ ଗୁରୁଙ୍କ ପାଖକୁ କୌତୂହଳରେ ଟାଣି ହୋଇ ଯାଇଛି—ଏବଂ ସେହିସବୁ ମାନନୀୟ ଗୁରୁବୃନ୍ଦ ମତେ ଦେଖିଲାକ୍ଷଣି ପାଇ ଯାଇଛନ୍ତି !

ମୋର ଯାହା ମନେପଡ଼ୁଛି—ଉଦ୍ଧବ ମଳିକ ଥିଲେ ନିରକ୍ଷର । କିନ୍ତୁ ସେ ଏତେ ଜ୍ଞାନ କେମିତି ଅର୍ଜନ କଲେ ? ବହୁ କୀର୍ତ୍ତନ ଆଉ ଭଜନ ମଧ୍ୟ ତାଙ୍କର କଣ୍ଠସ୍ଥ ଥିଲା । ତାଙ୍କର ଗୋଟିଏ ପ୍ରିୟ ସଙ୍ଗୀତ ହେଲା—"ବଡ଼ ବଟର ଜଣେ, ସେ ନନ୍ଦରାଜାର ଟିକି ପିଲାଟି—ଟିକି ପିଲା ବୋଲି ଯାହାକୁ କହୁଚ—(ସେତ) ଶିର ପକାଇଲା ବଜାର ପାଟି ।" ଏତିକି ବୋଲିବା ମାତ୍ରେ ସେ କରି କରି ହୋଇ ପାକୁଆ ପାଟିରେ ହସି ହସି ଗଡ଼ି ଯାଉଥିଲେ । ମାତ୍ର ମୁଁ ତାଙ୍କର ହସିବା କାରଣ ବୁଝି ପାରୁ ନ ଥାଏ । ସେ ହସି ହସି କହୁଥାନ୍ତି—କଉ ଟିକିପିଲା କ'ଣ ? ଆମେ ବୁଝିବାକୁ ସିନା ଟିକି ପିଲାଟାଏ । ହେଲେ ସେ ପରା ସ୍ୱୟଂ ଭଗବାନେ । ଆମକୁ ବଗ ଚଢ଼େଇଟେ ଯାହା, ତାଙ୍କୁ ବକାସୁର ସେଇଆ ନା ଆଉ କ'ଣ ? ବଟର ବୁଝିଁ ନାହିଁ ? କହିଲୁ ଦେଖି ! ତୁ ତ ପାଠ ପଢ଼ୁଛୁ । ତାଙ୍କ କଥାରୁ ମୁଁ ଅର୍ଥଟା ବୁଝେ କିନ୍ତୁ ହସିବା କାରଣଟା ତଥାପି ଧରି ପାରେ ନାହିଁ ।

ଦିନେ ଦିନେ ପୋଖରୀ ବନ୍ଧ ଉପରେ ଥିବା ତୁଳସୀ ଚଉରା ବେଦୀ ଉପରେ ବସି ସେ ବନ୍‌ସୀ ପକାଉଥିବେ । କଥା ମଧ୍ୟ ଗପୁଥିବେ । ଦିନେ ମୁଁ ପଚାରିଦେଲି । ଅଜା ! ରାତିରେ ଗାଁ ଗାଁ ବୁଲୁଛ ଏକୁଟିଆ । ତୁମକୁ ଡରଲାଗେ ନାହିଁ ! ସେ ହସି ହସି କହିଲେ—ମତେ ଡର ଲାଗେ ନାହିଁ । ତା' ଛଡ଼ା ଆମେ ତ ଏକୁଟିଆ ନୋହୁଁ । ଆମ ପାଖେ ପାଖେ ଭାରତମାତା ଥାନ୍ତି । ସେଥିପାଇଁ ଭୂତପ୍ରେତ, ଡାହାଣୀ-ଚିରୁଗୁଣି ଆମର କିଛି କରି ପାରିବେ ନାହିଁ । ଏମିତିକି ବାଘପରି ଜନ୍ତୁ ମଧ୍ୟ ବାଟଛାଡ଼ି ପଳେଇଛି କେତେଥର । ଏତିକି କହି, ସେ ଆଖିବୁଜି ଶୂନ୍ୟକୁ ନମସ୍କାର କରନ୍ତି ।

ସତକୁ ସତ, ବହୁ ରାତ୍ରରେ ଆମେ ଘରେ ଶୋଇଥିବା ବେଳେ ଚୌକିଦାର ଉଦ୍ଧବା ମଲିକଙ୍କ ରଡ଼ରେ ଆମ ନିଦ ଭାଙ୍ଗିଯାଏ । ସେ ଗାଁର ଆରମ୍ଭ, ମଝି ଆଉ ଶେଷ ମୁଣ୍ଡରେ ଠିଆ ହୋଇ ତିନି ତିନିଥର ରଡ଼ ଛାଡ଼ନ୍ତି – ଭାରତମାତା ଜାଗନ୍ତଆର – ହୁସିଆର – ହୁସିଆର ଭାଇ ହୁସିଆଆଆର । ସେ ଡାକର ପ୍ରତିଧ୍ୱନି ଗୃହଆଡ଼ୁ ଖେଳେଇ ହୋଇ ଆସି ପୁଣି ଆମ କାନରେ ଆସି ପଡ଼େ । ମୋତେ ତ ଭାରି ଭଲ ଲାଗେ । ସେତେବେଳେ ଆମ ଗାଁର ରାସ୍ତାଗୁଡ଼ିକ ଭାରି ନିସ୍ତଟିଆ ଥିଲା । ବିଶେଷତଃ ବର୍ଷାଦିନେ । ତା'ଛଡ଼ା ନାନାଦି ଭୟାବହ କଥା ମଧ୍ୟ ସେତେବେଳେ ଆମ କାନରେ ପଡ଼େ । କିଏ କୋଉଠି କାହା ଛଣି ଚପି ମାରି ଠାକୁରାଣୀଙ୍କ ଗୋହିରୀ ଭିତରେ ପକେଇଛନ୍ତି କିମ୍ବା କୋଉ ସାହିରେ ହଇଜା ଲାଗିଗଲାଣି—ତିନିମୁଣ୍ଡ ଗଲାଣି । କୋଉ ସାହିରେ କାହା ବୋହୂକୁ ଡାହାଣୀ ଲାଗିଛି । କିଏ ପୁଣି ରାତ୍ର ଅଧରେ କ'ଣ ସବୁ ଭୈରବୀ ରଡ଼ ଶୁଣିବାକୁ ପାଇଲେଣି । ଏଣେ ଏସବୁ ସାଙ୍ଗକୁ ବାଡ଼ି ତିନ୍ତୁଳିଗଛ ସନ୍ଧିରେ ବସି ପେଚାଟାଏ ହୁଟ୍ ହୁଟ୍ କରି ବୋବେଇ ଲାଗିଥିବ କିମ୍ବା ବାଡ଼ିତଳ ବିଲରୁ ଅଣ୍ଡିରା ଗଧିଆଟାଏ ଲାଗେ ଲାଗେ କରି ତିନିଥର ବୋବାଳି ଛାଡ଼ି ଚୁପ୍ ରହିଯିବ । ଓଃ ! ଭୟରେ ଛାତି ଥରିଯାଏ । କିନ୍ତୁ ଠିକ୍ ତା'ରି ଭିତରେ ଶୁଭିବ ଉଦ୍ଧବା ମଲିକଙ୍କର ଉଚ୍ଚକିତ କଣ୍ଠରେ ଚେତାବନୀ ବାଣୀ— ଭାରତମାତା ଜାଗନ୍ତଆର – ହୁସିଆର ! ହୁସିଆର ଭାଇ, ହୁସିଆର । ଗାଁ ରାତ୍ରର ସବୁ ଭୟାବହ ଶବ୍ଦକୁ ଚୁପିଦେଇ ସେଇ ଡାକ ଆମ ମନରେ ପ୍ରତ୍ୟୟ ଜନ୍ମାଏ । ଭାରତମାତା ଜଣେ ବ୍ୟକ୍ତିବାଚକ ବିଶେଷ୍ୟପଦ, ନା ଭାବବାଚକ ବିଶେଷ୍ୟପଦ, ସେକଥା ନ ବୁଝିଥିଲେ ବି ମନଭିତରେ ଏକ କଳ୍ପିତ ଭାରତମାତାର ଅଭୟଦାୟିନୀ ଭାବରୂପ ଆପଣା ଛାଏଁ ଆଙ୍କି ହୋଇଯାଏ ଏବଂ ଉଦ୍ଧବା ମଲିକଙ୍କ କଣ୍ଠସ୍ୱର ଭିତରୁ ତାଙ୍କର ଅଭୟ-ମହିମା ହୃଦୟକୁ ଖୁବ୍ ପରିଆରାରେ ପୂର୍ଣ୍ଣକରି ଦିଏ ।

ଆଗରୁ କହିଛି ଯେ ସେତେବେଳେ ବ୍ରିଟିଶ୍ ରାଜତ୍ୱକାଳ । ମହାମହିମ ସମ୍ରାଟ ପଞ୍ଚମ ଜର୍ଜଙ୍କର ରୌପ୍ୟ ଜୁବିଲି ଉତ୍ସବ ପାଳିତ

ହୋଇ ସାରିଥାଏ । ଆମେ ସ୍କୁଲପିଲାମାନେ ବ୍ରିଟିଶ୍ ୟୁନିୟନ ଜାକ୍ ଧରି ଭକ୍ତକବି ମଧୁସୂଦନ ରାଓଙ୍କର ଗୀତଟିଏ ଗାଇ ଗାଇ ପ୍ରୋସେସନ୍ କରି ସାଇ ସାଇ ବୁଲୁଥାଉଁ ଓ ମିଠେଇ ଖାଇଥାଉଁ । ମୋର ସେ ଗୀତଟି ମନେ ଅଛି ।

ସେଇଟି ହେଲା—"ଗାଅ ସର୍ବେ ହର୍ଷଭରେ, ବାଜୁ ବାଦ୍ୟ ବାଜରେ
ପୁରୁଷ ଉତ୍ତମ, ଶ୍ରୀ ଜର୍ଜ ପଞ୍ଚମ, ଆଜ ରାଜ ରାଜରେ ।"

କିନ୍ତୁ ସେ ସମୟରେ ବେଳେ ବେଳେ କଂଗ୍ରେସୀ ନେତାମାନେ ଆମ ଗାଁକୁ ଆସି ସଭା କରନ୍ତି । ବ୍ରିଟିଶ ସରକାର ଆମ ଭାରତୀୟଙ୍କ ଉପରେ କି କି ଅତ୍ୟାଚାର କୋଉଠି ସବୁ କରିଛନ୍ତି—ତାହା ଅତି ଆବେଗପୂର୍ଣ୍ଣ କଣ୍ଠରେ ବର୍ଣ୍ଣନା କରି ବକ୍ତୃତାମାନ ଦେଉଥାନ୍ତି । ଭାରତ ସ୍ୱାଧୀନତା ପାଇବ—ବ୍ରିଟିଶ୍ ସରକାର ଗୋଟିଏ ଅତ୍ୟାଗୁରୀ ବିଦେଶୀ ସରକାର—ଏବଂ ଶୀଘ୍ର ସେମାନଙ୍କୁ ଭାରତ ଛାଡ଼ି ନିଜ ଦେଶକୁ ଫେରିଯିବାକୁ ହେବ ଏସବୁ କଥା ମୁଁ ଶୁଣୁଥାଏ । ସେଇସବୁ ସଭାମାନଙ୍କରେ ମୁଁ ମୋର ସାଙ୍ଗମାନଙ୍କୁ ଧରି ଯୋଗଦିଏ ଓ ସେଇଠୁ ମୁଁ ପ୍ରଥମ କରି ଗାନ୍ଧୀ ନେହୃରୁଙ୍କର ନାମ ଶୁଣିଲି । ସେସବୁ ସଭାରେ ମଧ୍ୟ ଗାନ୍ଧୀଙ୍କର ଗ୍ରେଟ ଗ୍ରେଟ ଫଟୋ ବନ୍ଦୀହୁଏ ଏବଂ ଆଉ ଗୋଟିଏ ଛବି ବନ୍ଦୀ ହେଉଥିବାର ମୁଁ ଲକ୍ଷ୍ୟ କରିଥିଲି—ତା' ହେଉଛି ଆମ ଦୁର୍ଗାଙ୍କ ରିଭ ଭଳି ଗୋଟିଏ ଦେବୀ ମୂର୍ତ୍ତି ଭାରତର ମାନଚିତ୍ର ପୃଷ୍ଠଭୂମିରେ ସିଂହ ଉପରେ ସିଧା ବସି ରହିଛନ୍ତି—ଏବଂ ତାଙ୍କ ପାଦତଳେ ବାମ ଜାନୁକୁ ବଙ୍କାଇ ମହାତ୍ମା ଗାନ୍ଧୀ ବସିଛନ୍ତି । ଏ ଫଟୋ ସେତେବେଳେ ଭାରି ଲୋକପ୍ରିୟ ହୋଇଥିଲା । ମୋ ହୃଦୟରେ ଆପଣାଛାଏଁ ଅଙ୍କିତ ଭାରତମାତା ମୂର୍ତ୍ତି ସଙ୍ଗେ ସେ ଛବି ପ୍ରାୟଶଃ ମିଳି ଯାଉଥିଲା । ମହାତ୍ମା ଗାନ୍ଧୀଙ୍କୁ ମୁଁ ସେହି ଛବିରୁ ହିଁ ପ୍ରଥମେ ଦେଖିଲି । ଉଦ୍ଧବ ମଲିକଙ୍କ ମୁହଁ ସଙ୍ଗେ ସେ ମୁହଁର କିଛି କିଛି ସାମଞ୍ଜସ୍ୟ ଥିଲା ଭଳି ମୋର ବୋଧ ହେଉଥିଲା । ଗାନ୍ଧୀଜୀଙ୍କ ଫଟୋ ମତେ ଖୁବ୍ ଆକୃଷ୍ଟ କରୁଥିଲା । ତାଙ୍କ ସମ୍ବନ୍ଧେ ମୁଁ କିଛି ନ ଜାଣିଥିଲେ ବି ମତେ ସେ ଛବି ଖୁବ୍ ଆପଣାର ନିଜର ଲୋକ ବୋଲି ବୋଧ ହେଉଥିଲା । ମୁଁ କେବଳ ଏତିକି ଜାଣିଥିଲି ଯେ, ସେ ଆମର ନେତା

ଓ ସେ ବ୍ରିଟିଶ୍ ସରକାର ସଙ୍ଗେ ଲଢ଼େଇ କରୁଛନ୍ତି—ସେ ଲଢ଼େଇ ହେଉଛି ଅହିଂସା ବଳରେ ଏବଂ ତାକୁ ସତ୍ୟାଗ୍ରହ କୁହାଯାଉଛି । ଆମ ଗାଁର ଗଞ୍ଜେଇ ଅଫିମ ଦୋକାନ ଆଗରେ କେତେକ କଂଗ୍ରେସକର୍ମୀ ଥରେ ସତ୍ୟାଗ୍ରହ କରୁଥିବାର ମଧ୍ୟ ମୁଁ ଦେଖିଥିଲି । ଗଞ୍ଜେଇ କମ୍ବା ଅଫିମ କିଣି ଖାଇବାକୁ ଆସୁଥିବା ଲୋକଙ୍କ ଆଗରେ ସେମାନେ ଭୂଇଁ ଉପରେ ଲମ୍ବ ହୋଇ ଶୋଇ ଯାଉଥିଲେ ଏବଂ ସେମାନଙ୍କୁ ଏଇସବୁ ମାଦକଦ୍ରବ୍ୟ ନ ଖାଇବାକୁ ବୁଝାଉଥିଲେ ।

ଆମ ଗାଁରେ ଯେତେଥର କଂଗ୍ରେସ ସଭା ହୁଏ; ମୁଁ ଦେଖିଛି -- ଉଛବା ମଳିକ ଚୌକିଦାର ହିସାବରେ ତାଙ୍କର ନେଳିଆ ପୋଷାକ ପିନ୍ଧି ଠେଙ୍ଗାଟିଏ ଧରି ସଭାଠାରୁ ସାମାନ୍ୟ ଦୂରରେ ଠିଆ ହୋଇ ସବୁ ଶୁଣୁଥାନ୍ତି ଏବଂ ଆମ ଗାଁର ଦଫାଦାର ଗିରବର ମିଶ୍ର ମଧ୍ୟ ସଭା ଗୃହପଛେ ପଇଁତରା ମାରୁଥାନ୍ତି । ବ୍ରିଟିଶ ସରକାର ବିରୋଧରେ ସଭାସମିତି ହେଲେ ସରକାରୀ ନୌକର ହିସାବରେ ଏମାନଙ୍କର ଜଗି ରହିବା ବିଧି । ମୋର ଏ ସବୁ ବିଷୟ ଜାଣିବା ପାଇଁ ବହୁତ କୌତୂହଳ ଥାଏ । କିନ୍ତୁ ମତେ ଏ ସମ୍ବନ୍ଧେ କେହି କିଛି କହିବା ଲାଗି ଆମ ଗାଁରେ ଲୋକ ନ ଥାନ୍ତି । ଆମ ଗାଁ ସ୍କୁଲରେ ମଧ୍ୟ ଶିକ୍ଷକମାନେ ଗାନ୍ଧିଙ୍କ ବିଷୟରେ କେହି କିଛି ଆମକୁ କହୁ ନ ଥାନ୍ତି । ଥରେ ମୁଁ ଜଣେ ଶିକ୍ଷକଙ୍କୁ ପଚାରିଥିଲି—ସାର୍ ! ଗାନ୍ଧୀ କିଏ ? ସେ ମତେ ଚୁପ୍ କହି ଚୁପ୍ କରିଦେଲେ । କହିଲେ—ତୁ ପିଲାଲୋକ, ସେଥିରୁ କଣ ପାଇବୁ ? ତୋ' କାମ ତୁ କର । ସେତେବେଳେ ଆମ ଗାଁ ପାଖ ବାହାରଣା ଗାଁର ସ୍ୱନାମଧନ୍ୟ କଂଗ୍ରେସନେତା ସ୍ୱର୍ଗତ ମାଳମଣି ପ୍ରଧାନ ଖୁବ୍ ଜନପ୍ରିୟ ମଣିଷ ଥିଲେ । ସେ ସତ୍ୟାଗ୍ରହୀ ଓ ଅସହଯୋଗୀ ନେତା ଥିଲେ । ଜେଲ ଯାଇଥିଲେ । ପୋଲିସଠାରୁ ମାଡ଼ ଖାଇଥିଲେ ଏବଂ ପରେ ସେ ଜିଲ୍ଲା-ବୋର୍ଡ଼ ଚେୟାରମ୍ୟାନ୍ ହେଲେ—ଏବଂ ଏମ୍. ଏଲ୍. ଏ. ମଧ୍ୟ ହୋଇଥିଲେ । ମନ୍ତ୍ରୀପଦ ତାଙ୍କୁ ଜୁଟି ନାହିଁ; କିନ୍ତୁ ସେ କୌଣସି ମନ୍ତ୍ରୀଙ୍କଠାରୁ ଲୋକେ ତାଙ୍କୁ ଖୁବ୍ ଶ୍ରଦ୍ଧା ଭକ୍ତି ଦେଖାଉଥିଲେ । ସେ ଆମ ଅଞ୍ଚଳକୁ ସ୍ୱାଧୀନତାର ଆଲୋକ ଆଣିଥିଲେ । ଏପରିକି ସେ ଆମ

ଅଞ୍ଚଳକୁ ସଂସ୍କୃତି-ସଚେତନ ମଧ୍ୟ କରାଇଥିଲେ । ମୋ ନାମ ସଙ୍ଗେ ତାଙ୍କ ନାମ ମିଳିଯାଇଥିବାରୁ ପ୍ରଥମେ ମୁଁ ତାଙ୍କୁ ଖୁବ ଭଲ ପାଇ ଯାଇଥିଲି ଏବଂ ପରେ ପରେ ତାଙ୍କୁ ଦେଖିବା ଲାଗି ମୁଁ ଖୁବ୍ ବ୍ୟାକୁଳ ହୋଇ ପଡ଼ୁଥିଲି । ଅଧା ମଇଳା ଖଦଡ଼ ପଞ୍ଜାବୀ ଆଉ ଧୋତି ଭିତରେ ଗେଡ଼ା ମଣିଷଟିଏ । ଆଖିରେ ଚଷମା । ଓଠ ଦୁଇଟି ଖୁବ୍ ମୋଟା । କିନ୍ତୁ ସେ ଓଠ ଦୁଇଟି ହାର୍ଦ୍ଦିକ ବାକ୍ୟ କହିବା ଲାଗି ସଦା ପ୍ରସ୍ତୁତ ଥିଲେ । ତାଙ୍କର ଆଖି ଦୁଇଟି ଖୁବ୍ ଉଜ୍ଜ୍ୱଳ ଓ ସ୍ନେହପୂର୍ଣ୍ଣ ଥିଲା । ସେ ଆସିଲେ ତାଙ୍କୁ ବହୁ ଲୋକ ଘେରି ଯାଉଥିଲେ । ମୁଁ ସମସ୍ତଙ୍କ ପଛରେ ରହି ତାଙ୍କୁ ଦେଖୁଥିଲି ଓ ତାଙ୍କ କଥା ଶୁଣୁଥିଲି । ତାଙ୍କୁ ଦେଖିଲେ ମୋର ଶ୍ରଦ୍ଧା, ଭକ୍ତି ଓ ପ୍ରତ୍ୟୟ ଆପଣା ଛାଏଁ ଆସୁଥିଲା । ତାଙ୍କ କଥା ପରେ କହିବି । ମୁଁ ଥରେ ଦେଖିଥିଲି—ଚୌକିଦାର ଉଦ୍ଧବା ମଳିକ କେତେକ କଉମାଛ ନେଇ ତାଙ୍କୁ ଭେଟି ଦେଇ ନମସ୍କାର ହୋଇଥିଲା । ନୀଳମଣି ବାବୁ ତାଙ୍କୁ ପଚାରିଲେ—କିଓ ଉଦ୍ଧବ ? କେମିତି ଚାଲିଛି ? ଉଦ୍ଧବା ତାଙ୍କ ପାକୁଆ ପାଟିରେ ହସି ହସି କହିଲେ—ଆଜ୍ଞା ! ଭାରତମାତା ଯେମିତି ଚଳାଉଛନ୍ତି ସେମିତି ଚଳୁଛି । ଏତିକ କଉମାଛ ବନସି ପକାଇ ଧରିଥିଲି । ନୀଳମଣି ବାବୁ ସେତେବେଳେ କଉ ଓ ମାଗୁର ମାଛ ପ୍ରଚୁର ଖାଉଥିଲେ । ତା'ପରେ ନୀଳମଣି ବାବୁ କହିଲେ—ଅଫିମଖିଆ ଛାଡ଼ିଲୁ ନା ନାହିଁ ? ଉଦ୍ଧବା କହିଲେ—ଆଜ୍ଞା ! ଭାରତମାତାଙ୍କ ଅନୁଗ୍ରହରୁ ସେ ବଦଭ୍ୟାସ ଜିନିଷ ଛାଡ଼ ହୋଇଗଲା ଆଜ୍ଞା । ଭାରଥମାତାଙ୍କର ଭାରି ପ୍ରତ୍ୟକ୍ଷ ମହିମା ଆଜ୍ଞା ।

ଏ ସବୁ ମତେ ବଡ଼ ରହସ୍ୟମୟ ମନେ ହେଉଥିଲା । କିନ୍ତୁ ଭାରତମାତା ଶବ୍ଦଟି ମତେ କ୍ରମଶଃ ଖୁବ ଭଲ ଲାଗିଲା । ଆମ ଗାଁ ବଙ୍ଗାଳୀ ସାହିରେ ଚମତ୍କାର ଦେବୀ ମେଢ଼ ହୁଏ ଦଶହରାକୁ । ଆମ ଗାଁର ଦୁର୍ଗାମୁହଁ ଖୁବ୍ ସୁନ୍ଦର ହେଉଥିଲା । ଘଣ୍ଟା ଘଣ୍ଟା ଧରି ମୁଁ ସେହି ସୁନ୍ଦର ମୁହଁକୁ ଚାହିଁ ରହିଥାଏ । ମତେ ଲାଗେ—ଭାରତମାତା ଏଇ ଦୁର୍ଗାଙ୍କ ଭଳି ହୋଇଥିବେ । ଶୀତଦିନ ହୋଇଥାଏ । ଦିନେ ମୁଁ ହାଟକୁ ଯାଉ ଯାଉ ଉପର ଓଳି ଉଦ୍ଧବା ମଳିକଙ୍କ ପାଖକୁ ଗଲି । ସେ ବାହାରେ ଚୁଲ୍ଲୀ କରି ଗୋଡ଼ଟେକି ବସେଇ ଥିଲେ ରାତିଭୋଜନ ପାଇଁ । ଏବଂ ଚୁଲ୍ଲୀ ପାଖରେ

ବସି ପିକାଟିଏ ଟାଣୁଥିଲେ । ମତେ ଦୂରରେ ଦେଖି ଖୁସି ହୋଇ ଡାକଲେ—ଆସ ବାବୁ ଆସ । ତମ ପେଇଁ କଟକ୍ରା ବରକୋଳି ରଖିଛୁ । କାଲି କଟକ ଯାଇଥିଲି । କିଣି ଆଣିଲି । ତାଙ୍କ ପାଖେ ବସି ବରକୋଳିତକ ଖାଇଲି । ଭାରି ମିଠାକୋଳି । ତା' ପରେ ଉଦ୍ଧବା ମଳିକ ତାଙ୍କ ମନକୁ ମନ ବହୁତ ଗପ ଗପି ଚାଲିଲେ । ଲୁଣମରା ଆନ୍ଦୋଳନକୁ ନେଇ ସେ ଗପ । ସେ କିଛି ନିଜେ ଘଟଣାସ୍ଥଳରେ ଉପସ୍ଥିତ ନ ଥିଲେ, ମାତ୍ର ଶୁଣା କଥାକୁ ବି ସେ ଏଡ଼େ ଚମତ୍କାର ଭାବେ ବର୍ଣ୍ଣନା କରୁଥାନ୍ତି—ସତେ କି ନିଜେ ଦେଖିଛନ୍ତି । ମହାଭାରତର ଉପମା ଦେଇ ସେ ମୋତେ କଂଗ୍ରେସ ଆନ୍ଦୋଳନ ସପକ୍ଷରେ କହିଲେ । ଧର୍ମ ଯୁଧିଷ୍ଠିର କେମିତି ଗାନ୍ଧୀ ଅବତାର ହୋଇ ଭାରତକୁ ଆସିଛନ୍ତି—ଏବଂ ମହାଭାରତ ଯୁଦ୍ଧରୁ ଯେଉଁ ଓଳିଏ ବାକି ଥିଲା—ସେତିକ ଯୁଦ୍ଧ ସେ ପୁଣି କରିବେ ଏବଂ ବ୍ରିଟିଶ କୌରବାଙ୍କୁ ନିପାତ କରିବେ—ସେ ତତ୍ତ୍ୱ ମଧ୍ୟ ମତେ ସେ ବଖାଣିଲେ । ତାଙ୍କଠାରୁ ଆଉ ଗୋଟିଏ ତତ୍ତ୍ୱ ମଧ୍ୟ ବୁଝିଲି ଯେ ମହାରାଣୀ ଭିକ୍‌ଟୋରିଆ ହେଉଛନ୍ତି ସତୀ ଗାନ୍ଧାରୀ ଏବଂ ଭାରତମାତା ହେଉଛନ୍ତି କୁନ୍ତୀ । (ସେତେବେଳକୁ ମହାରାଣୀ ଭିକ୍‌ଟୋରିଆ ମଲେଣି-- ମାତ୍ର ଉଦ୍ଧବାଙ୍କୁ ସେ କଥା କ'ଣ ଜଣା ଥିଲା ? ତା ଛଡ଼ା—ଭାରତମାତା ମଧ୍ୟ କ'ଣ ଭିକ୍‌ଟୋରିଆଙ୍କ ପରି ଜଣେ ସ୍ତ୍ରୀ ଲୋକ ? ) କିନ୍ତୁ ମତେ ସବୁ ସତ ଜଣା ପଡ଼ୁଥାଏ । ମୁଁ ପଚାରିଲି— ଅଜା ! ଏଇ ପଞ୍ଚମ ଜର୍ଜ କିଏ ? ସେ ନିର୍ବିକାରରେ ଉତ୍ତର ଦେଲେ ଯେ, ସେ ହେଉଛନ୍ତି ଧୃତରାଷ୍ଟ୍ର । ତା' ପରେ ସେ ତାଙ୍କର ରସମୟ ଭାଷାରେ କହିଲେ—ଦେଖିବ ରହିଥା' ବାବୁ ! ଘୋରତର ସମର ହେବ ଏ ଭାରତଖଣ୍ଡରେ । ରକ୍ତନଦୀ ବହିଯିବ । ଭଗବାନ କୃଷ୍ଣ ପୁଣି ତାଙ୍କ ଚକ୍ରରେ ଉହାଡ଼ କରି ଧରିବେ ଏ ପୃଥୀକି । ମୁଁ ପଚାରିଲି—କୃଷ୍ଣ କୋଉଠି ଅଛନ୍ତି ? ସେ ଖୁବ୍ ନିଶ୍ଚିନ୍ତ ସିଦ୍ଧାନ୍ତ ଦେଲେ ହସି ହସି ଦକ୍ଷିଣ ଦିଗକୁ ଅଙ୍ଗୁଳି ଦେଖାଇ—"ସେଠି ବଇଛି ଛଦ୍ମରେ ଦାରୁଭୂତ ହୋଇ —ସୋମୋଦ୍ର କୂଳରେ ବଡ଼ଦେଉଳ ଭିତରେ ବୌଦ୍ଧ ରୂପରେ ଗୋପନ କରି ରଖିଛି ନିଜକୁ । ବେଳା ପଡ଼ିଲେ ତା' ଭିତରୁ ବାହାରିବ ।" ମୁଁ ପଚାରିଲି—ଅଜା ! ତୁମେ ଜଗନ୍ନାଥଙ୍କୁ ଦେଖିଛ ? ସେ କହିଲେ—ଥରେ

ଦେଖିଛୁ ବାବୁ; ଥରେ । ସେଇ ଥରକରେ ତାକୁ ଚିହ୍ନିଗଲି । ରଥଯାତ୍ରାକୁ ଯାଇଥିଲି । ଯୋଉଥର ବଡ଼ ହଇଜା ହେଲା— ହଜାର ହଜାର ଲୋକ ମାଛି ପରି ମରି ପଡ଼ିଲେ । ଏଇ ଯୋଉ ତେଙ୍ଗା ତାଳଗଛ ଦେଖୁଛ —ସେହିପରି ଚାରିଟା ତାଳଗଛ ତା' ଉପରକୁ ତା' ଉପରକୁ ଗଞ୍ଜିଲେ ଯେଉଁକି ଉଞ୍ଚା ହେବ— ସେ ରଥ ସେଉଁକି ଉଞ୍ଚା । ଆଉ ସେ ଠାକୁର ବି ସେତିକି ଉଞ୍ଚା । ଆମ ବ୍ରହ୍ମାଙ୍କ ବରଗଛ ଯେତିକି ମୋଟା—ତା'ର ଚାରିଗୁଣ ମୋଟା ହବ ସେ ଠାକୁର । ଚନ୍ଦ୍ର ସୂର୍ଯ୍ୟ ଭଳି ଦାଉ ଦାଉ ଚକାଆଖି । ମୋ ଆଖିରେ ଯେମିତି ସେ ରୂପ ପଡ଼ିଲା, ମୋ ଆଖି ବୁଜି ହୋଇଗଲା—ଲମ୍ବ ଲମ୍ବ ହୋଇ ବଡ଼ଦାଣ୍ଡ ଧୂଳିରେ ପଡ଼ିଗଲି—ହେ କୃଷ୍ଣ, ହେ କୃଷ୍ଣ ହେଉଥାଏ—ମୋ ଚେତା ବୁଡ଼ିଗଲା । ପରେ ମତେ ସେମାନେ ଟେକି ଉଠାଇ ପାଣି ଛିଞ୍ଚି ସାବ୍ଧାନ କଲେ । ସେ ରୂପ ଦେଖି ସମସ୍ତେ ସମ୍ଭାଳି ପାରିବେ ନି । ସେଇ ରୂପ ଦେଖି ଚୁନିଆ ହୋଇ ଆଗ ଅଧେ ଲୋକଙ୍କର ହଇଜା ହୋଇଯାଏ । କିଏ ଅନେଇ ପାରିବ ସେ ରୂପକୁ ଏମିତି ଆଖି କାହାର ଅଛି ? ସମସ୍ତେ ଆଖିବୁଜି ମଣିମା ମଣିମା ହେଉଥାନ୍ତି ନା ! କେବଳ ସାଧୁ-ସନ୍ନ୍ୟାସୀ-ବୈଷ୍ଣବମାନେ ବା ନାଗାନ୍ତୀ ବେଦାନ୍ତୀ ଯୋଗାନ୍ତୀମାନେ ସେ ରୂପକୁ ଆଖି ମେଲେଇ ଚାହିଁ ପାରିବେ —ସମ୍ଭାଳି ପାରିବେ । ମୁଁ ବାବୁ, ସେଇଦିନୁଁ ଆଉ ପୁରୁଷୋତ୍ତମ ଯାଇନାହିଁ । ଫଟୋ ଖଣ୍ଡିଏ ଆଣି ଖଟୁଲିରେ ରଖି ତୁଳସୀ ପାଣି ଦିଏ ।

ଏଇ ଜଗନ୍ନାଥଙ୍କ କଥା ମୁଁ ସେତେବେଳକୁ ଜାଣି ସାରିଥାଏ । କାରଣ ମୋର ବାପା ତାଙ୍କ ବାଲ୍ୟକାଳରୁ ପୁରୁଷୋତ୍ତମ ଓ ଜଗନ୍ନାଥଙ୍କ ସଙ୍ଗେ ଅତି ନିବିଡ଼ ଭାବେ ସଂପୃକ୍ତ ଥିଲେ । ଏବଂ ମୋ ପିଲାଦିନ ପର୍ଯ୍ୟନ୍ତ ବାପା ବହୁବାର ପୁରୀ ଯାଉଥିଲେ—ଏବଂ ଫେରିଲା ବେଳକୁ କୋଉଁଆ କୋଉଁଆ ମଗଜଲଡ଼ୁ ଏବଂ ଜଗନ୍ନାଥବଲ୍ଲଭ ଘରକୁ ଆଣୁଥିଲେ । ଜଗନ୍ନାଥଙ୍କ ଫଟୋ ମଧ୍ୟ ଆମ ଘରେ ଥିଲା । ବାପା କହୁଥିଲେ ଜଗନ୍ନାଥଙ୍କ ସମ୍ବନ୍ଧେ ବହୁତ କଥା । ଜଗନ୍ନାଥ ସ୍ୱୟଂ ବିଷ୍ଣୁ ଏବଂ ଦାରୁବ୍ରହ୍ମ ଶବ୍ଦଟି ମଧ୍ୟ ମୁଁ ସେତେବେଳେ ଶୁଣିଥିଲି । ପୁରୁଷୋତ୍ତମ ପତିତପାବନ ଜଗବନ୍ଧୁ, ଦୀନବନ୍ଧୁ ଆଦି ଶବ୍ଦ ମଧ୍ୟ ମୁଁ ବାପାଙ୍କ ମୁହଁରୁ ସେହି ପିଲାକାଳୁ ଶୁଣିଥିଲି । ପୁରୀରେ ସମୁଦ୍ର ଅଛି ଓ ସେଠାରେ ସ୍ୱର୍ଗ

ନାହିଁ—ଏକଥା ବି ମୁଁ ଶୁଣିଥିଲି । ବାପା ଥିଲେ ଜଗନ୍ନାଥଙ୍କର ପରମଭକ୍ତ । ତାଙ୍କ ତୁଣ୍ଡରୁ ଓ ଆମ ଗାଁର ବଳୀ କକେଇଙ୍କ ତୁଣ୍ଡରୁ ଜଗନ୍ନାଥଙ୍କ ଭଜନ କେତୋଟି ବାରମ୍ବାର ଶୁଣି ମଧ୍ୟ ମୋର ଶରୀର ଶିହରିତ ହେଉଥିଲା । ତେବେ ଉଦ୍ଧବାଙ୍କ ତୁଣ୍ଡରୁ ଏହି ବିଷୟ ଶୁଣିବାରେ ମୋର ତାଙ୍କ ସମ୍ବନ୍ଧେ ଧାରଣା ଆହୁରି ଭାବାତ୍ମକ ହେଉଥିଲା । ଜଗନ୍ନାଥଙ୍କ କଥା ସରିଲା ପରେ ସେଦିନ ମୁଁ ପଚାରିଦେଲି—"ଅଜା ! କଂଗ୍ରେସ ଲୋକଙ୍କୁ କୁଆଡ଼େ ତୁମ ପୁଲିସବାଲା କଟକରେ ଖୁବ୍ ମାଡ଼ ଦେଉଛନ୍ତି—ଆଉ ଗାନ୍ଧୀ ମହାତ୍ମାଙ୍କୁ ନେଇ ଜେଲ୍‌ରେ ପୂରେଇଛନ୍ତି ?"

ଉଦ୍ଧବା ଅଜା କହିଲେ—ତା' ସତ କହିଲି ବାବୁ ! କୋଉଠୁ ଶୁଣିଲ ? ହଉ ହଉ ସେ କଥା ବେଶି କାହାକୁ ପ୍ରକଟ କର ନାହିଁ । ମୁଁ କହିଲି—ରଘୁ ସାର୍ ଆଉ ହେଡ୍‌ମାଷ୍ଟ୍ରେ ଦୁହେଁଯାକ ଖବର କାଗଜ ପଢ଼ି କଥା ହେଉଥିଲେ—ମୁଁ ଶୁଣିଥିଲି । ଉଦ୍ଧବା ଅଜା କିଛି ସମୟ ଗୁମ୍ ଖାଇ ବସି ରହିଲେ । ତା'ପରେ କାଉଁରିଆ ପିକାଟିକୁ ଚୁଲି ନିଆଁରେ ଆଉ ଥରେ ଜଳାଇ ଗଞ୍ଜେଇ ଖାଇଲା ପରି କଲେ ଧୂଆଁ ଶୋଷି ନେଇ ପାଟି ଉପରକୁ ଭକ ଭକ୍ କରି ଛାଡ଼ିଲେ । ତା'ପରେ ଖୁବ୍ ବିଜଡ଼ିତ ଗଳାରେ କହିଲେ—ବ୍ରିଟିଶ୍ ସରକାର କମ୍ ଜନ୍ତୁ ନୁହଁ ବାବୁ । ସେ ବାଘ ବକରୀକୁ ଏକା ତୁଠରେ ପାଣି ପିଆଏ । ତା' ରାଜ୍ୟରେ ଚନ୍ଦ୍ର ସୋର୍ଯ୍ୟ ଅସ୍ତ ହୁଅନ୍ତି ନାହିଁ । ହେଲେ ମହାତ୍ମା ବି କିଛି କମ୍ ନୁହନ୍ତି । ସେ ହେଲେ ଧର୍ମ ଯୁଜେଷ୍ଠି । ଦେଖିବ, ଜେଲ୍‌ରେ ଗୃହ ସଙ୍ଗେ ଗୃହ ପଡ଼ିଥିବ ପ୍ରହରୀମାନେ ପହରା ଦେଉଥିବେ । ଯୋଗମାୟା ଅଘଟଣ କରିଦେବେ । ସେମାନଙ୍କ ଆଖିକୁ କାଳନିଦ୍ରା ଘୋଟିଯିବ । ମାହାତ୍ମା ପବନ ସୋରୂପୀ ହୋଇ ସେଠୁ ବାହାରି ଆସି ଏଣେ ଜଗନ୍ନାଥଙ୍କ ରତ୍ନ ସିଂହାସନ ତଳେ ଛପି ରହିବେ ତିନିମାସ ତିନିପକ୍ଷ ତିନିଦିନ । ତେତିଶ କୋଟି ଦେବାଦେବୀ ମଧ୍ୟ ସେଠି ଆସି ଗୋପ୍ୟାନରେ ଲୁଚି ରହିଛନ୍ତି । ଚନ୍ଦ୍ର, ସୋର୍ଯ୍ୟ ବି ତାଙ୍କ ପତ୍ତା ପାଇବେ ନାହିଁ । ସେଇଠୁ—ତା' ବେଳା ହେଲେ ଜଗନ୍ନାଥ ବଳଭଦ୍ର କ'ଣ କରିବେ ନା, ଧଳାଘୋଡ଼ା କଳାଘୋଡ଼ାରେ ବସି ସୁଦର୍ଶନ ଚକ୍ର ଆଉ ହଳ ମୂଷଳ ଧରି ଯୁଦ୍ଧକୁ ବାହାରି ପଡ଼ିବେ । ତେମେ ଦେଖିବ ରହିଥା'—ପୃଥିବୀ ଟଳମଳ ହେବ—ମ୍ଳେଚ୍ଛସଂହାର

ହେବ—ଟିକିଏ ସବୁର୍ କର ବାପା—ଅପ୍ସ ଧର । ଏ ଚରଖା କ'ଣ ଜାଣିଛ ତା' ମରମ ? ସେଇ ହଉଛି ସୁଦର୍ଶନ ଚକ୍ର ।

ତାଙ୍କ କଥାରେ ମୋର ବିଶ୍ୱାସ ଆସି ଯାଉଥାଏ । ବ୍ରିଟିଶ୍ ସରକାର ନିଶ୍ଚୟ ମହାତ୍ମାଙ୍କ ଦ୍ୱାରା ପରାଜିତ ହେବ, ଏଥିରେ ମୋର ତିଳାର୍ଦ୍ଧ ଦ୍ୱିଧା ନ ଥାଏ । କିନ୍ତୁ ତଥାପି ମହାତ୍ମାଙ୍କୁ ଜେଲ୍‌ରେ ପୂରାଇବା କଥା ଶୁଣି ମୋର ମନ ଖରାପ ହୋଇଯାଉଥାଏ । ମୁଁ ଖୁବ୍ ଚିଡି ଯାଇଥାଏ ଏବଂ ଶଙ୍କି ଯାଇଥାଏ ମଧ୍ୟ । ମୁଁ ପଚାରିଦେଲି—ଅଜା ! ତମେ ତ ଚଉକିଦାର ହୋଇଛ—ବ୍ରିଟିଶ ସରକାରର ଲୁଣ ଖାଉଛ—ତମେ କେମିତି କଂଗ୍ରେସ ଆଉ ମହାତ୍ମା ଗାନ୍ଧୀଙ୍କ ସପକ୍ଷରେ କହୁଛ ?

ଉଦ୍ଧବା ଅଜା କହିଲେ—ବୁଝିଲ ବାବୁ ! ସେଇ ହେଲା ମରମ କଥା । ମୁଁ କାହା ଲୁଣ ଖାଉଛି ସେ ଭେଦ ତୁମେ କ'ଣ ଜାଣିଛ ? ସେଇ ଲୁଣ ଉପରେ ଅଇନେ ଯୁଦ୍ଧ ଚାଲିଛି । ମହାତ୍ମା ସେଇ ଲୁଣ ପାଇଁ ଅହିଂସା ସମର ଚଳେଇଛନ୍ତି । ସେଇଥିପାଇଁ ଏତେ କଥା । ଅସଲ କଥା ହେଲା—ଲୁଣ କାହାର ? ବୁଝିଲ ବାବୁ ! ସବୁ ମରମ ସେଇଠି ରହିଛି । ଭୀଷ୍ମ, ଦ୍ରୋଣ କ'ଣ ଦୁର୍ଯ୍ୟୋଧନର ଲୁଣ ଖାଉ ନ ଥିଲେ କି ? ଏମିତି କି ତାଙ୍କର ସୋପକ୍ଷରେ ରହି ପାଣ୍ଡବଙ୍କ ସଙ୍ଗେ ଯୁଦ୍ଧ କରି ମଲେ ଟି ? କିନ୍ତୁ ସେମାନେ ସତକୁ ସତ କାହା ପକ୍ଷରେ ଥିଲେ କହିଲ ? ସେ ସବୁ ବଡ଼ ଗହନ କଥା ବାବୁ । ବଡ଼ ହେଲେ ବୁଝିବ ।

କିନ୍ତୁ ଖୁବ୍ ବଡ଼ ହେବାଯାଏ ମୋତେ ଏସବୁ କଥାର ମର୍ମ ବୁଝିବାକୁ ଅପେକ୍ଷା କରିବା ଲାଗି ପଡ଼ି ନ ଥିଲା । ମୁଁ ସେଇଦିନ ମଧ୍ୟ ଏହି ଗୂଢ଼ତତ୍ତ୍ୱ ବୁଝି ଯାଇଥିଲି । ଆଜି ଅବଶ୍ୟ ସେ ତତ୍ତ୍ୱ ଆହୁରି ଗୂଢ଼ ହୋଇପାଇଛି ମୋ ପାଖେ । ଅନୁଭବୀ ସନ୍ଧାନୀସ୍ତ ମଣିଷ ତା' ଜୀବନରେ ଲୁଣ ଖାଏ ଜଣକର—ଏବଂ ଗୁଣ ଗାଉଥାଏ ଆଉ ଜଣକର । ମଣିଷକୁ ଏ ଦୁର୍ଭାଗ୍ୟ ଭୋଗିବାକୁ ଅଛି । କିନ୍ତୁ ପ୍ରକୃତରେ ସେ ଲୁଣ ଗଣ୍ଡାକ କାହାର ? ବେଳେବେଳେ ଯାହାଠାରୁ ଆମେ ଲୁଣ ଖାଉଥାଉ—ସେ ଲୁଣ ତାହାର ନ ହୋଇପାରେ ।

ଉଦ୍ଧବା ମଳିକ ବହୁ ବର୍ଷଯାଏ ବଞ୍ଚିଥିଲେ । ଭାରତ ସ୍ୱାଧୀନ ହେଲା ବେଳକୁ ସେ ଚୌକିଦାରୀ ଦାୟିତ୍ୱରୁ ଅବସର ନେଇ ସାରିଥିଲେ । ଏପରିକି ନାଥୁରାମଙ୍କ ଗୁଳିଗୋଟିରେ ମହାତ୍ମା ଗାନ୍ଧୀଙ୍କ ମୃତ୍ୟୁ ପର୍ଯ୍ୟନ୍ତ ବି ସେ ବଞ୍ଚି ରହିଥିଲେ । କିନ୍ତୁ ସେତେବେଳେ ମୁଁ ବଡ଼ ହୋଇଗଲିଣି । କଲେଜରେ ପାଠ ପଢ଼ିଲିଣି । ମୋର ଆଉ ଉଦ୍ଧବା ମଳିକଙ୍କ ସଙ୍ଗେ ଯୋଗାଯୋଗ ନ ଥିଲା । ତେବେ ଗାଁକୁ ଗଲେ, ଥରେ ଅଧେ ଦେଖିଛୁ ତାଙ୍କୁ । ସେଇ ପୋଖରୀବନ୍ଧର କୁଡ଼ିଆ ପାଖ ତୁଳସୀ ଚଉରା ଉପରେ ଯୋଉଧାରି ହୋଇ ବସି ରହିଥାନ୍ତି ସେ । ଚୁପ୍‌ଚାପ୍—ବେଳେ ବେଳେ ଖୁଁ ଖୁଁ କାସୁଥିବେ । ମୋର ମନେ ଅଛି—ଥରେ ମୁଁ ସେ ଅବସ୍ଥାରେ ତାଙ୍କ ପାଖକୁ ଯାଇଥିଲି । ତାଙ୍କୁ କିଛି ସିଲେଟ୍ କମଳା ଦେଇଥିଲି । ସେତେବେଳକୁ ତାଙ୍କ ଦୁଇ ଆଖିରେ ପରିଳ ପଡ଼ିଯାଇଥିଲା । ତାଙ୍କୁ ଆଉ କିଛି ଦିଶୁ ନ ଥିଲା । ଏଣେ ଆଣ୍ଠୁ ଗଣ୍ଠି ବାତରେ ମଧ୍ୟ ସେ ଚଳତ୍‌ଶକ୍ତି ବିହୀନ ହୋଇଯାଇଥିଲେ । ମୁଁ ତାଙ୍କୁ ଦୁଇଟି ଟଙ୍କା ମଧ୍ୟ ଦେଇଥିଲି । ସେ ବେଶି କିଛି କଥାବାର୍ତ୍ତା କରୁ ନ ଥିଲେ । ସାମାନ୍ୟ ଏଣୁ ତେଣୁ କଥା ପରେ ସେ ଖୁବ୍ ଦୁଃଖରେ କହିଲେ—ବାବୁ ! ମହାତ୍ମା ଦେହ ଛାଡ଼ିଲା ଦିନଠାରୁ ଏ ପୃଥ୍ୱୀ କି ଅନ୍ଧକାର ଯୋଟିଗଲା । ଆଉ ଏ ପୃଥ୍ୱୀରେ ବଞ୍ଚି ରହି କଲବଲ ହେବାକୁ ମନ ବଳୁନାହିଁ ।

ମୁଁ କହିଲି—ଅଜା ! ସେ କଥା ସତ ଯେ, ହେଲେ ଜହରଲାଲ ନେହେରୁ ତ ଅଛନ୍ତି ?

ଉଦ୍ଧବା ମଳିକ ଦୁଇହାତ ଯୋଡ଼ି ମୁଣ୍ଡରେ ଲଗାଇ କହିଲେ—ହଁ ବାବୁ ହଁ । ଧର୍ମ ଯୁଧିଷ୍ଠିରଙ୍କ ଅନ୍ତେ ପରୀକ୍ଷିତ ରାଜା ହୋଇଛନ୍ତି । କାଳ କାଳକୁ ଏ ନାଗିଛି । ପରୀକ୍ଷିତ ମାହାର୍ଜା ଯେତେବେଳେ ମାତୃ ଗର୍ଭରେ ଥେଲେ—ଅଶ୍ୱତ୍ଥାମା ବାହ୍ମୁଣ ବ୍ରହ୍ମଶର ପେଶିଲା ତାଙ୍କୁ ସେଇ ଗର୍ଭରେ ଭସ୍ମ କରିବା ପାଇଁ । ହେଲେ— ପାରିଲା କି ? କୃଷ୍ଣ ଚକ୍ର ପେଷି ଗର୍ଭକୁ ଉହାଡ଼ କରି ରଖିଲେ । ସବୁ ସେହି କୃଷ୍ଣଙ୍କ ମହିମା । ସବୁ ସେଇ କୃଷ୍ଣଙ୍କ ଲୀଳା । ସବୁ ଲୀଳା ସେଇ କରୁଛି—ପୁଣି ଯାଇ ଦାରୁଭୂତ ହୋଇ ବସି ଯାଉଛି ବଡ଼ ଦେଉଳରେ ରତ୍ନସିଂହାସନ... ଗମ୍ଭୀର ଭିତରେ । କିଏ ସେ ତତ୍ତ୍ୱ କଳିବ—ନା ବୁଝିବ ?

ଏବେ ମୁଁ ବୁଝୁଛି—ଭାରତର କୋଟି କୋଟି ନିରକ୍ଷର ଗ୍ରାମ-ବାସୀମାନେ ମୂର୍ଖ ନୁହନ୍ତି । ସେମାନଙ୍କ ରକ୍ତରେ ଯୁଗଯୁଗ ଧରି ବ୍ୟାସ, ବାଲ୍ମୀକିଙ୍କ ଭୂଷାମଣି ପୁରୁଷାନୁକ୍ରମେ ବହିଚାଲିଛି । ସେମାନେ ଇତିହାସକୁ ଖାତିର କରନ୍ତି ନାହିଁ । ପୁରାଣ ମାଧ୍ୟମରେ ହିଁ ସେମାନେ ବୁଝନ୍ତି ଉପସ୍ଥିତ ଜୀବନର ଅର୍ଥ । ସେଇ ପୁରାଣ ହିଁ ସେମାନଙ୍କ ଆଗରେ ଚିରନ୍ତନ ଜୀବନର ରହସ୍ୟକୁ ଉଦ୍‌ଘାଟନ କରିଦିଏ । ଜୀବନର ମୂଢ଼ମର୍ମ କାନ ପାଖରେ ସରଳ କରି କହିଦିଏ । ଜୀବନର ନିର୍ଦ୍ଦେଶ ବା ରହସ୍ୟ ବୁଝିବା ଲାଗି ଦରକାର ପଡ଼େ ନାହିଁ ସେମାନଙ୍କର ରାଶି ରାଶି ଗ୍ରନ୍ଥ ଅଧ୍ୟୟନ—ଇତିହାସ, ଭୂଗୋଳ, ଅର୍ଥନୀତି, ମନସ୍ତତ୍ତ୍ୱ ବା ଫିଜିକ୍‌ସ, କେମିଷ୍ଟ୍ରି, ବାଇଓଲୋଜି । ଆମେ କିନ୍ତୁ ପୁରାଣକୁ କହୁ ଗାଲ୍‌ଗଲ୍ପ—କିନ୍ତୁ ଖବରକାଗଜକୁ ବେଦ, ଉପନିଷଦଠାରୁ ଆହୁରି ମନଯୋଗ ଦେଇ ପଢ଼ୁ । ଆମ୍ଭେମାନେ ଅନନ୍ତକାଳ ଚେତନାରୁ ବିଚ୍ଛିନ୍ନ ଏକ କ୍ଷୁଦ୍ର ରାଜନୀତିକ ଓ ଆର୍ଥନୀତିକ ଜୀବନକୁ ନେଇ ବଞ୍ଚୁଥାଉ ଓ ଅସନ୍ତୋଷରେ ହା ହୁତାଶ କରୁଥାଉ । ଆମେ ଆମର ଦୈନନ୍ଦିନ ଖବରକାଗଜ ଭିତରୁ ଚିରନ୍ତନ ଦୁର୍ଯ୍ୟୋଧନ, ଯୁଧିଷ୍ଠିର ଓ ରାମ ରାବଣାଦିକୁ ଖୋଜୁନାହିଁ—ପାଉ ମଧ୍ୟ ନାହିଁ । ଚଳନ୍ତି ଘଟଣା ପ୍ରବାହ ଭିତରୁ ଚିରନ୍ତନ ରାମ ରାବଣ ଯୁଦ୍ଧ ଓ କୁରୁ ପାଣ୍ଡବ ଯୁଦ୍ଧର ମର୍ମ ଉଦ୍‌ଘାଟନ କରିପାରୁ ନାହିଁ । ତେଣୁ ଆମ୍ଭେମାନେ କାହା ପକ୍ଷରେ ନ ଥାଉ । ଏପରି କି ନିରପେକ୍ଷ ମଧ୍ୟ ନ ଥାଉ । ଆମେ ଥାଉ ଆମର ବିଚ୍ଛିନ୍ନ ଜୀବନର ଶୂନ୍ୟତା ଭିତରେ । ଏବଂ ତାରି ଭିତରେ ଥାଇ ହାହାକାର କରୁଥାଉ ଓ ସମସ୍ତଙ୍କୁ ସନ୍ଦେହ କରୁଥାଉ ।

ସେଦିନର ଦେଖା ପରେ—ବୋଧହୁଏ ବର୍ଷକ ଭିତରେ ଜଗିବାପାଲ ମଳିକଙ୍କର ମୃତ୍ୟୁ ଖବର ପାଇଲି । ବଡ଼ କରୁଣ ସେ ମୃତ୍ୟୁ । କିନ୍ତୁ ତାଙ୍କର ସ୍ମୃତି ମୋର ମନ ଭିତରେ ଖୁବ୍ ମହାମହିମ ଭାବରେ ତିଷ୍ଠି ରହିଛି । ଭାଦ୍ର ମାସର ଜନ୍ମାଷ୍ଟମୀ ତିଥିରେ ସେହି ପୋଖରୀ ଭିତରେ ପଡ଼ି ସେ ବୁଡ଼ି ମରିଥିଲେ । ତା'ର ଦୁଇଦିନ ପରେ ସ୍ୱାଧୀନ ଭାରତର ପୋଲିସମାନେ ସେଇ ପୋଖରୀ ଭିତରୁ ତାଙ୍କର ଶବ ଉଦ୍ଧାର କରିଥିଲେ । ତାଙ୍କର ଦେହ ଖାନତଲ୍ଲସ ହୋଇ ବାହାରିଥିଲା— ଚନ୍ଦନଚର୍ଚ୍ଚିତ

ଜଗନ୍ନାଥଙ୍କ ଛବିଟିଏ—ଗିରିଗୋବର୍ଦ୍ଧନକୁ କାଣି ଆଙ୍ଗୁଠିରେ ଟେକି ଧରିଥିବା ଶ୍ରୀକୃଷ୍ଣଙ୍କ ଚିତ୍ର ଖଣ୍ଡିଏ ଏବଂ ଦୁଇଟି ମାଛଧରା ବନଶୀ ଖଡ଼ା । ଏବଂ ତାଙ୍କର ନେଳଆ ଚୌକିଦାରି ହୋଦା (ବ୍ୟାଗ୍) ଭିତରୁ ବାହାରିଥିଲା ଭାରତମାତାଙ୍କ ପାଦତଳେ ଉପବିଷ୍ଟ ମହାତ୍ମାଗାନ୍ଧୀଙ୍କର ଖଣ୍ଡିଏ ଅର୍ଦ୍ଧଜୀର୍ଣ୍ଣ ଚିତ୍ର ।

ଆଜି ୧୯୭୯ ମସିହା ବେଳକୁ ସେ ପୋଖରୀ ହୁଡ଼ାରେ ତାଙ୍କର ସେ କୁଡ଼ିଆର ଚିହ୍ନବର୍ଣ୍ଣ ସୁଦ୍ଧା ନାହିଁ । କିନ୍ତୁ ଆଜି ମଧ୍ୟ ମୋ ମନଭିତରେ ଉଦ୍ଧବା ମଳିକଙ୍କର ସେହି ସୁନ୍ଦର ମଧୁର ପବିତ୍ର ଛବିଟି ଜ୍ୟୋତିର୍ମୟ ହୋଇ ରହିଛି ଓ ଆଜି ମଧ୍ୟ ମୋର ମାନସିକ ସଙ୍କଟବେଳେ ଥରେ ଥରେ ମୋର ହୃଦକନ୍ଦରରେ ତାଙ୍କର ସେହି ଗନ୍ତିଅଧିଆ ନିର୍ଭୀକ ଡାକଟି ଧିନେ ଧିନେ ଧିନେ ପ୍ରତିଧ୍ୱନିତ ହୋଇଯାଏ—"ଭାରତମାତା ଜାଗ୍ରତଆର... ହୁସିଆର ଭାଇ ହୁସିଆର ।" ମୋର ଅବସନ୍ନ ମନରେ ପୁଣି ନୂଆହୋଇ ବିଶ୍ୱାସ ଫେରିଆସେ—ବଳ ମଧ୍ୟ ଫେରିଆସେ ।



# ନିହାଲ ମଉସା ଚରିତାମୃତ

ଏ ଜଗତରେ ସତ୍ତଆ ଲୋକ ଅଛନ୍ତି—ମିଛୁଆ ଲୋକ ବି ଅଛନ୍ତି । ଗୋଟେ ଦିଗରୁ ଦେଖିଲେ ଏଠି ଆମର ସତ୍ତଆ ଲୋକଙ୍କ ସଂଖ୍ୟା ବେଶୀ—ମିଛୁଆଙ୍କ ସଂଖ୍ୟା ଖୁବ୍ କମ୍ । କାରଣ ସତକହିବା ହେଲା ଆହାର, ନିଦ୍ରା, ଭୟ, ମୈଥୁନ ଭଳି ଗୋଟିଏ ପ୍ରବୃତ୍ତି । ବିଲେଇ, କୁକୁର, ଶାଳିଆପତନି, ବାଘ, ସିଂହ, ମର୍କଟ, ଭଲ୍ଲୁକ ଇତ୍ୟାଦି ପ୍ରାଣୀ-ମାନେ ମିଛ କହି ପାରିବେନାହିଁ । କାହିଁକି ନା, ମିଛ କହିବା ଗୋଟିଏ ବୌଦ୍ଧିକ କ୍ଷମତା—ଗୋଟିଏ ଦାର୍ଶନିକ ଉତ୍କର୍ଷ । ଯାହାର ଯେତିକି ଉତ୍କର୍ଷ ଯେତିକି ସେ କେବଳ ସେତିକି ମିଛ କହିପାରେ । ତା'ମାନେ ମିଛ କହିବା ଗୋଟିଏ ପ୍ରତିଭା ଏବଂ ସାଧନାର ବ୍ୟାପାର । ସାଧାରଣ ଲୋକେ ମିଛ କହିପାରିବେ ନାହିଁ । ଅସାଧାରଣ ଲୋକେ ହିଁ ମିଥ୍ୟା ସୃଷ୍ଟି କରି ପାରନ୍ତି । ଆଉ ଆମର ଏଇ ବିଶାଳ ପୃଥିବୀରେ ଅସାଧାରଣ ଲୋକଙ୍କ ସଂଖ୍ୟା ଆଶାନୁପାତରେ ବହୁତ କମ୍ । ମୋ ଧାରଣା, ପ୍ରାଣୀ ମାତ୍ରେଇ ସତ୍ୟବାଦୀ—କିନ୍ତୁ ତା' ଭିତରେ ଯେଉଁମାନଙ୍କର ମିଛ କହିପାରିବାର ଅସାଧାରଣ ପ୍ରତିଭା ଅଛି—ସେହିମାନେ ହିଁ ମନୁଷ୍ୟ ପଦକୁ ଉନ୍ନୀତ ହୋଇଛନ୍ତି ଏବଂ କହିବା ବାହୁଲ୍ୟ ଯେ ଆମର ସଂସ୍କୃତି ଏହି ପ୍ରତିଭାବାନ୍ ମିଥ୍ୟାବାଦୀଙ୍କ ଦ୍ୱାରା ସୃଷ୍ଟ ଓ ପୁଷ୍ଟ ।

ତେବେ, ସତ କ'ଣ ଓ ମିଛ କଣ, ତାହା ମଧ୍ୟ ବୁଝିବା ଆମ ପକ୍ଷରେ କାଠିକର ପାଠ। ସତରେ ମିଛ ରହିଛି—ମିଛରେ ମଧ୍ୟ ସତ ରହିଛି। ପୁଣି ଏମିତି କେତେ କଥା ଅଛି, ଯାହା ମତେ ସତହେଲେ, ଆପଣଙ୍କୁ ମିଛ। ପୁଣି ଆପଣଙ୍କୁ ଯାହା ସତ, ମତେ ତାହା ମିଛ ହୋଇ-ପାରେ। ଅସଲ ସତ୍ୟ କ'ଣ, ତାହା ଆମକୁ ଯେମିତି ଜଣାନାହିଁ—ଅସଲ ମିଥ୍ୟାଟି କ'ଣ, ତାହା ମଧ୍ୟ ଜାଣିବା ଆମ ପକ୍ଷରେ ସମ୍ଭବ ନୁହେଁ। ସେଥିପାଇଁ ସତ ମିଛ ବିଷୟରେ ମୁଣ୍ଡ ନ ଖେଳାଇ, ଆମେ ବରଂ ଏମିତି ଜଣେ ସୁନ୍ଦର ମଣିଷଙ୍କୁ ମନେ ପକେଇବୁ, ଯେ କି ଅନବରତ ମିଛକଥା କହୁଥିଲେ ଓ ସେହି ମିଛକଥା ଦ୍ୱାରା ଆମ ଗାଁକୁ ଆଜକୁ କୋଡ଼ିଏ ପଚିଶବର୍ଷ ତଳେ ପଚିଶବର୍ଷ ଧରି ସରସ ଓ ପ୍ରାଣବନ୍ତ କରି ରଖିଥିଲେ। କଥା କହିବା ଓ କଥାକହି ଅନ୍ୟକୁ ଆନନ୍ଦ ଦେବା ଏତେ ସହଜ କଥା ନୁହେଁ। ତା'ଛଡ଼ା, ପୁଣି ମିଛ କଥାଟିଏ କହିବା ଅତ୍ୟନ୍ତ କଷ୍ଟକର କାର୍ଯ୍ୟ। ସତ କହିବା ତ ଏମିତି କିଛି କଷ୍ଟକର ବ୍ୟାପାର ନୁହଁ। ଗଲ, ଆଇଲ, ଯାହା ଦେଖିଲ, ତାହା କହିଲ କିମ୍ୱା ଯାହା ଶୁଣିଲ, ତାହା କହିଲ। ଏଇଟା ବି ଏମିତି କି ଦୁଃସାଧ୍ୟ କର୍ମ ? କିନ୍ତୁ ସେପରି ପ୍ରତିଭା ନ ଥିଲେ, ସେମିତି ସୃଜନାତ୍ମକ କଳ୍ପନାଶକ୍ତି ନ ଥିଲେ, ମିଛକଥାଟିଏ ମନରୁ ଫାନ୍ଦି କହିହେବ ନାହିଁ। ଅନ୍ୟର ମନକୁ ରଞ୍ଜିତ କରିହେବ ନାହିଁ। ଅନ୍ୟର ହୃଦୟକୁ ନନ୍ଦିତ କରିହେବ ନାହିଁ। ଅବଶ୍ୟ, ଠୋ ଠୋ ମିଛ କହିଲାବାଲାଙ୍କ ସଂଖ୍ୟା ବି ଆମ ଗାଁରେ କମ୍ ନ ଥିଲେ କି ନାହାନ୍ତି। କିନ୍ତୁ ଠୋ ଠା ମିଛ କହିଲାବାଲା ଗୁଡ଼ାକ, ଠ, ଠା, ଠିକ୍ ସତ କହିଲା-ବାଲାଙ୍କଠାରୁ ଆହୁରି ବୁଡ଼୍‌ବକ୍, ଆହୁରି କାବୁଡ଼ିଆ ଏବଂ ଆହୁରି ବେରସିକ, ହୃଦୟହୀନ। ମୁଁ କିନ୍ତୁ ଏଠି ଆମ ଗ୍ରାମର ଏମିତି ଜଣେ ପ୍ରାତଃସ୍ମରଣୀୟ ବ୍ୟକ୍ତିଙ୍କ ଚରିତ ବର୍ଣ୍ଣନା କରୁଛି—ଯେ କି ଏପରି ଅପୂର୍ବ ମିଛକଥା ଗୁଡ଼ିଏ ଏପରି ଅପୂର୍ବ ରଙ୍ଗରେ ରଞ୍ଜିତ କରି ଓ ଏପରି ରସ ଜୁଡ଼ୁବୁଡ଼ୁ କରି ତାଙ୍କର ଅଭିଜ୍ଞତା ରୂପେ ଆମ ଆଗରେ ବଖାଣୁ-ଥିଲେ—ଯାହାକି କେବଳ ଜଣେ ଅତି ହୃଦୟବାନ୍, ବୁଦ୍ଧିମାନ ପ୍ରତିଭାଧର ରସିକ ବ୍ୟକ୍ତିଙ୍କ ପକ୍ଷରେ ହିଁ ସମ୍ଭବପର ଏବଂ କହିବା ବାହୁଲ୍ୟ, ଏଯାବତ୍ ତାଦୃଶ ବ୍ୟକ୍ତି ଓ ତାଦୃଶ ମିଥ୍ୟାକଥନ ମୁଁ ଆମ

ଗ୍ରାମ କାହିଁକି, ସାରା ଓଡ଼ିଶାରେ ବି କୋଉଠି ଦେଖିନାହିଁ କି ଶୁଣିନାହିଁ । ମୋର ବିଶ୍ୱାସ ପୁରୀ, ଭୁବନେଶ୍ୱର, କୋଣାର୍କର ପ୍ରାଚୀନ ଶିଳ୍ପୀମାନଙ୍କ ଭଳି ସେମାନଙ୍କର ବଂଶ ଲୋପ ହୋଇଗଲାଣି ଓ ଆମ ରାଜ୍ୟ କ୍ରମଶଃ ପ୍ରତିଭାର ଅବକ୍ଷୟ ଆଡ଼କୁ ମୁହାଁଇ ଯାଉଛି ।

ନିହାଲ ମଉସା ଥିଲେ ଆମ ଗାଁରେ ସେକାଳର ବୟୋଜ୍ୟେଷ୍ଠ-ମାନଙ୍କ ମଧ୍ୟରୁ ଅନ୍ୟତମ ବୃଦ୍ଧ ଓ ମାନ୍ୟଗଣ୍ୟ ବ୍ୟକ୍ତି । ନିହାଲସିଂହ ନାମରେ ହିଁ ସେ ସୁନାମଧନ୍ୟ ହୋଇଥିଲେ । ସେ ଥିଲେ ରାଜପୁତ୍ କ୍ଷତ୍ରିୟ ବଂଶଧର । ତାଙ୍କ କହିବା ମତେ, ସାତ ପୁରୁଷ ତଳେ ଦିଲ୍ଲୀର ବାଦଶାହା ଆକବର୍‌ଙ୍କ ସମୟରେ ଓଡ଼ିଶା ସୁବାର ଜମିଜମା ବନ୍ଦୋବସ୍ତ (ସେଟେଲମେଣ୍ଟ) କରି ରପୂଷ୍ଟି ଧାର୍ଯ୍ୟ କରିବା ଲାଗି ଓ ମୁକୁନ୍ଦଦେବଙ୍କ ଅନ୍ତେ ରାମଚନ୍ଦ୍ର ଦେବଙ୍କୁ ଗଜପତିର ସିଂହାସନରେ ବସାଇବା ଲାଗି ଓ ଜଗନ୍ନାଥ ମନ୍ଦିରରେ ପୂଜା ପାର୍ବଣର ସ୍ଥାୟୀମାନ୍ତ ଧାର୍ଯ୍ୟ କରିବା ଲାଗି, ସାହନ୍‌ସାହ ଆକବର ଯେଉଁ ରାଜପୁତବୀର ମାନସିଂହଙ୍କୁ ଓଡ଼ିଶା ପଠାଇ ଥିଲେ, ତାଙ୍କର ସାଙ୍ଗରେ ଆସିଥିଲେ ପ୍ରାୟ ଦଶ ହଜାର ରାଜପୁତ ବୀର ସୈନିକ । ଅଶ୍ୱାରୋହୀ ଓ ଗଜାରୋହୀ ସେହି ରାଜପୁତ ବୀରମାନେ ମାନସିଂହଙ୍କ ଦେହରକ୍ଷୀ ରୂପେ ଆସିଥିଲେ ଏବଂ ଯଦି ଓଡ଼ିଶାର ରାଜ-ସିଂହାସନ ଲାଗି ବିବାଦରତ ରାଜପୁରୁଷମାନେ ମାନସିଂହଙ୍କ ଫରମାଣ ସ୍ୱୀକାର କରି ନ ଥାନ୍ତେ ଓ ସାହନସାହ ଆକବରଙ୍କ ବଶ୍ୟତା ସ୍ୱୀକାର କରି ନ ଥାନ୍ତେ—ଅଥବା ମାନସିଂହଙ୍କୁ ଆକ୍ରମଣ କିମ୍ବା ଅପମାନିତ କରିଥାନ୍ତେ—କିମ୍ବା ବିଦ୍ରୋହ କରିଥାନ୍ତେ—ତେବେ ସେମାନେ ନିଶ୍ଚୟ ଗଜପତି ବାହିନୀ ସଙ୍ଗେ ମୁକାବିଲା କରିଥାନ୍ତେ । ମାତ୍ର ସବୁ ଭଲରେ ତୁଟିଗଲା । ମାନସିଂହ ତାଙ୍କର ସବୁକାର୍ଯ୍ୟ ସୁରୁଖୁରୁରେ ଶେଷକରି ଦିଲ୍ଲୀ ଫେରିଗଲେ । ମାତ୍ର ତିନିହଜାର ସରିକ ରାଜପୁତ ବୀର ଆଉ ଏ ଦେଶ ଛାଡ଼ି ଫେରିବାକୁ ଚାହିଁଲେ ନାହିଁ । ରାଜପୁତନା ମରୁଭୂମି ହେଲେ ମଧ୍ୟ ରାଜପୁତମାନଙ୍କର ଅତିପ୍ରିୟ ମାତୃଭୂମି । କିନ୍ତୁ ଓଡ଼ିଶା ହେଲା ଧର୍ମର ଦେଶ—ଦିଅଁ ଦେବତାଙ୍କ ଦେଶ—ବିଶେଷ କରି ପତିତପାବନ ପୁରୁଷୋତ୍ତମ ଦାରୁବ୍ରହ୍ମ ଜଗନ୍ନାଥଙ୍କ ଦେଶ । ଜଗନ୍ନାଥଙ୍କ ଉପରେ

ଆଖି ପଡ଼ିଲାପରେ ଆଉ ଏହି ଜଗନ୍ନାଥ ଦେଶ ଛାଡ଼ି ଯିବାକୁ ମନ ବଳିଲା ନାହିଁ । ବାସ୍ , ସେଇଦିନୁ ଯେଉଁ ତିନିହଜାର ରାଜପୁତ ବୀର ଓଡ଼ିଶାରେ ରହିଗଲେ, ସେଇମାନଙ୍କ ବଂଶ ବଢ଼ିବଢ଼ି ବର୍ତ୍ତମାନ ଓଡ଼ିଶା ସାରା ବ୍ୟାପି ଯାଇଛି ।

କହ୍ନିବା ବାହୁବଳୀ—ଆମ ନିହାଲ ମଉସା ସେହି ଜଗନ୍ନାଥପ୍ରେମୀ ରାଜପୁତବୀର ବଂଶର ଏକ ଉଜ୍ଜ୍ୱଳ ନକ୍ଷତ୍ର । ଦେଖିବାକୁ ଦୀର୍ଘ ଛଅଫୁଟ ଲମ୍ବ । ଶାଳଗଛ ଭଳି ସିଧା ସଳଖ । ଚିକ୍କଣ ଶ୍ୟାମଳ ଦେହର ରଙ୍ଗ —ଖୁବ୍ ବଳିଷ୍ଠ ବପୁ—ହାତୀ ଶୁଣ୍ଢ ଭଳି ବର୍ତ୍ତୁଳ ଦୀର୍ଘ ଦୁଇ ବାହୁ । ଷଣ୍ଢର କାନ୍ଧ ଭଳି ଦୁଇଟି ବେଶ ଚଉଡ଼ା କାନ୍ଧ । କବାଟ ଭଳି ଛାତି । ମୁଣ୍ଡରେ ସାମାନ୍ୟ ତିଳକ ଉପରକୁ ଲମ୍ବା ସିନ୍ଦୂର କଳି । ନାକତଳେ ଦୁଇପଟ ବୀର ନିଶ ହାତୀକାନ ପରି କାନର ବଉଳ ଦୁଇଟିକୁ ଅତିକ୍ରମ କରି ଯାଇଥାଏ । ପିନ୍ଧାରଣରେ ବେଶ୍ ସଫା ଧୋତି, ଆଉ କାନ୍ଧରେ ପାକଲା ଗାମୁଛାଟିଏ । ହାତରେ ବହୁ ପିତଳ ମୁଦ ବନ୍ଧା ହୋଇଥିବା ମଜବୁତ୍ ବାଡ଼ି ଖଣ୍ଡିଏ । ସୋରିଷ ତେଲ ବୋଳା ହୋଇ ହୋଇ ପାଚି ଯାଇଥାଏ । କାନ୍ଧରେ ସିପିଲି ଗୁନ୍ଦୁଆ ଜନାରେ ତିଆରି ବଗଟି ଏକ ବଟୁଆ ଝୁଲୁଥାଏ । ତା' ଭିତରେ ଖଣ୍ଡାଭଳି ଚକ୍ ଚକ୍ ଧାରୁଆ ଗୁଆକାତି—ଅଧସେର ଓଜନର ବମ୍ବେ ଫାଳଗୁଆ—କଡ଼ାଏ ଅନ୍ଦାଜ ପାନ ପଶିଲା ଭଳି ମସ୍ତବଡ଼ ଗୋଟାଏ ପିତଳ ଚୂନଖାଇ । ବାଲେଶ୍ୱରୀ ଦୋକାନରେ ଧନିଆ, ପାନମଧୁରୀ, କଳାଜୀରା, ପୋସ୍ତ, ଜାୟୂର୍ନୀ ଓ ପୁଷ୍ପ ବାହେଲୀ ପାଇ ପ୍ରସ୍ତୁତ ଚୂଆ ମିଶି ଅପୂର୍ବ ଗୁଣ୍ଡିରେ ଭର୍ତ୍ତି ଗୋଟାଏ ରୂପା ଡବା । ଏବଂ ଅଳେଇଚ, ଗୁଜୁରାତି, କର୍ପୂର ଦାନା, ଲବଙ୍ଗ ଓ ଜାଇଫଳ ଇତ୍ୟାଦି ମସଲା ସଙ୍ଗେ ଗୋଟିଏ ମସ୍ତବଡ଼ ମୂଷଳିଆ କେତକୀ ଖଇର ।

ଆମ ଗାଁର ଦକ୍ଷିଣ ପଟକୁ—କୃଶକାୟା କନ୍ଦୁ ପୂତମାସ, ପୁରାଣ ପ୍ରସିଦ୍ଧା ପ୍ରାଚୀନଦୀ । ଏବଂ ନଦୀ ଆରପଟକୁ ଅରଣ୍ୟ । ସେ ଅରଣ୍ୟକୁ ଆମ ପିଲାଦିନେ ନଟା କହୁଥିଲେ । ସେହି ଅରଣ୍ୟରେ ଆମ ପିଲାଦିନେ ମଧ ବାଘ, ଭାଲୁ , ହରିଣ, ଚିତିଆ ଆଦି ଥିଲେ । ଏବଂ ସେହି ଅରଣ୍ୟ

ଭିତରେ ଯେଉଁ ଗାଁଟି ଥିଲା ତା'ର ରାଜନୈତିକ ନାଁ ହେଲା ଗୋନାସିଂହ ପାଟଣା । ସାତ ପୁରୁଷ ପୂର୍ବେ ଗୋନାସିଂହ ନାମକ ଜଗନ୍ନାଥଭକ୍ତ ରାଜପୁତବୀର ଏହି ଗ୍ରାମଟିକୁ ବସାଇଥିଲେ । ମାତ୍ର ଆମେ କହୁଥିଲୁ "ସିଂହ ସାଇ ।" ପ୍ରକୃତରେ ଏହି ଗ୍ରାମରେ ବାସ କରୁଥିବା ସିଂହମାନେ ବଳ ଓ ସାହସରେ ସିଂହ ସଦୃଶ ଥିଲେ । ସେମାନେ ସମସ୍ତେ ଲଠିଖେଳ ବନାଟିବୁଲା, ଫରୀଖେଳ ଇତ୍ୟାଦିରେ ଓସ୍ତାଦ୍ ଥିଲେ—ଏବଂ ଆଖଡ଼ା ଘରେ ପ୍ରତିଦିନ ଏସବୁ ବିଦ୍ୟା ଅଭ୍ୟାସ କରି ସାଧୁଥିଲେ । ଅପେକ୍ଷାକୃତ ଭାବେ ଏଇ ସିଂହମାନେ ସ୍ୱଭାବ ଚରିତ୍ରରେ ଥିଲେ ସରଳ, ସହଜ, ପ୍ରାଣବନ୍ତ, ବଚନନିଷ୍ଠ, ଶରଣଦାୟୀ, ତ୍ୟାଗୀ, ସ୍ପଷ୍ଟବାକ୍, ଉଚ୍ଚମନା, ଆତ୍ମମର୍ଯ୍ୟାଦାସମ୍ପନ୍ନ ଓ ଅଭିଜାତ । ସେମାନେ ଯେପରି ଦୁଃସାହସୀ ଥିଲେ, ସେହିପରି ମଧ୍ୟ ଥିଲେ ଭଦ୍ର ଓ ବିନୟୀ । ଆମ ଗାଁରେ ମଧ୍ୟ ଗୋଟିଏ ବଡ଼ ମୁସଲମାନ ବସ୍ତି ଅଛି । ସେତେବେଳେ ହିନ୍ଦୁ ମୁସଲମାନଙ୍କ ଭିତରେ ବହୁଭାବେ ସଂପ୍ରୀତି ରହୁଥିଲେ ବି ବେଳେ ବେଳେ ହୋଲି ଦଶହରା ଆଦି ପର୍ବରେ ଖଣ୍ଡେ ପଟେ ଫଉଜଦାରୀ ଲାଗି ଯାଉଥିଲା । ସେତେବେଳେ ଏହି ରାଜପୁତ ସିଂହମାନେ ଜୀବନ ମୂର୍ଚ୍ଛି-ଦେଇ ଫଉଜଦାରୀକୁ ତେଇଁ ପଡ଼ନ୍ତି । ଆଜି ମଧ୍ୟ ମୋ ଗାଁର ସେହି ବୀରପୁଙ୍ଗବ, ସରଳ ଚିତ୍ତ, ଧର୍ମରକ୍ଷଣକାରୀ, ଦୁଃସାହସୀ, ଭଦ୍ର, ମଧୁରବାକ୍, ଅଭିଜାତ ସିଂହପୁରୁଷମାନଙ୍କ କଥା ମନେ ପଡ଼ ସେମାନଙ୍କ ଉଦ୍ଦେଶ୍ୟରେ ମଥା ନତ ହୋଇଯାଏ । ଶ୍ରୀଧର ସିଂହ, ଧର୍ମ ସିଂହ, ନାଥ ସିଂ, ଜୟୀ ସିଂ, ମଦନ ସିଂ, କୋକ ସିଂହ ପ୍ରମୁଖ ସିଂହ ପୁରୁଷ-ମାନେ ମୋ ପିଲାଦିନେ ଖୁବ୍ ବୁଢ଼ା ହୋଇ ଯାଇଥିଲେ—କିନ୍ତୁ ଆମେ ସବୁ ସେମାନଙ୍କ ବିଷୟରେ ବହୁ ଲୋମହର୍ଷକ କାହାଣୀମାନ ଶୁଣିଛୁ । ମୁଁ ତ ପିଲାଦିନେ ସେହିମାନଙ୍କୁ ଦେଖି ରାଜପୁତନାର ରାଣାପ୍ରତାପ ସିଂହ ପ୍ରମୁଖ ବୀରପୁରୁଷମାନଙ୍କୁ କଳ୍ପନାରେ ବୁଝିଥିଲି ।

କିନ୍ତୁ ନହାଲ ସିଂହ ମୋ ପିଲାଦିନେ ଖୁବ୍ ବେଶୀ ବୁଢ଼ା ହୋଇ ଯାଇ ନ ଥିଲେ । ତାଙ୍କ ଦେହରେ ସେତେବେଳେ ଅମାପ ବଳ ଥିଲା । ସେ ଥିଲେ ଅପେକ୍ଷାକୃତ ଧର୍ମାନୁଷ୍ଠା[illegible] ଏବଂ ତାଙ୍କ ସାନ ଭାଇ ଗଞ୍ଜେଇ

ଅଫିମ ଖାଉଥିଲେ । ନହାଲ ମଉସାଙ୍କର ନିଜର ପିଲାପିଲି ନ ଥିଲେ । ସେ ତାଙ୍କର ଭାଇର ପୁଅକୁ ପୁଅ କରି ପାଳିଥିଲେ । ମାଉସୀ ଥିଲେ ଲକ୍ଷ୍ମୀ ପ୍ରତିମା । ନହାଲ ମଉସା ଗୋଟିଏ ବନ୍ଧୁକ ରଖିଥିଲେ । ସେ ବନ୍ଧୁକରେ ସେ ଚଢ଼େଇ ଶିକାର କରନ୍ତି । ମାତ୍ର ସେ ବନ୍ଧୁକରେ କେତୋଟି ବାଘ ଓ ଗଧିଆ ସେ ମାରିଛନ୍ତି ବୋଲି ଆମେ ଶୁଣିଛୁ—କିନ୍ତୁ ସ୍ୱଚକ୍ଷୁରେ ଦେଖିନାହୁଁ । ତା' ଛଡ଼ା ସେ ଗୋଟିଏ ଧନୁଶର ଏବଂ ଗୋଟିଏ ବାଟୁଳିଖଣ୍ଡା ମଧ୍ୟ ରଖିଥିଲେ । ବେଳେ ବେଳେ ତାଙ୍କୁ ବନ୍ଧୁକ ଧରି ବା ଧନୁଶର କାନ୍ଧରେ ପକାଇ ବା ବାଟୁଳି-ଖଣ୍ଡା କାନ୍ଧରେ ଗଳାଇ ଜଙ୍ଗଲରେ ବା ଜଙ୍ଗଲ ପାଖାପାଖି ତୋଟା-ମାନଙ୍କରେ ବୁଲିବାର ଦେଖା ଯାଉଥିଲା । ବର୍ଷା ବେଳେ ନଈରେ ପାଣି ଥିଲାବେଳେ ବା ଜୋଡ଼ ନାଳୀରେ ପାଣି ଥିଲାବେଳେ ସେ ଏକାବେଳକେ ଚାରି ପାଞ୍ଚଟା ବନଶିଖଣ୍ଡା ଧରି ଦିନଯାକ ବସି ମାଛ ମଧ୍ୟ ମାରୁଥିଲେ । ଆମେ ତାଙ୍କୁ ଦ୍ୱିପ୍ରହରରେ ଚିହ୍ନିବା ବେଳକୁ ସେ ଆଉ କାମ ଧାମ କିଛି ନ କରି, ଚଢ଼େଇ ଶିକାର କରିବା, ମାଛ ଧରିବା ନଟୁବା ବଜାର ଉପରେ ବରଗଛ ମୂଳେ ଆଉ କେତେଜଣ ବୟୋଜ୍ୟେଷ୍ଠଙ୍କ ସଙ୍ଗେ ବସି ପଶା ଖେଳିବା ଇତ୍ୟାଦି ସୌଖୀନ କାମରେ ଦିନ ଅତିବାହିତ କରୁଥିଲେ । କିନ୍ତୁ ନହାଲ ମଉସା ଯୋଉଠି ଯାହା କରୁଥାନ୍ତୁ ନା କାହିଁକି, ଯେଉଁପରି ଅବସ୍ଥାରେ ଥାଆନ୍ତୁ ନା କାହିଁକି, କେହି ଯଦି ତାଙ୍କୁ କଥା କହିବାକୁ ଉସୁକାଇ ଦେଲା—ତେବେ ସବୁ ଛାଡ଼ି ସେ କଥା ହିଁ ଗପି ଚାଲିବେ । ଏବଂ ଏହି କଥା ଗପିବାବେଳେ ତାଙ୍କର ଆଉ କିଛି ସୂଚି ନ ଥାଏ । ତାଙ୍କୁ ଗପିବା ନିଶା ଲାଗିଯାଏ । ସେ ବିଭୋର ହୋଇଯାନ୍ତି । ତାଙ୍କର ମନ ବାସ୍ତବଜଗତରେ ପାଦେକ ରଖି ଆଉ ତିନପାଦରେ କଳ୍ପନା ଜଗତରେ ଠିଆ ହୋଇଯାଏ । କମ୍ପା ତାଙ୍କ କଳ୍ପନାରେ ଡେଣା ଲାଗିଯାଏ । ସେ କଥା ଯାନରେ ଚଢ଼ି କୁଆଡ଼େ ନାହିଁ କୁଆଡ଼େ ଉଡ଼ି ଚାଲନ୍ତି । ତା' ଛଡ଼ା, ସେ ଗୋଟିଏ କଥା ଆରମ୍ଭ କଲେ, ସେଇ କଥାଟି କେବଳ ଶେଷ ପର୍ଯ୍ୟନ୍ତ ଗପନ୍ତି ନାହିଁ—କଥାରୁ କଥାମାନ ବାହାରିପଡ଼େ । ମୂଳ କଥାରୁ କେତେ ଶାଖା କଥା ବାହାରିଯାଏ—ପୁଣି କେତେ ଉପକଥାମାନ ଆସି ମୂଳକଥା ସାଙ୍ଗେ ମିଶିଯାଏ । ତାଙ୍କ କଥା

ସତେକି ଗୋଟିଏ ନଦୀ । ଉତ୍‌କୂଳ ଉଚ୍ଛଳ ଗତିରେ ବହିଗଲେ—ବେଳେ ବେଳେ ବନ୍ୟାକୁଳିତା ହୋଇ ଏଣେତେଣେ ମାଡ଼ିଯାଏ ।

ଧରନ୍ତୁ – ନହାଲ ମଉସା ପଶା ଖେଳିବା ପୂର୍ବରୁ ବରଗଛମୂଳେ ବସି ନିଜ ବଟୁଆରୁ ପାନଖଣ୍ଡେ ଭାଙ୍ଗି ଖାଉଛନ୍ତି ଓ ପାଖ ଲୋକମାନଙ୍କୁ ପାନ ବାଣ୍ଟୁଛନ୍ତି । ତାଙ୍କ ଖେଳସାଥୀ ଶୋଭନ ଖାଁ ହୁଏତ ଏଯାଏ ଆସି ପହଁଚି ନାହାନ୍ତି । ଆପଣ ସେବାଟେ ଯାଉ ଯାଉ ନହାଲ ମଉସାଙ୍କୁ ସେଠି ଦେଖି ନମସ୍କାରଟିଏ ପକାଇ ଚାଲି ଯାଉଛନ୍ତି—ହଠାତ୍ ନହାଲ ମଉସା ଡାକଦେବେ – "କିରେ ଅଖାଇନାମର ପୁଅ !" କିମ୍ବା, "କିରେ କୋଠପୁଅ ! କୁଆଡ଼େ ଚାଲିଛୁ ? ହାତରେ କଅଣ ସେଇଟା ଧରିଛୁ ?" ଆପଣ ହୁଏତ ହାତରେ ଧରିଥିବେ ଦେଶୀଆମ୍ବ ଖଣ୍ଡିଏ ଏବଂ ତାହାହିଁ କହିଦେବେ । ସେଇଠୁ ମଉସା କହିବେ—ଆଇଲୁ ଆଇଲୁ ଦେଖିବା ସେ ଆମ୍ବଖଣ୍ଡକ । ତା'ପରେ ଆମ୍ବଖଣ୍ଡିକ ନଡ଼ାଚଡ଼ା କରି କହିବେ—ଆରେ କି ଆମ୍ବ ଏଖଣ୍ଡ କୋଉଠୁ ଆଣିଲୁ ? ଏ କ'ଣ ଦେଶୀ ଆମ୍ବ ? ସ୍ୱାଃପ ବାଉଁଶ କରଣ୍ଡୀ ମାର୍ଗେ ହୋଇଛୁ । ଦେଶୀଆମ୍ବ ଆଣିଥିଲା ଆମ ସପନ ସିଂହ—ତା' ମାମୁଁ ଘର ତଳମାଳରୁ । ସେ ଆମ୍ବ-ଖଣ୍ଡକ ତା' ମାମୁଁ ମହମା ସେନାପତି ଖୋଳିଥିଲା ତା' ବାଡ଼ିରୁ । ସେ ତ ସ୍ୱାଃପ କହିଲ ନଈ ପଟୁ ପଡ଼ିପଡ଼ି ସେ ଜାଗାସବୁ ସୁନା ହୋଇ ଯାଇଛି । ମହମା ସେନାପତି ଆମ୍ବ ଖୋଳୁଛି ତ ଖୋଳୁଛି । ଖଣ୍ଡେ ଆମ୍ବ ଖୋଳି ଖୋଳି ତା' ନାହାକାନାଉମୂଳ ପାଇଲା ବେଳକୁ ଚାରିଗୁଣ୍ଠ ଜମିରେ ଗହ୍ୱରେ ଗାତ ହୋଇଗଲାଣି । ଶେଷକୁ ପାଣି ବି ଝରିଲା ସେ ଗାତରେ । ପଚାଶ ଲୋକ ଲାଗି ସେ ଆମ୍ବଟାକୁ ଟାଣିଲେ । ତା' ପରେ ବ୍ରହ୍ମଦାରୁକୁ ଖଣ୍ଡ ଖଣ୍ଡ କଲାପରି କାଟି ଶଗଡ଼ରେ ଲଦିଲେ । ଆମ ସପନ ସିଂହ ଯୋଉ ଖଣ୍ଡକ ଆଣିଲା ତାକୁ ବି ସେ ଶଗଡ଼ରେ ବୋହିକରି ଆଣିଥିଲା । ଆମ ଘରକୁ ଖଣ୍ଡେ ଦେଇଥିଲା ପାଞ୍ଚ-ଛଅ ବିଶା ହେବ । ଆମ ଅଭବୋଉ ତାକୁ ଗୁଅ ଘିଅ ଫୁଟଣ ଦେଇ ଭଜିଦେଲା । ବାପ ! ତୁମକୁ ମିଛ ମନେ ହେବ, ସେ ବାସ୍ନାରେ ଚଉଦିଗ ମହକିଗଲା । ମୁଁ ତ ବିଶାଏ ଆମ୍ବଭଜା ଏକା ଖାଇଦେଲି ସେ ତ ଆମ୍ବ ନୁହେଁ ! ସତେ କି ଆଳୁ ! ଲହୁଣୀ ଭଳି ନରମ ଯେମିତି ମିଷ୍ଟ୍ରୁକି ବି ସେମିତି !

ଏ ଗପ ଏତକରେ ଶେଷ ହୁଏ ନାହିଁ—ମଉସାଙ୍କ ଖେଳସାଙ୍ଗ ଶୋଭନ ଖାଁ ଆସିଗଲେ ବ ଆଉ ପଶାଖେଳ ଜମେନାହିଁ । ଶୁଣିକି ଲୋକେ ଜମିଯାନ୍ତି—ଏବଂ ସେହି ଦେଶୀଆଙ୍କ କଥାରୁ ବହୁ ଶାଖା ବାହାର ଗଡ଼ଅଧଯାଏ ଗୃଲଥାଏ । ତାଙ୍କ ପାଟି କ୍ଳାନ୍ତ ହୁଏନାହିଁ—କ ଆମ କାନ ବ ହାଲଆ ହୁଏନାହିଁ ।

ହନେ ସେମିତ କହାଲ ମଉସା ତାଙ୍କର ଚଢେଇ ଶୀକାର କଥା ଗପୁଥିଲେ । "ବୁଝିଲ ବାପ ! ତୁମକୁ ମିଛ ତ ମତେ ସତ । ମତେ ସେତେବେଳେ ବଶଶି ବତଶି ଉମର ହେବ । ବନ୍ଧୁକ ଧର ଚଢ଼େଇ ଖୋଜୁଥାଏଁ । ସେତେବେଳେ ଆମର ଏହି ଖଜୁରିଆ, ଦାମୁଡ଼ୀ, ପୋଖରୀକ, ଆଉ ଗହ୍ୱର ଜୋଡ଼ନାଳୀକ ବହୁତ ଚଢ଼େଇ ପଡ଼ୁଥାନ୍ତି । ହଂସ, ହଂସରଳୀ, କାଜ, ସାରସ···ମୁଁ ବନ୍ଧୁକଟି ଧର ସେଆଡେ ବାହାରଥାଏ—କୁତାମଚଣ୍ଡୀଙ୍କ ପାଖେ ଗୋଟାଏ ମସ୍ତ ବରଗଛ ଥାଏ—ନାଲ ନାଲ କୋଳ ଭର୍ତ୍ତି ହୋଇଥାଏ ଗଛଯାକ । ମୁଁ ଗୃହିଁହଏ ତ ଲକ୍ଷେ ଅନ୍ଦାଜ ହରଡ଼ ଚଢ଼େଇ ଗଛରେ ଗୁଳ ହୋଇଯାଇଛନ୍ତି—ବରଫଳ ଖାଉଛନ୍ତି—କଚର ମିଚର ହେଉଛନ୍ତି । ମୋର ତ ବାପ ଲୋଭ ହୋଇଗଲା । ମୁଁ ବରଗଛ ମୂଳେ ଠିଆହୋଇ ବନ୍ଧୁକଟା ଟିପି-ଦେଲ । ଟିପିଦେଲ ତ ବାପ–ଆଉ ଦେଖିବୁ କ'ଣ ? ବରଗଛରୁ କୋଳ ଝଡ଼ିଲା ଭଳିଆ ଗୋଟି ଗୋଟି ହୋଇ ହରଡ଼ ଚଢ଼େଇ ଗଛରୁ ତଳକୁ ଖସି ପଡ଼ୁଥାନ୍ତି—ମୁଁ ଥକ୍କା ହୋଇ ଠିଆ ହୋଇ ଦେଖୁଥାଏ । ପଦରକ ଯାଏ ସେ ଶଳା ଚଢ଼େଇ ଖସୁଥାନ୍ତି । ଗଉଡ଼ସାହି ଚନ୍ଦରୀ ବେହେରା ହାତରେ ଗାଁକୁ ଖବର ଦେଲି—ଆମ ଗୋବର୍ଦ୍ଧନ ଶଗଡ଼ ଓଦର ନେଇ ଆସିଲା । ଓଦରରେ ସବୁତକ ହରଡ଼ ଚଢ଼େଇ ପୂରେଇଲୁ । ଆଉ ସେ ଓଦରରେ ଜାଗା ନ ଧରେ । ଗଉଡ଼ ସାହିଆ ମଧ ଟୋକେଇ ବାଉଁସିଆ ଧର ଜମା ହୋଇଗଲେ । ଯେ ଯେତେ ପାରଲେ ବୋହିନେଲେ । ସାହିଯାକ ହରଡ଼ ଚଢ଼େଇ ବାଣ୍ଟିଲୁ । କେତେ ଖାଇବୁ ? ସେ ଶଳା ଚଢ଼େଇ ପୁଣି ଏଡ଼କ ଚକ୍କଣ ହୋଇଥାନ୍ତି ? ଗୋଟାଏ ଗୋଟାଏ ଚଢ଼େଇରୁ ଛଟାଙ୍କିଏ ଅନ୍ଦାଜ ଘିଅ ବାହାରୁଥାଏ ରାନ୍ଧିଦେଲାବେଳେ ।"

...ଏ ଗପ ମଧ୍ୟ ଏତିକରେ ସରି ନଥିଲା । ମତେ କିନ୍ତୁ ଖୁବ୍ ସଂକ୍ଷେପରେ କହିବାକୁ ପଡ଼ୁଛି ଏବଂ ମୁଁ ମଧ୍ୟ ସ୍ୱୀକାର କରୁଛି ଯେ ମୋ ଲେଖନୀର ସେ ଶକ୍ତି ନାହିଁ ଯେ ନିହାଲ ମଉସାଙ୍କର ସେହି ଚମତ୍କାରୀ କଥନ-ଶୈଳୀଟିକୁ ସେହିଭଳି ଉପଭୋଗ୍ୟ କରି ପ୍ରକାଶ କରି ପାରିବି ।

ସେମିତି ମଧ୍ୟ ନିହାଲ ମଉସାଙ୍କର ଗଧିଆ ଶିକାର କଥା । ଦିନେ ଆମ ଭିତରୁ କେହି ଜଣେ ଆସି କହିଦେଲା ଯେ ଧଡ଼ି ମହାପାତ୍ରଙ୍କ ପାନବରଜ ଭିତରେ କୁଆଡ଼େ ଗୋଟେ ଗଧିଆ ପଶିଥିଲା । ଖବର ପାଇ ମହାପାତ୍ର ସାଇଆ ସେ ପାନବରଜକୁ ଠେଙ୍ଗା ବାଡ଼ି ଧରି ଘେରି ରହିଲେ । ମାତ୍ର ଗଧିଆଟା ଏମିତି ଝଞ୍ଜରେ ପାନ ବରଜ ଭିତରୁ ବାହାରି ଆସି ଲୋକଙ୍କ ଭିତରେ ପଶି ଗମ୍ଭୀର ବଳରେ ଦଉଡ଼ିଲା ଯେ ତା' ପଛରେ ଗୋଡ଼େଇ ଗୋଡ଼େଇ ଲୋକେ ଥକିଗଲେ—କିନ୍ତୁ ସେ ଜଲାରପୁର ପାଖ ମଶାଣି ଭିତରେ କୋଉ ବୁଦା ଗହଳରେ କୋଉଠି ଲୁଚିଗଲା । ବାସ୍—ଏତିକି କଥାରୁ ନିହାଲ ମଉସା ଆରମ୍ଭ କଲେ—

ଆରେ ବାପ ! ସେଇଟା କ'ଣ ଗଧିଆ ? ଆଜିକାଲି କ'ଣ ଆଉ ଏ ଗାଁରେ ସେ ଗଧିଆ ଅଛନ୍ତି ? ଏବେ ଯୋଉ ଦୁଇ ଗୁଟିଏ ଗଧିଆ ଦେଖୁଛ, ସେ ଗୁଡ଼ାକ ସବୁ ମାଇ ବିଲୁଆଙ୍କ ଠାରୁ ଜନ୍ମ ହୋଇଛନ୍ତି । ଗଧିଆଙ୍କ କଥା କହିଲେ ତୁମେମାନେ ବିଶ୍ୱାସ କରିବ ନାହିଁ । ମତେ ସେତେବେଳେ ତିରିଶି ବତିଶି ବର୍ଷ ଉମର । ସେତେବେଳେ ଆମର ଏ ଛୋଟା, ବୁଦା, ବଣଯାକ ଗଧିଆ ଆଉ ହେଟାବାଘ ଭର୍ତ୍ତି । ଯୁଆଡ଼େ ଦେଖିବ, ଗଧିଆଟାଏ ହେଡ଼ା ରକଟୁ ଥିବ । ଆଜି ସ୍ତ୍ରୀ ଘରୁ ଛେଳିଟାଏ —କାଲି ତା' ଗୁହାଳରୁ କଅଁଳା ବାଛୁରିଟାଏ ଘୋରଙ୍କ ଭଳି କୋଉ ଖଞ୍ଜରେ ନେଇ ପଳେଇବେ ଶଳାଏ । ବେଳେ ବେଳେ କଅଁଳା ପିଲା-ଟାକୁ ବି କାମୁଡ଼ି ନେଇ ବଣକୁ ଖସିଯିବେ । ସେତେବେଳେ ଶଳାଏ ଘୋର ଉତ୍ପାତ କରୁଥାନ୍ତି । ଦିନକର କଥା । ସୂର୍ଯ୍ୟ ବୁଡ଼ୁ ବୁଡ଼ୁ ହେଉଥାନ୍ତି । ମୁଁ କ'ଣ କଲିନା, ନଈ ପାଖ ସେଇ ଗଡ଼ାଣିରେ ବସି ଗୋଟେ ବେତବୁଦା ମୂଳେ ଝାଡ଼ା ଫେରୁଥାଏ । ମୋ ପାଖରେ ଥାଏ ଗୋଟିଏ

କଣ୍ଟା ବାଉଁଶର ଠେଙ୍ଗୁଣୀ । ସେ କଣ୍ଟାବାଉଁଶ ବାବୁ ଆମର ଏ ଅଞ୍ଚଳରେ କୋଉଠି ମିଳେ ନାହିଁ । ତାକୁ ଆଣିଥିଲି ଆମ ବାଁ ସାଇର ଗଜଆ ଗଉଡ଼ । ତା' ଶଶୁର ଘର ହେଉଛି ସେଣେ ଗଡ଼ଜାତରେ ଢଗିରିଆ । ତା' ଶଳାର କଣ୍ଟାବାଉଁଶ ବେପାର । ସେଇ ଦେଇଥିଲା ଗଜଆକୁ ଦ' ଖଣ୍ଡ ଠେଙ୍ଗୁଣୀ । ସେ ଠେଙ୍ଗୁଣୀ ତେମେମାନେ ଆଉ ଏଇନେ କୁଆଡ଼ୁ ଦେଖିବ ? ଆଉ କ'ଣ ସେ ସବୁ କଣ୍ଟା ବାଉଁଶ ଝାଡ଼ କୋଉଠି ଅଛି ଯେ ! ସବୁ ତ ଶଳେ ହାଣିହୁଣି ସଫା କରି ଦେଲେଣି ! ସେ ତ ବାଉଁଶ ନୁହଁ—ଯେମିତି ଲୁହା ! ସେଥିରେ ପୁଣି ଗୋବା ଗୋବା ବାହାରିଥାଏ । ସେଥିରେ କଷିକରି ପାହାରେ ପିଟିଦେଲେ, ହାତ୍ତିଭଳିଆ ଜନ୍ତୁର ମୁଣ୍ଡ ଫାଟି ଦ' ଖଣ୍ଡ ହୋଇଯିବ । ମୁଁ ତ ବାପ ତଳକୁ ମୁହଁ ପୋତି ଝାଡ଼ା ଫେରୁଛି । ଠେଙ୍ଗୁଣୀଟି ପାଖରେ ଥୋଇଛି । ହଠାତ୍ ଖସ୍‌ଖସ୍ ଶୁଣି ଚାହିଁଦେଏ ତ ଗଧିଆଟାଏ ଧପେଇ ଧପେଇ ଦଉଡ଼ୁଛି । ସେ ଶଳା ପାଣି ପିଇବାକୁ ନଈବନ୍ଧ ଉପରକୁ ଉଠିଲା । ମୁଁ ଭାବିଲି—ହଉ ଯା' ଯା'—ତୋ' ସୁଖରେ ତୁ ପାଣି ପିଇ ତୋ' ବାଟରେ ଚାଲିଯା । ଶଳା ସଞ୍ଜବୁଡ଼ିଆ ଦେଖି ଗାଁ ଭିତରକୁ ମତଲବ୍ ରଖି ପଶିବୁ ତ, ଦେଖିବୁରେ ବଲୁଆଘଇତାମାଆର କୁଆ ! ଏଇ ଠେଙ୍ଗୁଣୀରେ ତୋ ମୁଣ୍ଡ ଛତୁ କରିବ । ଏମିତି ଭାବୁଛି ବାପ; ତା ପଛକୁ ଆଉ ଗୋଟିଏ ଗଧିଆ ବି ନଈବନ୍ଧ ଉପରକୁ ଉଠିଲା । ମୁଁ ଭାବିଲି—ହଉ; ଅଣ୍ଡିରା ପଛେ ପଛେ ମାଈ ଚାଲିଛି । ପାଣି ପିଇସାରି ଯୋଡ଼ ପଡ଼ିବେ । ସେଇଟା ହେଲା ଯୋଗକୁ କାର୍ତ୍ତିକ ମାସ । କିନ୍ତୁ ମୋ ଆଖି ପଲକ ପଡ଼ୁଛି କି ନାହିଁ, ଆରେ ବାପ; ତା' ପଛକୁ ଆଉ ଗୋଟାଏ—ତା' ପଛକୁ ଆଉ ଗୋଟାଏ—ଏମିତି ଏମିତି ବାପ—ସେ ଶଳା ଗଧିଆ ପଲ କୋଉଠି ଥିଲେ—ମୁଁ ତ ବାପ ଗଣି ଲାଗିଛି—ସର୍ବମୋଟ ଦୁଇଶହ ନଅଟା ଗଧିଆ ଧାଡ଼ି ହୋଇ ଉଠିଲେ ନଈବନ୍ଧ ଉପରକୁ ପାଣି ପିଇବା ପାଇଁ । ମୋ ଗୁଣ୍ଡି ଟିକେ ନରମି ଗଲା । ମୋ ପାଖରେ ତ ଏଠି ବନ୍ଧୁକ ନାହିଁ ! ପାଖରେ ବି ଲୋକବାକ କେହି ନାହାନ୍ତି । ଡାକ ମାରିଲେ ଏ ଶଳା ଗଧିଆ ସବୁ ଚମକି ଯିବେ; ତା' ହେଲେ ପଲ୍ଲାକଯାକ ମୋ ଆଡ଼କୁ ଖେପି ଆସିବେ । ତା' ଛଡ଼ା, ପନ୍ଦର କୋଡ଼ିଏ ନୁହଁ—ଦୁଇଶହ ନଅଟା

ଗଧିଆ । ଗଧିଆଙ୍କ ପ୍ରକୃତ ବାପ, ଜାଣିଥିବ, ବାଘଙ୍କ ଠଉଁ ଭିନ୍ନେ । ଶଳା ଘର ନୁଉଁଚୁଣା ଜନ୍ତୁ । ଏକୁଟିଆ ଥିଲେ ମଣିଷକୁ ଡରିବେ । ମାତ୍ର ପଲ୍ଲଥିଲେ ଏକାଠି ମାଡ଼ଆସି ବେଢ଼ିଯିବେ । ବାଘ ଜନ୍ତୁ ହେଲା ରାଜପୁତ୍ର କ୍ଷେତ୍ରୀ ପିଲା । ଦୁର୍ଗାଙ୍କ ବାହନ । ସେ ପଲ୍ଲରେ ରହେ ନାହିଁ । ଏକୁଟିଆ ରହେ । ମାରିବ ତ ଏକୁଟିଆ ମାରିବ । ମରିବ ତ ଏକୁଟିଆ ମରିବ । ତା’ ଆଖିରେ ଆଖି ପଡ଼ିଗଲେ ମୁରୁଟି ରହିବ । ତେମେ ଯଦି ହଲଚଲ ନ ହୋଇ ତା’ ଆଖିକି ସେମିତି ଟାଣପଣରେ ଚାହିଁ ରହିବ, ସେ ଜମା ତୁମ ପାଖକୁ ଆସିବ ନାହିଁ । ତା’ ଛଡ଼ା, ସେ ଯଦି ଆକ୍ରମଣ କରିବ, ତୁମ ଆଗ ପଟରୁ । ରାଜା ପିଲା ସେ । ଘର ଇଜତ୍‌ଦାର୍‌ । ପଛରୁ କି କଣ୍ଡପଟିଆ, ତୁମଙ୍କୁ ନଜଣାଇ ସେ କେବେ ତୁମ ଉପରକୁ ଝାମ୍ପ ମାରିବ ନାହିଁ । ତା’ ଛଡ଼ା, ତୁମେ ତାର କ୍ଷତି ନକଲେ, କି ତାକୁ ନ ଧମକାଇଲେ, ସେ ତୁମକୁ ଆଉ ଆଖିରେ ବି ଚାହିଁବନାହିଁ । ଉଜାମାର୍ଗେ ମୁଣ୍ଡ ଟେକ ତା’ ବାଟରେ ସେ ଚାଲିଥିବ । କିନ୍ତୁ ଏ ଶଳା ଗଧିଆଗୁଡ଼ାକ ହେଲେ ଛୋଟ-ଲୋକ । ଚୋର ଡକାଏତଙ୍କ ଛୁଆ । ଶଳା ହାଡ଼ରେକଟା ଜନ୍ତୁ । ଏଗୁଡ଼ାକୁ ବିଶ୍ୱାସ ନାହିଁ । ଗୋଟିକିଆ ଗଧିଆ କଥା ଅଲଗା । ଶଳା ଯଦି ପଲ୍ଲେ ଥିବେ—ଆଖି ମୁରୁଟି ଏକାବେଳେକେ ଚହ୍ଲିକି ଆସିବେ । ପାଞ୍ଚ ମିନଟରେ ତୁମକୁ ଶେଷ କରିଦେବେ । ଖଣ୍ଡିଏ ହାଡ଼ ବି ତୁମର ବାକି ରଖିବେନାହିଁ ଗଙ୍ଗାରେ ପକାଇବାକୁ । ଏ ତ ସଂଖ୍ୟାରେ ଅଛନ୍ତି ଦୁଇଶହ ନଅ । ମୁଁ କ’ଣ କରିବ—ଏମିତି ଭାବୁଛି—ପ୍ରଥମ ଗଧିଆଟା ପାଣି ପିଇସାରି ନଈ ଭିତରୁ ବନ୍ଧ ଉପରକୁ ଉଠିଲା । ତା’ ପଛକୁ ଆଉ ଗୋଟେ, ତା’ ପଛକୁ ଆଉ ଗୋଟେ,—ଏମିତି ଏମିତି ସେ ପଲ୍ଲକଯାକ ଗଧିଆ ପୁଣି ଧାଡ଼ି ବାନ୍ଧି ଧାକୁଲୁ ମାକୁଲୁ ହୋଇ ବନ୍ଧ ଉପରୁ ତଳକୁ ଗଡ଼ିଲେ । ମୁଁ ଦେଖିଲି—ଶଳାମାନେ ବଣ ଭିତରକୁ ନଯାଇ ଆମ ଗାଁ ଆଡ଼କୁ ମୁହାଁଉଛନ୍ତି । ମୁଁ ସେଇଠୁ କ’ଣ କଲିନା, ଗୋଟେ ଛତିଆନା ଗଛ ମୂଳକୁ ଚାଲିଯାଇ, ତା ପାଖ ଗୋଟାଏ ମସ୍ତ ଉଇହୁଙ୍କା ପଛପଟେ ଲୁଚି ରହିଲି । ହାତରେ ଧରିଥାଏ ସେହି କଣ୍ଟାବାଉଁଶର ଠେଙ୍ଗୁଣିଟିକୁ । ସେମାନେ ଧାଡ଼ିବାନ୍ଧି ଯେମିତି ଆମ ଗୋହିରୀ ଭିତରକୁ ପଶିଲେ, ଆଉ ସବାଶେଷ ଗଧିଆଟା ଯେମିତି ମୋ ଆଖି ଆଗକୁ ଆସିଲା—ମୁଁ କ’ଣ

କଲନା; ସେଇ ଠେଙ୍ଗୁଣୀଟାକୁ ବୁଲାଇ ବୁଲାଇ ତାଙ୍କ ଆଡ଼କୁ କଷିକରି ଫିଙ୍ଗିଦେଲ । ବାପ ! କଣ କହିବ ? ତୁମକୁ ମିଛ ମତେ ସତ—ସେ ଶଳା ଠେଙ୍ଗୁଣୀଟା ସୁଦର୍ଶନ ଚକ୍ର ଦେଲକା ଘୂରି ଘୂରି ଘୂରି ଯାଇ ବାଜିଲା ଶେଷ ଗଧିଆଟାର ମୁଣ୍ଡରେ । ସେ ସେଇଠି ଟଳି ପଡ଼ିଲା । ତା'ପରେ ତ ଠେଙ୍ଗୁଣୀଟା ଘୂରି ଘୂରି ବାଜିବାଜି ବୁଲୁଥାଏ—ଆଉ, ଗୋଟି ଗୋଟି ହୋଇ ଗଧିଆ ସେଇଠି ଟଳି ପଡ଼ୁଥାନ୍ତି । ଏମିତି ଏମିତି ମୁଁ ଗଣୁଥାଏ—ଦୁଇଶହ ଆଠଟା ଗଧିଆ ସେଇଠି ଟଳିପଡ଼ି ମରିଗଲେ । କେତୁଟା ବି ଛଟରପଟର ହେଉଥାନ୍ତି । କିନ୍ତୁ ସବା ଆଗରେ ଥିବା ଗଧିଆଟା ମୁଣ୍ଡରେ ଆଉ ସେ ଠେଙ୍ଗୁଣୀଟା ବାଜି ପାରିଲା ନାହିଁ । ଘଙ୍ଗି ଯାଇ ତଳେ ପଡ଼ିଲା । ସେ ଶଳାଟା ଚର୍କିଯାଇ ମାରିଲା ଡିଆଁ । ମୁଁ କହିଲି—ଯାଆରେ ଶଳା କୋଙ୍କାଂଗୃଦା ! ତୋ' ବଳଚେଇ ବଳିଆର । ଆଜି ଖସିଗଲୁ । ବୁଝିଲ ବାପାମାନେ ! ସେଇ ଗଧିଆଟା ଥିଲା ଅଣ୍ଡିରାଟେ । ମୁଁ ଆଉଦିନେ ଦେଖିଥିଲି—ଆମ କୋଳଥକଆଖି ପାଖ କିଆବଣରେ ସେଇ ଅଣ୍ଡିରା ଗଧିଆଟା ଗୋଟାଏ ମାଈ ବଲୁଆ ସାଙ୍ଗେ ଯୋଡ଼ ପଡ଼ିଥିଲା । ଆଉତ ମାଈ ଗଧିଆ ଆମ ବଣରେ ନଥିଲେ ! ସେଇ ଅଣ୍ଡିରାଗଧିଆ ଆଉ ମାଈ ବଲୁଆଙ୍କ ଔରସରୁ ଯୋଉ ଜନ୍ତୁ ସବୁ ଜନ୍ମ-ହେଲେ—ସେଇମାନେ ଏବେ ଆମ ବଣରେ ଆତଯାତ ହେଉଛନ୍ତି । ଏଇମାନଙ୍କୁ ତୁମେ କହୁଛ ଗଧିଆ ? ଗଧିଆ ବଂଶ ଜାଣ ସେଇଦିନଠୁଁ ଲୋପ ହୋଇଛି । ଆଉ ସେ ଗଧିଆ ତୁମେମାନେ ଏଠି କୋଉଠି ଦେଖିବ ? ଯଦି ଗଧିଆ ଦେଖିବ, ତେବେ ଯାଅ ଗଡ଼ଜାତକୁ । ଆଠଗଡ଼, ନଇଲେ ଢିଗିରିଆ କି ଦଶପଲ୍ଲା ।

.. ଏ ଗପଟି ମଧ୍ୟ ଏତିକରେ ସରି ନଥିଲା । ଗଧିଆମାନଙ୍କ ଆକୃତି, ରୂପ ଓ ପ୍ରକୃତି ବିକୃତି ଇତ୍ୟାଦି ବିଷୟରେ ମଧ୍ୟ ସେ ଯାହାସବୁ କହିଥିଲେ ମୁଁ କିଛି କହୁନାହିଁ । ଏବଂ ସେଇ କଣ୍ଠାବାଉଁଶ ଠେଙ୍ଗୁଣୀଟିର ଉତ୍ପତ୍ତିସ୍ଥଳ ଢିଗିରିଆ ରାଜ୍ୟ ସମ୍ବନ୍ଧେ ମଧ୍ୟ ତାଙ୍କର ସମସ୍ତ ବକ୍ତବ୍ୟ ମୁଁ କହୁନାହିଁ । ଢିଗିରିଆ ଜଙ୍ଗଲରେ ଗଛଡାଳମାନଙ୍କରୁ ଅଜଗର ସାପମାନେ ଓହଳିଥାନ୍ତି ଓ ଗୋଟାଏ ବଡ଼ ଅଜଗରସାପ

ଗୋଟାଏ ଗାଈକୁ ସମ୍ପୂର୍ଣ୍ଣ ଗିଳିସାରି ନିଦରେ ଶୋଇଥିଲା ବେଳେ କେମିତି ଶଗଡ଼ିଆମାନେ ତାକୁ ଗୋଟାଏ ବଡ଼ ବରଗଛର ଶିଅ ଭାବି ତା' ଉପରେ ଚୂଲିକରି ନିଆଁ ଜାଳି ରୋଷେଇ ଶେଷକଲାବେଳକୁ ସେ କଡ଼ ଲେଉଟାଇଲା ଏବଂ ଶଗଡ଼ିଆମାନେ ଯେ ଯୁଆଡ଼େ ଅତଙ୍କରେ ପଳାୟନ କଲେ, ସେ କାହାଣୀ ମଧ୍ୟ ମୁଁ କହି ନାହିଁ । ଏବଂ ଡିଗିରିଆ ରାଜାଙ୍କର ଭଣୋଇ କିପରି ଜଣେ ସର୍ବଖ୍ୟାତ ଶିକାରୀ ଥିଲେ ଏବଂ ତାଙ୍କୁ ଜୀବଜନ୍ତୁଙ୍କୁ ବଶ୍ୟକରିବା ମନ୍ତ୍ର ଜଣାଥିଲା—ଯାହା ଫଳରେ କି ସେ ପୂର୍ଣ୍ଣିମା ରାତିରେ ଗୋଟାଏ ବିରାଟକାୟ ଅହିରାଜ ସର୍ପର .ଫଣା ଉପରେ ଆରାମରେ ଉପବେଶନ କରି ସମଗ୍ର ଅରଣ୍ୟ ଭ୍ରମଣ କରୁଥିଲେ, ସେକଥା ମଧ୍ୟ ମୁଁ ବର୍ଣ୍ଣନା କରିନାହିଁ । ନିଜେ ଡିଗିରିଆ ରାଜା କିପରି ଗୋଟିଏ ବାଘୁଣୀକୁ ବିବାହ କରିଥିଲେ ଓ ତା' ସଙ୍ଗେ ସହବାସ କରିବା ଫଳରେ ସେହି ବାଘୁଣୀ ଆଉ ତାଙ୍କର ଗୋଟିଏ ପିଲା ଜନ୍ମ ହୋଇଥିଲା—ଏବଂ ସେ ପିଲାକୁ ରାଜା କେମିତି ବନଦୁର୍ଗାଙ୍କ ପାଖେ ଛାଡ଼ିଦେଇ ଆସିଲେ—ସେହି ଅପୂର୍ବ କାହାଣୀ ମଧ୍ୟ ମୋର ସମୁଦାୟ ମନେନାହିଁ । ଡିଗିରିଆ ଜଙ୍ଗଲରେ ଗଣ୍ଡଭୈରବ ଚଢ଼େଇ ଓ ପକ୍ଷୀଲଗା ସିଂହ ଥିଲେ ବୋଲି ନିହାଲ ମଉସା କହୁଥିଲେ । ସବୁଠାରୁ ମଜାକଥା ହେଉଛି—ଡିଗିରିଆ ଜଙ୍ଗଲରେ ଏକଜାତୀୟ ଭୂତ ଥିଲେ, ଯେଉଁମାନଙ୍କୁ "ହାଡ଼ିବାଣ୍ଡି" ବୋଲି କୁହାଯାଏ । ଏବଂ ସେଇ ଭୂତମାନେ କିପରି ବାଟୋଇମାନଙ୍କୁ ଭୁଆଁ ବୁଲାଇ ପଥଭ୍ରଷ୍ଟ କରନ୍ତି—ତାହା ମଧ୍ୟ ସେ ଆମ୍ଭମାନଙ୍କ ଆଗରେ ବହୁବାର ବଖାଣ କରୁଥିଲେ । ଗଣ୍ଡଭୈରବ ଚଢ଼େଇ କିପରି ତା'ର ଥଣ୍ଟରେ ଗୋଟିଏ ମଇଁଷି ଏବଂ ଦୁଇ ପାଦରେ ଦୁଇଟି ହାତୀଛୁଆ ଧରି ଡିଗିରିଆ ଜଙ୍ଗଲରୁ ହିମାଳୟ ପର୍ବତ ଉପରକୁ ଉଡ଼ିଯାଏ—ତାହା ମଧ୍ୟ ନିହାଲ ମଉସା ନିଜ ଆଖିରେ ଦେଖିଥିଲା ପରି ବର୍ଣ୍ଣନା କରନ୍ତି—ଏବଂ ଏହିପରି ବହୁ ଉପକଥା କହିସାରି ସେ ପୁଣି ତାଙ୍କର ମୂଳ ଗଧିଆ ଶିକାର କଥାକୁ ଫେରି ଆସନ୍ତି ଖୁବ୍ ସ୍ୱଚ୍ଛନ୍ଦରେ—ଓସ୍ତାଦ୍ ଖିଆଲ୍ ଗାୟକ ସ୍ୱରଗ୍ରାମର ବହୁ ଉତ୍‌ଥାନ ପତନ ଏବଂ ବିସ୍ତୃତ ବିଗ୍‌ବଳୟମାନ ଘୂରି ଘୂରି ସ୍ୱଚ୍ଛନ୍ଦରେ ପୁଣି ନିଜର ମୂଳ ସୁର୍‌ଟିକୁ ଫେରି ଆସିଲାପରି । ଅବଶ୍ୟ, ଏକଥା ମଧ୍ୟ ସତ୍ୟ ଯେ ନିହାଲ ମଉସା ସେହି ଯାନବାହନ-

ବିଜ୍ଞାନ ଯୁଗରେ ଆମ ଗାଁ ଖୁଡ଼ି ଦୁଇଥର କଟକ, ଦୁଇଥର ଭୁବନେଶ୍ୱର ଏବଂ ସାତ ଆଠଥର ପୁରୀ ପର୍ଯ୍ୟନ୍ତ ଯାଇଥିଲେ । ତିଗିରିଆ ପ୍ରଭୃତି ଗଡ଼ଜାତ ସେ କେବେ ଦେଖି ନଥିଲେ । ଆମ୍ଭେମାନେ କିନ୍ତୁ ସେତେ-ବେଳକୁ ସାରା ଓଡ଼ିଶା ଦେଖି ସାରିଲୁଣି ଏବଂ ତିଗିରିଆ ନାମକ କ୍ଷୁଦ୍ର ଗଡ଼ଜାତଟିର ଭୌଗଳିକ ଓ ରାଜନୈତିକ ଅବସ୍ଥିତି ଆମ୍ଭମାନଙ୍କୁ ଖୁବ୍ ଭଲଭାବେ ଜଣାଥିଲା । ପଶୁପକ୍ଷୀମାନଙ୍କ ଗୁଣାଗୁଣ ସମ୍ବନ୍ଧେ ମଧ୍ୟ ଆମ୍ଭମାନଙ୍କର ସାଧାରଣଜ୍ଞାନ ଖୁବ୍ କମ୍ ନଥିଲା । ତେଣୁ ଗଣ୍ଡଭୈରବ ପକ୍ଷୀ ଇତ୍ୟାଦିଙ୍କ ସମ୍ବନ୍ଧେ ସେ ଯାହା ସବୁ କହୁଥିଲେ ଯେଗୁଡ଼ିକ ନିଶ୍ଚୟ ଗାଲୁଗଳ୍ପ; କିନ୍ତୁ ନିହାଲ ମଉସାଙ୍କ ତୁଣ୍ଡରୁ ସେ ସବୁ ଶୁଣିଲାବେଳେ ମୋର ଅନ୍ତତଃ ମନେ ହେଉଥିଲା—ଏ ଜଗତରେ ଯେତେ ଯାହା ଅବାସ୍ତବ କଳ୍ପନା ସବୁ ଅଛି—ସେଗୁଡ଼ିକ ନିହାଲ ମଉସାଙ୍କ ରସମୟ ହୃଦୟରେ ପ୍ରବେଶ କରି ତାଙ୍କର ସେହି ମଧୁର ବିଶ୍ୱସ୍ତ ତୁଣ୍ଡରୁ ବହିର୍ଗତ ହେଲେ ସତ୍ୟ ଓ ବାସ୍ତବ ହେବାକୁ ବାଧ୍ୟ । ଯଦି ଗଣ୍ଡଭୈରବ ଚଢ଼େଇ ଏ ପୃଥିବୀରେ ନଥାନ୍ତି—ତେବେ ମୋର ବିଶେଷ ଅନୁରୋଧ ଅନ୍ତତଃ ନିହାଲ ମଉସାଙ୍କ ଖାତିରରେ ଈଶ୍ୱର ସେହି ବିହଙ୍ଗଶ୍ରେଷ୍ଠଙ୍କୁ ଶୀଘ୍ର ସୃଷ୍ଟି କରନ୍ତୁ ଓ ଅନ୍ତତଃପକ୍ଷେ ତିଗିରିଆ ଜଙ୍ଗଲରେ ଛାଡ଼ି ଦିଅନ୍ତୁ । ଅବଶ୍ୟ ମୁଁ ଜାଣିନି—ବର୍ତ୍ତମାନ ତିଗିରିଆରେ ଜଙ୍ଗଲବୋଲି କିଛି ଅଛି କି ନାହିଁ । ତିଗିରିଆ ରାଜାଙ୍କ ଶିକାରୀପ୍ରବର ଭଣୋଇ ଅହିରାଜର ଫଣା ଉପରେ ବସି ରାତିସାରା ଅରଣ୍ୟ ଭ୍ରମଣ କରିଥାନ୍ତି ବା ନଥାନ୍ତି—ଅନ୍ତତଃ ମୋର ଭାବନା ହେଉଛି—ଅହିରାଜ ସାପର ଫଣା ଉପରେ ବସି ଯେଉଁ ପୁରୁଷପୁଙ୍ଗବ ଅରଣ୍ୟଭ୍ରମଣ ନ କରିପାରିବ—ସେ କାପୁରୁଷ ନରାଧମ ତିଗିରିଆ ରାଜଜେମାଙ୍କ ହାତରୁ ବରଣମାଳା ପାଇବ କାହିଁକି ? ତା' ଛଡ଼ା, ନିହାଲ ମଉସାଙ୍କ ବଳିଷ୍ଠ କରରୁ ନିକ୍ଷିପ୍ତ ସେହି କଣ୍ଟାବାଉଁଶର ଠେଙ୍ଗୁଣ୍ଡିରେ ଯଦି ଦୁଇଶତ ଆଠଟି ଗଧିଆ ସତକୁ ସତ ଆହତ ହୋଇ ନିହତ ହେବା କଥାକୁ ଆପଣ ବିଶ୍ୱାସ ନ କରନ୍ତି—ତେବେ ବିଷ୍ଣୁଙ୍କର ସୁଦର୍ଶନ ଚକ୍ରର ମହିମା ଆପଣମାନଙ୍କ ଆଗରେ କହିବା ବୃଥା । ସତ୍ୟାସତ୍ୟ ବିନିଶ୍ଚୟ କରିବାର ଦାୟିତ୍ୱ ଯେଉଁମାନେ ନେଇଛନ୍ତି—ସେ ଦାୟିତ୍ୱ ସେମାନେ ଯେତେ ସୁରୁଚିରୂପେ ତୁଲେଇ ପାରିବେ ତାହା

ଭୁଲନ୍ତୁ । ମାତ୍ର ଆମେ ସେ ଦାୟିତ୍ୱ ନେଇନାହୁଁ । ଆମ୍ଭେମାନେ ଗୃହୁଁ ନହାଲ ମଉସାଙ୍କ ଭଳି ମଣିଷ ସବୁ ଗାଁରେ ଅନ୍ତତଃ ଜଣେ ହେଲେ ଜନ୍ମଗ୍ରହଣ କରନ୍ତୁ—ଏବଂ ସବୁ ଯୁଗରେ ଜନ୍ମ ଗ୍ରହଣ କରନ୍ତୁ ଏବଂ ତାଙ୍କର ସେହି ମଧୁର ବ୍ୟକ୍ତିତ୍ୱ ସଙ୍ଗେ ମିଶିଥିବା ଏଇ ସବୁ ମିଥ୍ୟାମଧୁର କାହାଣୀମାନ ଯୁଗେ ଯୁଗେ ଆମ୍ଭମାନଙ୍କ ମନକର୍ଣ୍ଣକୁ ଅଭିନନ୍ଦିତ କରୁଥାଉ । ମୁଁ ଜାଣିବାରେ ସତ୍ୟାସତ୍ୟ କେବଳ କାବ୍ୟମାନଙ୍କ ଭିତରେ ନଥାଏ । ସତ୍ୟାସତ୍ୟର ସ୍ୱରୂପ ମଧ୍ୟ ତୁମ ଆମ ଜାଣିବାର ସୀମା ଭିତରେ ପ୍ରକଟିତ ହେବାକୁ ବାଧ୍ୟ ନୁହେଁ । ରାମାୟଣ, ମହାଭାରତର କଥାଗୁଡ଼ିକ ଯଦି ବାଲ୍ମୀକି ଓ ବ୍ୟାସଦେବଙ୍କ ତୁଣ୍ଡରୁ ନ ବାହାରି, ମୋ ତୁଣ୍ଡରୁ, କି ମନୋଜ ଦାସଙ୍କ ତୁଣ୍ଡରୁ, କି ଶାନ୍ତନୁ ଆଚାର୍ଯ୍ୟଙ୍କ ତୁଣ୍ଡରୁ ବାହାରିଥାନ୍ତା—ଏମିତିକି ଜ୍ଞାନପୀଠ ବିଜେତା ଗୋପୀନାଥ ମହାନ୍ତିଙ୍କ ତୁଣ୍ଡରୁ ବାହାରିଥାନ୍ତା—ତା' ହେଲେ ସେଗୁଡ଼ିକ ସବୁ ଅତ୍ୟନ୍ତ ଅବାସ୍ତବ, ଅବିଶ୍ୱାସ୍ୟ ଓ ଓ ଗାଲୁଗପ ହୋଇ ଯାଇଥାନ୍ତା—ଏପରିକି ରସଶୂନ୍ୟ ବି ହୋଇ ଯାଇଥାନ୍ତା । ପ୍ରକୃତିରେ ବ୍ୟକ୍ତିବିଶେଷ ହିଁ ସତ୍ୟକୁ ମିଥ୍ୟାରେ କିମ୍ବା ମିଥ୍ୟାକୁ ସତ୍ୟରେ ରୂପାନ୍ତରିତ କରିଦେଇ ପାରେ । ଭକ୍ତକୁଳ ଶିରୋମଣି, ବୀରକୁଳ ଚୂଡ଼ାମଣି, ପବନସୁତ ହନୁମାନଜୀ ଯଦି ଗନ୍ଧମାର୍ଦ୍ଦନ ପର୍ବତକୁ ନିଜ ମୁଣ୍ଡ ଉପରେ ଲଦି ଆକାଶରେ ଉଡ଼ି ଉଡ଼ି ଆସି ନ ଥାନ୍ତେ—ତେବେ ସ୍ୱୟଂ ଗନ୍ଧମାର୍ଦ୍ଦନ ପର୍ବତ ହନୁମାନଜୀଙ୍କୁ ଧରି ଲଙ୍କା ପର୍ଯ୍ୟନ୍ତ ଉଡ଼ିକରି ଆସିବାକୁ ବାଧ୍ୟ ହୋଇଥାନ୍ତା । ଏ କ୍ଷେତ୍ରରେ କ'ଣ ବାଲ୍ମୀକି ମୁନି ହନୁମାନଜୀ ଗନ୍ଧମାର୍ଦ୍ଦନ ପର୍ବତକୁ ମୁଣ୍ଡରେ ଟେକିଆଣି ଲଙ୍କାରେ ପକାଇ ଦେଇଥିଲେ ବୋଲି ବର୍ଣ୍ଣନା କରି ଅଧିକ ମିଥ୍ୟାଟିଏ କହିଛନ୍ତି ? ବାଲ୍ମୀକିଙ୍କ ପରେ ଆଉ କେତେକ କବିମୁନି ରାମାୟଣ ଲେଖିଛନ୍ତି—ଏବଂ ସେମାନଙ୍କ ମତରେ ରାବଣ ଯେଉଁ ସୀତାଙ୍କୁ ପର୍ଣ୍ଣକୁଟୀରରୁ ଚୋରି-କରି ନେଇଥିଲେ ସେ ସତସୀତା ନୁହନ୍ତି । ସତସୀତା ଅଗ୍ନି ଭିତରେ ଲୁଚିଥିଲେ । ରାବଣ ମିଛ ସୀତାଟିଏ ଚୋରିକରି ନେଇଥିଲା । ଏଥିରୁ ବୁଝନ୍ତୁ ସତ ମିଛ କ'ଣ ?

ନହାଲ ମଉସା ଆମ ଗାଁର ମୁଷ୍ଟିମେୟ ଭଲ ମଣିଷମାନଙ୍କ ଭିତରୁ ଅନ୍ୟତମ ଥିଲେ । ସେ କାହାର ମନ୍ଦ ଚାହାଁନ୍ତି ନାହିଁ, କାହା

ବହୁଥରେ ଚୁଗୁଲି କରନ୍ତି ନାହିଁ । କେବଳ ଯଦି ବିପଦରେ ପଡ଼ିଥାଏ, ତେବେ ନିହାଲି ମଉସାଙ୍କ କାନରେ ପଡ଼ିଲେ—ବାସ୍—ସବୁ ବିପଦ ସେ ନିଜ ମୁଣ୍ଡ ଉପରକୁ ଉଠାଇ ନିଅନ୍ତି । ନିହାଲି ମଉସାଙ୍କ ତୁଣ୍ଡରୁ ମୁଁ ପ୍ରାୟ ଶତାଧିକ ଘଟଣା ଶୁଣିଛି—ଏବଂ ସେଗୁଡ଼ିକ ବାସ୍ତବ ଜଗତରେ ସତ ହେଉ କି ନହେଉ, ଆଜିପର୍ଯ୍ୟନ୍ତ ସେଗୁଡ଼ିକ ଖୁବ୍ ମଧୁର ଓ ସଜୀବ ସ୍ମୃତିରୂପେ ମୋ ଭିତରେ ମୁଁ ସାଇତି ରଖିଛି । ଆଉ ଗୋଟିଏ କଥା ମୁଁ ଏଠି କହିରଖେ—ନିହାଲି ମଉସା ଅନ୍ୟାନ୍ୟ ବିଷୟରେ ଆଦୌ ମିଥ୍ୟା କହନ୍ତି ନାହିଁ । ଏପରକି—ନିଜ ଦୋଷାଦୋଷ ଘୋଡ଼ାଇବା ଲାଗି ମଧ୍ୟ କେବେ ମିଛଟାଏ କହି ଦିଅନ୍ତି ନାହିଁ ।

ଥରେ ଛତୁ ତରକାରି କଥା ପଡ଼ିଥିଲା । ପାଳଛତୁ, ବାଲିଛତୁ, ହୁଙ୍କାଛତୁ, ପଡ଼ିଆଛତୁ, ହାଣ୍ଡିଉମ୍ବିଛତୁ, ବାଟୂଳିଛତୁ ଆଦି ହରେକ ରକମର ଛତୁ ବିଷୟରେ ଆମେ କଥା ପକାଇଥିଲୁ । ପାଶ୍ଚାତ୍ୟ ଦେଶ-ମାନଙ୍କରେ କପରି ଆଧୁନିକ ଧରଣର ଛତୁଚାଷ ହେଉଛି—ଏବଂ ଆମ ଦେଶରେ ବି କେମିତି ଛତୁଚାଷ ଆରମ୍ଭ ହେଲାଣି, ଏବଂ ଛତୁ କେମିତି ଗୋଟିଏ ଉପାଦେୟ ପ୍ରୋଟିନଜାତୀୟ ଖାଦ୍ୟରୂପେ ବର୍ତ୍ତମାନ ପରିଗଣିତ ହେଉଛି—ଏଇ କଥା ସେଦିନ ଗପୁଥିଲେ ମୋର ମାମୁଁପୁଅଭାଇ ଶ୍ରୀ ନବଘନ ସେନାପତି । ସେ ସେତେବେଳେ ମେଡ଼ିକାଲ କଲେଜର ଦ୍ୱିତୀୟ ବାର୍ଷିକ ଶ୍ରେଣୀର ଛାତ୍ର । ଏତିକିବେଳେ ନିହାଲି ମଉସା କେତେବେଳୁ ଆସି ଆମ ପଛପଟେ ଠିଆ ହେଲେଣି । ଆମର ଚେଣିକି ନଥାନାହିଁ ।

ବାଡ଼ିଟି ଦୋକାନର କାନ୍ଥକୁ ଡେରିଦେଇ ନିହାଲି ମଉସା ଆମ ଭିତରେ ଆସି ବସିଲେ ଓ ବଟୁଆଟି ଫିଟାଇ ପାନ ଭାଙ୍ଗିଲେ ଏବଂ ସେଥି ସଙ୍ଗେ ନିଜ ଜୀବନରୁ ଅଭିଜ୍ଞତାଟିଏ ବର୍ଣ୍ଣନା କରି ବସିଲେ—

"ଆରେ କି ଛତୁ ତୁମେମାନେ ସବୁ ଆଜିକାଲି ଖାଉଛ ? କି କି ଛତୁ ବା ତୁମେମାନେ ଆଜିକାଲି ଦେଖୁଛ ? ତୁମବେଳକୁ ଆଉ ସେ ଛତୁ ଏ ପୃଥିବୀରେ ଫୁଟୁଛି ଯେ ତୁମେ ଦେଖିବ ? ଆଉ ଆଜିକାଲି ଏ ମାଟିର ସେ ଶକ୍ତି ଅଛି ଭଲା ? ଶୁଣ କହୁଛି—"

ବାସ୍—ଆମେ ଏକ ଅଶ୍ରୁତପୂର୍ବ ରୋମାଞ୍ଚପୂର୍ଣ୍ଣ ଉଦ୍ଭଟ କାହାଣୀଟିଏ ଶୁଣିବାର ପ୍ରତୀକ୍ଷାରେ ଉତ୍କଣ୍ଠା, ଉଦ୍‌ଗ୍ରୀବ ଓ ଉତ୍କର୍ଣ୍ଣ ହୋଇ ରହିଲୁ । ନହାଲ ମଉସା ପାନଖିଲଟିକୁ ପାଟିରେ ପୂରାଇଲେ । ତାକୁ ଦୁଇତିନଥର ଏକଳ ସେକଳ କଲେ ଏବଂ ନିଶ୍ଚିନ୍ତରେ ବାହାରେ ସାମାନ୍ୟ ପିକ କାଢ଼ି ସାରି ଗଳା ଖଙ୍କାରି ଆରମ୍ଭ କଲେ .....

"ବୁଝିଲ ବାପ ! ସେ ସନ (ବର୍ଷ) ଆମ ଗହିର ଜୋଡ଼ ପାଖ ଲଗାତ୍ ଆମର ପାଞ୍ଚମାଣିଆ ଜମିରେ ହଳ ବୁଲୁଥାଏ । ଆମର ତିନହଳ ବଳଦ ତିନଟା ଲଙ୍ଗଳ ଟାଣି ଚଷୁଥାନ୍ତି । ଆଷାଢ଼ମାସ ଆରମ୍ଭ ହୋଇଗଲାଣି । ଦୁଇଟି ଅସ୍ରା ବର୍ଷା ହୋଇ ମନକୁ ମନ ଛାଡ଼ିଗଲା । ଆଉ ମେଘର ଦେଖାନାହିଁ । ସେ ବର୍ଷ ପୁଣି ଯୋଉ ଖରା ହେଲା ବାପ କ'ଣ କହିବି ? ହୋଲପୁନିଅଁଠାରୁ ଖାଲି ଚାରିଆଡ଼େ ନିଆଁ ଜଳିଲା । ଗାଡ଼ିଆ ପୋଖରୀ ଶୁଖିଗଲା । ହେଲେ—ସେ ବର୍ଷ ଯେତେ ମାଛ ଖିଆ-ଯାଇଛି—ଆଜିଯାଏ ବି ବାପ ସେକଥା ମନରୁ ଯାଇନାହିଁ । ଏଇ ହାଟ ପୋଖରୀଟା ସେତେବେଳେ ଶୁଖି ଖଡ଼ଖଡ଼ ହୋଇଗଲା । କମ୍ ରୋହି ଭାକୁର ସେତେବେଳେ ମଲେ ? ଖାଲି କ'ଣ ରୋହି ଭାକୁର ? ପଙ୍କ ଶୁଖିଯିବାରୁ ଗଡ଼ିଶା, କଉ, ରଚା, ମାଗୁର, ଶେଉଳ, ଯେତେ ପଙ୍କୁଆ ମାଛ, ସେଗୁଡ଼ାକ ବି ଠୋ ଠା ହୋଇ ଆସି ଭୂଇଁରେ ପଡ଼ିଲେ । ସେ ବର୍ଷ ଆଉ ଭାତ କିଏ ଖାଇନାହାନ୍ତି । ଏଓଳ ସେଓଳ ଖାଲି ମାଛ ଖିଆ ଚାଲିଲା ବଳକା ଦୁଇମାସ । ହଁ, କ'ଣ କହୁଥିଲି ! ହଳ ସବୁ ଫାଟି ଆଁ କରିଥାଏ । ଯେ ମୁଦାଏ ବର୍ଷା ଆଗରୁ ହୋଇଥିଲା ସେଥିରେ ଆଉମାନେ ଚଷ କରିଗଲେ । ଆମେ ଟିକେ ପଛକୁ ପଡ଼ିଗଲୁ । ବେଳ ସେତବେଳକୁ ଗଡ଼ ପଡ଼ିଲାଣି । ମୁଁ ହାଡ଼ ମୁଣ୍ଡରେ ଛତାଟିଏ ଧରି ବସିଥାଏ । ଖଣ୍ଡେ କଳା ମେଘ ଅଗ୍ନନକ ପଶ୍ଚିମ ଦିଗରୁ ଘୋଟି ଆସିଲା । ଖରାଦିନିଆ ମେଘ ଭଳିଆ । ପବନ ହେଲେ ଉଡ଼ିଯିବ । ଆରେ ବାପ; ତୁମକୁ ମିଛ, ମୋତେ ସତ, ସେ ମେଘ ଯେମିତି ମାଡ଼ି ଆଇଲା ବାଘ ଭଳିଆ ତା' ସାଙ୍ଗରେ ପୁଣି ଧୂମାଳି, ପବନ । ଆକାଶଯାକ ଗୁହୁଁ ଗୁହୁଁ ଘୋଟିଗଲା କଳାମେଘ । ଆମେ

ଭାବିଲୁ—ଏ ଶଳା ନିଶ୍ଚେ ବର୍ଷାରକୁ ଧରିଲାଣି । ବାଇଶି ସାଲ ବର୍ଷାର ଭଲଆ ବି କ'ଣ ଯ୍ବାର ପ୍ରାକ୍ରମ ଦେଖାଗଲାଣି !

ଗୁଡ଼୍ଙ୍ଗୁଡ଼୍ଙ୍ ସାଇଁ ସାଇଁ ମାଡ଼ ଆସିଲା ମେଘ । ଟପ୍ ଟପ୍—ଟପା-ଟପ୍—ଝପଝପ୍-ଝପାଝପ୍—ଦେକାଚିଲା—କାଚିଲା-କାଚିଲା ମେଘ, ପବନ, ଘଡ଼ଘଡ଼, ଚଡ଼ଚଡ଼-ବିଜୁଳି । ହଳଆମାନେ ହଳ ଫିଟେଇ ଦେଲେ । ଗୋରୁମାନେ ଲାଞ୍ଜ ଟେକି ଘରମୁହାଁ ଦଉଡ଼ିଲେ । ମଇଁଷିଗୁଡ଼ାକ ଧାଇଁଥାନ୍ତି ଏକମୁହାଁ । ମୋ ଛତା ଖଣ୍ଡିକ ବି ପବନରେ ଓଲଟି ପଡ଼ିଲା । ମୁଁ ଦଉଡ଼ୁଛି—ଆରେ ବାପ, ସେ ଯଉଁ ଅଚିରଣ ଦଉଡ଼ା ! ଦଉଡ଼ୁଛୁ ସମସ୍ତେ ଯେ ଯେଉଁଠି ଥିଲୁ ଏକ ମୁହାଁ—କିନ୍ତୁ କୁଆଡ଼କୁ ଯିବୁ ? ନଅାଳୀ ଗହୀର—ଆଡ଼େଖାର୍ଯ୍ୟେ ଭିନକୋଶ । ନିକଟରେ ଗଛ ବୃଛର ଦେଖାନାହିଁ । ଏତେ ଗୋରୁ, ମଣିଷ, ମଇଁଷି କୁଆଡ଼େ ଯିବେ ? ଆଶ୍ରା ନେବେ କୋଉଠି ? ମୋତେ ମହାଭୟ ଲାଗୁଥାଏ । ଘର ହାଲଆ ବି ଲାଗୁଥାଏ ଦଉଡ଼ ଦଉଡ଼ । ମୁଁ ଦେଖେ ତ ସମସ୍ତେ ଗୋଟିଏ-ଆଡ଼କୁ ଲକ୍ଷ୍ୟ କରି ଦଉଡ଼ୁଛନ୍ତି । ମୁଁ ବି ସେଇ ଆଡ଼କୁ ଦୌଡ଼ିଲି । ବର୍ଷାର ବିରାମ ଅଛି ନା ପବନର ବିରାମ ଅଛି ? ଏ ମେଘ ଆଉ ଛାଡ଼ିବ ନାହିଁ । ସଞ୍ଜ ବୁଡ଼ିଲାଣି—ଅନ୍ଧାର ପକ୍ଷର ମେଘ ଅନ୍ଧାର ଘୋଟି ଆସୁଥାଏ । ବାଟ ଘାଟ କିଛି ଦିଶୁ ନଥାଏ । ମୁହଁକୁ ପାଣି ପବନ ଛାଟୁଥାଏ ଛାଞ୍ଚୁଣୀ ମାଡ଼ ଭଳିଆ । ହାଡ଼ ମାନଙ୍କରେ ଝୁଣ୍ଝି ପଡ଼ୁଥାଉ । ଫେର୍ ଦଉଡ଼ୁ-ଥାଉଁ । ଶେଷକୁ ଗୋଟେ ଜାଗାରେ ଆସି ଠୁଳ ହେଲୁ । କିଛି ତ ଦୃଶ୍ୟ ହେଉ ନ ଥାଏ । ଖାଲି ବର୍ଷା ମାଡ଼ରୁ ରକ୍ଷା ମିଳିବାରୁ ଭାବିଲୁ ଯେ ଗୋଟାଏ ବରଗଛ ନିଶ୍ଚେ— । ଓଉପଲ୍ଲୀ ପାଟରେ ବି ଗୋଟାଏ ହସ୍ତାନ୍ତ ବରଗଛ ଥାଏ । ଥକ୍କା ମାରି ବସିପଡ଼ିଲୁ ତା' ତଳେ । ଭୂଇଁଟା ପୂରା ଶୁଖିଲା ଲାଗୁଥାଏ । ସମସ୍ତେ ଓଦାଲୁଗା ଚୁପୁଡ଼ି ଯେ ଯୋଉଠି ପାରିଲେ ପଡ଼ିଗଲେ । ଘୋର ଅନ୍ଧାର । ବର୍ଷା ପବନ ସେମିତି ଚାଲିଥାଏ । ମୁହଁକୁ ମୁହଁ ଦିଶୁ ନ ଥାଏ । କିଏ ଦେଖୁଛି କାହାକୁ ? କିଏ ପଚାରୁଛି କାହାକୁ ? ରାତିଟା କୌଣସି ପ୍ରକାରେ କଟାଇ ଦେଲେ ଯାଏ ! ବାହାରେ ଏତେ ପବନ ବର୍ଷା ! ହେଲେ ଆମ ଉପରେ ଟୋପାଏ ବି

ପାଣି ପଡ଼ୁ ନ ଥାଏ । ମୁଁ ଭାବିଲି ଆମେ ନିଶ୍ଚୟ ଓଡ଼ିପଲ୍ଲୀ ବରଗଛ ମୂଳେ ଠିଆ ହୋଇଛୁ । ଗାଈ, ଗୋରୁ, ମଇଁଷି, ବେହେରା ଆଉ ମୂଲିଆ-ମାନେ ସମସ୍ତେ ତଳେ ଚାରିକାତ ଲମ୍ବାଇ ପଡ଼ିଗଲେ । କେତେକଙ୍କୁ ନିଦ ମଧ୍ୟ ହୋଇଗଲା । ଭୋକରେ ମୋ ପେଟରେ କରଡ଼ ଜଳୁଥାଏ । ହେଲେ, ଆଉ ଉପାୟ ବା କ'ଣ ଅଛି ? ଛଟିପିଟି ହେଉ ହେଉ ମତେ କେତେବେଳେ ନିଦ ହୋଇଗଲା ।

ରାତିପାହା ଆସିଲାବେଳକୁ ବର୍ଷା ମଧ୍ୟ ଛାଡ଼ିଗଲା । ତେବେ ମେଘ ଘୋଡ଼େଇ ଥାଏ । ଗୋଟେ ଚଢ଼େଇ କେଁ କେଁ ହୋଇ ମୋ କାନ ପାଖ ଦେଇ ଉଡ଼ିଯିବାରୁ ମୋ ନିଦ ଭାଙ୍ଗିଗଲା । ଆଖିମଳି ଚାହିଁଦିଏ ତ, ଲୋକ ଅନ୍ଦାଜ ଶହେ ହେବେ ଉପରକୁ ଚାହିଁ ଖୁବ୍ ଲକ୍ଷ୍ୟରେ କ'ଣ ଦେଖୁଛନ୍ତି । ମୁଁ ଚାରିଆଡ଼କୁ ଚାହିଁଲି । ଏଇଟା କୋଉ ଜାଗା ? ଏଇଟା ତ ଓଡ଼ିପଲ୍ଲୀ ପାଟ ନୁହେଁ । ଏ ତୋଟାଟା ପୁଣି କୁଆଡ଼ୁ ଆଇଲା ଏଠିକି ? ଏ ତୋଟାଟାର ଗଛମାନଙ୍କରେ ଏମିତି ଗହଳ ପତ୍ର ହୋଇଛି ଯେ ଟୋପେ ହେଲେ ବି ପାଣି ପଡ଼ୁନାହିଁ ତଳେ ? ଏଡ଼େ ପବନରେ ଡାଳ ଖଣ୍ଡେ ବି ଭାଙ୍ଗି ପଡ଼ିନାହିଁ ? ମନରେ ଭାରି କୌତୁକ ବି ହେଲା । ସମସ୍ତେ ଖାଲି ଉପରକୁ ଚାହିଁଛନ୍ତି । ଅଥଚ, କିଛି ଗୋଟାଏ ସିଦ୍ଧାନ୍ତ କରିପାରୁ-ନାହାନ୍ତି । କ'ଣ ତେବେ ଏଇଟା ଆମ ମୁଣ୍ଡ ଉପରେ ? କେହି ଜଣେ ହଠାତ୍ ପାଟିକରି ଉଠିଲା—କିଓ ଭାଇ ! ଏଇଟା ତ ଆମ୍ବତୋଟା ନୁହେଁ ! ଆଉ ଜଣେ ଉତ୍ତର ଦେଲା—ଏ ତ ଚାନ୍ଦୁ ଆମାଗେ ତୋଟାଟାଏ ହୋଇଛି ହେ ! ଆମ ଶାସନର କଣ୍ଠ ଷଡ଼ଙ୍ଗୀ ଅଟକ୍ଷି ହୋଇ ବୃନ୍ଦାବନ ମିଶ୍ରଙ୍କୁ ଧରିପକେଇ ପାଟିକଲା—ଦେଖ ମିଶ୍ରେ ! ଏ ବଡ଼ ବିଷମ ବେଳା ଆସିଗଲା ! ଐରାବତ ହାତୀ ସ୍ୱର୍ଗରୁ ଓହ୍ଲେଇ ଆସି ଏଠି ତଳେ ଠିଆ ହୋଇଛି ! ଆମେ ସବୁ ତା' ପେଟ ତଳେ ପଶିଥାଇଁ । କଳିଯୁଗ ଶେଷ-ବେଳା ପହୁଞ୍ଚିଗଲା ମିଶ୍ରେ ! ଆଜିଠାରୁ ମ୍ଲେଚ୍ଛସଂହାର ।

ଏମିତି କିଏ କେତେ ପ୍ରକାର କ'ଣ ସବୁ କହି ଚାଲିଥାନ୍ତି । ସମସ୍ତଙ୍କ ଭିତରେ ଗୋଟେ ଭୟ ପଶିଯାଇଛି । ସମସ୍ତଙ୍କର ଏ ଅବସ୍ଥା ଦେଖି ମୁଁ ଆଗ କଥାଟାକୁ ପରୀକ୍ଷା କରିବାକୁ ନିଜେ ବାହାରି ପଡ଼ିଲି ।

"ଉଃ ବାପଧନ ! ସେମିତି ଅଚଳ୍ପ ଦୁଅନା । କଥାଟା କ'ଣ ଆଗ ପରୀକ୍ଷା କରି ଦେଖିନେବା ।"

ସମସ୍ତେ ଆଡ଼େଇ ଗଲେ । ଗଉଡ଼ଙ୍କଠାରୁ ଦୁଇଟା ବାଡ଼ ଆଣି ଏକାଠି ଲମ୍ୱାମାର୍ଗେ ବାନ୍ଧି ଉପରୁ କେଞ୍ଚ ଖଣ୍ଡେ ଖସେଇ ଦେଲ । ସେ ଖଣ୍ଡିକ ହାତରେ ଧରି ମଳଦେଇ ଦ' ଗୁଣଥର ସୁଙ୍ଘିନେଲ । ତା ପରେ ଟିକେ ପାଟିରେ ପକାଇ ତା' ସୁଆଦଟାକୁ ବି ବାରିଦେଲ । କହିଲ—ଓ ଓ ଓ ! ସେ କଥା କହନ୍ତୁ !!!

ଆମେ ସବୁ ଉତ୍କଣ୍ଠିତ ସ୍ୱରରେ ପଚାରିଲୁ—ସେଇଟା କ'ଣ ଥିଲ ମଉସା ?

ନହାଲ ମଉସା ଟିକଏ ଉଠିଯାଇ ବାହାରେ ପାନ ପିଠାଚକ କାଢ଼ି ଫୋପାଡ଼ ଦେଲେ — ତା'ପରେ ହସି ହସି କହିଲେ—କଅଣ ଆଉ ଦୁଅନ୍ତାରେ କୋଠପୁଅମାନେ ? ସେଇଟା ଥିଲ ଗୋଟାଏ ଅକାଳଆ ବଡ଼ ଛତୁ !

ଆମ୍ଭମାନଙ୍କ ପାଟିରୁ ଏକା ସ୍ୱରରେ ବାହାରି ପଡ଼ିଲ—କ'ଣ ମଉସା ? ସେଇଟା ଗୋଟେ ଛତୁ ? ଏତେ ବଡ଼ ଗୋଟିଏ ଛତୁ ହୋଇପାରେ ?

ହଁରେ ବାପ ଛତୁ ! ତୁମକୁ ମିଛ, ମତେ ସତ, ସେଇଟା ଥିଲ ଗୋଟାଏ ହପ୍ତାନ୍ତ ଛତୁ । ତେବେ ସେମିତି ସେତେବଡ଼ ଛତୁ ଆଜକାଲ ଆଉ ଫୁଟୁନାହିଁ । କେମିତି ଫୁଟିବ ? ଏ ମାଟିରେ କ'ଣ ଆଉ ସେ ରସ ଅଛି ଯେ ସେମିତିକା ଛତୁ ଫୁଟିବ ?

ଆମ୍ଭେମାନେ ଚୁପ୍ ରହିଲୁ । ମାତ୍ର ମୁଁ ଭାବେ—ଆଜକାଲ ସେତେବଡ଼ ଅଲୌକିକ ଛତୁ ଫୁଟୁ ନ ଥିବାର କାରଣ ସ୍ୱରୂପ ମାଟିକୁ ଦୋଷ ଦେଇ ହେବନାହିଁ । ଅସଲ କଥା ହେଲ—ଆଜକାଲ ଆମ ଗାଁରେ ନହାଲ ମଉସାଙ୍କ ଭଳି ସେମିତି ରସବନ୍ତ ପୁରୁଷ ନାହାନ୍ତି—ଯେ କି ଶୂନ୍ୟରେ ବି ଏତେବଡ଼ ଛତୁ ଫୁଟାଇ ଦେଇପାରିବେ । ଆଉ ଛତୁ ସମ୍ପର୍କରେ ବୈଜ୍ଞାନିକ ତଥ୍ୟ ହେଲ···ଛତୁ ଶୂନ୍ୟରୁ ହିଁ ଫୁଟେ ।

ଆଜକାଲ ଆମ ଗାଁରେ ମିଥ୍ୟାବାଦୀଙ୍କ ସଂଖ୍ୟା ହଜାରେ ଗୁଣ ବଢ଼ିଯାଇଛି । ମିଥ୍ୟା ଉପରେ ହିଁ ସମସ୍ତେ ଆଚଯାଚ ହେଉଛନ୍ତି । କିନ୍ତୁ ନହାଲ ମଉସାଙ୍କ ତୁଣ୍ଡ ନିଃସୃତ ସେହି ମୃଦୁମଧୁର ରସ ଜୁଡ଼ୁ ବୁଡ଼ୁ ମିଛ ଆଉ କେହି କହି ପାରିବେ ନାହିଁ ।

ନହାଲ ମଉସା ବୟାନବେ ବର୍ଷ ଯାଏ ବଞ୍ଚିଥିଲେ । ତାଙ୍କର ସ୍ୱାସ୍ଥ୍ୟ ଶେଷ ପର୍ଯ୍ୟନ୍ତ ଅତୁଟ ଥିଲା । ଥରେ କେବଳ ତାଙ୍କର ହାର୍ଣ୍ଣିଆ ଅପରେସନ୍ ହୋଇଥିଲା । ମାତ୍ର ଅପରେସନ ପରେ ସେ ପୁଣି ଛଅବର୍ଷ ବଞ୍ଚିଥିଲେ ସୁସ୍ଥଭାବରେ । ତେବେ ଶେଷ କାଳକୁ ତାଙ୍କର ସାମାନ୍ୟ ରକ୍ତଚାପ ବୃଦ୍ଧି ପାଇଥିଲା । ଏବଂ ମରିବାର ବର୍ଷକ ପୂର୍ବରୁ ସେ ଆଉ କାହା ସାଙ୍ଗେ ବେଶୀ କଥାବାର୍ତ୍ତା କରୁ ନଥିଲେ । କେବଳ ମାଳାଟିଏ ଜପ କରୁଥିଲେ ନିଃଶବ୍ଦରେ । ଖିଆ ପିଆ ମଧ୍ୟ ସେ ପ୍ରାୟ ଛାଡ଼ି ଦେଇଥିଲେ । କେବଳ ଆଖିବୁଜି ନାମ ଜପ କରୁଥିଲେ ମନେମନେ । ଏମିତି ଜପ କରିବା ଅବସ୍ଥାରେ ଥରେ ସେ ଢଳି ପଡ଼ିଲେ । ଏବଂ ତାଙ୍କର ପ୍ରାଣବାୟୁ ଉଡ଼ିଗଲା ।

ଆମ ଗାଁରେ ନହାଲ ମଉସାଙ୍କୁ ଲୋକେ ହୁଏତ ଭୁଲି ଗଲେଣି ।

ମାତ୍ର ମୋର ଅନ୍ତରରେ ତାଙ୍କର ସେହି ମଧୁର ସ୍ମୃତି ଏବେ ବି ଜୀବନ୍ତ ହୋଇ ରହିଛି । ନହାଲ ମଉସାଙ୍କ ଭଳି ଲୋକ ଯେ କୌଣସି ଗାଁର ଅଳଙ୍କାର ସ୍ୱରୂପ । ତାଙ୍କୁ ମନେ ପକେଇଲେ ହୃଦୟ ଗୁଆଁକୁ ଗୁଆଁ ଶ୍ରଦ୍ଧା ଓ ସମ୍ମାନରେ ଭରିଯାଏ ।



# ଗୁଣିଆ ଗୁଣାର୍ଣ୍ଣବ ଅନ୍ତୁ ପ୍ରହରାଜ

ଉଠ, ଉଠ, ବାଟ ଛାଡ଼ଦଅ । ଆରେ ତଫାତ୍ ହୋଇଯାଅ । ହେ ପିଲାଏ, ସେଣିକି ପଳାଅ, ସେଣିକି ପଳାଅ । ଆବେ ସେଠି କାହିଁକି ଘେର ଛୁଡ଼ା ହୋଇଛ ବେ ? ସେଠି କ'ଣ ଛେନାଗୁଡ଼ ବଣ୍ଟା ହେଉଛି ? ଉଠିଯାଅ ଲୋ ସେଠୁ ! ଆଲୋ ହେ କମଳୀ, ମେନା, ଝୁମୁରୀ ! ତମେ ଟିକିଏ ସେଣିକି ଉଠିଗଲ ମୋ ମାଆମାନେ ! ଉଠିଯାଅ, ଉହାଡ଼ ଛାଡ଼ଦଅ—ଆରେ ବାଟ ଛାଡ଼—ପ୍ରହରାଜ ଆପଣେ ଆସିଗଲେଣି—ଆଉ ଭୟ ନାହିଁ......

ପ୍ରହରାଜଙ୍କ ଆସିବା ଶୁଣି ସମସ୍ତଙ୍କ ଭିତରେ ଗୋଟାଏ ଭରସା ଆସିଗଲା ଏବଂ ତା ସଙ୍ଗେ ସଙ୍ଗେ ହିଁ ସମସ୍ତେ ଆଉ ଗୋଟିଏ ମଜା ଦୃଶ୍ୟ ଦେଖିବା ଲାଗି ଉତ୍ସୁକ ଆଉ ଉଦ୍‌ଗ୍ରୀବ ହୋଇ ଉଠିଲେ । ପ୍ରହରାଜ ହେଉଛନ୍ତି ଅନନ୍ତ ନାରାୟଣ ପ୍ରହରାଜ । ଆଖେ ପାଖେ ପଚିଶ କୋଶ ଭିତରେ ଖୁବ୍ ନାମଡ଼ାକ ଗୁଣିଆ । ସମସ୍ତେ ଡାକନ୍ତି ଅନ୍ତୁ ପ୍ରହରାଜେ । ତାଙ୍କୁ ଯେତେବେଳେ ବୟସ ଅଠର କୋଡ଼ିଏ—ସେତେବେଳେ ସେ କାଉଁରୀ କାମାକ୍ଷୀ ଦେଶକୁ ଯାଇ ବହୁ ବହୁ ଗୁଣି ଗାରେଡ଼ ବିଦ୍ୟା ସାଧି ଫେରିଛନ୍ତି । ସେ ଦେଶରେ ସେ ଗୋଟିଏ ମନ୍ତ୍ରସିଦ୍ଧା ମାଲୁଣୀ ଘରେ ଦିନରେ ମେଣ୍ଢା ଆଉ ରାତିରେ ଭେଣ୍ଡା ହୋଇ ତିନିବର୍ଷ ତିନିମାସ ତିନି

ବନ ରହିଥିଲେ । ସେଇ ତାଙ୍କୁ ସବୁ ଗୁପ୍ତବିଦ୍ୟାମାନ ଶିଖାଇଥିଲି । ତାରଣ, ମାରଣ, ଜାରଣ, ବଶୀକରଣ, ଉଚାଟନ, ଉଡ଼ାଣ, ଉଘର୍ଷ, ପୋଚାଣ, ମଚାଣ ଆଦି ଗୁଣିବିଦ୍ୟାମାନ ସେ ତାହାର ପାଖରୁ ଶିଖିଥିଲେ । ତା'ପରେ ସେ ସବୁ ଶିଖାଶିଖି କରି ପରୀକ୍ଷା କରିବା ବାହାନାରେ ବହୁ ପୋଥିପତ୍ର ସହି ସେ ନିଜ ଦେଶକୁ ପଳାଇ ଆସିଲେ —ବାସ୍—ସେଇଦିନୁ ଆଉ ସେ ଫେରି ନାହାନ୍ତି ସେ ଦେଶକୁ ।

ଅନୁ ପ୍ରହରାଜ ଦେଖିବାକୁ ହାଷ୍ଟ ଭଳି ମଣିଷ । ଆଉଟା ତମ୍ବା ଭଳି ଦେହର ରଙ୍ଗ । ବାମ ବାହୁରେ ଗୋମୁଖୀ ରୁଦ୍ରାକ୍ଷ ମାଳାର କଡ଼ା । ଡାହାଣ ବାହୁରେ ତମ୍ବା ନିର୍ମିତ ଅନନ୍ତନାଗର କଙ୍କଣ । ବେକରେ ପଞ୍ଚମୁଖୀ ରୁଦ୍ରାକ୍ଷମାଳା ସଙ୍ଗେ ତ୍ରିମୁଖୀ ଭଦ୍ରାକ୍ଷର ମାଳା ତଳସରି ଲମ୍ବିଛି । ସେଥିରେ ଝୁଲୁଛି ଅଷ୍ଟଧାତୁ ନିର୍ମିତ ପଞ୍ଚମୁଖୀ ହନୁମାନଙ୍କ ଧାତୁମୂର୍ତ୍ତି । ବହୁ ଢେଉଁରିଆ ଆଉ ତାବିଜ ମଧ୍ୟ ସେଥିରୁ ଝୁଲୁଛି । ଆମ୍ବଡ଼ା ଅଠାରେ ଧୂଆଁମଳା ହୋଇ ନବଷିଅ ପଇତା କାନ୍ଧରେ ପଡ଼ିଛି ଶିବଙ୍କ ଦେହରେ ନାଗସାପ ଭଳି । କପାଳରେ ରକ୍ତଚନ୍ଦନର ତ୍ରିପୁଣ୍ଡ୍ର ଟିକା । ଦାଉ ଦାଉ ସିନ୍ଦୂରକଳି—ଦୁଇଆଖିରେ ସମ୍ମୋହିନୀ କଜ୍ଜ୍ୱଳ । ପାନବୋଳାରେ ଓଠଦିଅଟି ନାଲି ନାଲି । ଉଜ୍ଜ୍ୱଳ ଗେରୁଆ ଧୋତି ସଙ୍ଗେ ଉଜ୍ଜ୍ୱଳ ଗେରୁଆ ଉତ୍ତରୀ । ଦେବନାଗ ନାଗେରୀ ଅକ୍ଷରରେ ଜୟ କାମାକ୍ଷା ଛାପ ରକ୍ତଚନ୍ଦନରେ ମରିହୋଇଛି । କାନ୍ଧରେ ନାନାରଙ୍ଗର କନାରେ ନିର୍ମିତ ବଟିବ ଝୁଲିଟିଏ—ଆଉ ତା' ସାଙ୍ଗକୁ ଶ୍ରେଷ୍ଠ ଚିତା-ବାଘ ଚମର ଆସନଟିଏ ଗୁଡ଼ାଗୁଡ଼ ହୋଇ ଝୁଲୁଥାଏ । ଆଉ ହାତରେ ଭଦଭଦଳିଆ ଚଢ଼େଇର ପୁଛ ଲଗା ହୋଇଥିବା ଜାଞ୍ଜିଲବେତ । ସେଥିରେ ନାଲିକନା ବନ୍ଧାହୋଇ ଶ୍ରେଷ୍ଠ ଶ୍ରେଷ୍ଠ ପତାକା ଭଳି ଉଡ଼ୁଥାଏ ।

ଅନୁ ପ୍ରହରାଜଙ୍କୁ ଦେଖି ସମସ୍ତେ ଭୟରେ ଆଉ ସମ୍ଭ୍ରମରେ ଆଡ଼େଇ ହୋଇଗଲେ । ପ୍ରହରାଜ କାହା ଆଡ଼କୁ ନ ଚାହିଁ, ଭ୍ରୂକ୍ଷେପ ମାତ୍ର ନ କରି, ଏକମୁହାଁ ହୋଇ କୌଶଲ୍ୟା ପାଖକୁ ଆଗେଇ ଗଲେ । କୌଶଲ୍ୟା ଅଗଣା ଭିତରେ ବାରେଣ୍ଡାରେ ବସିଥାଏ । କୌଶଲ୍ୟା ହେଉଛି

ବାମ ମହାନ୍ତିଙ୍କର ପ୍ରଥମ ପକ୍ଷର ସ୍ତ୍ରୀଙ୍କ ଆଉ ତୃତୀୟା କନ୍ୟା । ଅଠର ବରଷର ଭୁଆସୁଣୀ ଝିଅ । ତାକୁ କାଲ ସଞ୍ଜବେଳୁ ଡାହାଣୀ ଲାଗିଛି । ସଞ୍ଜବେଳେ ହଳଦିଲଗାଇ, ମୁଣ୍ଡ କୁଣ୍ଡାଇ ବାଡ଼ତଳକୁ ପୋଖରୀପାଣି ଯାଇଥିଲା । ଯାଉଁଳ ତାଳଗଛ ପାଖେ ଯୋଡ଼ ଶାହାଡ଼ାଗଛ ଅଛି – ତାର ଭିତରୁ କିଏ ସତେକି ହସି ଉଠିଲା ମାଇପିଟିଏ ଭଳି । କୌଶଲ୍ୟା ଦେଖିଲା ଯେ ତା' ଚାରିପଟେ କେହି ନାହାଁନ୍ତି । ମୁହଁସଞ୍ଜ ବେଳଟା । ସେଇଠୁ ବନା ପବନରେ ଶାହାଡ଼ା ଗଛଟା କମ୍ପି ଉଠିଲା – ଆଉ କିଏ ଗୋଟିଏ ତା'ଭିତରୁ ତଳକୁ ଓହ୍ଲାଇ ପଡ଼ି କୌଶଲ୍ୟା ଭିତରକୁ ପଶିଗଲା । କୌଶଲ୍ୟା "ଇଲୋ ମୋ ବାପା ଲୋ" ବୋଲି ରଡ଼ିଟାଏ କରି ପୋଖରୀବନ୍ଧ ଉପରେ ଆସି କଚାଡ଼ି ପଡ଼ିଲା । ତା' ଚେତା ବୁଡ଼ିଗଲା । ରାତି ପହରକ ସରିକି ଆଲୁଅ ନେଇ ସମସ୍ତେ ସବୁଆଡ଼େ ଖୋଜି ଖୋଜି ସେଇଠି ତାକୁ ପାଇଲେ । ପାଣି ଛିଞ୍ଚି ଚେତା କଲେ । କିନ୍ତୁ ସେତିକିବେଳୁ ପଦେ ହ'ପଦ କଥା କହି ସେ ଏମିତି ବାୟାଣୀଙ୍କ ଭଳିଆ ହେଉଛି । ଖାଉ ନାହିଁ କି ପିଉ ନାହିଁ । ଗୋଟାଏ ଜାଗାରେ ବସି ବାଉଳୁଛି— ବାହୁନୁଛି—ବେଳେବେଳେ ହିଁ ହିଁ ହୋଇ ହସିଉଠୁଛି । କେତେ କିଏ ଔଷଧ ମୋଷଦ, ଝଣୁକାଝଣୁକ, କାଟପାଣି, ଫୁଙ୍କାଝଡ଼ା କଲେଣି, କାହିଁରେ କିଛି ହେଉ ନାହିଁ । ସେମିତି ବସି ରହୁଛି । ଆଖି ଦୁଇଟା ପେଜୁଆ ଧୂଆଁଟିଆ ଢଙ୍ଗରେ ନାଲି ଦିଶୁଛି । ଘୃମାଟିଆ ଦିଶୁଛି । ବେଳେ ବେଳେ ନିଶାଗ୍ରସ୍ତ ଭଳି ମୁହଁ ଟେକି ଚାହୁଁଛି—ଗୁଣୁଗୁଣୁ ହୋଇ ମନକୁ ମନ କ'ଣ ବଡ଼ ବଡ଼ ହେଉଛି । ପୁଣି କେତେବେଳେ କାନ୍ଦିଉଠୁଛି । କେତେବେଳେ ପୁଣି ନିର୍ଲଜ୍ଜୀଙ୍କ ଭଳି ହସି ହସି ଗଡ଼ିଯାଉଛି । ପୁଣି ବେଳେ ବେଳେ ଗୋଟାଏ ବିକଟ କଳକଳା ନାଦ କରି, ଗୋଡ଼ ହାତ ଛାଟି, ନଙ୍ଗଳା ମୁକୁଳା ହୋଇ ଘରସାରା ଗଡ଼ୁଛି । ବାମ ମହାନ୍ତିଙ୍କ ଦ୍ୱିତୀୟ ପକ୍ଷର ଘରଯା ହାତ ହଲେଇ ଚିତ୍କାର ଛାଡ଼ୁଛି, ଆରେ କି ଡାହାଣୀ ତାକୁ ଲାଗିଛି ? ଛଟା ଗାଳୁଛି—ଛଟା । ଅଲକ୍ଷଣୀ ଟୋକାର ଏମିତି କରି ଆମକୁ ଲୋକହସା କରାଇବାକୁ ମନ । କିନ୍ତୁ ବାମ ମହାନ୍ତିଙ୍କ ମୁଣ୍ଡ ଘୂରିଗଲାଣି । ପ୍ରଥମପକ୍ଷ ଭାର୍ଯ୍ୟାର ତିନୋଟି ଝିଅରୁ ବଡ଼ ଝିଅଟା ଗୋଟେ ପଠାଣ ସଙ୍ଗେ କୁଆଡ଼େ ପଳାଇଯାଇ ଦେଶାନ୍ତରୀ ହୋଇଗଲା ।

ହିଷ୍ଟପୁ ଝିଅକୁ ହେଲାଣି ଆସି ଚବିଶି ବର୍ଷ । ଯୌତୁକ ଦେଇପାରୁ ନାହାନ୍ତି ବୋଲ ବାହା ଦେଇପାରୁ ନାହାନ୍ତି । ଏଇ ଝିଅଟା କଉଶୁଲ୍ୟା — ହର ଧୀର ଥୀର । ହେଲେ, ତାକୁ ଏମିତ ଡାହାଣୀ ଲାଗି କୁଟାଭଳିଆ କରିଦେଲାଣି । ହିଷ୍ଟପୁ ପଷ ଘରଯାଉ ପୁଣି ତିନ ପୁଅ ଓ ଗୋଟିଏ ଝିଅ । ସମସ୍ତେ ବାଳୁତ ! ଏତେ ବଡ଼ କୁଟୁମ୍ବକୁ ସମାଳିବାକୁ କାଠିକର ପାଠ । ବାମ ମହାନ୍ତି ଧଇଁସଇଁ ହୋଇ ସକାଳୁ ରାତି ଅଧଯାଏ କୁଟୁମ୍ବ ସମାଳିବାରେ ଲାଗି ପଡ଼ିଥାନ୍ତି । ଏଥିକୁ ପୁଣି ହିଷ୍ଟପୁ ପଷର ରାହାବାଳୀ ଘର୍ଯ୍ୟା । ସକାଳୁ ରାତି ଅଧଯାଏ କାଉ ଭଳିଆ ରାଉ ରାଉ ହେଉଥାଏ, ଛଅଣ ଭଳିଆ ସମସ୍ତଙ୍କୁ ଖୁମ୍ପି ଲାଗିଥାଏ । ଏଥି ଉପରେ ପୁଣି ଏ ବିପତ୍ତି ପଡ଼ିଛି ।

କାଲି ରାତିରୁ କଉଶୁଲ୍ୟାକୁ ଘେରି ବସିଛନ୍ତି ଗାଁ ଯାକର ପିଲା ମାଇପେ, ବୁଢ଼ାବୁଢ଼ୀ ଆଉ ଟୋକାଟୋକିମାନେ । ଆଗ ପାଖରୁ ତିନିତିନିଟା ଗୁଣିଆ ଆସି ନସ୍ଥାନ୍ତ ହୋଇ ଫେରିଲେଣି । କୁଶୁନ ମଲିକ ଜଣେ ନାମଜାଦା ଗୁଣିଆ । ରାତିର ବେଳଯାଏ ତନ୍ତ୍ରମନ୍ତ୍ର କଲା—ପିତା-ଶୁଖୁଆ ସଙ୍ଗେ ମଲାମଣିଷଙ୍କ ବାଳ ଏକାଠି ପୋଡ଼ି କଉଶୁଲ୍ୟାକୁ ତା' ଧୂଆଁ ଶୁଙ୍ଘାଇଲା । ଲୁହା କରଚୁଲି ତତାଇ ତା' ଦେହଯାକ ଚେଙ୍ଗି ଦେଇଗଲା । ଦେହଯାକ ଫୋଟକା ହୋଇଗଲା—ହେଲେ, ସେ ଝଟାଲୀ ଡାହାଣୀ କଉଶୁଲ୍ୟାକୁ ଛାଡ଼ିଗଲା ନାହିଁ । ସମସ୍ତେ ମୁଣ୍ଡରେ ହାତ ଦେଇ ବସିଛନ୍ତି । ହାଭୁଣୀ ଭଳି ଭୂଆସୁଣୀ ଝିଅଟା ଆକଟାମାକଟା ହୋଇଗଲାଣି । ବାମ ମହାନ୍ତି ମୁଣ୍ଡରେ ହାତ ଦେଇ ବସିଛନ୍ତି ।

ଏବେ ପରୁଶ କୋଶ ଆଉ ପାର୍ଶ୍ୱର ବିଖ୍ୟାତ ଗୁଣିଆ ତାନ୍ତ୍ରିକ-ଶିରୋମଣି ଗୁଣିଆ ଗୁଣାର୍ଣ୍ଣବ ଅନନ୍ତ ପ୍ରହରାଜଙ୍କୁ ଦେଖି ସମସ୍ତଙ୍କ ମନରେ ଟିକିଏ ଆଶାଭରସା ତେଜ ଉଠିଲା । ଅନନ୍ତ ପ୍ରହରାଜ କଛି ଏମିତି ସେମିତି ଗୁଣିଆ ନୁହନ୍ତି । ମନ୍ତ୍ର ବଳରେ କେତେ ଅସାଧ୍ୟ ସେ ସାଧିଛନ୍ତି । ଆକାଶରୁ ତାରାମାନଙ୍କୁ ତଳକୁ ଖସେଇ ପକେଇଛନ୍ତି । ଉଆଁସ ରାତିରେ ଚନ୍ଦ୍ର ଦେଖେଇଛନ୍ତି । ପୁଣି ପୁନେଇଁ ରାତିରେ ଆକାଶରେ ଚନ୍ଦ୍ରକୁ ଉଭାନ କରି ଦେଇଛନ୍ତି ପହରେ ରାତିଯାଏ । ଅହିରାଜ ସାପ ଫଣାଟେକି ତାଙ୍କି

ଆସିଥିଲେ ବି ତାଙ୍କ ଆଖି ଆଗରେ ପଡ଼ିଲେ ଥମ୍ ହୋଇ ରହିଯିବ କୋଣଅା ହୋଇ । ଏମନ୍ତ ତାଙ୍କର ମହିମା ! କେତେଥର ବାଘଗଣ୍ଡ ଜନ୍ତୁ ମଧ୍ୟ ତାଙ୍କ ଅକ୍ଷି ଆଗରେ ପଡ଼ି ବଶ୍ୟ ହୋଇ ଯାଇଛି ପୋଷା ଛେଳିଭଳି । ଏମନ୍ତ ତାଙ୍କର ପ୍ରାକର୍ମ ! ବଡ଼ ବଡ଼ ଭୂତପ୍ରେତ, ଡାହାଣୀ, ପିଚାଶୁଣୀ, ଚିରୁଗୁଣୀ, ମାହଲା, ଗୋସାଣୀ, ଅଥାରୁଆ, ଏପରକି ପଠାଣ ଆଉ ଖିରସ୍ତାନ ଭୂତମାନେ ବି ତାଙ୍କୁ ଦେଖିଥିଲାମାତ୍ରେ ପବନ ସ୍ୱରୂପା ହୋଇ କାହିଁ କୁଆଡ଼େ ଚମ୍ପମାର ପଳାନ୍ତି । କ'ଣ କରି ପାଇଲ କି ତାଙ୍କୁ ? ସେ ପରା ଚନ୍ଦ୍ରଶ୍ରେର ତାନ୍ତ୍ରିକ ଚୂଡ଼ାମଣି ଗୁଣିଆ ଗୁଣସାଗର ଅନ୍ତୁ ପ୍ରହରାଜେ ? କୋଉ ବିଦ୍ୟା ତାଙ୍କୁ ଜଣା ନାହିଁ ? ବସିଥିବେ—ତୁମ ଆକ୍ଷି ଆଗରେ ଉହାନ ହୋଇଯିବେ । ଏଠି ତୁମ ସାଙ୍ଗେ ବସି କଥା ହେଉଛନ୍ତି—ମୁହୂର୍ତ୍ତେ ଦେଖିବ, ଦଶରଥପୁର ହାଟରେ ଯାଇ ବାଇଗଣ କିଣୁଛନ୍ତି ।

ସେଇ ଅନ୍ତୁ ପ୍ରହରାଜଙ୍କୁ ଦେଖି ସମସ୍ତେ ପାଖେଇ ଗଲେ । ଦୂରେଇ ମଣ୍ଡଳ କରି ଛିଡ଼ା ହେଲେ । କଉଶଲ୍ୟା ସେମିତି ତଳକୁ ମୁହଁ ପୋତି ବସିଥାଏ । ତା' ଆଖିରୁ ଲୁହ ବହୁଥାଏ । ପାଟିରୁ ବହୁଥାଏ ଅନୁବ୍ରତେ ଲାଳର ଧାର । କିନ୍ତୁ ଅନ୍ତୁ ପ୍ରହରାଜଙ୍କୁ ଦେଖିବା ମାତ୍ରେ କ'ଣ ସେ ବାଉଳି କେଜାଣି, ମୁଣ୍ଡରେ ଓଢ଼ଣା ଦେଇ ଜାକଜୁକ ହୋଇ ବସିଲା । ଅନ୍ତୁ ପ୍ରହରାଜେ ଗମ୍ଭୀର ହୋଇ ଚୂପ୍‌ଚାପ୍ କ୍ଷଣେ ଠିଆହେଲେ । ତା'ପରେ ଟିକଏ ହସିଦେଲେ । ଥଳିରୁ ରୂପାର ପାନଡବା କାଢ଼ି, ସେଥିରୁ ପାନଖିଲେ କାଢ଼ି ପାଟିକି ନେଲେ । ତା'ପରେ ବାଘଛାଲ ପକାଇ ବସି ଅର୍ଡ଼ର କଲେ—ହଉ ହଉ—ବଡ଼ ଗରାରେ ଗରାଏ ପାଣି ଆଣ । କାଠୁଆଏ କଞ୍ଚା ହଳଦୀ ବାଟି ଆଣ । ସାତୁଟା ହରଡ଼ା ଆଣ । ସାତୁଟା ଆଣ ଗୋଟାଗୁଆ । ସାତକେରା ଦୁବ ଆଣ—ସାତୁଟା ବରକୋଳି ପତ୍ର । ସାତୁଟା ଡିମିରିପତ୍ର—ସାତୁଟା ସାରୁପତ୍ର । ସିନ୍ଦୂର ଟିକିଏ ଆଣ । ଉଷୁନା ଚାଉଳ ମାଣେ ରଖ । ସାତୁଟା ପିତା କିଟାମେଣ୍ଡା ଶୁଖୁଆ । ଆଜ୍ଞା ପ୍ରମାଣେ ପାଞ୍ଚମିନିଟ ଭିତରେ ସବୁ ସାମଗ୍ରୀ ଆସିଗଲା । ଗୋଟାଏ ସରାରେ ଝୁଣାଗୋଗୁଳ ପଡ଼ି ଧୂଆଁ ହଆ ଯାଉଥାଏ । ଚାରିଆଡ଼େ ଧୂଆଁ ପୂରି ଯାଇଥାଏ ।

ସେଇଠୁ ପ୍ରହରାଜେ ଝୁଲିରୁ ଗୋଟାଏ ସିନ୍ଦୂର ବୋଳା ଡବା କାଢ଼ିଲେ । ତା' ଭିତରୁ ନାନାବିଧ ଚେରମୂଳ ଓ ବନ୍ଧନ ରଙ୍ଗର ନାନାବିଧ ଗୁଣ୍ଡ କାଢ଼ିଲେ । କିଛି ସମୟ ଗୁମ୍ ହୋଇ ବସି କଉଣସି ଆଙ୍କ କଟମଟ କରି ଏକାଳୟରେ ଅନାଇ ରହିଲେ । ତା' ପରେ ଧୂଆଁ ସଙ୍ଗରେ ଝୁଲିରୁ କାଢ଼ିଥିବା ଚୂର୍ଣ୍ଣତକ ପକାଇଲେ । ଗୋଟିଏ ବିଚିତ୍ର ଗନ୍ଧ ଘରଆଡ଼େ ପ୍ରସରିଗଲା । ସଂଗୃହୀତ ଅନ୍ୟ ସାମଗ୍ରୀମାନ କଦଳୀପତ୍ର ପକାଇ ତା' ଉପରେ ରଖାଗଲା । ପ୍ରହରାଜେ ତାଙ୍କର ପାଞ୍ଜିଳବେତ ଧରି କ'ଣ ଗୁଡ଼ାଏ ବୁଦ୍‌ବୁଦ୍ କରି ମନ୍ତ୍ର ବୋଲି ସେଇ ବେତ ଦ୍ୱାରା ସବୁ ସାମଗ୍ରୀକୁ ଛୁଇଁ ପାଣିଠିଆ ଭିତରେ ଢାଳିଲେ । ସେଇଠୁ ଖୁବ୍ ଅତଙ୍କ ଗଳାରେ ବଡ଼ ପାଟିରେ ମନ୍ତ୍ର ହାଙ୍କିଲେ ।

ଓଁ ହ୍ଲୁଂ କ୍ଲୁଂ ଶ୍ଲିଂ, ହ୍ରୁଂ, ଗ୍ରିଂ, ଫିଂ, ଫିଂ; ଫ୍ରୀଂ, ଫଟ୍ ଫାଟ୍ ଫୁଟ୍, ଡଂ ଡିଂ, ଢଂ ଧଂ ଓଁ ନମଃ ଚଣ୍ଡିକୈଃ—ଆରେ ଆରେ ପାଣି ପାଣିରେ ପାଣି ! ଗରପାଣି, ମାଠିଆପାଣି, କଳସୀପାଣି, କୂଅପାଣି, ପୋଖରୀପାଣି, ବିନ୍ଦୁସାଗର ପାଣି, ନରେନ୍ଦ୍ର ପାଣି, ମାର୍କଣ୍ଡ ପାଣି, ଗଙ୍ଗା-ପାଣି, ଯମୁନା ପାଣି, ନର୍ମଦା ପାଣି, ବୈତରଣୀ ପାଣି, ମହାନଦୀ ପାଣି, କେଦାରଗୌରୀ ପାଣି, ସପ୍ତସମୁଦ୍ର ପାଣି, ଘରମେଘ ପାଣି, ପାତାଳ ପାଣି, ସ୍ୱର୍ଗପାଣି, ଶ୍ରୀଜଗନ୍ନାଥଙ୍କ ସ୍ନାନପାଣି, ବିମଳେଇଙ୍କ ଗାଧୁଆ ପାଣି, ସାରଳେଇଙ୍କ ମାଜଣା ପାଣି, ବିରଜେଇଙ୍କ ଗାଧୁଆ ପାଣି, ସମଲେଇଙ୍କ ଗାଧୁଆ ପାଣି, ଚର୍ଚ୍ଚିକେଇଙ୍କ ଗାଧୁଆ ପାଣି, ଭଗବତୀଙ୍କ ମାଜେଣା ପାଣି, କାକଟେଇଙ୍କ ଗାଧୁଆ ପାଣି, କଟେକେଇଙ୍କ ମାଜଣା ପାଣି, ବୈତରଣୀକୁଣ୍ଡର ପାଣି, ଆରେ ଆରେ ପାଣି, ଏମନ୍ତ ପାଣି, ସେମନ୍ତ ପାଣି, ଚଉଦ ବ୍ରହ୍ମାଣ୍ଡ ପାଣି, ସପ୍ତଦ୍ୱୀପ ମେଦନୀର ପାଣି, ଆରେ ଆରେ ପାଣି ! ସବୁ ପାଣି ଏକାଠି ହେଲା । ଏବେ ପୂର୍ବକୁ ଯାଅ, ପଶ୍ଚିମକୁ ଯାଅ, ଉତ୍ତରକୁ ଯାଅ, ଦକ୍ଷିଣକୁ ଯାଅ, ଆରେ କାମାକ୍ଷୀ ଠାକୁରାଣୀଙ୍କ କୁଣ୍ଡରେ ଯାଇ ପଶ, ନଟେଇ ଧୋବଣୀର ହାଣ୍ଡିରେ ପଶ, ପିଟେଇ ସଉରୁଣୀର କଳସୀରେ ପଶ । ଆଲୋ ଆଲୋ ଚଣ୍ଡୀମାନେ ! ଗୁମୁଣ୍ଡାମାନେ ! ମାଛ ଖାଅ, ଶୁଖୁଆ ଖାଅ, କୁକୁଡ଼ା ଖାଅ, ଛେଳି ଖାଅ, ମେଣ୍ଢା ଖାଅ, ସବୁର

ବଗରେ ଆବୋର ଥାଅ—ସବୁର ବଗରେ ଝଁଡ଼ଉ ଥାଅ—ଛଡ଼ଉ ଥାଅ । ଆରେ ଆରେ ଠଃଠଃଠଃ, ଫୁସ୍ ଫୁସ୍ ଫୁସ୍ ! ଆରେ ଆରେ ତୁ କଏ ? ଆଲେ ଆଲେ ତୁ କଏ ? କୋଉ ଗଛରେ ଥାଉ ? ବାଉ ଶାହାଡ଼ାରେ ? ତନ୍ତୁଳ ଗଛରେ ? ଆମ୍ବ, ପଣସ, ଉଦୁମର, ବର, ଓଶଥ, ତାଳ, ନଡ଼ିଆ, ଯୋଉ ଗଛରେ ଥାଆ ତୋ' ସୁଖରେ ଥାଆ—ମାଛ ଖାଆ—ସୁଖୁଆ ଖାଆ—କୁକୁଡ଼ା ଖାଆ—ଯା' ଚ୍ଳଯା—ଏ ଦେହ ଛାଡ଼ ଚ୍ଳ ଯା—ଏ ଘର ଛାଡ଼ ଚ୍ଳ ଯା—ତୋ' ସୁଖେ ତୁ ଚ୍ଳ ଯା—ଯା ଯା, ପାଣି ପାଣିରେ ଯାଆ—ପବନେ ପବନେ ଯାଆ—ଯାଆ ଯାଆ ବୋଲ କାହାର ଆଜ୍ଞା ? କାଉଁସ କାମଚଣ୍ଡୀଙ୍କର କୋଟି କୋଟି ଆଜ୍ଞା —ପଞ୍ଚମୁଖୀ ତୋଟା ମହାବୀରଙ୍କର କୋଟି କୋଟି ଆଜ୍ଞା—ଧୂମ୍ରା ଧନ୍ଦୋଳା ମହାରଜାଙ୍କର କୋଟି କୋଟି ଆଜ୍ଞା—ଆଃ ଫୁସ୍ ଫୁସ୍ ଫୁସ୍ —ଫୁସ୍ ଫୁସ୍ ଫୁସ୍—

ଏତିକେ କହି ପ୍ରହସ୍ତଜେ କଉଶୁଲ୍ୟା ଉପରେ କଚ୍ଛ ମନ୍ତ୍ରସ ହଳଘ ପାଣିଗରରୁ ତାଳ ଛାଞ୍ଚଦେଲେ । ସେତିକରେ କୌଶଲ୍ୟା ଥର ଉଠିଲା କମ୍ପଜର ଭଳିଆ । ଥର ଥର ଶରଚରେଇ ଉଠିଲା—ଓହୋଃ ! ଓହୋ ମୋ ଧିଅ ପୋଡ଼ିଯାଉଛି···ମୁଁ ମରଗଲି···ମୁଁ ମରଗଲି···ଆଲେ ମତେ ମାର ପକାଇଲା ଲେ ଓ ଓ ଓ···

ଅନୁ ପ୍ରହସ୍ତଜେ ତାଙ୍କର ସେଇ ସିନ୍ଦୂର ଲଗା ଭଦଭଦଳଆ ପରଲଗା ନାଲକନା ଗୁଡ଼ିଆ ହୋଇଥିବା ଯାଉଁଳ ବେତଟିକୁ ତା' ମୁଣ୍ଡରେ ଛୁଆଁଇ ପଚ୍ଚାରଲେ···

ହଉ ହଉ, ଏବେ କହ, ତୁ କଏ ?

କଉଶୁଲ୍ୟା ତାଙ୍କ ମୁହଁକୁ ଆଚ୍ଛନ୍ନ ଦୃଷ୍ଟିରେ ଚାହିଁ କହିଲା···ମୁଁ ରଘୁଆ ମାଇପ ପାରବତୀ ।

ତୁ କୋଉଠି ଥିଲୁ ?

···ଡ଼ ପୋଖରୀ ପାଖ ଶାହାଡ଼ା ଗଛରେ ଥିଲି ।

ଏଠିକି କେମିତି ଆସିଲୁ ?

ଏଇ କଉଶୁଲ୍ୟା ହଳଦୀ ଲଗେଇ ମୁଣ୍ଡ ବାନ୍ଧି ବନ୍ଧ ଉପରକୁ ସଞ୍ଜବେଳେ ପୋଖରୀପାଣି ଯାଇଥିଲା । ମୋ ବେଳା ପଡ଼ିଗଲା । ମୁଁ ତା' ଦେହରେ ପ୍ରବେଶ ହୋଇଗଲି ।

କାହିଁକି ପ୍ରବେଶ ହେଲୁ ? କ'ଣ ତୋର ଇଚ୍ଛା କହି ଦେ । କୋଉଥିରେ ତୋର ଆଶା କହି ଦେ···

କଉଶୁଲ୍ୟା ଆଉ କିଛି କହିଲା ନାହିଁ । ଚୁପ୍ ହୋଇଗଲା ।

କଲେ କହ ! କାହିଁରେ ତୋର ଆଶା ?

ସେ କଥା କାହିଁକି ପଚାରୁଛ ?

ପଚାରିବି ନାହିଁ ? ନର୍ଦୋଷ ପିଲାଟାକୁ କାଲିଠୁଁ ଭରହୋଇ ରହିଛୁ । ଦେଖୁନୁ, ପିଲାଟାର ଅବସ୍ଥା କ'ଣ ହୋଇଗଲାଣି ? ସେ ଆଉ ବଞ୍ଚିବଟି କି ?

ନ ବଞ୍ଚୁ । ନ ବଞ୍ଚିଲେ ମୁଁ କ'ଣ କରିବି ? ମୁଁ ଗୋଟି ଗୋଟି କରି ଏ ଗାଁର ଝିଅ ବୋହୂଙ୍କ ଦେହରେ ପ୍ରବେଶ ହେବି—ଆଉ ସମସ୍ତିଙ୍କି ମାରିବି ।

ଅନୁ ପ୍ରହରାଜେ ଯାଉଁଳି ବେତଟିକୁ ତା' ମୁଣ୍ଡରେ ପୁନଶ୍ଚ ଛୁଆଇଁ ଦେଲେ । ଏବଂ ତା'ର କାନ୍ଧ ପିଠି ପେଟ ଓ ପାଦରେ ମଧ୍ୟ ଛୁଆଇଁ ଦେଇ କହିଲେ—

ଆଲୋ ହେ ରଣ୍ଡୁଆ ମାଇପ ପାରିବଣା ! ତତେ ମୁଁ ଭଲରେ ଭଲରେ କହି ଦଉଛି—ତୁ ଏ ଦେହ ଛାଡ଼ି ଚାଲିଯା' ତୋ' ସୁଖରେ । ଆଉ ଏ ଝିଅଟାକୁ କଦର୍ଥନା ଦେ'ନା !

କୌଶଲ୍ୟା ପୁଣି ସେହିପରି ଆଚ୍ଛନ୍ନ କଣ୍ଠରେ ତେଜଉଠି କହିଲା—ଆଗ କହନ୍ତୁ, ଏ ଗାଁ ବାଲା ମତେ କାହିଁକି ଉଚ୍ଛନ୍ନ କଲେ ?

ଗାଁ ବାଲ୍ମ ଚଢେ କାହିଁକ କେମିତ ଉଚ୍ଛନ୍ନ କଲେ ?

ସମବେତ ଦେଖଣାହାରଙ୍କ ଆଡ଼କୁ ହାତ ଦେଖେଇ କଉଶୁନ୍ଧା କହିଲା—ହେଇଟି ହେଇଟି, ଏଇ ଯୋଡ଼ ବେଧିଆ ଦ'ଟା ଏଠି ଠିଆହୋଇ ହସୁଛନ୍ତି—ସବୁ ଅନର୍ଥର ମୂଳ ସେମାନେ । ସେମାନେ ମୋ ଘଇତାକୁ ଶିଖେଇ କର ପୁରସ୍ତମ ନେଲେ । ସେଠି ତାକୁ ଦୁଦୁର ବଷ ମିଶେଇ ଭାଙ୍ଗ ଖୋଇଲେ । ଭାଙ୍ଗ ନଶାରେ ତାକୁ ସେଠୁ ଆଣି ଭାର୍ଗବୀ ନଈକୁ ଠେଲି-ଦେଲେ । ସେ ମଲା । ସେଇଠୁ ଏ ବେଧିଆ ଦ'ଟା ଗାଁକୁ ଆସି ମତେ ଧମକେଇଲେ—କହିଲେ, 'ରଘୁଆ ଆମଠଉଁ ହଜାରେ ଲେଖାଁ ଦ'ହଜାର ଟଙ୍କା ଧାରଛି—ଆମକୁ ସୁଧମୂଳେ ଦେଇଦେ' । ମୁଁ କହିଲି—ମୁଁ ଗରିବ ଲୋକ ମୋର ଗୃଷ ଅଛି ନା ବାଯ ଅଛି ? ନା ବାପଘରେ କେହି ଅଛି ? ଏଇ ଘରଡିଅ ଖଣ୍ଡିକ । ମୁଁ ଏତେ ଟଙ୍କା କାହୁଁ ପାଇବ ? ସେ କେତେବେଳେ ଏତେ ଟଙ୍କା ନେଇଥିଲେ ମତେ ଜଣା ନାହିଁ । ହେଇଠୁ ଏ ବେଧିଆ ଦ'ଟା ମତେ ରାଣ୍ଡୀଖଣ୍ଡୀ ନଆଶ୍ରୀ ନପାରଲି ଦେଖି ମତେ ଦବୁଦ୍ଧନେ ଧମକେଇଲେ ମୋ ଘରଡିଅ କବଲା କରନେବେ ବୋଲି ତଦ୍ଦଲେ । ସେଇଠୁ···ସେଇଠୁ···କହିବରେ ବେଧିଆମାନେ ? କହିବ ? ଆରେ ମାରକଣ୍ଡ ଶତପଥୀ ! ଆରେ ବନା ମହାନ୍ତ ? କହିବ ତୁମ ପାପ-କଥା ? ଏ ବେଧିଆ ଦ'ଟା ପ୍ରତିଦନ ରାତିରେ ଗୋଟିକ ପରେ ଗୋଟିଏ ହୋଇ ମୋତେ ଆସି ହରନ୍ତି । ମୋ ଇଜ୍ଜତ ନେଲେ ପଗୃଣଥର । ଦନେ ସହିପାରଲି ନାହିଁ ଦଉଡ଼ି ଲଗେଇ ଦେଲି ।

କଉଶୁନ୍ଧା ତୁଣ୍ଡରୁ ଏତେକ ଶୁଣୁଶୁଣୁ ସମବେତ ଦେଖଣାହାରଙ୍କ ଭିତରୁ ମାର୍କଣ୍ଡ ଶତପଥୀ ଆଉ ବନା ମହାନ୍ତ ଚହିଙ୍କି ଉଠିଲେ ।—ଷ୍ଟପ୍ ବେ ।

ତା'ପରେ ସମସ୍ତେ ତାଙ୍କ ଦୁହିଁଙ୍କ ଆଡ଼କୁ ଗୃହିଁଲେ । ତା'ପରେ ତାନ୍ତ୍ରିକ ଚୂଡ଼ାମଣି ଗୁଣିଆ ଗୁଣସାଗର ଅନ୍ତୁ ପ୍ରହରାଜେ ମାର୍କଣ୍ଡ ଶତପଥୀ ଆଉ ବନା ମହାନ୍ତ ଉଦ୍ଦେଶ୍ୟରେ ଆଖି କଟମଟ କର ମେଘ ଗର୍ଜନ ସ୍ୱରରେ କହିଲେ—

ହଇଓ ମାର୍କଣ୍ଡ ଶତପଥୀଏ ! ହଇଓ ବନା ମହାନ୍ତିଏ ! ଏ ଯାହା କହୁଛି—ହଅ ସ୍ୱାର ପ୍ରତ୍ୟୁତ୍ତର । ସତକଥା କ'ଣ ମାନଯାଅ ।

ମାର୍କଣ୍ଡ ଆଉ ବନା ଦୁହେଁଯାକ ପ୍ରଥମେ ଥତମତ ଖାଇଗଲେ । ତା'ପରେ ଦୁହେଁଯାକ ଏକା ସାଙ୍ଗରେ ପାଟିକରି ଉଠିଲେ—ମିଛ, ମିଛ । ଶାଳୀ ଡାହାଣୀ ହେଇକରି ଆମ ନାଁରେ ମିଛ ଅପବାଦ ଲଦି ଦଉଛୁ । ଶାଳୀ ବଟାଳୀ ପିଠିରେ ଲୁହା କରୁଛୁଲା ତଡେଇ ଚଆଁ ଦଉନ କାହିଁକି ପ୍ରହରାଜ ଆପଣେ ? ଶାଳୀ ପ୍ରେତାତ୍ମା ହୋଇ କରି କେମିତି ଭଦ୍ରଲୋକଙ୍କୁ ଘଣ୍ଟିଆ କରୁଛି ଦେଖ ହେ !!

ଅନନ୍ତ ପ୍ରହରାଜ ସେମିତି କଟମଟ କରି ସେମାନଙ୍କ ଆଡ଼କୁ ଅନାଇ ରହିଥାନ୍ତି । ତାଙ୍କ ଦାଉ ଦାଉ ଆଖି ଦୁଇଟିରୁ ଡୋଳା ଦୁଇଟା ପଦାକୁ ବାହାରି ଆସିଲା । ସେ ଖୁବ୍ ଦୃଢ଼ ଗଳାରେ କହିଲେ—ବୁଝିଲ ବାବୁ ! ଭୂତ ପ୍ରେତ, ଡାହାଣୀ-ଚିରୁଗୁଣୀମାନେ ଜାଣିଥିବ କେବେ ମିଛ କହିବେ ନାହିଁ । ମୋ ଦେହାନ୍ତରେ ମୁଁ ଶହ ଶହ ଭୂତ ପ୍ରେତ ଡାହାଣୀ ଚିରୁଗୁଣୀଙ୍କୁ ନେଇ କାରବାର କରିଛି—ସେମାନଙ୍କର ବହୁ ମନ୍ଦକର୍ମ ମତେ ଜଣାଅଛି—କେହି କେହି ସେମାନଙ୍କ ଭିତରୁ ଘୋର ଦୁଷ୍ଟ, ତା' ମଧ୍ୟ ମୁଁ ଜାଣେ । ହେଲେ, ସେମାନେ କେବେ ମିଛ କହିବାର ପ୍ରମାଣ ମୁଁ ପାଇନାହିଁ । ଦେଖ ଶତପଥୀଏ ! ଦେଖ ମହାନ୍ତିଏ ! ତୁମ୍ଭେମାନେ ସତକଥାଟି ମାନଯାଅ । ଆଜି ଦେଖ ଏଠି ଚଉଷଠୀ ଯୋଗିନୀଙ୍କୁ ମୁଁ ଆବାହନ କରି ଆଣିଛି । ସେମାନଙ୍କ ଆଗରେ ଯଦିଅବା ତୁମେମାନେ ସତକଥା ମାନି ନ ଯାଅ, ତା'ହେଲେ ତା'ର ପ୍ରତିଫଳ ତୁମେମାନେ ଅବଶ୍ୟ ପାଇବ । ମତେ ଆଉ ପଶ୍ଚାତେ ସେମିତି ଦୋଷ ନ ଦିଅ । ସେତେବେଳକୁ ଆଉ କଥା ମୋ କଣ୍ଟ୍ରୋଲରେ ନ ଥିବ—ହଁ—କହି ରଖୁଛି......

ସମବେତ ଲୋକେ ସମସ୍ତେ ବର୍ତ୍ତମାନ ବନା ମହାନ୍ତି ଓ ମାର୍କଣ୍ଡ ଶତପଥୀଙ୍କ ଆଡ଼କୁ ଗୁହାରି କହିଲେ ଏବଂ ଯାହା ଜଣାଯାଉଥିଲା, ସେମାନେ ସମସ୍ତେ ସତ କଥାଟି ଜାଣିବାକୁ ଦାବି କଲେ । କିନ୍ତୁ ସମସ୍ତ

ପାଇଁ ବନା ମାର୍କଣ୍ଡ ମୁହଁକୁ ଓ ମାର୍କଣ୍ଡ ବନା ମୁହଁକୁ ଚାହାଁ ଚୁହିଁ ହେଲେ । ଉଦେଶ୍ୟ, ତାଙ୍କ ଭିତରୁ କେହି ଜଣେ ଏହି ଆହ୍ୱାନର ଉତ୍ତର ଦେଉ । ଅନ୍ୟମାନେ ଚୁପ୍‌ଚାପ୍ ଠିଆ ହୋଇ ରହିଥାନ୍ତି । ପରିବେଶ ଖୁବ୍ ନିସ୍ତବ୍ଧ ହୋଇ ଯାଇଥାଏ । ହଠାତ୍ ବନା ମହାନ୍ତି ପାଟି ଖୋଲିଲା—

ଆଚ୍ଛା ହେଉ ପ୍ରହରାଜ ଆପଣେ ! ଯଦି ଆପଣ ସତକୁ ସତ ଡାହାଣୀ ଯୋଗିନୀଙ୍କୁ ବଶ୍ୟ କରିଥା'ନ୍ତି, ଯଦି ଦାମ ମହାନ୍ତିର ଝିଅ କଉଶୁଲ୍ୟାକୁ ସତକୁ ସତ ରଘୁଆ ମାଇପ ପାରବତୀ ଡାହାଣୀ ହୋଇ ଲାଗିଥାଏ, ଆଉ ଯଦି ସତକୁ ସତ ଡାହାଣୀମାନେ ମିଛ କହନ୍ତି ନାହିଁ, ତେବେ ଏ ଗାଁରେ ଆଉ କିଏ କଅଣ ଅପକର୍ମମାନ କରିଛନ୍ତି ସେ କଥା ସେ ଏଠି ସମସ୍ତଙ୍କ ଆଗରେ ଫେଡ଼ି କହିଦେଉ—ଦେଖିବା କେମିତି ସେ ସତ୍ୟବନ୍ତୀ ଡାହାଣୀ ।

ଅନ୍ତୁ ପ୍ରହରାଜେ କଉଶୁଲ୍ୟା ଆଡ଼କୁ ଚାହିଁଲେ । ତା'ପରେ ତା ମୁଣ୍ଡରେ ତିନିଥର ସେହି ଯାଉଁଳି ବେତଟିକୁ ଛୁଆଁଇ ଦେଇ ଖୁବ୍ ନରମ ଗଳାରେ କହିଲେ—ଆଲୋ ହେ ରଘୁଆ ମାଇପ ପାରବତୀ ! କହିପାରିବୁ ଏ ଗାଁରେ କିଏ କ'ଣ ଅପକର୍ମମାନ କରିଛନ୍ତି ? ଯଦି ଜାଣିଥାଉ, କହିଦେ ।

କଉଶୁଲ୍ୟା କିଛି ଉତ୍ତର ଦେଲା ନାହିଁ । ଖାଲି ଝାଳେଇଲା । ତା' ଆଖିଯୋଡ଼ାକ ଧୂଆଁଟିଆ ନାଲି ଆଉ ନିଦୁଆ ନିଦୁଆ ଦିଶୁଥାଏ । ସେ ଖାଲି ସମସ୍ତଙ୍କୁ ମଝିରେ ମଝିରେ କଟମଟ କରି ଚାହୁଁଥାଏ । ଫେରି ଆଖି ବୁଜି ଦୋହଲୁଥାଏ । ତା ବାଳତକ ଫିଟି ଏଣେ ତେଣେ ଉଡ଼ୁଥାଏ । ତା'ର ପିନ୍ଧା ଶାଢ଼ୀ ବିପର୍ଯ୍ୟସ୍ତ ହୋଇଯାଇଥାଏ । ତା' ଛାତିରେ ସୁଗୋଲ ସ୍ତନ ଦୁଇଟି ପରିଷ୍କାର ହୋଇ ଦିଶୁଥାଏ । ପ୍ରହରାଜଙ୍କ ଆଦେଶରେ କେହି ତାହା ଦେହରେ ହାତଦେଉ ନ ଥାନ୍ତି । କିନ୍ତୁ ତା'ର ସେହି ଲଙ୍ଗଳା ମୁକୁଳା ରୂପ ଯୌବନ ଦେଖିବାକୁ ଗାଁର ଟୋକାମାନେ କଟମଟ କରି ଚାହିଁ ରହିଥାନ୍ତି ଓ ଆପଣା ଭିତରେ ଖୁଜୁବୁଜୁ ହେଉଥାନ୍ତି । କଉଶୁଲ୍ୟାର ବାପକୁ ଭାରି ଗ୍ଲାନି ଲାଗିଥାଏ । କିନ୍ତୁ ସେ ବା କ'ଣ କରିପାରିବ ?

ପ୍ରହଗଜଙ୍କ କଥାର କିଛି ଜବାବ ଦେଲା ନାହିଁ କଉଶୁଣ୍ୟା । ଖାଲି ଘୁମେଇଲା—ଘାଲେଇ ଘାଲେଇ ହୋହଲା ଲଗିଲା । ସେଇଠୁ ମାର୍କଣ୍ଡ ଶତପଥୀ ଆଉ ବନା ମାହାନ୍ତି ଦୁହେଁ ପାକ ପାଟିକରି ଉଠିଲେ—

ପ୍ରହରାଜ ଆପଣେ ! ଶାଳୀ ଚଣ୍ଡାଳ ପିଲ୍ଲରେ ହ' ଗୁଣି ବେତ କଷି ହଅନ୍ତୁ ଆଜ୍ଞା ! ଶାଳୀ ଡାହାଣୀ ଆମ ନାମରେ ଏମିତି ଦୁର୍ନାମ ରଟେଇ, ଗାଁ ବାଲା ସମସ୍ତିଙ୍କ କଥା ପଗୃଶଲରୁ କେମିତି ଛଟା ଗାଳୁଛି ଦେଖନ୍ତୁ ।

ମାତ୍ର ଅଲ୍ଲ ପ୍ରହରାଜ ଖୁବ୍ ଧୀର ଆଉ ନରମ ଗଳାରେ କହିଲେ—

ବୁଝିଲ ବାବୁମାନେ ! ତୁମମାନଙ୍କ ଆଜ୍ଞାରେ ମୁଁ ତାକୁ ବାଡ଼େଇ ପାରିବି ନାହିଁ । ସେ ହେଲା ପ୍ରେତାତ୍ମା । ବିଗୃଣି କ ଦୋଷ କରିଛି କମ୍ବା ତା'ର କ ସବୁ କାମନା ଅପୂରଣ ହୋଇ ରହିଛି କମ୍ବା ତା'ର ଶ୍ରାଦ୍ଧ-ମଉଲା କେହି ଦେଇ ନାହାନ୍ତି । ସେଥିଲାଗି ସେ ଅମୋକ୍ଷ ହୋଇ ଏତେ ଯାତନା ଭୋଗୁଛି । ଆଉ ଅନ୍ୟକୁ ବି କଷ୍ଟ ଦେଉଛି । ମୁଁ ଗୁଣିବିଦ୍ୟା ସାଧିଛି ବୋଲି ସେମାନଙ୍କୁ ବାଡ଼େଇ ପିଟି ପୁଣି ଏତେ କଷ୍ଟ ଦେବି କେମିତି ? ଆଉଡ଼ୀର୍ଘ ତିରିଶ କୋଶ ଭିତରେ ମୋ ଜାଣତରେ ପଗୃଶ ସରିକ ଡାହାଣୀ, ଏକଚିଶ ଅନ୍ଦାଜେ ଭୂତ, ଗୃଶଟା ସଇତାନ, ନଅଟା ପିଚାଶୁଣୀ ଆଉ ଗୋଟାଏ ମାହଲା ଅଛନ୍ତି । ଦୁଇଟା ପଠାଣଭୂତ ଆଉ ଗୋଟାଏ ଖ୍ରୀଷ୍ଟାନ ଭୂତ ମଧ୍ୟ ମୋ ହାବୁଡ଼େ ପଡ଼ିଛନ୍ତି କେତେଥର । ମୁଁ ସେ ସମସ୍ତଙ୍କୁ ଜାଣେ । ସେମାନଙ୍କ ନାମଧାମ, କ୍ରିୟାକଳାପ, ଗୁଣଗ୍ରାମ ମଧ୍ୟ ମତେ ଜ୍ଞାତବ୍ୟ ଅଛି । ସେମାନେ ହେଲେ ଅମୋକ୍ଷ ଆତ୍ମା । କାହାର କ'ଣ ଅନଷ୍ଟ କରନ୍ତି ? କେବଳ ତାଙ୍କ ବେଳାରେ ପଡ଼ିଗଲେ କ କାହା ଉପରେ ପ୍ରତିଶୋଧ ନେବାକୁ ଥିଲେ ସେମାନେ ଜଣଜଣକ ଉପରେ ଭର୍ ହୋଇଯାନ୍ତି । ମୋର ତିରିଶି ବର୍ଷର ଗୁଣିଗାରେଡ଼ୀ ଜୀବନରେ ମୁଁ ମାତ୍ର ତିନୋଟି ଡାହାଣୀକି ଗୋଟିଏ ତନ୍ତୁଳି ବୃକ୍ଷରେ ଲୁହାକଣ୍ଟା ମାରି ବନ୍ଦୀ କରି ରଖିଛି । ସେଗୁଡ଼ାକ ଭାରି ଉତ୍ପାତିଆ କରୁଥିଲେ । ହେଲେ ବି ମୋ

ମନ ସେଥିରେ ଭାରି ଖରାପ । ମୁଁ ସେମାନଙ୍କୁ ବୁଝାସୁଝି କରି ମନାଏ । ଖୁବ୍ ଅମାନିଆ ହେଲେ ଧମକାଏ । କିନ୍ତୁ କାହାକୁ ମାରଧର କରେ-ନାହିଁ । ତୁମେମାନେ ମତେ ସେ କଥା କହ ନାହିଁ । ଏବେ କହିଦିଅ— ସେ ଯାହା କହୁଛି, ତା ସତ କି ମିଛ !

ବନା ମାହାନ୍ତି କହିଲା—କ'ଣ ଡାହାଣୀଟା ଯାହା ଆମ ନାମରେ ସତମିଛ କରି କହିବ, ଆମେ ତାକୁ ଈଶ୍ୱର ମାନିଯିବୁ ?

ଅନ୍ତୁ ପ୍ରହରାଜେ କହିଲେ— ହଉ ନ ମାନ । ମୁଁ କ'ଣ କାହାକୁ ବାଧ କରୁଛି ? ହେଲେ ଏହାପରେ କ'ଣ ହେବ, ଆଉ ମତେ ଦୋଷ ଦେବ ନାହିଁ ।

ଏତିକି କହି, ପ୍ରହରାଜେ କଉଶୁଣୀ ମୁଣ୍ଡରେ ପୁଣି ଯାଉଁଳି ବେତ ଛୁଆଁଇ ଦେଇ କହିଲେ—ଆଲୋ ହେ ରଙ୍ଗୁଆ ମାଇପ ପାରବତୀ ! ସେ ଯାହା ହେଲା ହେଲା— ଏବେ ଏ ଝିଅଟାକୁ ଆଉ କଷ୍ଟ ଦେ'ନା ! ଯା ଦେହ ଛାଡ଼ି ତୋ ସୁଖେ ତୁ ଚାଲିଯା' । ତୁ ଯୋଉଁ ବୃକ୍ଷରେ ଆଶ୍ରା ନେଇଥିଲୁ ସେଠିକି ଚାଲିଯାଆ ।

ସେଇଠୁ କଉଶୁଣୀ ଆଖି ମେଲେଇ କଟମଟ କରି ଚାହିଁଲା । କିନ୍ତୁ ସେମିତି ନିଶା ଖାଇଲାଭଳି ଦୁଇକଡ଼କୁ ଦୋହଲୁଥାଏ । ସେଇଠୁ କହିଲା—

ହଉ ହଉ; ମୁଁ ଯିବି ଭାରି ଅବଧାନେ ! ଆଉ ଏଠି ରହିବି ନାହିଁ । ସତ କହୁଛି ଯିବି ଭାରି । କିନ୍ତୁ କହିଦଉଛି—ବନା ମାହାନ୍ତି ଆଉ ମାର୍କଣ୍ଡ ଶତପଥୀର ମାଇପମାନେ ରାଣ୍ଡ ହେବେ । ସେ ଦିହେଁଯାକ ମିଶି ମତେ ହରିଲେ । ଠାକୁରଘର କୋଠ ତହବିଲ ଖାଇଲେ । ମକରେଶ୍ୱର ମହାଦେବଙ୍କର ଷଜେ ପ୍ରତିମା ମଦନମୋହନ ମୂର୍ତ୍ତିକି ଚୋରେଇ ଗୋରା ସାହେବଙ୍କୁ ବିକି ଟଙ୍କା ଆଣି ଜମି କିଣିଲେ । ସେହି ଦିହେଁଯାକ ମିଶି ଏ ଗାଁଟାକୁ ଉଚ୍ଛନ୍ନ କରି ଦେଲେଣି । ଘରେ ଘରେ ମକଦ୍ଦମା ଲଗେଇ, ରାଣ୍ଡୀଖାଣ୍ଡୀଙ୍କ ତଣ୍ଟି ଚିପି ଧନ କମେଇଛନ୍ତି । ତାଙ୍କ ମାଇପମାନେ ରାଣ୍ଡ ହେବେ—

ଠିକ୍ ଏହି ସମୟରେ ବନା ମାହାନ୍ତି ଆଉ ମାର୍କଣ୍ଡ ଶତପଥୀ ଦୁହେଁଯାକ ରାଗରେ କଉଶୁଲ୍ୟା ଆଡ଼କୁ ଚହିଁକି ଆସିଲେ ।

—ହଇଲେ ହେ ବଣ୍ଟାଳୀ ଛତରଖାଇ ଖାନକୀ ଡାହାଣୀ ! ତୁ ଆମକୁ କ'ଣ କରି ପାଇଲୁ କି ? ବନା ମାହାନ୍ତି କଉଶୁଲ୍ୟାର ଚୁଟି ଧରି ତାକୁ ତଳେ ପେଲିଦେଲା । ସେ ତଳେ ଗଡ଼ିପଡ଼ିଲା । ମାର୍କଣ୍ଡ ଶତପଥୀ ତାକୁ କଷିକରି ଗୋଟାଏ ଗୋଇଠା ମାରିଲା ! କଉଶୁଲ୍ୟାର ବାପା ରଘୁରି ବାମ ମାହାନ୍ତି ହୋ ହୋ ହୋଇ କାନ୍ଦି ଉଠିଲା । ସମସ୍ତେ ହାଁ ହାଁ କରି ଉଠିଲେ । କିନ୍ତୁ ଅନନ୍ତ ପ୍ରହରାଜ ସେମିତି ଗୁମ୍ ହୋଇ ବସି କଟମଟ କରି ଚାହିଁଥାନ୍ତି । ମାତ୍ର ଏହି ସମୟରେ ଗୋଟିଏ ଅଦ୍ଭୁତ ଘଟଣା ଘଟିଗଲା । ମାର୍କଣ୍ଡ ଶତପଥୀ ଯୋଉ ଗୋଡ଼ଟିରେ ଗୋଇଠାଟିଏ ମାରି ଆଉ ଗୋଟିଏ ଗୋଇଠା ମାରିବାକୁ ଟେକିଥିଲେ, ସେ ଗୋଡ଼ଟା ତାଙ୍କର ଆଉ ତଳେ ଲାଗିଲା ନାହିଁ । ବନା ମାହାନ୍ତି ନଇଁପଡ଼ି ଯେମିତି କଉଶୁଲ୍ୟାକୁ ପେଲି ଦେଉଥିଲା—ସେ ଆଉ ନିଜକୁ ସିଧା କରି ଉଠି ପାରିଲା ନାହିଁ । ବନା ମାହାନ୍ତି ସିଧାହୋଇ ଠିଆ ହେବାକୁ ବହୁ ଚେଷ୍ଟା କରୁଥାଏ, ମାତ୍ର ଆଉ ସିଧା ହୋଇ ପାରୁ ନ ଥାଏ । ସେମିତି ମାର୍କଣ୍ଡ ଶତପଥୀ ଗୋଡ଼ଟାକୁ ତଳକୁ ଯେତେ ନୁଆଁଉ ଥାଏ, ସେ ଗୋଡ଼ ଆଉ ତଳେ ଲାଗୁ ନ ଥାଏ । ଗୋଟିଏ ଭଙ୍ଗୀରେ ଠିଆ ହୋଇଥିବା ମାଟି ବା ପଥର ମୂର୍ତ୍ତି ଭଳି ସେମାନେ ରହିଗଲେ । ଯେତେ ଛଟିପିଟି ହେଲେ ବି ଆଉ ସେଥିରୁ ମୁକୁଳି ପାରିଲେ ନାହିଁ ।

ଏହି ସମୟରେ କଉଶୁଲ୍ୟା ଗୋଟାଏ ଚିତ୍କାର କଲା—ଆରେ ମତେ ଶୋଷ ହେଉଛି, ପାଣି ଦିଅ, ପାଣି ଦିଅ, ମୋ ତଣ୍ଟି ଶୁଖିଗଲା—ମୋ ଛାତି ଫାଟି ଯାଉଛି ଲୋ ମୋ ବାପା !! ମୁଁ ମରିଗଲି ଲୋ ମୋ ବାପା !

ଅନନ୍ତ ପ୍ରହରାଜ ସାଙ୍ଗେ ସାଙ୍ଗେ ସେଇ ମନ୍ତ୍ରୁରି ପାଣି ଭରି ଟେରିଟି ତା' ଆଡ଼କୁ ଘୁଞ୍ଚାଇ ଦେଲେ । ତା' ପରେ କୌଶଲ୍ୟାକୁ କହିଲେ—ନେ ଏ ଗରଟା ତୋ ଦାନ୍ତରେ କାମୁଡ଼ି ଉଠେଇ ନେଇ ଏଠୁ ଚାଲିଯା ।

ସେଣେ ପୋଖରୀ ବନ୍ଧରେ ପିଇବୁ ଯାଅ । ଏବଂ ସାଙ୍ଗେ ସାଙ୍ଗେ କୌଣସ୍ନା ସେହି ପାଣି ଭରା ଗରାଟାକୁ ଦାନ୍ତରେ କାମୁଡ଼ି ଧରିଲା, ବଳେଇଟିଏ ଘିଅ ଗିନାଟିକୁ ପାଟିରେ କାମୁଡ଼ି ଧରିଲାଭଳି । ତା' ପରେ ଗରାଟିକୁ ସେମିତି ପାଟିରେ ଧରି ଉଠି ଠିଆ ହେଲା ଓ ଲଙ୍ଗଳା ମୁକୁଳା ହୋଇ ବାରି ଆଡ଼କୁ ଏକା ନିଃଶ୍ୱାସକେ ଦୌଡ଼ିଗଲା । ତା' ପଛେ ପଛେ ସମସ୍ତେ ଦୌଡ଼ୁଥିଲେ । ମାତ୍ର ଅନନ୍ତ ପ୍ରହରାଜ ବାରଣ କଲେ । —ସାବଧାନ, କେହି ଯାଅନା । ଗଲେ ଆଉ ଫେରିବ ନାହିଁ ଜାଣିଥାଅ । ସମସ୍ତେ ଥମ୍ଭି ରହିଲେ । ପ୍ରାୟ ୨।୩ ମିନଟ ପରେ ଅନନ୍ତ ପ୍ରହରାଜ କଉଶଲ୍ୟାର ବାପା ହାମ ମାହାନ୍ତଙ୍କୁ ସଙ୍ଗରେ ଧରି ପୋଖରୀ କୂଳକୁ ଗଲେ । ସେଠି ବନ୍ଧ ଉପରେ କଉଶଲ୍ୟା କାଳି ଗୁଡ଼ିଭଳି ଅଚେତ ହୋଇ ପଡ଼ିଥିଲା । ଦୁହେଁଯାକ ମିଶି ତାକୁ ଚେତାକଲେ । ସେ ଝାଡ଼ିଝୁଡ଼ି ହୋଇ ଉଠି ଠିଆହେଲା । ତାକୁ ତା' ବାପା ଶାଢ଼ୀଟି ବଢ଼ାଇ ଦେଲା । ସେ ତାକୁ ପିନ୍ଧିଲା । ତା' ପରେ ତାକୁ ଧରାଧରି କରି ଘରକୁ ନେଇ ଆସିଲେ । ତା' ଦେହରୁ ରହୁଆ ମାଇପ ପାବଛାର ପ୍ରେତାତ୍ମା ସମ୍ପୂର୍ଣ୍ଣ ଭାବେ ଛାଡ଼ି ଯାଇଥିଲା ।

ସମସ୍ତେ କଉଶଲ୍ୟାକୁ ଘେରିଗଲେ । ମାତ୍ର କଉଶଲ୍ୟା ଖୁବ୍ ସୁସ୍ଥ, ଶାନ୍ତ ଓ ନୀରବ ହୋଇଯାଇଥିଲା । ଏଣେ ବନା ମାହାନ୍ତ ଓ ମାର୍କଣ୍ଡ ଶତପଥୀ ସେମିତି ଛଟପଟରେ ହେଉଥାନ୍ତି । ଗାଁ ଯାକର ଲୋକେ ତାଙ୍କୁ ଘେରି ଠିଆ ହୋଇ ମଜା ଦେଖୁଥାନ୍ତି । ତାଳି ମାରୁଥାନ୍ତି । ହସି ହସି ଗଡ଼ିଯାଉଥାନ୍ତି । ମାର୍କଣ୍ଡର ଗୋଟିଏ ଗୋଡ଼ ଚଳୁ ନଥାଏ, କି ବନାର ନଇଁଲା ଅଣ୍ଟା ଆଉ ସିଧା ହେଉ ନ ଥାଏ । ସେମାନଙ୍କ ପାଟିରୁ ଆଉ କଥା ବାହାରୁ ନ ଥାଏ । ସେମାନଙ୍କର ତେଜ ମଉଳି ଯାଇଥାଏ । ସେମାନେ ତଳମୁହାଁ ହୋଇ ନିଜକୁ ସ୍ୱାଭାବିକ କରିବାକୁ ବହୁ ଚେଷ୍ଟା କରୁଥାନ୍ତି—ମାତ୍ର ବାରମ୍ବାର ବିଫଳ ହେଉଥାନ୍ତି । ସାନ ସାନ ପିଲାଙ୍କୁ ଏ ଦୃଶ୍ୟ ବଡ଼ କୌତୁକ ଲାଗୁଥାଏ । ବନା ମାହାନ୍ତ ଆଉ ମାର୍କଣ୍ଡ ଶତପଥୀକ ଏ ଗାଁ ଲୋକେ ଭାରି ଡରିମରି ଥିଲେ । ସେମାନେ ତାଙ୍କ ଋଡ଼ରେ ଗାଁଟା ଯାକର ଲୋକଙ୍କୁ ଚପେଇ କରି ରଖିଥିଲେ—କାବୁ କରି ରଖିଥିଲେ । ବର୍ତ୍ତମାନ ସେମାନଙ୍କର ଏଇ ଶୋଚନୀୟ ହୀନାବସ୍ଥା ଦେଖି

ସମସ୍ତଙ୍କୁ ଖୁବ୍ ମଜା ଲାଗୁଥାଏ । କିନ୍ତୁ ବନା ମାହାନ୍ତି ଓ ମାର୍କଣ୍ଡ ଶତପଥୀଙ୍କର ଏପରି ଶୋଚନୀୟ ଅବସ୍ଥା କିପରି ଓ କାହିଁକି ହେଲା— ସେ କଥା କେହି ଜାଣିପାରୁ ନ ଥାନ୍ତି କି ଜାଣିବାକୁ ଚେଷ୍ଟା ମଧ୍ୟ କରୁ ନ ଥାନ୍ତି । ସମସ୍ତେ କେବଳ ସେଇ କଉତୁକପ୍ରଦ ଦୃଶ୍ୟଟି ଦେଖି ଆନନ୍ଦରେ ହସି ହସି ଗଡ଼ି ଯାଉଥାନ୍ତି । ବନା ମାହାନ୍ତି ବାରମ୍ବାର ଚେଷ୍ଟା କରୁଥିଲା ଅଣ୍ଟା ସଳଖ କରି ଠିଆ ହେବାକୁ—ମାତ୍ର ସେ ଯେତେଥର ନିଜକୁ ଉଠାଉଥାଏ—ସେତେଥର ପୁଣି ତା’ ଅଣ୍ଟା ଭାଙ୍ଗି ଯାଉଥାଏ ଓ ସେ ନଇଁ ପଡ଼ୁଥାଏ । ମାର୍କଣ୍ଡ ଶତପଥୀ ବାରମ୍ବାର ତା’ ଗୋଡ଼ଟିକୁ ତଳେ ଲଗାଉଥାଏ—ମାତ୍ର ବାରମ୍ବାର ପୁଣି ତା’ର ସେ ଗୋଡ଼ଟି ଉପରକୁ ଉଠି ଯାଉଥାଏ । କିଛି ସମୟ ପରେ ସେମାନେ ହାଲିଆ ହୋଇ ପଡ଼ିଲେ ଏବଂ ବାଧ୍ୟ ହୋଇ ତଳେ ବସି ପଡ଼ିଲେ । କିନ୍ତୁ ଦୁର୍ଦ୍ଦୈବଯୋଗେ ତଳକୁ ମୁହଁପୋତି ବସିଲେ । କେହି କାହା ମୁହଁକୁ ଚାହିଁଲେ ନାହିଁ—କି କାହା ଆଡ଼କୁ ମଧ୍ୟ ଚାହିଁଲେ ନାହିଁ । ଏଣେ କିନ୍ତୁ ଦେଖଣାହାରୀମାନେ ଆଉ କିଛି ନୂଆ କୌତୁକିଆ ଦୃଶ୍ୟ ନ ଦେଖି ବ୍ୟସ୍ତ ଓ ଅସ୍ଥିର ହୋଇ ପଡ଼ୁଥାନ୍ତି । ବନା ଆଉ ମାର୍କଣ୍ଡଙ୍କ ପାଟିରୁ କିଛି କଥା ଆଉ ବାହାରୁ ନ ଥାଏ । ଏଣେ ସେମାନଙ୍କ ଗୃହପଟେ ଲୋକ ଗହଳି ବଢ଼ି ଉଠିଲାଣି । ଭିଡ଼ ମଧ୍ୟ ଅଧିକ ହେଲାଣି । ତଥାପି ସେ ଦୁହିଁଙ୍କୁ ଦେଖିବାକୁ ପାଖଆଖ ହରିଜନ ସାହି- ମାନଙ୍କରୁ ପିଲା ବଡ଼ ମାଇପେ ସମସ୍ତେ ଛୁଟି ଆସି ଜମା ହେଲେଣି । ସମବେତ ଜନତା ନାନାଦି କୌତୁକକର ମନ୍ତବ୍ୟ ଦେଉଥାନ୍ତି । କିଛି ସମୟ ତଳକୁ ମୁହଁପୋତି ବସିବା ପରେ ବନା ମାହାନ୍ତି ପ୍ରଥମେ ମୁଣ୍ଡ- ଟେକି ମାର୍କଣ୍ଡ ଶତପଥୀର ମୁହଁକୁ ଚାହିଁଲା । ଠିକ୍ ସେତିକିବେଳକୁ ମାର୍କଣ୍ଡ ମଧ୍ୟ ମୁଣ୍ଡ ଟେକି ବନା ମୁହଁକୁ ଚାହିଁଦେଲା । ଉଭୟଙ୍କ ଆଖି ଉଭୟଙ୍କ ମୁହଁରେ ପଡ଼ିଯିବା ପରେ ସେମାନଙ୍କର କ’ଣ ହେଲା କେଜାଣି, ସେମାନେ ପରସ୍ପରର ଗାଲରେ ଚଟକଣି ମାରିବାକୁ ଆରମ୍ଭ କଲେ । ବନା ଗୋଟାଏ ଚଟକଣି ମାର୍କଣ୍ଡର ଗାଲରେ ମାରିବା ପରେ, ମାର୍କଣ୍ଡ ବନା ଗାଲରେ ଗୋଟିଏ ଚଟକଣି ମାରି ତା’ର ପ୍ରତ୍ୟୁତ୍ତର ଦେଉଥାଏ । ତା’ ପରେ ବନା ମାରୁଥାଏ—ସେଇଠୁ ମାର୍କଣ୍ଡ ମାରୁଥାଏ—ତା’ ପରେ

ବନା—ତା'ପରେ ମାର୍କଣ୍ଡ । ଏମିତ ଘଡ଼ିଏ କାଳ ପରସ୍ପର ଗାଲରେ ଚଟକଣି ମରାମରି ହେଲେ । ସମବେତ ଜନତା ଏ ଦୃଶ୍ୟ ଦେଖି ହସି ହସି ଗଡ଼ିଯାଉଥାନ୍ତି । କ୍ରମେ ସେମାନେ କେହି ବନା ପକ୍ଷରୁ, କେହି ବା ମାର୍କଣ୍ଡ ପକ୍ଷରୁ ହୋଇ ଦୁହିଁଙ୍କୁ ଚଟକଣା ମାରିବା ଲାଗି ପ୍ରବର୍ତ୍ତାଉଥାନ୍ତି ଓ ଉତ୍ତେଜନା ଦେଉଥାନ୍ତି । କିଏ କହୁଥାଏ—ମାର ମାର ବନା ! କିଏ କହୁଥାଏ—ମାର୍ ମାର୍ ମାର୍କଣ୍ଡ ! କିଏ କହୁଥାଏ—ବଜାଅ ମହାନ୍ତିଏ, ବଜାଅ ଶତପଥୀ ଗାଲରେ, ଆଉ କିଏ କହୁଥାଏ—ବଜାଅ, ବଜାଅ ଶତପଥୀ, ବଜାଅ କସିକରି ଗୋଟାଏ ଚଟକଣା ସେ ମାହାନ୍ତି ଗାଲରେ । ସେମାନେ ବି ସତେ କି ଜନତାର ଆଦେଶ ଶୁଣି ଉଦ୍‌ବୁଦ୍ଧ ହେଉଛନ୍ତି— ଏହି ଭାବେ ପରସ୍ପର ଗାଲରେ ଚଟକଣି ପରେ ଚଟକଣି ମାରିଚାଲିଥାନ୍ତି । ଏଣେ ଲୋକେ ମଧ୍ୟ ହସି ହସି ଗଡ଼ ଯାଉଥାନ୍ତି । ଏ ଚଟକଣି ମରାମରି ପାଳି କିଛି ସମୟ ପରେ ପୁଣି ହଠାତ୍ ବନ୍ଦ ହୋଇଗଲା । ସେମାନେ ପୁଣି ତଳକୁ ମୁହଁପୋତି ବସିଲେ କିଛିକ୍ଷଣ ଯାଏ । କିଛି ଆଉ କୌତୁକଆ କାଣ୍ଡ ନ ଘଟିବା ଦେଖି ସମବେତ ଜନତା ବଡ଼ ଅସ୍ୱସ୍ତି ବୋଧ କଲେ । କିନ୍ତୁ ହଠାତ୍ ବନା ମାହାନ୍ତି ମୁହଁଟେକି ମାର୍କଣ୍ଡ ଶତପଥୀର ମୁହଁକୁ ଗୁହିଁଲା ଏବଂ ମାର୍କଣ୍ଡ ମଧ୍ୟ ସଙ୍ଗେ ସଙ୍ଗେ ଗୁହିଁଦେଲା ବନା ମୁହଁକୁ । ତା'ପରେ କ'ଣ ହେଲା କେଜାଣି, ଉଭୟେ ଉପରକୁ ମୁହଁଟେକି ହୋ' କନା କାନ୍ଦ ଉଠିଲେ ଏବଂ ସେହିଭଳି ଊର୍ଦ୍ଧ୍ୱମୁଖ ହୋଇ ରଡ଼ ଛାଡ଼ି କାନ୍ଦିଲେ । ସେତେବେଳେ ମନେ ହେଉଥିଲା—ସତେ କି ଦୁଇଟି ଗ୍ରେଟା କୁକୁର ଆକାଶକୁ ମୁହଁକରି ଭୋଓ ଭୋଓ ହୋଇ କରୁଣ ଅସହାୟଭାବେ ବିକଟ ସ୍ୱରରେ କାନ୍ଦ ଲାଗିଛନ୍ତି ! ସେମାନଙ୍କର ସେହି ଅସହାୟ କୁକୁର କାନ୍ଦଣା ଦେଖି ସମବେତ ଗ୍ରେଟପିଲାମାନେ ହସି ହସି ଗଡ଼ିଗଲେ । ମାତ୍ର ବଡ଼ ମଣିଷମାନଙ୍କ ଭିତରୁ କେହି ଜଣେ ପାଟିକରି ଉଠିଲା—

ହେ ପିଲାମାନେ ! ଚୁପ୍‌କର । ଆରେ ଚୁପ୍‌କର । ଦେଖ ଦେଖ, ଅନୁ ପ୍ରହରାଜେ କୁଆଡ଼େ ଗଲେ ? ହୋ ଡାମ ମାହାନ୍ତିଏ ! ଶୁଣିଆ କୁଆଡ଼େ ଗଲେ ଡାକ ହେ ଚଞ୍ଚଳ ! ଚଞ୍ଚଳ ବନ୍ଧନମୁକ୍ତ କରନ୍ତୁ । ବିଚାରାମାନେ ବଡ଼ କଷ୍ଟ ପାଇଲେଣି ।

ତା'ପରେ ସମସ୍ତଙ୍କର ହୋସ୍ ହେଲା ବୋଧହୁଏ । ଜନତା ଚୁପ୍‌ଚାପ୍ ହୋଇଗଲା ଏବଂ ଘଟଣାର ଗୁରୁତ୍ୱ ସମସ୍ତେ ବୁଝିଗଲେ । ସମସ୍ତେ ପ୍ରହରାଜଙ୍କୁ ଖୋଜା ପକାଇଲେ । ମାତ୍ର ପ୍ରହରାଜ କାହାନ୍ତି ? ପ୍ରହରାଜ କୁଆଡ଼େ ଉଭାନ ହୋଇଗଲେଣି । ପୂନଅଁ ରାତିରେ ଯେ' ଚନ୍ଦ୍ରକୁ ସ୍ଥିର କରି ନେଇ ପାରନ୍ତି—ଅମାବାସ୍ୟା ରାତିରେ ଯେ' ଚନ୍ଦ୍ରକୁ ଉଦେ କରିଦେଇ ପାରନ୍ତି—ତାରଣ, ମାରଣ, ବଶୀକରଣ, ଉଚାଟନ, ଉଡ଼ାଣ, ବୁଡ଼ାଣ, ଉଭଣ ଆଦି ବିଦ୍ୟାରେ ଯେ ବିଚକ୍ଷଣ ସିଦ୍ଧପୁରୁଷ—ଡାହାଣୀ, ଚିରଗୁଣୀ, ପିଚାଶୁଣୀ, ଭୂତ-ବେତାଳାଦି ଓ ଚଉଷଠୀ ଯୋଗିନୀଗଣ ଯାହାର ମନ୍ତ୍ରଶକ୍ତିରେ ବଶୀଭୂତ—ସେହି ତାନ୍ତ୍ରିକ ଶିରୋମଣି ଗୁଣିଆ ଗୁଣସାଗର ମହାପ୍ରାକର୍ମୀ ଶ୍ରୀ ଶ୍ରୀ ଅନନ୍ତ ପ୍ରହରାଜ ଆଉ ସେଠାରେ ନାହାନ୍ତି । ସେଇ ରାତିର ଅନ୍ଧକାର ଭିତରେ ଅନ୍ଧାର ଭଳି ସେ କୁଆଡ଼େ ଅଦୃଶ୍ୟ ହୋଇଗଲେ । ନିମିଷକ ଭିତରେ । କେହି ଆଉ ତାଙ୍କର ପତ୍ତା ପାଇଲେ ନାହିଁ ସେଦିନ ।

ଏଣେ ଗ୍ରାମ୍ୟ ରାତିର ସେହି ନଗୁଣ୍ଠିଆ ଅମୁହଁମୁହାଁ ଅନ୍ଧାରି ଆକାଶକୁ ଚାହିଁ ରହି ବନା ମାହାନ୍ତି ଓ ମାର୍କଣ୍ଡ ଶତପଥୀ ଦୁହେଁ ଦୁଇଟି ଛେଣ୍ଠା କୁକୁରଙ୍କ ପରି ଅସହାୟ କରୁଣ କଣ୍ଠରେ ରଡ଼ ଛାଡ଼ୁଥାନ୍ତି ସାରାରାତି । ତାଙ୍କ ଚାରିପଟେ ଘେରି ରହିଥିବା କୌତୂହଳୀ ଗ୍ରାମବାସୀ-ମାନେ ଆସ୍ତେ ଆସ୍ତେ ସେ ଜାଗା ଛାଡ଼ି ଯେଝା ଘରକୁ ଯେ ଚାଲିଗଲେ । କେବଳ ବନା ମାହାନ୍ତି ଓ ମାର୍କଣ୍ଡ ଶତପଥୀର ସ୍ତ୍ରୀ ଦୁହେଁ ରାତିସାରା ସେମାନଙ୍କ ପାଖେ ବସି ଆଖିରୁ ଲୁହ ଢାଳୁଥାନ୍ତି ନିରୁପାୟ ହୋଇ ।

ସେଦିନ ରାତିସାରା ଆଉ ଅଧିକା କିଛି ଘଟି ନ ଥିଲା । କିନ୍ତୁ ତା' ପରଦିନ ଓ ତା' ପରବର୍ତ୍ତୀ ଦିନଗୁଡ଼ିକ, ମାସଗୁଡ଼ିକ ଓ ବର୍ଷଗୁଡ଼ିକ ସେ ଗାଁରେ କେମିତି କ'ଣ ଭାବେ ବିତିଥିଲା, ତାହା ମତେ ଆଉ ଜଣା ନାହିଁ । କାରଣ ସେହି ଗ୍ରାମର ଅନ୍ୟ କେତୋଟି ଭିନ୍ନ ଗାଁର କୁଣିଆଙ୍କ ଭଳି ମୁଁ ମଧ୍ୟ ପରଦିନ ସକାଳୁ ସକାଳୁ ଅଗାଧୁଆ ଗଣ୍ଡିଏ ଜଳଖିଆ ଖାଇଦେଇ ମୋ ବଡ଼ନାନା ଘରୁ ବିଦାୟ ନେଇ ଆମ ଗାଁକୁ ଫେରି

ଆସିଥିଲ । ତେବେ ବର୍ଷ ଦୁଇଟା ପରେ ସେହି ଗ୍ରାମରୁ ଥରେ ଆମ ଗାଁ'କୁ ବେପାର ଉଦ୍ଦେଶ୍ୟରେ ଆସିଥିଲା ତାଳ, କଂସା ତାଟିଆ-ବଜାଳ କଂସାରଟିଏ । ତା'ମୁହଁରୁ ଶୁଣିଥିଲି ଯେ ବନା ମାହାନ୍ତି ଓ ମାର୍କଣ୍ଡ ଶତପଥୀ ଦୁହେଁଯାକ ଶେଷ ପର୍ଯ୍ୟନ୍ତ ପାଗଳ ହୋଇ ଯାଇଥିଲେ । ଏବଂ ସେମାନଙ୍କର ଘରଯାମାନଙ୍କର ମଧ୍ୟ ମଥା ଖରାପ ହୋଇଯାଇଥିଲା । ସେଥିରୁ ଜଣେ ବାର ପୋଖରୀରେ ବୁଡ଼ି ମରିଥିଲା ଓ ଆଉ ଜଣେ ବଜାରରେ ପଡ଼ି ପଡ଼ି ମଲା । ତା'ପରେ ମାର୍କଣ୍ଡ ଶତପଥୀ ହଠାତ୍ କୁଆଡ଼େ ଗାଁ'ରୁ ଅଦୃଶ୍ୟ ହୋଇଗଲା । ବନା ମାହାନ୍ତି ଏକୁଟିଆ ଗୋଟିଏ ଜାଗାରେ ମୂକ ହୋଇ ବସିଥାଏ । ଏବଂ ବେଳେ ବେଳେ କ'ଣ ତା'ର ହୁଏ କେଜାଣି, ଆକାଶକୁ ଚାହିଁ କୁକୁର ଭଳିଆ ଦୁଇ ତିନିଟା ରଡ଼ି ଛାଡ଼େ । ସେ ଦୁହିଁଙ୍କ ପିଲାମାନେ ଆପଣା କୁଟୁମ୍ବ ଧରି କଏ ବାଙ୍ଗରକେଲା କଏ ପାରାଦୀପରେ ଯାଇ ରହିଲେଣି ।

ଆଉ କିଛି ବର୍ଷ ପରେ ସେହି ଗାଁ'ର ରାଜମିସ୍ତ୍ରୀଟିଏ ଆସି ଆମ ଗାଁ'ରେ ରହି ବ୍ଲକ ଅଫିସ ପାଇଁ ତିଆରି ଚାଲିଥିବା କୋଠାଘରେ କାମ କରୁଥିଲା । ତା'ଠାରୁ ଶୁଣିଲି ଯେ ସେ ଗାଁ'ର ଦାମ ମାହାନ୍ତିଙ୍କର ସେଇ ଝିଅଟି କଉଣସି ଯୌତୁକ ଅଭାବରେ ଆପଣା ଜାତିରେ ବାହା ହୋଇ ପାରି ନ ଥିଲା । ଏବଂ ହଠାତ୍ ହଠାତ୍ ରାତିରେ ସମସ୍ତଙ୍କ ଅଜାଣତରେ ସେ ଗୋଟିଏ ଶିକ୍ଷିତ ହରିଜନ ଯୁବକ ସାଙ୍ଗେ ଘରଛାଡ଼ି ଚାଲିଗଲେ । ଏବଂ ସେମାନେ ବର୍ତ୍ତମାନ ଭୁବନେଶ୍ବରରେ ସୁଖରେ ଅଛନ୍ତି । ଭୁବନେଶ୍ବରରେ କୋଠାଟିଏ ତୋଳିଲେଣି । ସେ ହରିଜନ ଯୁବକଟି କୁଆଡ଼େ ଆଦିବାସୀ ଓ ହରିଜନ ବିଭାଗର ମନ୍ତ୍ରୀଙ୍କର ଖାସ୍ ପି. ଏ. ।......

ତେବେ ଏସବୁ ଘଟଣା ଅତୀତ ହୋଇଗଲାଣି । ଇତିମଧ୍ୟରେ ପୁଣି ଦୁଇଟି ଦଶନ୍ଧି ବିତିଗଲାଣି । ଦେଶରେ ବର୍ତ୍ତମାନ କ କ କଥାମାନ ଘଟି ଗଲାଣି । ସାରା ବିଶ୍ବରେ ମଧ୍ୟ ଏପରି ସବୁ ଘଟଣା ଘଟୁଛି—ଯାହା ଶୁଣିବା ଲାଗି ଆମେ କେବେ ପ୍ରସ୍ତୁତ ହୋଇ ନଥିଲୁ । କେଉଁ କେଉଁ କଥାର ଗତିବିଧି ଓ ପରିଣତି କ'ଣ କୁଆଡ଼କୁ ଯାଉଛି ବା ଯିବ— ତାହା ମଧ୍ୟ ବୁଝିବା ଆମ ଆୟତ୍ତରେ ନାହିଁ । ଆମେ ସମସ୍ତେ ଭଲୁଆଙ୍କ ପରି

ଆଖି କାନ ଡେଇ କେବଳ ଦେଖିଯାଉଛୁ—ଶୁଣି ଯାଉଛୁ । କିନ୍ତୁ ଏସବୁ ଭିତରେ ବି କାହିଁକି କେଜାଣି ମୋର ବେଳେବେଳେ ସେହି ତାନ୍ତ୍ରିକ ଶିରୋମଣି ଗୁଣିଆ ଗୁଣସାଗର ଅନନ୍ତ ପ୍ରହରାଜଙ୍କ କଥା ମନେପଡ଼େ ଓ ତାଙ୍କୁ ଥରେ ମାତ୍ର ଆଉ ଦେଖିବା ଲାଗି ଏବଂ ଆଉ ଥରେ ଏ ବୟସରେ ତାଙ୍କର ଶକ୍ତିସାମର୍ଥ୍ୟର ଜାଗ୍ରତ ପରିଚୟ ପାଇବା ଲାଗି ମନ ଆଗ୍ରହାନ୍ୱିତ ହୋଇଉଠେ । ...

'ଏ ମନ ଖୋଜୁଥାଇ ଯାହା, କାଳେ ପ୍ରାପତ ହୁଏ ତାହା' । ୧୯୭୮ ମସିହା ଡିସେମ୍ବର ମାସରେ ଦିନେ ତାଙ୍କ ସଙ୍ଗେ ଅଚାନକ ଦେଖା ହୋଇଗଲା । ଏବଂ ଦେଖା ହେଲା ଏକ ବିଚିତ୍ର ଜାଗାରେ । ରାଜଧାନୀର କଚେରି ପାଖ ବରଗଛ ମୂଳେ ଯୋଉଠି ବସି ପିଆଳା ଚାହା ଦୋକାନଟିଏ ଅଛି —ସେଇଠି ସେ ଗୋଟିଏ ବେଞ୍ଚ ଉପରେ ବସି ପ୍ଲେଟ ଗ୍ଲାସରୁ ଗରମ ଚାହା ଟିକଏ ଫୁଙ୍କି ଫୁଙ୍କି ପିଉଥିଲେ । ଶୀତଦିନର ଅପରାହ୍ଣ । ସେ ଖୁବ୍ ବୃଦ୍ଧ ହୋଇ ଯାଇଥିଲେ । ତାଙ୍କର ଆଖିରେ ମୋଟା ଲେନ୍‌ସର ଚଷମାଟିଏ ଥିଲା । ତାଳୁମୁଣ୍ଡରେ ଦୁଇଚାରିଟି କ୍ଷୁଦ୍ର ଜଟା ଦୋହଲୁ ଥିଲା । ତାଙ୍କ କପାଳରେ ସିନ୍ଦୂର ଓ ଚନ୍ଦନ ପୂର୍ବପରି ଥିଲା । ବେକରେ ସେହିସବୁ ମାଳ ଝୁଲୁଥିଲା । ବାହୁରେ ସେଇସବୁ କଙ୍କଣ ଓ ମାଳ ବନ୍ଧା ହୋଇଥିଲା । ତାଙ୍କର ଦେହର ରଙ୍ଗ କିନ୍ତୁ ମଳିନ ପଡ଼ି ଆସିଥିଲା । ତାଙ୍କ ପାଖକୁ ଲାଗି ବେଞ୍ଚ ଉପରେ ତାଙ୍କର ଝୁଲାମୁଣିଟି ଥୁଆ ହୋଇଥିଲା । ବାଡ଼ିଟିଏ ମଧ୍ୟ ଥୁଆ ଯାଇଥିଲା । ସେ ଚାହା ପିଉଥିଲା ବେଳେ ବାରମ୍ବାର ତାଙ୍କର ଦାଢ଼ି ଓ ନିଶକୁ ଗାମୁଛାରେ ପୋଛୁଥିଲେ । ତାଙ୍କ ପାଟିରେ ଗୋଟିଏ ହେଲେ ଆଉ ଦାନ୍ତ ନ ଥିଲା । ତେଣୁ ଚାହା ପିଇଲାବେଳେ ସେଥିରୁ କିଛି ଅଂଶ ଦାଢ଼ି ଉପରେ ଝରି ପଡ଼ୁଥିଲା । ବୃଦ୍ଧ ବୟସରେ ମଧ୍ୟ ସେ ଖୁବ୍ ସୁନ୍ଦର ଓ ମହିମାବନ୍ତ ଦିଶୁଥିଲେ । ଗମ୍ଭୀର, ଗମ୍ଭୀର ଦିଶୁଥିଲେ । ସଂଯତ, ସଂହତ ଦିଶୁଥିଲେ । ନିର୍ମୋହ, ନିର୍ବିକାର ଦିଶୁଥିଲେ ।

ବହୁ ଲୋକ ତାଙ୍କ ଚାରିପଟେ ଘେରି ରହି ତାଙ୍କୁ ନୀରବରେ ଦେଖୁଥିଲେ । ସମସ୍ତଙ୍କ ଆଖିରେ ତାଙ୍କର ଉପସ୍ଥିତି ପ୍ରତି ସମୀହ ଫୁଟି

ଉଠୁଥିଲ । ସେ କିନ୍ତୁ କାହା ଆଡ଼କୁ ଗୃହିଁ ନ ଥିଲେ । ତାଙ୍କ ପାଖେ ତାଙ୍କର ଯୁବା ଚେଲାଟିଏ ଛିଡ଼ା ହୋଇଥାଏ । ତାଙ୍କର କିଛି ଆଦେଶ ନିର୍ଦ୍ଦେଶକୁ ନୀରବରେ ଅନୁଗତ ହୋଇ ଅପେକ୍ଷା କରିଥାଏ । ସେ ମଧ୍ୟ ସନ୍ନ୍ୟାସୀ ତାନ୍ତ୍ରିକ ବେଶ ଧରିଥାଏ । ପ୍ରଥମରୁ ମୁଁ ତାଙ୍କୁ ଜଣେ ଗ୍ରାମ୍ୟ-ଯୋଗୀପୁରୁଷ ବୋଲି ଭାବ ନେଇଥିଲି । ମାତ୍ର ସମବେତ ଲୋକଙ୍କୁ ପଚାରି ବୁଝିଲି ଯେ ଏହି ହେଉଛନ୍ତି ସେହି ବିଖ୍ୟାତ ତାନ୍ତ୍ରିକ ଶିରୋମଣି ଗୁଣିଆ ଗୁଣସାଗର ଅନନ୍ତ ପ୍ରହରାଜ । ବର୍ତ୍ତମାନ ସମସ୍ତେ ତାଙ୍କୁ ଅନନ୍ତବାବା ବୋଲି ଚହ୍ନନ୍ତି ଓ ଡାକନ୍ତି ।

ମୁଁ ତାଙ୍କ ପାଖକୁ ଯାଇ ତାଙ୍କ ପାଦ ଛୁଇଁ ପ୍ରଣାମ କଲି ଓ ନୀରବରେ ଠିଆହେଲି । ସେ ମତେ ମୁହୂର୍ତ୍ତେ ଗୃହିଁଲେ ଓ ପୁଣି ଆଖି ତଳକୁ ଫେରାଇ ନେଲେ । ସେ ତଳକୁ ହିଁ ମୁହଁପୋତି ବସିଥାନ୍ତି । ମୁଁ ଅନ୍ୟମାନଙ୍କ ଭଳି ସେଠି ବହୁ ସମୟ ନୀରବରେ ଠିଆ ହେଲି । ଏବଂ ସେହି ସୁନ୍ଦର ମହିମାବନ୍ତ ଅଲୌକିକ ବିଗ୍ରହଟିକୁ ଗୃହିଁ ରହିଲି । ତା'ପରେ ତାଙ୍କର ସେ ସ୍ଥାନ ଛାଡ଼ିବା ବେଳ ହେଲା । ତାଙ୍କ ଚେଲା ରେକ୍ସା ମଧ୍ୟ ଡାକି ଆଣିଲା । ଏହି ଅବସରରେ ମୁଁ ସାହସ କରି ତାଙ୍କର ଅତି ନିକଟକୁ ଯାଇ ବଡ଼ପାଟିରେ କହିଲି—

ମହାରାଜ ! ଆପଣ ଆଉ ଆଜିକାଲି ମନ୍ତ୍ର-ଯନ୍ତ୍ର କରୁଛନ୍ତି ? ଭୂତ-ଡାହାଣୀ ଛଡ଼ାଉଛନ୍ତି ?

ଅନନ୍ତ ମହାରାଜ ମୋ ଆଡ଼କୁ ମୋଟା ଲେନ୍‌ସର ଚଷମା ବାଟେ ସହଜ ଭାବେ ଗୃହିଁଲେ । ତା' ପରେ ଉଦାସିଆ ଅଥଚ ପ୍ରସନ୍ନ ହସଟିଏ ହସି କହିଲେ—

ନା ବାବା ! ଆଉ ସେସବୁ କରୁନାହିଁ । ଦାନ୍ତତକ ସବୁ ପଡ଼ିଗଲା । ଦାନ୍ତ ପଡ଼ିଗଲେ ଆଉ ମନ୍ତ୍ର କାର୍ଯ୍ୟ କରେ ନାହିଁ ।

ମୁଁ ତା'ପରେ ସାହସ ପାଇ କହିଲି—ଆଜ୍ଞା ! ଆଉ କାହାକୁ ଜଣେ ହେଲେ ଏସବୁ ବିଦ୍ୟା ଶିଖାଇ ଦେଲେନି କାହିଁକି ? ତଦ୍ଦ୍ୱାରା

ଲୋକଙ୍କର ବହୁ ଉପକାର ହୋଇଥାନ୍ତା । ସେ ସବୁ ବିଦ୍ୟା ମଧ୍ୟ ବଞ୍ଚି ରହିଥାନ୍ତା । ଆପଣଙ୍କ ପରେ ଏ ସବୁ ତ ଲୋପ ପାଇଯିବ ?

ଅନ୍ଧ ମହାରାଜ ସେହିପରି ନିର୍ମୋହ-ନିର୍ଲିପ୍ତ ଅଥଚ ମଧୁର ହସଟିଏ ହସି କହିଲେ—

ସେ ବିଦ୍ୟାସବୁ ଆଉ ଏବେ ବୋଲ କରିବ ନାହିଁ ବାବା ! ସେ ବିଦ୍ୟା ଶିଖିବା ଏତେ ସହଜ ନୁହେଁ । ତାକୁ ନେଇ ଆଣି ଥୋଇ ନ ପାରିଲେ, ସେ ବିଦ୍ୟା ଅବିଦ୍ୟା ହୋଇଯିବ । ଭଲ ନ କରି ମନ୍ଦ କରିବ । ···ଯାଉ· ସେ ବିଦ୍ୟା, କେତେ ବିଦ୍ୟା ଏବେ ଏ ପୃଥିବୀରୁ ଲୋପ ହେଲଣି, ଏ ବିଦ୍ୟା ବି ସେମିତି ଯିବ ! ପୁଣି ନୂଆ ବିଦ୍ୟା ଆସିବ । ଏଇ ପୁରୁଣା ବିଦ୍ୟା ବି ପୁଣି ଆସିବ ନୂଆ ବିଦ୍ୟା ରୂପରେ । ଚାଲିଛି ଏମିତି—ଚାଲିବ ମଧ୍ୟ ଏଇମିତି ।

ସେ ଆଉ କ'ଣ କହିଥାନ୍ତେ—ମାତ୍ର ଯୁବା ଚେଲାଟି ତାଙ୍କୁ ଆଉ କୁହାଇ ଦେଲା ନାହିଁ । ସେ କହିଲା—ବାବା ! ଅଇନେ ଶୀତ ମାଡ଼ି-ଆସିବ । କାପିଟାଲ ଶୀତ ଏ ! ଚାଲନ୍ତୁ—ଉଠନ୍ତୁ, ରେକ୍ସାରେ ବସନ୍ତୁ ।

ଅନ୍ଧବାବା ଉଠିଲେ । ଝୁଲିଟିକୁ ତାଙ୍କ ବେକରେ ଗଳାଇଦେଲା ଚେଲାଟି । ବାଡ଼ିଟିକୁ ମଧ୍ୟ ଧରାଇ ଦେଲା । ସେ ଟିକିଏ ନଇଁ ପଡ଼ିଥିଲେ । ଗୋଟିଏ ହାତରେ ବାଡ଼ି ଓ ଅନ୍ୟ ହାତଟି ଚେଲାର କାନ୍ଧ ଉପରେ ରଖି ସେ ରେକସା ଆଡ଼କୁ ଚାଲିଲେ । ସମବେତ ଲୋକଙ୍କ ଭିତରୁ କେତେଜଣ ତାଙ୍କ ପାଦ ଛୁଇଁ ଗୋଡ଼ତଳେ ପଡ଼ିଲେ । ସମସ୍ତଙ୍କୁ ନୀରବରେ ଆଶୀର୍ବାଦ କରୁ କରୁ ସେ ରେକ୍ସାରେ ଯାଇ ବସିଲେ ଓ ମୁହୂର୍ତ୍ତକ ଭିତରେ ରେକ୍ସାଟି ରାଜପଥ ଉପରେ ବହୁ ଯାନବାହନ ଭିତରେ କୁଆଡ଼େ ହଜିଗଲା ।

ଖୁବ ଭାରି ମନନେଇ ଉଦାସ ଭାବେ ମୁଁ ସେଇ ବେଞ୍ଚ ଉପରେ ବସି ଚାହା ଗ୍ଲାସେ ବରାଦ ଦେଲି । ମୋ ପାଖକୁ ଲାଗି ହଠାତ୍ ଆସି ବସିଲା ଚାହା ଗ୍ଲାସଟିଏ ଧରି ଚାହା ପିଉ ପିଉ ଲୋକଟିଏ । ଲୋକଟି ଖୁବ୍ କ୍ଷିପ୍ର ଆଉ ଚଞ୍ଚଳ—ସେହିପରି ବାଚାଳ ମଧ୍ୟ । ମୋର କାହା ସାଙ୍ଗେ କଥା

କଥାବାର୍ତ୍ତା କରିବାକୁ ମନ ହେଉ ନଥିଲେ ବି ସେ ଉପରେ ପଡ଼ି ମୋତେ କହିଲା—କାହିଁକି ଆଜି ବୁଢ଼ା ଗୁଣି ଗାରେଡ଼ି କରୁନାହିଁ ଜାଣିଛନ୍ତି ଆଜ୍ଞା ?

ମୁଁ କିଛି ଉତ୍ତର ନ ଦେଇ ତା' ଆଡ଼କୁ କେବଳ ବିରକ୍ତିରେ ଚାହିଁଦେଲି । ସେ ବୁଢ଼୍‌ବକ୍ ସେ ଚାହାଣିକୁ ଭ୍ରୂକ୍ଷେପ ମାତ୍ର ନ କରି ଗପି ଚାଲିଲା ସେ ସମ୍ପର୍କରେ ତଥ୍ୟଟିଏ ଓ ତାକୁ ଶୁଣିବା ଲାଗି ମଧ୍ୟ କେତେକ ଲୋକ ଆମ ଚାରିପଟେ ଘେରିଗଲେ । ସେ କହି ଚାଲିଥାଏ—ତା'ପାଟିରେ ବାଟୁଳି ବାଜୁ ନ ଥାଏ ।

ସ୍ୱାର ଥିଲେ ଚାରିଜଣ ଶିଷ୍ୟ । ସେ ସମସ୍ତଙ୍କୁ ମଶାଣିକୁ ନେଇ ଗୁଣି-ଗାରେଡ଼ୀ ଶିଖାଉଥାଏ । ମଶାଣି ପାଖେ ନଈକୂଳ ଚାକୁଣ୍ଡା ଗଛମୂଳେ ଗୋଟେ ଝୁଙ୍ଗି କରି ସେଇଠି ସେମାନେ ରହୁଥାନ୍ତି । ଶିଷ୍ୟମାନେ ଅଳ୍ପଦିନ ଭିତରେ ସବୁ ବିଦ୍ୟାତକ ଶିଖିଗଲେ । ତାରଣ, ମାରଣ, ଜାରଣ, ଉଡ଼ାଣ, ବୁଡ଼ାଣ, ଜଗଣ, ପୋତାଣ ଠାରୁ ଆରମ୍ଭ କରି ଡାହାଣୀ ଲଗେଇବା, ଡାହାଣୀ ଛଡ଼େଇବା—ବେତାଳ ପେଷିବା, ଶୂନ୍ୟରୁ ନିଆଁ ଲଗେଇଦେବା—ଭାତ ହାଣ୍ଡିରୁ ବିଷ୍ଠା ବାହାରିବା—ଘରେ ଟେକାପଥର ବୃଷ୍ଟି ହେବା, ଏମିତି ଏମିତି ଲକ୍ଷେ ବିଦ୍ୟା ଏ ବୁଢା ସେମାନଙ୍କୁ ଶିଖାଇ ଦେଲା । ସେମାନେ ସେସବୁ ଶିଖି ଭାରି ଅମରମତ୍ତ ହେଲେ । ଲୋକେ ବି ସେମାନଙ୍କୁ ଭାରି ଖାତିର କଲେ । ଦିନେ କ'ଣ ହେଲା ନା—ସେହି ଗାଁ'ର—ମାନେ ଏହି ବୁଢ଼ା ଗାଁ'ର ତହସିଲ୍‌ଦାରଙ୍କ ସାଙ୍ଗେ ଜଣେ ଶିଷ୍ୟର ଝଗଡ଼ା ହେଲା । ତହସିଲଦାର କହିଲା—ଏଠୁ ଝୁଙ୍ଗି ଫୁଙ୍ଗି ଭାଙ୍ଗି ଚାଲିଯାଅ । ଏଇଟା ସରକାରୀ ଜାଗା—ହରିଜନ-ମାନଙ୍କୁ ବଣ୍ଟା ହେବ । ଏ ବୁଢ଼ା ରାଜି ହୋଇଗଲା । ମାତ୍ର ଶିଷ୍ୟମାନେ ରାଜି ହେଲେ ନାହିଁ । ଓଲଟି ତହସିଲଦାର ସାଙ୍ଗେ ତେରିମେରି ହେଲେ—ତାକୁ ମଧ୍ୟ ଧମକାଣି ଦେଲେ । ସେ ତହସିଲ୍‌ଦାରଟା ମଧ୍ୟ ଭାରି ଖେଚଡ଼ା—ନଚ୍ଛୋଡ଼ବନ୍ଧା । ସେ ଠାକୁର ଫାକୁର ବି ମାନେ ନାହିଁ । ସେ ଗାଁରେ ବଜାର ଉପରେ ସସ୍ତା କଡ଼ରେ ଗୋଟାଏ ଜିନାଥ-ମନ୍ଦିର ପଥାଏ ତିଆରି କରିଥିଲେ । ତାକୁ ବି ଲୋକ ଲଗେଇ ଦିନେ ଭାଙ୍ଗି ଦେଲା । ଏମିତି ଦୁଣ୍ଡାଟାଏ ସିନା - କିନ୍ତୁ ଲାଞ୍ଚ ରସିପତ୍ର ନିଏ-

ନାହିଁ । କାମ ଉପରେ କାହା ମୁହଁକୁ ବ ଗୃହିଁବ ନାହିଁ । ଯାହା ନିୟମ, ସେଇଆ କରିବ । ପୁଅ ମାଇପଙ୍କ ମୁହଁକୁ ବ ଗୃହିଁବ ନାହିଁ ସେ ଶଳା । ଶଳା ଏମିତି ସାଡ଼ । ସେ ଧମକ ଦେଇଗଲା—ଯଦ୍ଦ କାଲି ସକାଳୁ ଏଠା ଘୁଞ୍ଚ ନ ଯିବ—ତା'ହେଲେ ଲୋକ ଲଗାଇ ଏ ଝୁଙ୍ଗିରେ ନିଆଁ ଲଗାଇ ଦେବ । ଏ ବୁଢ଼ା ଗୁଣିଆଟି ଘର ଭଲଲୋକ କଲୁ ସେ ହାତ ଯୋଡ଼ି କହିଲା—ସରକାର ! ଆପଣ ଘୋଷା ହୁଅନ୍ତୁ ନାହିଁ । ଆମେ ଏଠି ଗୋଟେ ଆଶ୍ରମ କରିଛୁ । କେତେ ଜାଗା ବା ଆମେ ସରକାରଙ୍କଠୁଁ ନେଉଛୁ ? ନଈକୂଳଆ ମଶାଣିହାତ ଅନାବାଦୀ । ହରିଜନମାନେ କେତେ ଜମି ଚଷିବେ ଚଷନ୍ତୁ ହଜୁର ! ଏତେ ଜାଗା ପଡ଼ିଛି । ଏଇ ଗୁଣ୍ଠେ ଜାଗା ପାଇଁ ସରକାର ଆଉ ଲୋଭ କରନ୍ତୁ ନାହିଁ । ଦୟାକରି ଘୁଞ୍ଚ ହଅନ୍ତୁ । ଆମର ଏ ବିଦ୍ୟା ସାଧିବା ପାଇଁ ମଶାଣିପାଖ ଜାଗା ନ ହେଲେ ଚଳିବ ନାହିଁ । ତା' ନ ହେଲେ ହଜୁର୍‌—ମୋର କ'ଣ ନିଜର ଜାଗା ନାହିଁ ? ଏ ବିଦ୍ୟା ସବୁ ମୋ ଅନ୍ତେ ଲୋପ ପାଇଯିବ । ମୁଁ ଆସି ବୃଦ୍ଧ ହେଲିଣି । ଏଇ କେତେଜଣ ମୋ ଥାଉଁ ଥାଉଁ ଏତକ ବିଦ୍ୟା ସାଧି ଯାନ୍ତୁ । ହଜୁର ଆଉ ଗୋଳ କରନ୍ତୁ ନାହିଁ ।

କନ୍ତୁ ତହସିଲଦାର ରାଗି ଉଠିଲା । କ ବିଦ୍ୟା ହୋ ଏ ? ଆଜିକାଲି ସାଇନ୍‌ସ ଯୁଗରେ ଏଥିରୁ ଗୁଡ଼ାଏ ଫୁସ୍‌ଫାସ୍‌ କରୁଛ ବସି ଏଠି ଗୁଡ଼ାଏ ନିକମା ଅଳସୁଆ ଲୋକ ? ଏ ପରମାଣୁ ଯୁଗରେ ତୁମର ଏ ଗୁଣି-ଗାରେଡ଼ୀର କ କରାମତି ହେ ବାବାଜୀ ? ବୁଢ଼ା ଆଉ କଛି କହିଲାନାହିଁ । ତହସିଲଦାର ଧମକ ଦେଇଗଲା—କାଲିସକାଳୁ ଏଠୁ ଝୁଙ୍ଗି ଭାଙ୍ଗି ଯଦ୍ଦ ନ ଯାଇଥିବ—ତେବେ ହରିଜନଙ୍କୁ କହିବ ସେମାନେ ଆସି ଏଠି ନିଆଁ ଲଗାଇ ଦେବେ । ଏତିକ କହି ଜିପ୍ ଚଢ଼ି ତହସିଲଦାର ଗୃଲିଗଲା । ଏଇ ଗୃରି ଶିଷ୍ୟଙ୍କ ଭିତରୁ ଗୋଟିଏ ଶିଷ୍ୟ ଚୁପ୍ ହୋଇ ଠିଆ ହୋଇ ତହସିଲଦାରର ଜିପ୍ ଆଡ଼କୁ ଚାହିଁ ରହିଥାଏ । କେତେବେଳେକେ କ'ଣ ଟିକଏ ଧୂଳି ତଳୁ ଆଣି ତାକୁ ଫୁଙ୍କି ସେଇ ଆଡ଼କୁ ଉଡ଼ାଇ ଦେଲା । ଆରେ ଭାଇ; ଦେଖୁ ଦେଖୁ ଅଧବାଟରେ ଜିପ୍‌ଟା ଗୋଟାଏ ରଡ଼ିକରି ବନ୍ଦ ହୋଇଗଲା । ସମସ୍ତେ ଓହ୍ଲାଇ ପଡ଼ି ବହୁ ଚେଷ୍ଟାକଲେ ମାତ୍ର ଜିପ୍

ଆଉ ନ ଚଳେ । ସେଇଠୁ ସମସ୍ତେ ଠେଲି ଠେଲି ଜିପ୍‌ଟାକୁ ଘରଯାଏ ନେଲେ । ଘରେ ପହଞ୍ଚି ଡ୍ରାଇଭର୍ କହିଲା, ସାର୍ ! ଆପଣ ସେହି ଗୁଣିଆମାନଙ୍କୁ ରଗାଇ ଦେବାରୁ ଆମର ଏ ଦଶା ହେଲା । ଆପଣ ସାର୍ ଅନ୍ତୁ ପ୍ରହରାଜ ଗୁଣିଆର ପ୍ରାକର୍ମ ଜାଣି ନାହାନ୍ତି । ତହସିଲଦାର ବେପରୁଆ ହୋଇ କହିଲା ଆରେ ଚଲ୍ ! ଅନ୍ତୁ ପ୍ରହରାଜ ! ମୁଁ ତା' ଅନ୍ତ କାଢ଼ି ଆଣିବି । ମତେ ସେ କ'ଣ କରି ପାଇଛି କି ? ଦଉଛି ଶଳାଙ୍କୁ ପାନେ । ବର୍ତ୍ତମାନ ଥାନାକୁ ଫୋନ୍ କରିବି ।

ତହସିଲଦାର ଏତିକି କହି ଫୋନ୍ ପାଖକୁ ଗଲା । ଦେଖିଲା ବେଳକୁ ଫୋନ୍ ପାଖେ କଳା ବିଲେଇଟିଏ ବସିଛି । ତହସିଲଦାର ତାକୁ କହିଲା—ଉଠ୍‌ବେ ଶଳା ସେଠୁ । ବିଲେଇଟି ସେଠୁ ନ ଉଠି କହିଲା ମିଆଁଉ ! ତହସିଲଦାର ଗୋଟାଏ ବାଡ଼ି ଆଣି ତାକୁ ସେଠୁ ତଡ଼ିବାକୁ ବସିଲା । ମାତ୍ର ସେ ସେଠୁ ଉଠିଲା ନାହିଁ, ଖାଲି ମିଆଁଉ ମିଆଁଉ ହେଲା । ଆଉ କଟମଟ କରି ତହସିଲଦାର ମୁହଁକୁ ଚାହିଁ ରହିଲା । ସେଇଠୁ ତହସିଲଦାର ମୁଣ୍ଡକୁ ରାଗ ଚଢ଼ିଗଲା । ସେ କହିଲା—ଶଳା ତୁଚ୍ଛ ବିଲେଇଟିଏ ହୋଇ ତୁ ମତେ ଧମକାଉଛୁ ? ଏତିକି କହି ଦେଲା ପାହାରେ ପିଠି ସେ ବିଲେଇକି । ସେ ଶଳା ବିଲେଇଟା ବି ସେଇ ଟେବୁଲ ଉପରୁ ତଳକୁ ଖସିପଡ଼ି ଛଟପଟ ହେଉ ହେଉ ମରିଗଲା । ତହସିଲଦାର ସେଣିକି ଚାହିଁ—ତାକୁ ଖାତିର ନ କରି ରାଗରେ ଡମ୍‌ଡମ୍ ହୋଇ ଫୋନ୍ ଉଠାଇଲା । ବାସ୍ ଫୋନ୍‌ଟି ମୁହଁପାଖେ ଧରିଛି—କିନ୍ତୁ ଆଉ ପାଟିରୁ କିଛି କଥା ବାହାରୁ ନାହିଁ । ସେପଟୁ 'ହେଲୋ' 'ହେଲୋ' ବୋଲି ପୋଲିସବାଲା ରଡ଼ି ଛାଡ଼ୁଛି । ହେଲେ ତହସିଲଦାରର ପାଟିରୁ ଉଁ କି ଚୁଁ ପଦେ ହେଲେ ବି କଥା ବାହାରିଲା ନାହିଁ । ଏ ଅଘଟନ ଦେଖି ଅଫିସଟାଯାକର ଲୋକ ଘେରିଗଲେ । ଗାଁରୁ ବି ସରପଞ୍ଚ, ଓ୍ୱାର୍ଡମେମ୍ବର, ଚେୟାରମ୍ୟାନ ଆଉ ବି. ଡି. ଓ. ଫିଡ଼ିଓ ଆସି ପହଞ୍ଚିଲେ । ଡାକ୍ତର ବି ଆସି ପହଞ୍ଚି ଗଲେ । ସମସ୍ତେ ତାଟକା ହୋଇ ଠିଆ ହେଲେ । ଗାଁ-ବାଲାଙ୍କ ଭିତରୁ ଜଣେ କହିଲା—ଆଜ୍ଞା ! ସେଇ ଅନ୍ତୁ ପ୍ରହରାଜ ଗୁଣିଆର ଏ କାଣ୍ଡ । ସେଇ ମୁଖବନ୍ଧନ କରି ଦେଇଛି । ଏତିକି ଶୁଣି ସମସ୍ତେ କହିଲେ—ଠିକ୍ ଠିକ୍—ଡାକ ଅନ୍ତୁ ପ୍ରହରାଜକୁ ।

କେତେଜଣ ଯାଇ ସେଠି ପହଞ୍ଚିଗଲେ । ଅନ୍ତ୍ର ପ୍ରହରାଜ ବୁଢ଼ା ସବୁ ଶୁଣି-ସାରି କହିଲେ—ହଉ ତୁମେମାନେ ଯାଅ । ଯାଇ ଦେଖିବ—ତହସିଲଦାରଙ୍କର ପାଟି ଖୋଲି ଯିବଣି । ସତକୁ ସତ ସମସ୍ତେ ଆସି ଦେଖିଲେ ତହସିଲଦାରଙ୍କ ପାଟି ଖୋଲିଗଲାଣି । ମାତ୍ର ସେ ଅଧିକ ରାଗରେ ପୋଲିସକୁ ଫୋନ୍‌ରେ କହୁଛନ୍ତି, ଆଜ୍ଞା, ଲାଠିଧାରୀ ପୋଲିସ ଆସନ୍ତୁ, ବନ୍ଧୁକ ବି ସାଙ୍ଗରେ ଆଣି ଆସନ୍ତୁ । ସେଇ ତାନ୍ତ୍ରିକ ବାବାଜୀ ଗୁଡ଼ାକ ତାଙ୍କର ସେଇ ଝୁଙ୍ଗିରେ ବହୁ ଅସ୍ତ୍ରଶସ୍ତ୍ର ରଖିଥିବାର ମଧ୍ୟ ଆମର ସନ୍ଦେହ ହେଉଛି । ଗାଁ-ବାଲାଏ ଯେତେ ଅନୁରୋଧ ଉପ୍ରୋଧ କଲେ ବି ତହସିଲଦାର ଶୁଣିଲା ନାହିଁ । ରାଗରେ ସେ ପାଗଳ ହୋଇ ଯାଇଥିଲା । ସେଠୁ ସେ କେତେଜଣ ହରିଜନ ଟୋକାଙ୍କୁ ଡକାଇ ପଠାଇଲା । ତାଙ୍କୁ କହିଲା, ପୋଲିସ ଯେମିତି ବଜାର ଉପରକୁ ଆସି ପହଞ୍ଚିବେ ତୁମ୍ଭେମାନେ ସେମିତି ଠେଙ୍ଗାବାଡ଼ି ଧରି ଯାଇ ସେ ଝୁଙ୍ଗିକି ଭାଙ୍ଗିବ । ସେ ବାବାଜୀମାନଙ୍କୁ ବାଡ଼େଇ ତଡ଼ିଦବ । ଜମି ଦଖଲ କରିନବ ।

କିଛି ସମୟ ପରେ ପୋଲିସ ଫଉଜ ଆସି ପହଞ୍ଚିଗଲେ । ଏଣେ ବୁଢ଼ା ହରିଜନମାନେ ଯେତେ ବାରଣ କରୁଥିଲେ ବି ଯୁବକ ହରିଜନ-ମାନେ କାହାକଥା ନ ଶୁଣି, ତହସିଲଦାର କଥାରେ ଠେଙ୍ଗାବାଡ଼ି ଧରି ସେଇ ଝୁଙ୍ଗି ଉପରେ ଆକ୍ରମଣ କଲେ । ଝୁଙ୍ଗିରେ ନିଆଁ ଲଗାଇ ଦେଲେ । ଶିଷ୍ୟ ଗୃହଜଣଙ୍କୁ ଡାକି ବୁଢ଼ା ଗୁଣିଆ କହିଲା, ଦେଖ ! ତୁମେମାନେ ଝୁଙ୍ଗି ଛାଡ଼ି ଚାଲିଯାଅ, ନଚେତ୍ ଠେଙ୍ଗାବାଡ଼ି ଧରି ସେମାନଙ୍କର ମୁକାବିଲା କର । ଏ କ୍ଷେତ୍ରରେ କିଛି ଗୁଣି-ଗାରେଡ଼ୀ କର ନାହିଁ । ସେଇଆ ହେଲା—ହରିଜନ ଯୁବକମାନେ ସେମାନଙ୍କୁ ଆକ୍ରମଣ କଲେ । ସେମାନେ ମଧ୍ୟ ଠେଙ୍ଗାବାଡ଼ି ଧରି ବାହାରିପଡ଼ିଲେ । ପିଟାପିଟି ଚାଲିଲା । ହଠାତ୍ ପୋଲିସ ଫଉଜ ପହଞ୍ଚିଗଲେ ଏବଂ ସେହି ଗୁଣିଆ ଶିଷ୍ୟ ଗୃହଜଣଙ୍କୁ ହାତକଡ଼ି ପକାଇ ଗିରଫ କରିନେଲେ । ତାଙ୍କ ସାଙ୍ଗରେ ମଧ୍ୟ ଅନ୍ତ୍ର ପ୍ରହରାଜ ଗିରଫ ହୋଇଗଲେ । ଖବର-କାଗଜରେ ମଧ୍ୟ ହରିଜନଙ୍କ ଉପରେ ଅତ୍ୟାଚାର ବୋଲି ଖବର ବାହାରିଥିଲା । ପୋଲିସ ଅନ୍ତ୍ର ପ୍ରହରାଜ ଆଉ ତାଙ୍କର ସେହି ଗୃହଜଣ

ଶିଷ୍ୟଙ୍କ ବିରୁଦ୍ଧରେ କେସ୍ କଲେ । ସେଇ କେସ୍‌ରେ ସେ ଗୁରୁଜଣ ଶିଷ୍ୟଙ୍କୁ ଛ' ଛ' ମାସ ଜେଲ୍ ହେଲା । ଅନ୍ୟ ପ୍ରଚାରକ ବୁଢ଼ା ଦୁ ମାସେ କାଳ ଜେଲ୍‌ରେ ରହିବ ସଜା ପାଇଲେ । ଜେଲ୍‌ରୁ ଫେରି ବୁଢ଼ା ଆଉ ସେ ମନ୍ତ୍ର-ଫନ୍ଦ ଗୁଣିଗାରେଡ଼ କିଛି କଲା ନାହିଁ । ଘରଦ୍ୱାର ଛାଡ଼ି ଯେତେ ଯେଉଁଠି ତୀର୍ଥ ଜାଗା ଅଛି ବୁଲିଲା । ବୁଲି ବୁଲି ଏଇ ବର୍ଷେ ହେଲା ବୁଢ଼ା ଆପଣା ଗାଁ'କୁ ଫେରିଛି । କିନ୍ତୁ ବୁଢ଼ାର ନାତି ଏଇ ଭୁବନେଶ୍ୱରରେ କେଉଁଠି ଗୋଟେ ବଡ଼ ହାକିମ ହୋଇଛି । ବୁଢ଼ା ବର୍ତ୍ତମାନ ତାଆରି ପାଖକୁ ଗଲା । ଏଠି ରହିବ ଅଇନେ କିଛି ଦିନ ।

ବାତୁଳ ଲୋକଟି ଏକା ନିଃଶ୍ୱାସକେ ଏତେଗୁଡ଼ାକ କଥା କହି ଟିକିଏ ଦମ୍ ମାରିଲା ଓ ଖଣ୍ଡିଏ ସିଗ୍ରେଟ ପାଟିରେ ପୂରାଇ ହିଆସିଲ୍ ମାରିଲା । ସେଇଠୁ କଳେ ଧୂଆଁ ନେଇ ତାକୁ ଗଲଗଲ କରି ଗୁଡ଼ି ବେଞ୍ଚରୁ ଉଠି ଠିଆ ହେଲା । ସମବେତ ଶ୍ରୋତାମାନେ ଆଉ କିଛି ଅଧିକ ଶୁଣିବାକୁ ଉଦ୍‌ଗ୍ରୀବ ହୋଇ ରହିଥିଲେ । ଏହି ସମୟରେ ଗୋଟାଏ ପ୍ରଚଣ୍ଡ ଶବ୍ଦ କରି ମଟର ସାଇକେଲଟିଏ ସେଠି ଆସି ବ୍ରେକ୍ ଦେଲା । ତା' ଉପରେ ଅର୍ଦ୍ଧାସୁର ଭଳିଆ ଆଟେଗ୍ରହୀ ଜଣେ ସବାର ହୋଇଥିଲେ । ଏହି ବାତୁଳ ଲୋକଟି ତରବରରେ ଯାଇ ସେ ମଟର ସାଇକେଲର ପଛ ସିଟ୍‌ରେ ବସିପଡ଼ିଲା ଏବଂ ସାଙ୍ଗେ ସାଙ୍ଗେ ସେହି ଅର୍ଦ୍ଧାସୁର ଆଗ୍ରେହୀଟି ଗୋଟାଏ ଗିଅରି ପକାଇ ମଟର ସାଇକେଲଟିକୁ ଆଗକୁ ଛୁଟାଇ ଦେଲା । ଆଖି ପିଛୁଳାକେ ରାଜପଥର ଅସଂଖ୍ୟ ବ୍ୟସ୍ତବ୍ୟସ୍ତ ଯାନବାହାନ ଭିତରେ ସେମାନେ ନିମିଷକ ଭିତରେ କୁଆଡ଼େ ଅଦୃଶ୍ୟ ହୋଇଗଲେ ।

ମୋତେ ଆହୁରି ବିଷଣ୍ଣ ଲାଗିଲା । ଆହୁରି ହତାଶ ଲାଗିଲା । ମୋ ଆଖି ଆଗରେ ଚାଲବୁଲ କରୁଥିବା ସେଇସବୁ ମଣିଷମାନେ ବାସ୍ତବ ବୋଲି ମନେ ହେଲେ ନାହିଁ । ମତେ ବୋଧ ହେଉଥିଲା—ଏମାନେ ସମସ୍ତେ ସତେ କି ଗୋଟିଏ ଗୋଟିଏ ଭୂତ କିମ୍ବା ଭୂତଗ୍ରସ୍ତ ଲୋକ ! ଏବଂ ଆମ ଚାରିପଟେ ପ୍ରତି ମୁହୂର୍ତ୍ତରେ ଘଟି ଚାଲିଥିବା ଘଟଣାଗୁଡ଼ିକ ସତେ କି କେବଳ ଭୂତମାନଙ୍କର ହିଁ କାଣ୍ଡକାରଖାନା । ମୋତେ

ଲାଗୁଥାଏ ସତେ କି ଆମ ସମସ୍ତଙ୍କ ଭିତରେ ସେହି ତାନ୍ତ୍ରିକ ଚୂଡ଼ାମଣି ଗୁଣିଆ ଗୁଣସାଗର ଅନନ୍ତ ପ୍ରହରାଜ ହିଁ ଯଥାର୍ଥରେ ଭୂତମୁକ୍ତ ପୁରୁଷ ଏବଂ ତାଙ୍କ ଛଡ଼ା ଆମେ ସମସ୍ତେ ଏକାବେଳକେ ଭୂତଗ୍ରସ୍ତ ହୋଇ ପଡ଼ିଛୁ ।

ଅବଶ୍ୟ ମୋ ମନ ଭିତରେ ଏମିତି ଅନୁଭବ ବଦ୍ଧମୂଳ ଧାରି ହେଲାଣି ଏବଂ ତାହା କ୍ରମଶଃ ଘନୀଭୂତ ହେବାରେ ଲାଗିଛି । ମୁଁ ଜାଣେନା ମୋ ମୁଣ୍ଡ ଭିତରେ ପ୍ରକୃତରେ ଗୋଟାଏ ଭୂତ ପଶିଛି କି ନାହିଁ । ତା' ନହେଲେ ମୁଁ ଏତେ ବିଷର୍ଣ୍ଣ କାହିଁକି ହେଉଛି ? କିନ୍ତୁ କେବଳ ମୁଁ କାହିଁ—ମୋ ଛଡ଼ା ହେଇ ସେଠି ଏଠି ଓ ଅନ୍ୟ ସବୁଠି ଯେଉଁମାନେ ହୈହାଲ୍ଲା କରି ହୁମ୍‌ଦାମ୍ ହୋଇ ଅମରମଣ୍ଡି ହୋଇ ଡିଆଁ ଡେଇଁ କରୁଛନ୍ତି, ସେମାନଙ୍କ ମୁଣ୍ଡରେ ବି ଭୂତମାନେ ପଶିଛନ୍ତି । କିନ୍ତୁ କିଏ ଆମମାନଙ୍କ ମୁଣ୍ଡ ଭିତରୁ ସେଇ ଭୂତମାନଙ୍କୁ ତଡ଼ି ବାହାର କରିବ ? ତାନ୍ତ୍ରିକ ଚୂଡ଼ାମଣି ଗୁଣିଆ ଗୁଣସାଗର ଅନନ୍ତ ପ୍ରହରାଜଙ୍କର ତ ସବୁତକ ଦାନ୍ତ ପଡ଼ିଗଲାଣି । ତାଙ୍କର ଗୁଣିମନ୍ତ୍ର ଆଉ କାମ୍ କରିବ ନାହିଁ । ତା'ହେଲେ ଉପାୟ କ'ଣ ? ତାହାହେଲେ ଏ ପୃଥିବୀର ଅବଶିଷ୍ଟ ଆୟୁ କ'ଣ ଏଇ ଭୂତାବିଷ୍ଟ କାଣ୍ଡକାରଖାନାରେ ହିଁ କ୍ଷୟ ହେବ ?

ହେ ଭଗବାନ !



# ହୃଦରେ ଫୁଲଗଛ ! କାହିଁକି ମଲୁ ?

…ପିଲାଦିନେ ଯାହା ଦେଖିବା ଥିଲା ମୋର ଗୋଟିଏ ଦୁର୍ବାର ନିଶା । ତହିଁକି ପୁଣି ବର୍ଷକ ବାରମାସ ଆମ ଗାଁରେ ଓ ପାଖ ଆଖ ଗାଁମାନଙ୍କରେ କିଛି ନା କିଛି ସୂତ୍ରରେ ରାତିରାତି ବାଂଶିପାଲା, ଦାସକାଠିଆ, ପାଟୁଆ, ଚଇତିଘୋଡ଼ା କିମ୍ବା ବାଘ ଯାତ୍ରା ବା ନାଟ ହେଉଥିଲା । ମୁଁ ମୋର କେତେଜଣ ବିଶ୍ୱସ୍ତ ଓ ଅନୁଗତ ସାଙ୍ଗଙ୍କୁ ଧରି ରାତିରାତି ବିତାଇଦିଏ ଏଇସବୁ ଦେଖି । ମୋ ସାଙ୍ଗଙ୍କ ଭିତରେ ଥାନ୍ତି ମାୟାଧର ଷଡ଼ଙ୍ଗୀ, ପଦ୍ମଲ ପଧାନ, ଦୁଆଶି ଗୁଡ଼ିଆ, ଦ୍ୱିଜବର ସ୍ୱାଇଁ, ଅଗାଧୁ ସେନାପତି, ମିଲ ନାହାକ ଆଉ ଅପର୍ତ୍ତି ଭୋଇ । ମୁଁ ଥାଏ ଏମାନଙ୍କର ନେତା ଆଉ ରକ୍ଷକ ଶ୍ରେଣୀର ବନ୍ଧୁ । ମୁଁ ଥିଲି ଅପେକ୍ଷାକୃତ ଧନୀ ଘରର ପିଲା । ଏମାନେ ଥିଲେ ସମସ୍ତେ ଗରିବ । କିନ୍ତୁ ପ୍ରତ୍ୟେକେ ମୋ ଠାରୁ ବହୁ ବହୁ ବିଦ୍ୟାରେ ବିଚକ୍ଷଣ । ପଦ୍ମଲ ପଧାନ ଗଛ ଚଢ଼ାରେ ମାଙ୍କଡ଼କୁ ବଳିଯାଏ । କିନ୍ତୁ ତୀକ୍ଷ୍ଣ ବୁଦ୍ଧି ବା ଗଭୀର ଅନୁଭୂତିରେ ଗଧଟାଏ । ସବୁବେଳେ ମାଙ୍କଡ଼ାମି କରୁଥିବ । ଦାନ୍ତ ନିକୁଟି ହିଁ ହିଁ ହୋଇ ବୃଥାଟାରେ ହସୁଥିବ । ସ୍ଥାନ କାଳ ପାତ୍ର ଜ୍ଞାନ ନ ଥାଏ କି ଉଚିତ ଅନୁଚିତ ବୋଧ ନ ଥାଏ । ଏଥିଲାଗି ସେ ବେଳେବେଳେ ମୋଠାରୁ ମାଡ଼ ବି ଖାଏ । ମାତ୍ର ମାଡ଼କୁ ବି ତା'ର ଛିଲ ନ ଥାଏ । ଦୁଆଶି ଗୁଡ଼ିଆ ମାଛ ମାରିବାରେ ଓସ୍ତାଦ । କୋଉ ପୋଖରୀରେ କଉ, ଭଡ଼ା, ଗଡ଼ିଶା,

ମାଗୁର ଥିବେ ତାଙ୍କୁ ସବୁ ଜଣା । ଦ୍ୱିଜବର ବାମନଟିଏ । କିନ୍ତୁ କେମିତି କେଜାଣି ସବୁ ପୁରାଣ କଥା ତାଙ୍କୁ ଜଣାଥାଏ । ହରିଶ୍ଚନ୍ଦ୍ର, ନଳଦମୟନ୍ତୀ, ସାବିତ୍ରୀ ସତ୍ୟବାନ ଆଦି ବହୁକଥା ସେ ଚମତ୍କାର କହିପାରେ । ଅଗାଧୁ ସେନାପତି ହେଲେ ଡମ୍ଫା ଶିରୋମଣି । ମିଛକୁ ଏମିତି ସତ ଫଳେଇ କହିଦେବାର କ୍ଷମତା ମୁଁ କାହାଠାରେ ଆଜି ପର୍ଯ୍ୟନ୍ତ ଦେଖିନାହିଁ । ମାଳ ନାହାକ ଥିଲା ପହିଲମାନ । ମାଡ଼ ପିଟାପିଟି ବ୍ୟାପାର ଆସିଲେ ସେ ତା'ର କୃତିତ୍ୱ ଦେଖାଏ । ତାଙ୍କୁ କୁସ୍ତି ବୈଠକ ବହୁତ ଜଣାଥିଲା । ଆଡ଼ଣ, ତାଡ଼ଣ, ଭିଡ଼ଣ ଆଦି ବହୁ କୌଶଳ ସେ ଜାଣିଥିଲା ଏବଂ ହରିଜନ ପିଲା ଅପର୍ତ୍ତି ଭୋଇ ବଣ ବୁଦାର ରହସ୍ୟ ଜାଣିଥିଲା । କୋଉ କୋଳି କୋଉଠି ପାଚିଛି, କାହା ବାଡ଼ିରେ ମକା, କାହା ବାଡ଼ିରେ ପିଜୁଳି ସେ ସବୁ ଖବର ଥାଏ ତା ପାଖରେ । ସେ ମଧ୍ୟ ସାପ ଧରିପାରୁଥିଲା ବାଡ଼ି ପକାଇ । ଏଇ ବନ୍ଧୁମାନେ ମତେ ଖୁବ୍ ଭଲ ପାଉଥିଲେ ଏବଂ ମୁଁ ମଧ୍ୟ ଆମ ଘରୁ ପଇସା, ଗୁଡ଼ଲ, ଡାଲି ପରିବା ଆଦି ଲୁଚେଇ ଆଣି ସେମାନଙ୍କ ଭିତରୁ ନ ଥିଲା ବାଲାଙ୍କୁ ଦେଇ ଦେଉଥିଲି ।

କିନ୍ତୁ ସେମାନଙ୍କ ଭିତରେ ମାୟାଧର ଥିଲା ମୋର ଅତି ଅନ୍ତରଙ୍ଗ । ଆମେ ଦୁହେଁ ପ୍ରାଣକୁ ପ୍ରାଣ ମିଶାଇ ଦେଇଥିଲୁ । ଶ୍ରୀକୃଷ୍ଣଙ୍କ ପାଖରେ ଅର୍ଜୁନଙ୍କ ପରି, କମ୍ୱା ଡନ୍‌କୁଇକ୍‌ସୋଟ୍‌ଙ୍କ ପାଖରେ ସାଙ୍କୋ-ପାଞ୍ଜାଙ୍କ ପରି ସେ ଥିଲା ମୋର ଅନୁଗତ, ମଦ୍‌ଗତଚିତ୍ତ ଓ ମୋ ପାଇଁ ପ୍ରାଣ ଦେବାକୁ ମଧ୍ୟ ପ୍ରସ୍ତୁତ ବନ୍ଧୁ । ମୋ ଲାଗି ସେ ବହୁ କଷ୍ଟ ସହିଛି ଏବଂ ବହୁ ବହୁ ଘଟଣାରେ ମୋତେ ଦୋଷମୁକ୍ତ କରିବାକୁ ଯାଇ, ସେ ଆପଣା ଉପରକୁ ସବୁତକ ବିପଦ ଓ ଦଣ୍ଡ ବରଣ କରି ନେଇଛି । ପିଲାଦିନୁଁ ସେ ଥିଲା ମା' ଛେଉଣ୍ଡ । ବାପା ଓ ଭାଇ ଥାଆନ୍ତି ଚିରଦିନ ବିଦେଶରେ । ଘରେ ଥାଆନ୍ତି ସେ ଆଉ ତା'ର ରୋଗୀଣା ସାନଭାଇଟିଏ— ଆଉ ଅତିସାର ଗ୍ରହଣୀ ଭୋଗୁଥିବା ଭଉଣୀଟିଏ । ମାୟାଧର ସେମାନଙ୍କୁ ଲାଳନ ପାଳନ କରେ । ରାନ୍ଧିବାଢ଼ି ଖାଇବାକୁ ଦିଏ । ନିଜେ ସ୍କୁଲରେ ପାଠପଢ଼େ । ଗୋଟିଏ ଦିଗରୁ ମୋଠାରୁ ତା'ର ସଂସାରଜ୍ଞାନ ଥିଲା ଅଧିକ । ଅଥଚ, ସେ ଥିଲା ଭାରି ଧର୍ମପରାୟଣ । ତା'ର କଣ୍ଠ ମଧ୍ୟ ଥିଲା

ଖୁବ୍ ମଧୁର । ସେ ବହୁତ ଛାନ୍ଦ ଚୌପଦୀ ଗାଇ ଜାଣିଥିଲା । ତା'ର ଗୋଟିଏ ବଡ଼ ସଉକ୍ ଥିଲା ବଣି ଚଢ଼େଇ ପାଳିବା ଓ ସେମାନଙ୍କୁ ପୋଷା ମନେଇ କଥା କୁହାଇବା । ସେ ପ୍ରସଙ୍ଗ ମୁଁ ଆଗରୁ କହିସାରିଛି । ତା ସାଙ୍ଗେ ମୋର ବାଲ୍ୟକାଳର ବହୁତ ବହୁତ ତିକ୍ତ ମଧୁର ଘଟଣାର ଅଭିଜ୍ଞତାମାନ ହୋଇଛି । ପ୍ରସଙ୍ଗ କ୍ରମେ ସେ ସବୁ ମୁଁ ପରେ କହିବି । ଆଜି ଯାତ୍ରା ଦେଖା ବ୍ୟାପାରରୁ ଗୋଟିଏ ଅବ୍ୟାପାର ସ୍ମୃତି ଚାରଣା କରି କହୁଛି, ଶୁଣନ୍ତୁ । ସେତେବେଳକୁ ଆମ୍ଭମାନଙ୍କ ବୟସ ନଅ ଦଶ ବର୍ଷ ଭିତରେ ।

ଆମ ଗାଁ ଠାରୁ ମାଇଲଏ ଦୂର ଗୋଟିଏ ଗାଁରେ ଯାତ୍ରା ହେଉଥାଏ । ଗାଁକୁ ଗାଁ ଲାଗିଛି । ଆମେ ସାଙ୍ଗମାନେ ଖାଇପିଇ ସାତ ସେଠାକୁ ଗଲୁ । ରାତି ଦଶଟା ବେଳକୁ ଯାତ୍ରା ଆରମ୍ଭ ହେଲା । ଆମେ ସମସ୍ତେ ଆଗରୁ ଯାଇ ଗୋଲାକାର ଦର୍ଶକ ମଣ୍ଡଳୀର ପ୍ରଥମ ଧାଡ଼ିରେ ବସିଗଲୁ । ଗୁମୁଣ୍ଡିଆ ତଳେ ପାଞ୍ଚଛଅଟା ପେଟ୍ରୋମାକ୍ସ ଡେ' ଲାଇଟ୍ ଜଳୁଥାଏ । ପ୍ରଥମେ ଅଧଘଣ୍ଟାଏ ଧରି କନ୍‌ସାର୍ଟ ଚାଲିଲା । ଗୋଟିଏ ଦୁଇଟି ବୈଠକୀ ଗୀତ ମଧ ବୋଲାହେଲା । ତା'ପରେ ଗୋଟି ପିଲାମାନେ ଆସି ଦୁଇଟି ଚଉପଦୀ ଗାଇ ନାଚିଲେ । ତା'ପରେ ଆରମ୍ଭ ହେଲା ନିର୍ଦ୍ଧାରିତ ସମାଜ । ସେଦିନ "କାଞ୍ଚନକୁମାରୀ" ନାଟକ ଅଭିନୀତ ହେଉଥାଏ । ଆମ ଅଞ୍ଚଳର ପ୍ରସିଦ୍ଧ ଯାତ୍ରା ଓସ୍ତାଦ ଗନ୍ଧର୍ବ ମହାନ୍ତିଙ୍କ ମାହାଲ ପାର୍ଟି ଯାତ୍ରା କରୁଥାନ୍ତି । ମହଙ୍ଗପଡ଼ା ଅଭିରାମ ସୋଇଁ ରାଜା ପାର୍ଟ ସାଜିଥାନ୍ତି । ସ୍ୱୟଂ ଓସ୍ତାଦ ଗନ୍ଧର୍ବ ମହାନ୍ତି ଅସୁରୁଣୀ ଭୂମିକାରେ ଓହ୍ଲାଇଥାନ୍ତି । ବିଖ୍ୟାତ ହାସ୍ୟରସ ବିଶାରଦ ମୂଷା ଯୋଗୀ ଓହ୍ଲାଇ-ଥାନ୍ତି ବିଦୂଷକ ଭୂମିକାରେ । ଆବାଳ ବୃଦ୍ଧ ବନିତା ପ୍ରାୟ ପାଞ୍ଚହଜାର ଦର୍ଶକ ବୃତ୍ତାକାରରେ ବସି ଅପଲକ ନୟନରେ ଉତ୍କଣ୍ଠ ହୋଇ ବସି ଉପଭୋଗ କରୁଥାନ୍ତି ସମାଜଟି । ଗୋଟିପିଲା ନାଚି ନାଚି ଅପସରି ଗଲେ । ତା' ପରେ ତୁରୀ, ଢୋଲକୀ, ଝାଞ୍ଜ, ହାରମୋନିଅମ୍ ପ୍ରଭୃତି ବହୁ ସମୟ ଧରି ବାଜିଲା ପରେ ସମାଜଟି ଦୃଶ୍ୟ ପରେ ଦୃଶ୍ୟ ଅଭିନୀତ ହୋଇ ଚାଲିଲା ।······

କାଞ୍ଚନପୁର ନାମକ ରାଜ୍ୟ—ତା'ର ରାଜା ଭାନୁପ୍ରତାପ ଦେବ, ଅତ୍ୟନ୍ତ ପ୍ରଜାବତ୍ସଳ, ପ୍ରଜାପାଳକ ଓ ପ୍ରଜାରଞ୍ଜକ । ତାଙ୍କର ଏକମାତ୍ର ଅଲଅଲି କନ୍ୟା କାଞ୍ଚନବାଳା ନବଷୋଡ଼ଶୀ, ପରମା ସୁନ୍ଦରୀ ସୁକୁମାରୀ ଆଉ ପିତୃଗତପ୍ରାଣା । ବାଲ୍ୟକାଳରୁ ମାତୃହୀନା ହୋଇଥିବାରୁ ଓ ରାଜାଙ୍କର ଆଉ ସନ୍ତାନ ନ ଥିବାରୁ ଏକମାତ୍ର କନ୍ୟାଟି ଥିଲା ରାଜାଙ୍କର ପ୍ରାଣର ଧନ—ନୟନର ପିତୁଳି । ରାଜା ଝିଅକୁ ଯେମିତି ଦଣ୍ଡେ ପାଖରୁ ଛାଡ଼ୁ ନ ଥିଲେ, ଝିଅ ମଧ୍ୟ ସେମିତି ଦଣ୍ଡେ ପିତାଙ୍କୁ ନ ଦେଖିଲେ ବାଇଆଣୀ ହୋଇ ଯାଉଥିଲା ।

ଦିନେ ରାଜା ନିଶ୍ଚିନ୍ତ ମନରେ କନ୍ୟା ସହିତ ବସି ତା'ର ଆଶୁ ବିବାହର ଔଚିତ୍ୟ ସମ୍ପର୍କରେ କଥାବାର୍ତ୍ତା ହେଉଛନ୍ତି—ଏହି ସମୟରେ ଦୈବୀ ବିଧାନରେ ଗୁପ୍ତଚରଟିଏ ଆସି ଜଣାଇଲା—ମହାରାଜା ଆପଣଙ୍କ ଅଭୟ ଛତ୍ରଛାୟା ତଳେ ରାଜ୍ୟବାସୀ ପରମ ସୁଖରେ କାଳାତିପାତ କରୁଛନ୍ତି—କିନ୍ତୁ ରାଜ୍ୟର ପଶ୍ଚିମ ସୀମା ସଂଲଗ୍ନ ବିଦ୍ୟାନ ଅରଣ୍ୟକୁ ଏଇ କେତେଦିନ ଧରି ରାକ୍ଷସୀଟିଏ ଆସି ରହୁଛି ଓ ନିକଟସ୍ଥ ପୁର-ପଲ୍ଲୀରେ ବହୁତ ଉତ୍ପାତ ଆରମ୍ଭ କରି ଦେଇଛି । ସେ ଗ୍ରାମବାସୀଙ୍କ ଗୃହପାଳିତ ପଶୁମାନଙ୍କୁ ଖାଇ ସଫା କରିଦେଲାଣି । ଏବେ ଶୁଣିବାକୁ ମିଳୁଛି ସେ ମନୁଷ୍ୟମାନଙ୍କୁ ଧରିନେଇ ଅତି ଆନନ୍ଦରେ ଜିହ୍ୱାତୋଷଣ ଓ ଉଦର ପୂରଣ କରି ଲାଗିଛି । ତା'ର ନରମାଂସ ଭକ୍ଷଣଜନିତ ଉତ୍ପାତରେ ସୀମାନ୍ତ ଅଞ୍ଚଳର ବହୁ ପଲ୍ଲୀ ଜନଶୂନ୍ୟ ହୋଇଗଲାଣି ଏବଂ ସେହି ପିଶାଚୀ ପୂର୍ବଦିଗକୁ ଅର୍ଥାତ୍ ରାଜଧାନୀ ଆଡ଼କୁ ଅଗ୍ରସର ହେଉଅଛି । ତା' ଯୋଗୁଁ ଚତୁର୍ଦ୍ଦିଗରେ ମହା ଆତଙ୍କ ଖେଳିଗଲାଣି । ଏଥିକୁ ମହିମା ତୁରନ୍ତ ପ୍ରତିକାର ବ୍ୟବସ୍ଥା କରନ୍ତୁ ।

ଚରର ମୁଖରୁ ଏହି ବିସମ୍ବାଦ ଶୁଣୁ ଶୁଣୁ ରାଜା ବିରକ୍ତି, ଦୁଃଖ ଓ କ୍ରୋଧରେ କମ୍ପି ଉଠିଲେ । ସଙ୍ଗେ ସଙ୍ଗେ ସେନାପତିଙ୍କୁ ଆଦେଶ ହେଲା ଶୀଘ୍ର ସେନାବାହିନୀଙ୍କୁ ସଜ କରନ୍ତୁ । ଆଜି ଅପରାହ୍ଣରେ ମୁଁ ହସ୍ତୀ ପୃଷ୍ଠରେ ବସି ପଶ୍ଚିମ ସୀମାନ୍ତକୁ ଯାତ୍ରା କରିବି ଏବଂ ଆଜି ରାତିରେ ହିଁ ସେହି ନରମାଂସ ଭୋଜୀ ଦୁଷ୍ଟା ନିଶାଚରୀକୁ ହତ୍ୟା କରି ତାର ଘୃଣିତ

ଶବକୁ ଶ୍ୱାନ ଶୃଗାଳ ଓ ଶାଗୁଣାମାନଙ୍କ ଆହାର ନିମନ୍ତେ ନିକ୍ଷେପ କରିବ ।

ଯଥାଜ୍ଞାରେ ସେନାବାହିନୀ ଅନତି ବିଳମ୍ବରେ ପ୍ରସ୍ତୁତ ହୋଇଗଲେ । ରାଜା ମଧ୍ୟ ମୁହୂର୍ତ୍ତିକ ମଧ୍ୟରେ ଯୋଦ୍ଧା ବେଶରେ ଧନୁବାଣ ଢାଲ ଓ ତଲୁଆର ଏବଂ ସାଞ୍ଜୁ ଆଦିରେ ସଜ୍ଜିତ ହୋଇ ହସ୍ତୀ ପୃଷ୍ଠରେ ଆରୋହଣ କରିବାକୁ ଯାଉଛନ୍ତି—ଏହି ସମୟରେ ତାଙ୍କର ସେହି ଆବାଲ୍ୟ ମାତୃହୀନା ଅଲଅଲି ସୁକୁମାରୀ ପିତୃଗତପ୍ରାଣା ଏକମାତ୍ର କନ୍ୟା କାଞ୍ଚନବାଳା ପିତାଙ୍କ ବକ୍ଷ ଦେଶରେ ଲୋଟିପଡ଼ି କାନ୍ଦି କାନ୍ଦି ଅଳ କଳ ପାଷାଣ ଭେଦୀ କରୁଣ ସ୍ୱରରେ—

ପିତା ! ଆପଣଙ୍କ ପାଦତଳେ ପଡ଼ି କହୁଛି—ଆପଣ ଆଜି ସେହି ନରମାଂସ ଲୋଲୁପୀ ଭୀଷଣଦର୍ଶନା ରାକ୍ଷସୀ ପାଖକୁ ଯାଆନ୍ତୁ ନାହିଁ । ଅସୁରୁଣୀମାନେ ଭାରି ମାୟାବୀ । ସେମାନେ ମାୟାରେ ଲକ୍ଷ ଲକ୍ଷ ଚତୁରଙ୍ଗ ବାହିନୀ ଅସୁର ସେନା ଆକାଶରୁ ସୃଷ୍ଟି କରିଦେଇ ପାରିବେ ଏବଂ ଆପଣ ଆପଣଙ୍କ ସେନାବାହିନୀ ସହ ସେମାନଙ୍କ ଦ୍ୱାରା ନିଶ୍ଚୟ କବଳିତ ହେବେ । ଆମର ଜ୍ୟୋତିଷ ଚୂଡ଼ାମଣି ପଞ୍ଚାନନ ଖଡ଼ୀରତ୍ନ ଆପଣଙ୍କର କୋଷ୍ଠୀ ଦେଖି କି ଭବିଷ୍ୟତବାଣୀ କରିଛନ୍ତି, ତାହା କ'ଣ ଆପଣ ବିସ୍ମୃତ ହୋଇଗଲେ ? ଆସନ୍ତା ସଂକ୍ରାନ୍ତି ପୂର୍ବରୁ ଆପଣଙ୍କର ପ୍ରାଣ ଉପରେ ଆଶଙ୍କା ରହିଛି । ତେଣୁ ଆଉ କିଛିଦିନ ଅପେକ୍ଷା କରିଯାନ୍ତୁ । ତା'ଛଡ଼ା, ଆଜି ପାହାନ୍ତାରୁ ମୁଁ ମଧ୍ୟ ଗୋଟିଏ ଦୁଃସ୍ୱପ୍ନ ଦେଖି ମୋର ମନ ଦୁଶ୍ଚିନ୍ତାଗ୍ରସ୍ତ ହୋଇ ରହିଛି । ଆଜି ସକାଳୁ ମଧ୍ୟ ମୋର ଦକ୍ଷିଣ ଚକ୍ଷୁ ଘନ ଘନ ସ୍ଫୁରିତ ହେଉଅଛି । ଏସବୁ ଭଲ ଲକ୍ଷଣ ନୁହେଁ । କୌଣସି ପ୍ରକାରେ ମୁଁ ଆପଣଙ୍କୁ ଆଜି ମୋ ପାଖରୁ ଅନ୍ତର ହେବାକୁ ଦେବନାହିଁ ।

ପିଲାଦିନୁ ମା' ଛେଉଣ୍ଡ, ଅତି ଆଦରର ଏକମାତ୍ର କନ୍ୟାର ଏହି ଅମଙ୍ଗଳ ଆଶଙ୍କା ଜାତ ସକରୁଣ ଉଦ୍ବୋଧମୂଳକ ନିଷେଧବାଣୀ ରାଜାଙ୍କ ହୃଦୟକୁ କ୍ଷଣକେ ଲାଗି ବିଗଳିତ କରିଦେଲା ସତ, ମାତ୍ର

ପ୍ରଜାମଙ୍ଗଳପ୍ରାଣ ବଚନକୁ ରାଜା ନିଜ ସଙ୍କଳ୍ପରୁ ଆଦୌ ଟଳିଲେ ନାହିଁ । ସେ କହିଲେ—

"ମା' କାଞ୍ଚନ ! ମୁଁ ତୋର ଯେପରି ପିତା, ସେହିପରି ମୋର ସହସ୍ର ସହସ୍ର ନିରୀହ ପ୍ରଜାମାନଙ୍କର ମଧ୍ୟ ମୁଁ ପିତାସଦୃଶ । ତୋ ଉପରେ କିଛି ମାରାତ୍ମକ ବିପଦ ପଡ଼ିଲେ, ଯେପରି ମୁଁ ମୋର ପ୍ରାଣଦେଇ ମଧ୍ୟ ତୋତେ ରକ୍ଷା କରିବାକୁ ସଚେଷ୍ଟ ହେବି, ମୋର ପ୍ରାଣପ୍ରିୟ ପ୍ରଜାମାନଙ୍କୁ ମଧ୍ୟ ତଦ୍ରୂପ ମୋର ପ୍ରାଣ ବିନିମୟରେ ଅଭୟ ଦେବା ମୋର ଏକାନ୍ତ କର୍ତ୍ତବ୍ୟ । ଯେଉଁ ରାଜା ପ୍ରାଣଭୟରେ ତା'ର ନିରୀହ ପ୍ରଜାମାନଙ୍କୁ ରାକ୍ଷସୀ ମୁହଁକୁ ଠେଲିଦିଏ, ସେ ପାପିଷ୍ଠ ରାଜା ନୁହେଁ—ବରଂ ରାଜବଂଶର କଳଙ୍କ ସଦୃଶ । ମା' ତୁ କିଛି ଭୟ କରନାହିଁ । ଆମର ଇଷ୍ଟଦେବୀ ମା' ତାରେଣୀଙ୍କ କୃପାରୁ ମୋର କିଛି ଅନିଷ୍ଟ ହେବନାହିଁ । ମୁଁ ଆଜ ରାତ୍ରି-ସୁଦ୍ଧା ସେହି ପରପ୍ରାଣଘାତିନୀ ନୃଶଂସା ନିଶାଚରୀର ମସ୍ତକକୁ ମୋର ଏହି ଶାଣିତ ଖଡ଼୍ଗାଘାତରେ ତା'ର ଦେହରୁ ବିଚ୍ଛିନ୍ନ କରି ଶ୍ୱାନଶୃଗାଳଙ୍କୁ ଆହାର ସ୍ୱରୂପ ଅର୍ପଣ କରିବି—ନତୁବା ମୋର ଏହି ଗାଣ୍ଡୀବ ସଦୃଶ ଧନୁରେ ତୀକ୍ଷ୍ଣବାଣ ପ୍ରୟୋଗ କରି ତା'ର ବକ୍ଷଦେଶରେ ବିଦ୍ଧ କରିବି ଓ ତାକୁ ଅଚିରେ ଶମନପୁରକୁ ପ୍ରେରଣ କରିବି । ତୁ କିଛି ଅମଙ୍ଗଳର ଆଶଙ୍କା କରନା । ମା' ! ତୁ କିଛି ଭୟ ନ କରି ଉଆସରେ ଥାଆ ଓ ଦେବୀ ତାରେଣୀଙ୍କୁ ଆମର ବିଜୟ ଲାଗି ପ୍ରାର୍ଥନା କରୁଥା ।"

ମାତ୍ର କାଞ୍ଚନବାଳା ଶେଷ ପର୍ଯ୍ୟନ୍ତ ବାପାଙ୍କୁ ଏକୁଟିଆ ଛାଡ଼ିବାକୁ ରାଜି ହେଲା ନାହିଁ । ସେ କହିଲା—ପିତା ! ଆପଣଙ୍କୁ ରାକ୍ଷସୀ ମୁହଁକୁ ଏମିତି ଠେଲିଦେଇ, ମୁଁ ଏଠି ଏକୁଟିଆ ଶାନ୍ତିରେ ରହିପାରିବି ନାହିଁ । ମୁଁ ବରଂ ଆପଣଙ୍କ ସାଙ୍ଗରେ ଯିବି ।

ଏହି ଦୃଶ୍ୟ ଚାଲିଥିଲାବେଳେ ମୁଁ ଓ ମାୟାଧର ଖୁବ୍ ଜାକିଜୁକି ହୋଇ ବସିଲୁ । ମୁଁ ଧୀର ଗଳାରେ ପଚାରିଲି—ରାଜା କ'ଣ କରିବେ ଭାବୁଛୁ ? ମାୟାଧର ଖୁବ୍ ଗମ୍ଭୀର ଭାବେ ସିଦ୍ଧାନ୍ତ ଦେଲା—ବରଂ ଝିଅକୁ ସାଙ୍ଗରେ ନେଇଯିବା ଉଚିତ ହେବ । ତା ନ ହେଲେ ଏ କେମିତି

ଚଢ଼େଖୋର ଝିଅ ଜଣାପଡ଼ୁଛି—ବାପକୁ ଛାଡ଼ିବ ନାହିଁ ଆଜି ଏଣେ ଅସୁରୁଣୀର ଉତ୍ପାତରେ ରାଜ୍ୟ ଛାରଖାର ହେବ । ମାଧୁଧର କଥାରେ ମୁଁ ଅବଶ୍ୟ ସମ୍ମତ ହେଲି—ମାତ୍ର ତଥାପି ଏଡ଼େ ସୁନ୍ଦରୀ ସୁକୁମାରୀ ରାଜାଝିଅ ବଣକୁ ଗଲେ ତା'ର ବହୁ ଅସୁବିଧା ହୋଇପାରେ । ଏ ଆଶଙ୍କା ମଧ୍ୟ ମୋତେ ଆବୋରି ଧରିଥାଏ । ଏହି ସମୟରେ ରାଜା ଖୁବ୍ ଉଚ୍ଚ-ଗଳାରେ ଝିଅ ଉଦ୍ଦେଶ୍ୟରେ ଗୋଟିଏ ଦୀର୍ଘ ବଚନିକା ଝାଡ଼ିଲେ ।

ରାଜା କହିଲେ—ଆଲୋ ପାଗଳୀ ! ତୁ ଅତି ସୁକୁମାରୀ, ଅରଣ୍ୟ ବ୍ୟାଘ୍ର ଭଲ୍ଲୁକ ଦୈତ୍ୟଦାନବ ପ୍ରଭୃତି ନିଶାଚରମାନଙ୍କ ଦ୍ୱାରା ପୂର୍ଣ୍ଣ । ସେମାନେ ନରମାଂସ ଲୋଲୁପୀ । ତା'ଛଡ଼ା, ମୁଁ ସେହି ଦୁଷ୍ଟା ରାକ୍ଷସୀ ସହ ଯୁଦ୍ଧରେ ପ୍ରବୃତ୍ତ ହେଲାବେଳେ, ତୁ କୋଉଠି କପରି ରହିବୁ ? ଦେଖ୍ ମା ! ଅରଣ୍ୟ ଓ ଯୁଦ୍ଧକ୍ଷେତ୍ର ତୋ ଲାଗି ନିରାପଦ ସ୍ଥାନ ନୁହେଁ । ତୁ ବରଂ ଦିନେ ଦୁଇଦିନ ତୋର ପ୍ରିୟସଖୀ ଓ ଦାସୀମାନଙ୍କ ସହିତ ରାଜ-ପ୍ରାସାଦରେ ଆନନ୍ଦରେ ଥାଅ । ଅନ୍ତଃପୁରର ପକ୍ଷୀଶାଳାରେ ସୁନ୍ଦର ବିଚିତ୍ର ପକ୍ଷ ମଧୁର କଳକାକଳୀ ମୁଖର ବିହଙ୍ଗମାନଙ୍କୁ ଆଧାର ଦେଇ ଓ ସେମାନଙ୍କର ନାନାବିଧ ନୃତ୍ୟ କ୍ରୀଡ଼ା ଦେଖି ଚିତ୍ତ ବିନୋଦନ କର । କିମ୍ବା ଅନ୍ତଃପୁରର ଉପବନରେ ସୁନ୍ଦର ସୁବାସିତ ଭ୍ରମର ମଧୁପ ସେବିତ ପୁଷ୍ପଲତା କୁଞ୍ଜମାନଙ୍କରେ ତୋର ସଖୀମାନଙ୍କ ସହ ଦୋଳିଖେଳ ମନହରଣ କରି କିମ୍ବା ଅନ୍ତଃପୁର ସଂଲଗ୍ନ କୁମୁଦ କହ୍ଲାର ପ୍ରସ୍ଫୁଟିତ ମରାଳ ମରାଳୀ, ଚକ୍ରବାକ ଚକ୍ରବାକୀ ସନ୍ତରିତ କେଳି ସରୋବରରେ ତୋ ସମବୟସିମାନଙ୍କ ଗହଣରେ ବିଚିତ୍ରବର୍ଣ୍ଣ ମୀନମାନଙ୍କ ଭିତରେ ଜଳକ୍ରୀଡ଼ା କରି ପ୍ରମୁଦିତା ହୁଅ । ଏବଂ ତା ସଙ୍ଗେ ସଙ୍ଗେ ନିକାଳ ସନ୍ଧ୍ୟାରେ ଆମର ଇଷ୍ଟଦେବ ମହାକାଳେଶ୍ୱର ଶିବଙ୍କ ମସ୍ତକରେ ଚନ୍ଦନ ମିଶ୍ରିତ ଜଳ ଅଭିଷେକ କରି ଓ ଆମର ଇଷ୍ଟଦେବୀ ତାରେଣୀଙ୍କ ନିକଟରେ ମାନସିକ ପୂଜା ନୈବେଦ୍ୟାଦି ଅର୍ପଣ କରି କୌଣସି ପ୍ରକାରେ ଦୁଇ ଗୁରିଦିନ ଅତିବାହିତ କର । ମୋ ମାଆଟି ପରା । ମୋ ସଙ୍ଗେ ଅରଣ୍ୟକୁ ଯିବାର ସଂକଳ୍ପ ତ୍ୟାଗକର ।

ମାତ୍ର ଯାହା ଦେଖାଗଲା, ରାଜକୁମାରୀ କିଛି ଶୁଣିଲେ ନାହିଁ । ଦୁଇବର୍ଷ ଦିନୁ ସେ ମାଆଙ୍କୁ ହରାଇଛନ୍ତି । ବାପା ଆଉ ଥରେ ଦ୍ୱିତୀୟ ଦାର ପରିଗ୍ରହ ନ କରି ଏକ ପତ୍ନୀବ୍ରତ ପାଳନ କରି ଆସୁଛନ୍ତି । ଏତେଦିନ କାଳ ସେ କେବଳ ଏକମାତ୍ର କନ୍ୟାର ମୁଖଚନ୍ଦ୍ର ଦର୍ଶନ କରି ଆଜି ପର୍ଯ୍ୟନ୍ତ କାଳାତିପାତ କରି ଆସିଛନ୍ତି । ସେ ବଡ଼ ହେଲାଦିନୁ ବାପାଙ୍କର ସମସ୍ତ ସେବା ପରିଚର୍ଯ୍ୟାର ଦାୟିତ୍ୱ ନେଇ ଆସିଛନ୍ତି । ବାପା ମଧ୍ୟ ତାଙ୍କୁ ଦଣ୍ଡେ ନ ଦେଖିଲେ, ବା ତାଙ୍କ ମୁହଁରୁ ପଦେ ନ ଶୁଣିଲେ କ୍ଷଣକେ ଅଧୀର ହୋଇ ପଡ଼ନ୍ତି । ତାଙ୍କୁ ଚାରିଦିଗ ଅନ୍ଧାର ଦେଖାଯାଏ । ଏପରି ସ୍ଥଳେ ସେ ପିତାଙ୍କୁ ଦୁଇ ଘଡ଼ିଦିନ ପାଇଁ ବନସ୍ତକୁ ଛାଡ଼ି, ନିଜେ ବି କିପରି ଶାନ୍ତିରେ ରହିବେ, ପୁଣି ନିଜେ ବାପା ମଧ୍ୟ କିପରି ଶାନ୍ତିରେ ଯୁଦ୍ଧ କରି ପାରିବେ ସେହି ଦୁରାଚାରିଣୀ ରାକ୍ଷସୀ ସହିତ ?

ରାଜକୁମାରୀଙ୍କ ହୃଦୟ ଦୁଃଖ ବେଦନାରେ ଆଉଟି ହୋଇଗଲା । ଏହି ଦୁଃଖ ବିପାକଗ୍ରସ୍ତ ମନ ଭିତରେ ତାଙ୍କର ଆଉ ଗୋଟିଏ ସ୍ମୃତି ମଧ୍ୟ ମେଘ ଖଣ୍ଡେ ଭଳି ଉଠେଇ ଆସିଲା । ହେଇତ ସେଦିନ—କାଲିପରି ଲାଗୁଛି—ମାତ୍ର ଦୁଇଟି ବର୍ଷ ବିତିଗଲାଣି—ସେହିଦିନର ସେହି କରୁଣ ମଧୁର ସ୍ମୃତି । ସେଦିନ ସେ ଶିବିକାରେ ବସି ଦାସଦାସୀ ଓ ରକ୍ଷୀମାନଙ୍କ ଗହଣରେ ପ୍ରାଚୀନଦୀ କୂଳରେ ମହାପ୍ରାଚୀନ ତୀର୍ଥ ମଣିକର୍ଣ୍ଣିକା ଘାଟକୁ ବୁଡ଼ ପକାଇବାକୁ ଯାଇଥିଲେ ମାଘମାସର ସପ୍ତମୀ ତିଥିର ପୁଣ୍ୟ ପ୍ରଭାତରେ । ସେହି ନଦୀକୂଳରେ ସ୍ନାନାନ୍ତେ ଶିବଅଭିଷେକ ସମାପନ କରି ସେ ଶିବିକା ଆଡ଼କୁ ଅଗ୍ରସର ହେଉଛନ୍ତି—ଏମନ୍ତ ସମୟରେ ସ୍ନ ଆର୍ଦ୍ରବସ୍ତ୍ର ପରିହିତା ମୁକ୍ତ କୁନ୍ତଳା ଅବସ୍ଥାରେ, ଅକସ୍ମାତ ତାଙ୍କର ଚାରି ଚକ୍ଷୁ ହୋଇଗଲା ଜଣେ ଉଷ୍ଣୀଷ ଓ ଧନୁର୍ବାଣଧାରୀ ଖଡ୍ଗହସ୍ତ ଅଶ୍ୱାରୋହୀ ବୀର ପୁରୁଷଙ୍କ ସହିତ । ସେହି ଆଗନ୍ତୁକ ଥିଲେ ପଡ଼ୋଶୀ ଭୂଷଣ୍ଡପୁର ରାଜ୍ୟର ତରୁଣ-କୁଳ-ପୁରନ୍ଦର ଯୁବରାଜ ଅନଙ୍ଗ ବିକ୍ରମ । ଅନଙ୍ଗ ବିକ୍ରମ ମଧ୍ୟ ସୁନ୍ଦରୀ ଲଲାମଭୂତା କାଞ୍ଚନବାଳାଙ୍କୁ ଦେଖିବାମାତ୍ରେ ଆଖିର ପଲକ ପକାଇ ପାରି ନ ଥିଲେ । ପରସ୍ପରର ସେହି ମଧୁର ଦୃଷ୍ଟି-ବିନିମୟ ଭିତରେ ସେମାନେ ପରସ୍ପରକୁ ଚିରଦିନ ପାଇଁ ହୃଦୟ ବିକି ଦେଇଥିଲେ । ତା'ପରେ····· ତା'ପରେ····· ପ୍ରାୟ ପକ୍ଷକ ଭିତରେ

ଭୂଷଣ୍ଡପୁର ରାଜ୍ୟରୁ ଆସିଥିଲା, ମାଳମାଟିଏ । ପ୍ରୀତିଉପହାରର ସନ୍ତକ ରୂପେ ସ୍ୱର୍ଣ୍ଣପଦ୍ମର ମାଳା ସହିତ ଭୂର୍ଜପତ୍ର ଉପରେ କସ୍ତୁରୀରେ ଲିଖିତ ପ୍ରଣୟ ପତ୍ରଟିଏ ବଢ଼ାଇ ଦେଇଥିଲା ସେ । ଅନଙ୍ଗବିକ୍ରମ କାବ୍ୟ ଜଗତର ସମସ୍ତ ଅଳଙ୍କାର ଏକତ୍ରିକରି ଘନ ଶୃଙ୍ଗାର ରସଭରା ବାକ୍ୟରେ ଯେଉଁ ପ୍ରଣୟ ନିବେଦନ କରିଥିଲେ— ତା'ର ଶେଷ ଲକ୍ଷ୍ୟଥିଲା ଯଥାଶୀଘ୍ର ବିବାହର ଆୟୋଜନ ପାଇଁ ପ୍ରସ୍ତାବ । ଲୁହ ଛଳଛଳ ଆଖିରେ ଭୂର୍ଜ-ପତ୍ରରେ ଫେରନ୍ତା ଚିଠିଟିଏ ଲେଖି ମାଲୁଣୀ ହାତରେ ପଠାଇଥିଲେ କାଞ୍ଚନବାଳା ।

ହୃଦୟେଶ୍ୱର !

ହତଭାଗିନୀ ଦାସୀକୁ ସ୍ମରଣ ରଖିଛନ୍ତି, ତାହାହିଁ ମୋର ବଡ଼ ଭାଗ୍ୟ । ଆପଣଙ୍କର ଚନ୍ଦ୍ରମୁଖ ଦେଖିଲା ଦିନୁ, ଆପଣଙ୍କର ଦେବେନ୍ଦ୍ର ସଦୃଶ ବିକ୍ରମ ଓ ତେଜୋପୂର୍ଣ୍ଣ ଶରୀର ମୋର ନେତ୍ରପଥରେ ପଡ଼ିଲାଦିନୁ, ଆପଣଙ୍କ ପାଦତଳେ ମୁଁ ନିଜକୁ ଦାସୀରୂପେ ବିକି ଦେଇଛି । ପ୍ରିୟତମ ! ଆମର ଆତ୍ମାର ବିବାହ ସେହିଦିନୁ ସମ୍ପନ୍ନ ହୋଇ ଯାଇଛି । କିନ୍ତୁ ହେ ସୁନ୍ଦରତମ ! ଆମର ଶରୀରର ମିଳନଲାଗି ମୁଁ କିଛିଦିନ ସମୟ ଭିକ୍ଷା କରୁଛି । ମୋର ଗୋଟିଏ ବ୍ରତଅଛି । ଆଉ ମାତ୍ର ଅଳ୍ପଦିନ ପରେ ମୋର ସେ ବ୍ରତ ଉଦ୍‌ଯାପିତ ହେବ । ହେ ଧୀରମଣି, ସେତିକଦିନ ଯାଏ ଧୀର ଚିତ୍ତରେ ଅପେକ୍ଷାକରି ଏହି ହତଭାଗିନୀ ଦାସୀକୁ ଅନୁଗୃହୀତ କରିବା ହେବେ ! ......

ଆଃ ! କାଞ୍ଚନବାଳାଙ୍କ ହୃଦୟ ଏହି ସ୍ମୃତିରେ ବିମର୍ଦ୍ଦିତ ହୋଇଗଲା । ତାଙ୍କର ସେହି ବ୍ରତ ଉଦ୍‌ଯାପନ ଲାଗି, ଆଉ ଯେ ମାତ୍ର ଗୋଟିଏ ସପ୍ତାହ ବାକି ଅଛି ! ଓଃ ! ହେ ଭଗବାନ ! କାହିଁ ଆସି ପୁଣି ଏହି ଦାରୁଣ ବଜ୍ରାଘାତ ପଡ଼ିଗଲା ! ସେ ପିତାଙ୍କ ପାଦତଳେ ପଡ଼ି ତାଙ୍କର ଦୁଇ ଗୋଡ଼କୁ କୁଣ୍ଢାଇ ଧରି କାନ୍ଦି କାନ୍ଦି କହିଲେ—

"ନା' ପିତା ! ମୋତେ ଆପଣ ହାଙ୍ଗରେ ନ ନେଲେ ମୁଁ ନିଶ୍ଚୟ ପ୍ରାଣ ହରାଇ ଦେବି । ଆପଣଙ୍କୁ ସେହି ନିଶାଚରୀ ବିଷସୀ ମୁହଁକୁ ଠେଲି-ଦେଇ ମୁଁ ଗୋଟିଏ ମୁହୂର୍ତ୍ତ ମଧ୍ୟ ଶାନ୍ତିରେ କାଟି ପାରିବି ନାହିଁ ।"

ଏତତ୍କାଳବଳେ ରାଜାଙ୍କର ବସ୍ତୁସ୍ୟ ବିଦୂଷକ ବ୍ରାହ୍ମଣ କୁଳପୁଙ୍ଗବ, ପଣ୍ଡିତ ଶିରୋମଣି, ନବରସରତ୍ନାକର, ହାସ୍ୟ ପରିହାସରମାର୍ତ୍ତଣ୍ଡ, ବାତ୍ୟାବାଚନକୁଶଳୀ, ଅଷ୍ଟପ୍ରହର ଭୋଜନଭଜନଲାଳସୀ ଶ୍ରୀ ହେରମ୍ବନାରାୟଣ ବାଚସ୍ପତିଶର୍ମା ରାଜାଙ୍କ ସମ୍ମୁଖକୁ ଆସି ବଚନିକା କଲେ—

"ମହାରାଜ ! ରାଜଜେମାଙ୍କର ଅନୁରୋଧ ଉପ୍ରୋଧାଦିକୁ ଉପେକ୍ଷା କରିବା ଇଦାନୀଂ ଆପଣଙ୍କ ପକ୍ଷରେ ଶୁଭଙ୍କର ନ ହେବାର ଆମ୍ଭଙ୍କୁ ପ୍ରତୀତ ହେଉଅଛି । ରାଜକୁମାରୀ ବାଲ୍ୟାବଧି ତାଙ୍କର ପିତୃଭକ୍ତି ପରାୟଣତାର ଉତ୍କର୍ଷ ଦର୍ଶାଇ ଆସୁଅଛନ୍ତି । ଆପଣ ମଧ୍ୟ ଆବାଲ୍ୟ ମାତୃହୀନା ତାହାଙ୍କୁ ଜନ୍ମାବଧି ଆପଣଙ୍କ ବାତ୍ସଲ୍ୟ ମଧୁବାରିଧିରେ ବୁଡ଼ାଇ ରଖିଅଛନ୍ତି । ଆମ୍ଭର ବୋଧ ହେଉଛି—ଜଳରୁ ନିକ୍ଷିପ୍ତ ମତ୍ସ୍ୟଠାରୁ ପଙ୍କରୁ ଉତ୍ପାଟିତ ପଦ୍ମଠାରୁ, ଆକାଶରୁ ଭୂପତିତ ଚନ୍ଦ୍ରଠାରୁ ଆପଣଙ୍କ ବିଚ୍ଛେଦରେ ରାଜଜେମାଙ୍କର ଦୂରବସ୍ଥା ବଳି ପଡ଼ିବ । ଏ ସକାଶୁ ଆମ୍ଭର ସମୁଚିତ ଅନୁରୋଧ ଓ ବିଜ୍ଞ ଉପଦେଶ ହେଲା, ବର୍ତ୍ତମାନ ଆଉ ତାହାଙ୍କୁ ଆମ୍ଭମାନଙ୍କ ସହ ବନଗମନରେ ବାଧା ଦିଅନ୍ତୁ ନାହିଁ । ଏତଦ୍‌ବ୍ୟତୀତ, ରାଜକୁମାରୀ ତାଙ୍କର ଅଶେଷ ଗୁଣବତୀ ସତୀଲକ୍ଷ୍ମୀଭୂତା ପରଦୁଃଖ ମୋଚନ ତତ୍ପର ସ୍ୱର୍ଗବାସିନୀ ମାତୃଦେବୀଙ୍କ ସଦୃଶା ଗୋ, ବ୍ରାହ୍ମଣ, ଋଷି ସନ୍ନ୍ୟାସୀ ପ୍ରଭୃତିଙ୍କୁ ପ୍ରତ୍ୟହ ନାନାଦି ସୁମିଷ୍ଟ ସୁରସ ଖାଦ୍ୟପଦାର୍ଥ ପ୍ରଦାନ ତଥା ପରିବେଷଣାଦିରେ ସନ୍ତୁଷ୍ଟ କରିଥାନ୍ତି । ଇଦାନୀଂ ଗ୍ରାମୁଙ୍କ ସମଭି-ବ୍ୟାହାରରେ ଯେଉଁ ଶକଟ ଶକଟ ମିଷ୍ଟାନ୍ନାଦି ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟାଦି ଭୋଜ୍ୟ ସାମଗ୍ରୀ ବନଭୂମିକୁ ପ୍ରେରିତ ହେବ, ତାହାର ଯଥାଯଥ ବଣ୍ଟନ ପରିବେଷଣାଦି ବ୍ୟବସ୍ଥା ରାଜକୁମାରୀଙ୍କ ବ୍ୟତୀତ ଅନ୍ୟ କେହିହେଲେ (ଆଉ କେହି) ସୁଷ୍ଠୁରୂପେ ତୁଲାଇ ପାରିବା କଥା ଆମ୍ଭଙ୍କୁ ଗୋଚରୀଭୂତ ହେଉନାହିଁ । ଅତଃ, ସର୍ବାଦୌ ବିଚାର ପ୍ରକରଣାନ୍ତେ ରାଜକୁମାରୀଙ୍କୁ ଆମ୍ଭମାନଙ୍କ ସମଭିବ୍ୟାହାରରେ ବନକୁ ଯିବା ଲାଗି ଆଜ୍ଞା ହେଉ ।"

ତା'ପରେ, ତରୁଣ ସେନାପତି ବାହୁବଳେନ୍ଦ୍ର ବୀର ଭୁଜଙ୍ଗ ସିଂହ ମଧ୍ୟ ଏହି ଅନିଶ୍ଚିତ ପରିଣାମ ବିପଦସଙ୍କୁଳ ବନଯାତ୍ରାରେ ଅଶେଷ

ରୂପବତୀ ତରୁଣୀ ରାଜକେମାଙ୍କର ସତ୍କଣ୍ଠିତ ସାନ୍ନିଧ ଲଭ ଆଶାରେ ତାଙ୍କୁ ସେମାନଙ୍କ ସହ ଯିବାଲାଗି ରାଜାଙ୍କୁ ଅନୁରୋଧ ଜଣାଇଲେ । ସେ ବଜ୍ରନିର୍ଘୋଷ କଣ୍ଠରେ କହିଲେ—

"ମହାରାଜ ! ରାଜକୁମାରୀଙ୍କ ଅଙ୍ଗସୌନ୍ଦର୍ଯ୍ୟର ଦୀପ୍ତିରେ ଅନ୍ଧକାରମୟ ବନଭୂମି ଆଲୋକିତ ହୋଇ ଉଠିବ । ରାଜକୁମାରୀଙ୍କର ବୀଣା ବିନନ୍ଦିତ କଣ୍ଠସ୍ୱରରେ ପଶୁପକ୍ଷୀଙ୍କ କର୍କଶରବ ନିନାଦିତ ବନଭୂମି ଅପୂର୍ବ ସଙ୍ଗୀତ ଝଙ୍କାରରେ ମର୍ମରିତ ହୋଇ ଉଠିବ । ଯୁଦ୍ଧକ୍ଷେତ୍ରରେ ରାଜକୁମାରୀଙ୍କ ଉପସ୍ଥିତି ହିଁ ଆମର ସେନାବାହିନୀଙ୍କ ପକ୍ଷରେ ହୋଇ ଉଠିବ ଉଦ୍‌ବୋଧନମୟ ଓ ଉତ୍ସାହପ୍ରଦ । ତେଣୁ ତାଙ୍କର ବନଗମନରେ ତୁମ୍ଭେ ଆଜ୍ଞା କରିବା ହୁଅନ୍ତୁ ।"

ଅବଶେଷରେ ବୃଦ୍ଧ ପାଟମନ୍ତ୍ରୀ ମହୋଦୟ ଧୀର ଶାନ୍ତ କଣ୍ଠରେ ଶେଷ ମୀମାଂସା ଦେଇଭଳି କହିଲେ—"ମହାରାଜ ! ନିଶାଚରମାନଙ୍କ ସହ ଘୋରତର ଯୁଦ୍ଧରେ ପ୍ରବୃତ୍ତ ହୋଇ ସାମୟିକ କ୍ଳାନ୍ତ ହେଲେ, ଆପଣ ରାଜକୁମାରୀଙ୍କର ହିଁ ପରିଚର୍ଯ୍ୟା ଆବଶ୍ୟକ ମନେ କରିବେ । ରାଜକୁମାରୀ ସର୍ବଦା ସତର୍କ, ସଶସ୍ତ୍ର ଓ ଯୁଦ୍ଧ କୁଶଳୀ ବୀରସେନାମାନଙ୍କ ଦ୍ୱାରା ପରିବୃତା ହୋଇ ରହିବେ । କିଛି ଆଶଙ୍କା କରନ୍ତୁ ନାହିଁ । ତାଙ୍କୁ ଯିବା ଆଜ୍ଞା ହେଉ......"

ଅତଃପର ବୃଦ୍ଧମନ୍ତ୍ରୀ ମହୋଦୟଙ୍କୁ ରାଜ୍ୟର ଦାୟିତ୍ୱ ଅର୍ପଣ କରି ଅବଶେଷରେ, ରାଜା ସ୍ୱୀୟ ଅଲିଅଳି କନ୍ୟା କାଞ୍ଚନବାଳାଙ୍କୁ ସଙ୍ଗରେ ଧରି ସେନାପତି, ସେନାବାହିନୀ ଓ ବିଦୂଷକଙ୍କ ସହିତ ପଶ୍ଚିମ ସୀମାନ୍ତ ସନ୍ନିକଟ ବନଭୂମି ଅଭିମୁଖେ ଯାତ୍ରା କଲେ । ଏଣେ ଦ୍ରୁତ ତାଳରେ ଡ୍ରମ୍ , ଢୋଲକି, ତୁରୀ, ଝାଞ୍ଜ ଇତ୍ୟାଦି ବାଜି ଉଠିଲା । ସେହି ବାଦ୍ୟ-ରୋଳରେ ଗ୍ରାମର ନିର୍ଜନତା ଥରି ଉଠିଲା । ଦର୍ଶକମାନଙ୍କର ଉତ୍ସୁକତା ଖୁବ୍ ବଢିଗଲା । ମୁଁ ମୋର ବନ୍ଧୁମାନଙ୍କୁ ଚାହିଁଲି । ଦୁଆରି, ଅଗାଧୁ ଆଉ ଅଚ୍ଚିଁ ସେହି ବାଦ୍ୟର ତାଳ ସଙ୍ଗେ ମୁଣ୍ଡ ହଲାଇ ତାଳ ମାରି ରହିଥାନ୍ତି । ଏ ପର୍ଯ୍ୟନ୍ତ ବିଳମ୍ବିତ ଲୟରେ ଯେଉଁସବୁ ବଚନିକା ପାଳି

ଗୁଲଲ୍—ସେଥିରେ ସେମାନେ ବିରକ୍ତ ହୋଇ ଯାଇଥିଲେ । ଏଣିକି ଘଟଣା ଯୁଦ୍ଧ ଆଡ଼କୁ ଗତି କରିବାରୁ ସେମାନଙ୍କର ରକ୍ତ ଚଞ୍ଚଳ ହୋଇଗଲା । ମାୟାଧର ମତେ କହିଲା—ଭୟଙ୍କର ଯୁଦ୍ଧ ହେବ ଜାଣିଥା । ମୁଁ ପଚାରିଲି—କିଏ ଜିତିବ ବୋଲି ଭାବୁଛୁ ? ମାୟାଧର ପ୍ରକୃତରେ ସାଂସାରିକ ବୁଦ୍ଧି ବିବେଚନାରେ ମୋଠାରୁ ବିଜ୍ଞ । ସେ ବିଜ୍ଞତାର ସ୍ଥିରତାରେ କହିଲା—ସେକଥା ଏତିକି ବେଳୁ କହି ହେବ ନାହିଁ । ମୋ ମାମୁଁଘର ଗାଁରେ ମୁଁ ଏମିତି ଗୋଟେ ଯାତ୍ରା ଦେଖିଥିଲି, ଯୋଉଥିରେ ରାକ୍ଷସୀ ହାତରେ ରାଜା ମରିଥିଲା । ମୁଁ କହିଲି—ସବୁବେଳେ କ'ଣ ସେଇଆ ଘଟୁଥିବ ? ମୁଁ ଭାବୁଛି—ଏଥର ରାକ୍ଷସୀ ନିଶ୍ଚୟ ମରିବ । ପଦ୍ମଲା ଆମ କଥା ଶୁଣୁଥିଲା—ସେ ଅତି କୁତ୍ସିତ ଭଙ୍ଗୀରେ କହିଲା—ରାଜା ଝିଅକୁ ରାକ୍ଷସୀ ନିଶ୍ଚୟ ଖାଇବ, ଦେଖିବ ରହିଥା । ମୋର ମୁଣ୍ଡକୁ ରାଗ୍ ଉଠିଗଲା । ମୁଁ ପଦ୍ମଲକୁ ରାଗରେ ପେଲିଦେଲି । ଚୈତ୍ୱେ କାଳଗୁଣ୍ଡା ! ରାଜାଝିଅ ମଲେ ତୁ କ'ଣ ପାଇବୁ ବେ ? ପଦ୍ମଲଟା ହୁଣ୍ଡାଟାଏ—ବେରସିକଟାଏ—ବିବେଚନା କରିପାରେ ନାହିଁ—କ'ଣ ମନାସ କରିବା ଉଚିତ ତାକୁ ଜଣାନାହିଁ । ଖାଲି କୌତୁକତାରେ ମାତିଥାଏ ଓ ମୋଠାରୁ ଏମିତି ମାଡ଼ ଓ ଭର୍ତ୍ସନା ଶୁଣୁଥାଏ । ତାପରେ ହଠାତ୍ ଅରଣ୍ୟ କାଣ୍ଡର ଘଟଣା ଆମ ଆଖି ଆଗକୁ ଆସିଗଲା—

ରାଜାଙ୍କର ବାହିନୀ ବନଭୂମିରେ ପାଦ ଦେଉ ନ ଦେଉଣୁ ସ୍ପଷ୍ଟ ହୋଇ ଶୁଣିଲେ ଯେ ଏକ ଭୟଙ୍କର ଅମାନୁଷିକ ରଡ଼ିରେ ଚତୁର୍ଦ୍ଦିଗ ପ୍ରକମ୍ପିତ ହୋଇ ଉଠୁଛି । ସେହି ମୁହୁର୍ମୁହୁ ପୈଶାଚିକ ରଡ଼ିରେ ବୃକ୍ଷଲତାରୁ ପତ୍ର ଓ ପୁଷ୍ପମାନ ଝଡ଼ି ପଡ଼ୁଛି । ମର୍କଟାଦି ପ୍ରାଣୀମାନେ ବୃକ୍ଷଡାଳରୁ ତଳକୁ ଖସି ପଡ଼ୁଛନ୍ତି । ଏହି ଭୟଙ୍କର ରଡ଼ି ଶୁଣି ରାଜା ସେନାବାହିନୀଙ୍କୁ ଚାରି ଦଳରେ ବିଭକ୍ତ କରି ବନଭୂମିକୁ ଚତୁର୍ଦ୍ଦିଗରୁ ଅବରୋଧ କଲେ ଏବଂ ଯୁଦ୍ଧ ବାଦ୍ୟ ବଜାଇ ଲୁଚିଥିବା ଅସୁରୁଣୀକୁ ଉତ୍ତ୍ୟକ୍ତ କଲେ । ଅଳ୍ପ ସମୟ ଭିତରେ ଅସୁରୁଣୀର ଗର୍ଜନ ଖୁବ୍ ନିକଟରେ ଶୁଭିଲା ଏବଂ ଅସୁରୁଣୀ ସେମାନଙ୍କଆଡ଼କୁ ମାଡ଼ି ଆସୁଛି ଜାଣି

ରାଜା କାଞ୍ଚନବାଳାକୁ ଅନତିଦୂରରେ ହଶସ୍ତ୍ର ସେନାଙ୍କ ବ୍ୟୂହ ଭିତରେ ରଖି ଝେଡ଼ଗ ଓ ଧନୁଶର ଧରି ସେନାପତିଙ୍କ ସହ ଆଗକୁ ମହାଦର୍ପରେ ମାଡ଼ି ଚାଲିଲେ । ଯୁଦ୍ଧବାଜା ଖୁବ୍ ଜୋର୍‌ରେ ବାଜୁଥାଏ । ବଗୁଲିର କର୍ଣ୍ଣପଟହ ବିଦାରକ ଧ୍ୱନି ସଙ୍ଗେ ଅସୁରୁଣୀକୁ ଓତାର ଆଣିଲି ! ଗାଁ'ର ଅନ୍ଧାରିଆ ଗୋହିରିଆଡ଼ୁ ଏଥର ଅସୁରୁଣୀର ଚର୍ଜନ ଖୁବ୍ ସ୍ପଷ୍ଟ ଏବଂ ଶ୍ରୁତିତର ହୋଇ ଶୁଭିଲା । ଏଣେ ରାଜାଙ୍କ ହୃଦ୍ଭୂଷଣ କାଞ୍ଚନବାଳାଙ୍କ ସହିତ ହଶସ୍ତ୍ର ସତର୍କ ସେନାବ୍ୟୂହ ଭିତରେ ଠିଆହୋଇ ଭୟ ଏବଂ ଉଦ୍‌ବେଗରେ ଥରୁଥାନ୍ତି—ଏବଂ "ରାଜା ରାଜପୁତ୍ରଙ୍କ ସହିତ ରାଜଦ୍ରୋହିତା କରିବା ଫଳରେ ଆଜି ଏହି ନିଶାଚରୀ ହାତରେ ମୋର ଏହି ନଶ୍ୱର ପୈତୃକ ପ୍ରାଣଟି ଚାଲିଯିବ" ବୋଲି ବାରମ୍ବାର କରୁଣ ସ୍ୱରରେ ସ୍ୱଗତୋକ୍ତି କରି ନିଜର ଭାଗ୍ୟକୁ ଓ ଭଗବାନଙ୍କୁ ଧିକ୍କାର କରୁଥାନ୍ତି ଏବଂ ମଧ୍ୟେ ମଧ୍ୟେ ଆପଣାର ମୁଖରା ଚଣ୍ଡୀ ସଦୃଶା ପତ୍ନୀଙ୍କ ଉଦ୍ଦେଶ୍ୟରେ ଶୂନ୍ୟବାଣୀ କରି କହୁଥାନ୍ତି—ବ୍ରାହ୍ମଣୀ ! ଏଥର ତୁ ରାଜଦତ୍ତ ବୃତ୍ତି ଲଭି କରି ନିଶ୍ଚିନ୍ତରେ ଓ ଆନନ୍ଦରେ ତୋର ବାଳୁଙ୍ଗା ପୁତ୍ରମାନଙ୍କ ସହିତ ଓ ଖପରକାଣ୍ଡେଇ କନ୍ୟାମାନଙ୍କ ସହିତ ଏହି କୁତ୍ସିତ ମର୍ତ୍ତ୍ୟଲୋକରେ କାଳାତିପାତ କରି ନିଜ ଲାଗି ପାପ ଅର୍ଜନ କରୁଥା । ଆମେ ଅଦ୍ୟ ଏହି ଦୁଷ୍ଟା ନିଶାଚରୀ ରାକ୍ଷସୀର ମୁଖରେ ଆହାର୍ଯ୍ୟ ହୋଇ ଅଚିରେ ସ୍ୱର୍ଗପୁରକୁ ଗମନ କରୁଅଛୁ ।"

ଏତକ କହି ସେ ରାଜକୁମାରୀଙ୍କଠାରୁ କିଛି ମିଠାଇ, ଜଳପି ଓ ଲଡ଼ୁ ମାଗି ଖାଇବାକୁ ଆରମ୍ଭ କରିଦେଲେ । —"ଦେ' ମା ଦେ ! ରାକ୍ଷସୀର ଗର୍ଭକୁ ଯିବା ପୂର୍ବରୁ ନିଜେ କିଛି ମିଷ୍ଟାନ୍ନ ନିଜ ଗର୍ଭକୁ କ୍ଷେପି ଦିଏ··· ।"

କିନ୍ତୁ ସୁନ୍ଦରୀ ସୁକୁମାରୀ କାଞ୍ଚନବାଳା ଖୁବ୍ ସ୍ଥିର ହୋଇ ଠିଆ ହୋଇ ରହିଥାନ୍ତି । ତାଙ୍କର ପୂର୍ଣ୍ଣେନ୍ଦୁନିଭ ଆନନରେ ଅବଶ୍ୟ ସାମାନ୍ୟ ଆଶଙ୍କାର ସ୍ପନ୍ଦନ ଖେଳିଯାଇ ପୁଣି ଉଭେଇ ଯାଉଥିଲା । ମାତ୍ର ସେ ଏକ ଅଭିଜାତ ଗାମ୍ଭୀର୍ଯ୍ୟ ଓ ଅବିଚଳିତ ସ୍ଥିରତା ଅବଲମ୍ବନ କରି ଯେପରି

ନବାଡ ଘାପଣିଖା ଭଳି ଦୁରକୁ ଗ୍ରହିଁ ଠିଆ ହୋଇ ରହିଥିଲେ, ସେଥିରେ ମୋର ବାଳସୁଲଭ ଦୃଷ୍ଟିରେ ବି ସେତେବେଳେ ସେ ଖୁବ୍ ମହିମାମୟୀ ଓ ଆକର୍ଷଣୀୟ ଅନନ୍ୟ ସୌନ୍ଦର୍ଯ୍ୟରେ ଶୋଭନ୍ତିତା ଦିଶୁଥିଲେ । ମୋର ମନେ ହେଲା—ଯେଉଁ ପୁରୁଷ ଏହି ରାଜକୁମାରୀର ପାଣିଗ୍ରହଣ କରିବ ବା ଯେ ଏହାର କ୍ରୀତଦାସ ହେବ ସେମାନେ ଉଭୟେ ଇନ୍ଦ୍ରପଦକୁ ମଧ ତୁଚ୍ଛ ମନେ କରିବେ । ରାଜକୁମାରୀର ତତ୍କାଳୀନ ସୌନ୍ଦର୍ଯ୍ୟ ମୁଁ ମୋର ନୟନଦ୍ୱାରରେ ମୁଗ୍ଧ ହୋଇ ପାନ କରୁଛି—ଏହି ସମୟରେ ମାୟାଧର କହିଲା—ଦେଖୁଛୁ ! କ୍ଷତ୍ରିକନ୍ୟା ମରିବ ପଛେ ଡରିବ ନାହିଁ । ମାତ୍ର, ସ୍ଥାନକାଳ ପାତ୍ର ବିବେଚନାହୀନ, କେବଳ କୌତୁକରସର ପ୍ରମତ୍ତ ବେରସିକ ପଦ୍ମିଲା ଗୋଟେ ବଡ଼ ପାଟି କରି କହିଉଠିଲା—ଦେଖିବ ରହିଥା । ଅସୁରୁଣୀ ଆସିଲେ ଆଗ ସେ ଟୋକାକ ଟେକଟନେଇ ଗ୍ରେବେଇବ । ତା' କଥାରେ ମୁଁ ବିଅଁ ହୋଇଗଲି—ଏବଂ ତା ଗାଲରେ ଠାଇକିନା ଗୋଟେ ଚଟକଣୀ ବସାଇ ଦେଲି, ଶଳା ନୃଶଂସ ଟୋକା ! ମାତ୍ର ପଦ୍ମିଲା ହସି ହସି ଗଡ଼ିଗଲା । କହିଲା, ତେମେ ସେମିତି କାହିଁକି ହେଉଛ ? ସେ କ'ଣ ସତରେ ରାଜାଝିଅ ? ମୁଁ କ୍ରୁଦ୍ଧଗଳାରେ କହିଲି, ଗ୍ରେପ୍ ବେ ! ତୁ ଶଳା କ'ଣ ସତରେ ପଦ୍ମିଲା ? ଶଳା ସତେକି ସତରେ ରଜାଝିଅଟାଏ କୋଉଠି ଦେଖିଛୁ ! ଆବେ ସେ ସତରେ ରଜାଝିଅ ନୁହଁ ତ ଆଉ କଏ ? ଏଣେ ସମବେତ ଦର୍ଶକବୃନ୍ଦ ଖୁବ ଉତ୍ସୁକ ହୋଇ ଯାତ୍ରା ଦେଖୁଥାନ୍ତି । ବ୍ରାହ୍ମଣ ବିଦୂଷକର ଉପ୍ସାର୍ଜି ବାଗ୍ମଳତା ସାଙ୍ଗକୁ ମଧ୍ୟେ ମଧ୍ୟେ କଞ୍ଚା ମିଠାଇ ଓ ଜଳପି ଭକ୍ଷଣ ଦୃଶ୍ୟ ଦେଖି ଶିଶୁ ବାଳକ ଓ ବାଳକସ୍ୱଭାବର ବଡ଼ମଣିଷମାନେ ଅବଶ୍ୟ ମଧ୍ୟେ ମଧ୍ୟେ ହସୁଥାନ୍ତି, ମାତ୍ର ମୁଁ ଓ ମାୟାଧର ବ୍ରାହ୍ମଣକୁଳୋଦ୍ଭବ ହୋଇଥିବାରୁ ବ୍ରାହ୍ମଣ ବିଦୁଷକଟାର ଏହି କାଣ୍ଡକାରଖାନା ଦେଖି ଖୁବ୍ ମର୍ମାହତ ହେଉଥାଉଁ । ମାୟାଧର କହିଲା, ଏଇଟା ବ୍ରାହ୍ମଣ ଜାତିର କଳଙ୍କ । ମୁଁ କହିଲି, ବାଛି ବାଛି ରାଜା ଏଇଟାକୁ କାହିଁକି ବିଦୂଷକ କଲେ ? ମାୟାଧର କହିଲା, ଶଳା ସବୁ ବିଦୂଷକ ସମାନ । ଗୁଡ଼ାଏ ଶ୍ଳୋକ ପଢ଼ିବେ, ଗୁଡ଼ାଏ ଭଣ୍ଡାମି କରିବେ, ଗୁଡ଼ାଏ ଗିଳିବେ ଆଉ ଠିକଣା ବେଳାରେ ଏମିତି ଡରିଡରି ଥରୁଥିବେ । ହଠାତ୍ ପଦ୍ମିଲା ପୁଣି ପାଟି ଖୋଲିଲା । ସେ ବ୍ରାହ୍ମଣଙ୍କୁ ବି ଅସୁରୁଣୀ

କଡ଼ମଡ଼ କରି ଖାଇବ । ମୁଁ ପୁଣିଥରେ ତାକୁ ଠେଲିଦେଇ ଧମକ ଦେଲି, ଚୁପ୍‌କେ ଶଳା, ତତେ ଆଗ ଖାଇବ ଅସୁରୁଣୀ, ଦେଖିବୁ ରହିଥା ।

ଏଣେ ଦର୍ଶକବୃନ୍ଦ ଏକ ଭୟଙ୍କର ଯୁଦ୍ଧ ଓ ତା'ର ଅନିର୍ଦ୍ଦିଷ୍ଟ ଫଳାଫଳକୁ ଘୋର ଉତ୍କଣ୍ଠାର ସହିତ ଅପେକ୍ଷା କରିଥାନ୍ତି । ମୋର ଆଖି ଦୁଇ ପଟକୁ ଚାହିଁକି ଯାଉଥାଏ—କାଞ୍ଚନବାଲା ଆଡ଼େ ଓ ଗାଁର ଅନ୍ଧାରିଆ ଗୋହିରି ଆଡ଼େ ।

ଏହି ସମୟରେ ସମସ୍ତଙ୍କୁ ହତଚକିତ କରି ଗୋଟାଏ ବିଭତ୍ସ ଭୀଷଣମୂର୍ତ୍ତି ଗାଁ ଗୋହିରି ଆଡ଼ୁ ସତକୁ ସତ ଗର୍ଜନ କରି ମାଡ଼ିଆସିଲା ଓ ତାକୁ ଦେଖିବା ମାତ୍ରେ ସମସ୍ତେ ସ୍ତବ୍ଧ ହୋଇଗଲେ । ସେ ତା'ର ଦୁଇ ହାତକୁ ଦୁଇପଟକୁ ମେଲା କରିଥାଏ । ତା'ର ନଖସବୁ ଖୁବ୍ ମୁନିଆ ଦିଶୁଥାଏ, ତା ଦେହଯାକ ନିପଟ୍ଟ କଳା ଦିଶୁଥାଏ । ଗୋଟାଏ କଳାଶାଢ଼ୀ ଅତି ଅଦ୍ଭୁତ ଭାବରେ ପିନ୍ଧିଥାଏ । ତା ବେକରେ ମଣିଷ-ମୁଣ୍ଡର ମାଳା ଲମ୍ବିଥାଏ । ତା ଆଖି ଦୁଇଟାର ଗୃରିପଟେ ଗୋଲ କରି ଧଳାରଙ୍ଗ ବୋଳା ହୋଇଥିବା ଦିଶୁଥାଏ । ତାର ଦୁଇପାଟି ଦାନ୍ତ ପଦାକୁ ବାହାରିଥାଏ । ସେ ତା'ର ନାଲି ଜିଭକୁ ସାପପରି ଲହ ଲହ କରୁଥାଏ । ତା'ର ପେଟଟା ଧାନଉଁସୁଆ ହାଣ୍ଡିପରି ଦିଶୁଥାଏ । ହାତ ଆଉ ଗୋଡ଼ରେ ସେ ଡାଳ ପତ୍ର ବାନ୍ଧିଥାଏ ଓ ତା'ର ମୁଣ୍ଡରୁ ଅତି କୁତ୍ସିତଭାବେ ଧୂସର ବର୍ଣ୍ଣର ଅସମାନ କେଶରାଶି ଗୃରିଆଡ଼କୁ ଉତ୍‌କ୍ଷିପ୍ତ ହୋଇ ଉଡ଼ୁଥାଏ । ସେ ଯିମିତି ଆମର ଦୃଶ୍ୟମାନ ହେଲା, ଆମେ ଶୁଣିଲୁ ଯେ ସେ ଖୁବ୍ ଧମକିଆ ହିଂସ୍ର ସ୍ୱରରେ ଗୋଟାଏ ଗୀତ ମଧ୍ୟ ବୋଲିଲା……

ହେ ହେ ହେ ନର,
ଆଜ ନାହିଁରେ ନିସ୍ତାର,
ତୋତେ ଖାଇବି, ଖାଇବି ଖାଇବିରେ—
ଗୃବାଇବି ତୋର ହାଡ଼ଗୋଡ଼
ଶୁଭୁଥିବ ଯେତେବେଳେ ମଡ଼ ମଡ଼
ବେକ କଣାକରି ଚିଁ ଚିଁ କରି ପିଇବି ରକତ ପିଇବିରେ… ।

ରାକ୍ଷସୀର ଗୀତ ସାଙ୍ଗକୁ ଢୋଲକ ଓ ବିଗୁଲ ମଧ୍ୟ ଖୁବ୍ ଜୋର୍‌ରେ ବାଜି ଉଠିଲା । ମାତ୍ର ରାକ୍ଷସୀକୁ ରାଜା ଆଉ ପଦେ ମଧ୍ୟ ଗୀତ ଗାଇବାକୁ ନ ଦେଇ ହଠାତ୍ ଖଣ୍ଡା ଉତ୍ତୋଳନ କରି ତା'ଆଡ଼କୁ ବୀର-ଦର୍ପରେ ଆଗେଇ ଗଲେ ଏବଂ ରୌଦ୍ର ରସରେ ଗୋଟାଏ ଧମକ୍‌ପୂର୍ଣ୍ଣ ବଚନିକା ଝାଡ଼ି ଗୀତ ପଦେ ମଧ୍ୟ ଗାଇଲେ—

ଆଲୋ ଲୋ ରାକ୍ଷସୀ, ଲକ୍ଷେ ପ୍ରାଣ ନାଶି
ଗର୍ବ ପର୍ବତେ ତୋ ଲାଗିଛି ପକ୍ଷ—
ଏକା ଚୋଟକରେ ଛିଡ଼ାଇବି ମୁଣ୍ଡ
ରଖି ନ ପାରିବେ ଗନ୍ଧର୍ବ ଯକ୍ଷ...

ଚୁପ୍ କର ରାକ୍ଷସୀ ଦୁଷ୍ଟା ନିଶାଚରୀ । ଶତଶତ ନିରୀହପ୍ରାଣୀ ଓ ମନୁଷ୍ୟଙ୍କୁ ହତ୍ୟାକରି ତୁ ଆଜି ମୋ ହାବୁଡ଼ରେ ପଡ଼ିଛୁ, ଏହି ଶାଣିତ ଖଡ଼୍‌ଗରେ ମୁଁ ଆଜି ତୋତେ ଖଣ୍ଡ ଖଣ୍ଡ କରି ଶ୍ୱାନ ଶୃଗାଳଙ୍କୁ ଆହାର ଦେବି ।

ରାଜାଙ୍କର ଏହି ଦମ୍ଭୋକ୍ତିରେ ଯୁଦ୍ଧ ବାଜା ଆହୁରି ଜୋରରେ ବାଜି ଉଠିଲା, ଦର୍ଶକମାନେ ଘନ ଘନ କରତାଳି ମାଡ଼ କଲେ, ମାତ୍ର ରାକ୍ଷସୀ ସେ ସବୁକୁ ଭ୍ରୂକ୍ଷେପ ନ କରି ବିକଟାଳ ରଡ଼ିଦେଇ ଡେଣା ମେଲାଇ, ଜିଭ ଲହ ଲହ କରି, ଖାଇବି ଖାଇବି ବୋଲି ରାଜା ଓ ତାଙ୍କର ସେନା ବାହିନୀଆଡ଼କୁ ମାଡ଼ ଆସିଲା । ରାଜଜେମା କାଞ୍ଚନବାଳାଙ୍କ ଆଖିରେ ଆଶଙ୍କା, ଭୟ ଓ ଅଗ୍ନି ଫୁଟି ଉଠିଲା । ମାତ୍ର ସେ ସେହିଭଳି କ୍ଷତ୍ରୀକନ୍ୟାସୁଲଭ ଅବିଚଳତାରେ ଦଣ୍ଡାୟମାନ ରହିଲେ, ସେନାପତି ଓ ଅନ୍ୟସେନାମାନେ ରାକ୍ଷସୀ ସଙ୍ଗେ ଯୁଦ୍ଧରେ ପ୍ରମତ୍ତ ହୋଇ ଖଣ୍ଡାବୁଲାଇ ଲାଗିଥାନ୍ତି; ମାତ୍ର ବ୍ରାହ୍ମଣ ବିଦୂଷକ ଏଣେ ଥର ଥର ହୋଇ କମ୍ପୁଥାନ୍ତି ଏବଂ ହାତରେ ଯେଉଁ ମିଷ୍ଟାନ୍ନ ଠୋକେଇଟି ମୁଣ୍ଡେଇଥାଏ, ସେଥିରୁ ଗୋଟା ଗୋଟା ମିଠାଇ ଜଲଦି ଆଣି ଗିଳି ଲାଗିଥାନ୍ତି । ତାଙ୍କର ତଣ୍ଟିରେ ଲାଗୁଥାଏ । ସେ କାଶୁଥାନ୍ତି ତଥାପି ଗିଳି ଚାଲିଥାନ୍ତି ।

ପ୍ରାୟ ପାଞ୍ଚମିନଟ ଧରି ରାକ୍ଷସୀ ସଙ୍ଗେ ଘୋରତର ଯୁଦ୍ଧହେଲା । କେତେବେଳେ ରାକ୍ଷସୀ ଗୋଡ଼ାଉ ଥାଏ ରାଜା ଓ ତାଙ୍କର ବାହିନୀଙ୍କୁ— ଅବା କେତେବେଳେ ରାଜା ଓ ତାଙ୍କ ବାହିନୀ ରାକ୍ଷସୀକୁ ଗୋଡ଼ାଉଥାନ୍ତି, ହଠାତ୍ ରାକ୍ଷସୀ ଝାମ୍ପ ମାରିଲା ସେନାପତିଙ୍କ ଉପରକୁ ଏବଂ ସଙ୍ଗେ ସଙ୍ଗେ ତାଙ୍କୁ ତଳେ ପକାଇ ତାଙ୍କର ଛାତି ଉପରେ ବସି ବେକ କଣା କରି ଶୋଣିତ ପାନକଲା । ଇତ୍ୟବସରେ ରାଜା ଭୟଙ୍କର ଆକ୍ରୋଶରେ ଆହୁରି ପାଞ୍ଚ ମିନଟି କାଳ ଯୁଦ୍ଧ ଚଳାଇଲେ । ଯୁଦ୍ଧବେଳେ ଉଭୟ ପକ୍ଷ ଖୁବ୍ ଚିତ୍କାର କରୁଥାନ୍ତି । ଏଣେ ଯୁଦ୍ଧବାଜା ମଧ୍ୟ ଦ୍ରୁତତାଳରେ ଖୁବ୍ ଜୋର୍‌ରେ ବାଜୁଥାଏ । ଗୋଟିଗୋଟି ହୋଇ ସମସ୍ତ ସେନାବାହିନୀ (ମୋଟରେ ପାଞ୍ଚ ଛଅଜଣ) ରାକ୍ଷସୀ ହାତରେ ନିହତ ହୋଇ ତଳେ ଗଡ଼ପଡ଼ଲେ । ଶେଷକୁ—ରାଜାଙ୍କ ହାତ ଶିଥିଳ ହୋଇ ଆସିଲା । ସେ ଖୁବ୍ ଧୀରେ ଧୀରେ ଖଣ୍ଡା ବୁଲାଇ ବୁଲାଇ ପରିଶେଷରେ ଥକି ପଡ଼ନ୍ତେ, ରାକ୍ଷସୀ ତାଙ୍କୁ ମାଡ଼ିବସି ତାଙ୍କ ବକ୍ଷଉପରେ ଆରୋହଣ କଲା ଏବଂ ବକ୍ଷ ବିଦାରଣ କରି ଶୋଣିତ ପାନ କରିବାକୁ ଲାଗିଲା । ତା'ର ପାଟିର ଦୁଇ କଡ଼ରୁ ଧାରଧାର ହୋଇ ରାଜ-ଶୋଣିତ ବହି ଯାଉଥାଏ ଓ ତାହା ଅତ୍ୟନ୍ତ ବିଭତ୍ସ ଓ କରୁଣ ପରିବେଶ ସୃଷ୍ଟି କଲା । ସଭାସ୍ଥଳୀ ସ୍ତବ୍ଧ ହୋଇ ଯାଇଥାଏ, ଆମ୍ଭମାନଙ୍କ ପାଟିରୁ ମଧ୍ୟ ଆଉ କଥା ବାହାରୁ ନ ଥାଏ । ଏହି ସମୟରେ ରାକ୍ଷସୀ ରାଜାଙ୍କ ଶବକୁ ପରିତ୍ୟାଗ କରି ରାଜ-ପକ୍ଷୀୟ ଅନ୍ୟମାନଙ୍କୁ ମାରିବ ବୋଲି ଚାରିଆଡ଼େ ଧାଁ ଧପଡ଼କରି ଖୋଜି ଲାଗିଲା । ଏଣେ ବ୍ରାହ୍ମଣ ବିଦୂଷକ ଓ ଅବଶିଷ୍ଟ ପ୍ରହରୀ ସେନାମାନେ ରାଜକୁମାରୀଙ୍କୁ ସେଠାରେ ଏକାକିନୀ ଛାଡ଼ିଦେଇ କିଏ କୁଆଡ଼େ ପଳାଇଲେଣି । ରାଜକୁମାରୀ ଏକାକିନୀ ସେଠାରେ ଠିଆହୋଇ ଯେତେ-ବେଳେ ଶୋକବିହ୍ୱଳ ସ୍ୱରରେ ବିଳାପ ଆରମ୍ଭ କଲେ ସେତେବେଳେ ମୁଁ ଓ ମାୟାଧର ଆଉ ଶୋକ ସମ୍ଭାଳି ନ ପାରି କଇଁକଇଁ ହୋଇ କାନ୍ଦି ଉଠିଲୁ । ରାଜକୁମାରୀ ବୋଲୁଥାନ୍ତି ।

ଆହା ମୁଁ ହତଭାଗିନୀ—
ବାଲ୍ୟକାଳୁ ହରାଇଛୁ ଜନନୀ,
ବିଧାତାରେ···

ଏବେ ହରାଇଲି ପିତୃମଣି,
ବିଧାତାରେ ।
ଧିକ ଏ ଜୀବନ ମୋର
ଧିକ ଧିକ ମୋର ପୋଡ଼ାକପାଳ,
ବିଧାତାରେ—
କେଉଁ ଦୋଷେ ଏ ଦଣ୍ଡ ଅପାର
ବିଧାତାରେ ।
ଆହା ମୋ ପିଅର ମଣି
କେଣେ ଛାଡ଼ିଗଲ କରି ଅନ୍ଧୁଣୀ
ପିଅର ହେ ।
କେଉଁ ସୁଖେ ରହିବି ଧରଣୀ
ପିଅର ହେ ।

ରାକ୍ଷସୀ ଠାରୁ ସାମାନ୍ୟ ଦୂରରେ ଏକାକିନୀ ଠିଆ ହୋଇ ଅନାଥିନୀ ରାଜକନ୍ୟା କହାଳରେ କରି ମାରି ବିକଳରେ ରୋଦନ କରୁଥାନ୍ତି । ସେ ରୋଦନ ଶୁଣି ମନେ ଜଣା ପଡ଼ୁଥାଏ ଯେ ଆମ ସ୍କ୍ରିନପଟେ ଗଛଲତାମାନେ ମଧ୍ୟ କାନ୍ଦୁଛନ୍ତି । ଗଛମାନଙ୍କରେ ବିଶ୍ରାମ କରୁଥିବା ପକ୍ଷୀମାନେ ମଧ୍ୟ ନାଡ଼ମାନଙ୍କରେ ବସି ପଦାକୁ ମୁହଁ ବାହାର କରି ନୀରବରେ କାନ୍ଦୁଛନ୍ତି । ରାଜକୁମାରୀଙ୍କ କ୍ରନ୍ଦନ ସ୍ୱରକୁ ଅନୁକରଣ କରି ବଂଶୀ ଭଳି ବାଜାଟିଏ ମଧ୍ୟ ବାଜୁଥାଏ । ତାକୁ କ୍ଲାରିଓନେଟ୍ କହନ୍ତି ବୋଲି ପରେ ଜାଣିଲି । ସମସ୍ତ ଦର୍ଶକମାନେ ବିଶେଷତଃ ନାରୀମାନେ ଚୁପ୍‌ଚାପ୍ ବସି ଆଖିରୁ ଲୁହ ଢାଳୁଥାନ୍ତି । ଗାଁ'ର ନୀରବ ଅନ୍ଧାରି ବାୟୁମଣ୍ଡଳ କରୁଣରସରେ ଭରି ହୋଇ ଉଠୁଥାଏ । ମୁଁ ମଧ୍ୟ ମୋ ସାଙ୍ଗମାନଙ୍କ ସହିତ ବସି ନିରୁପାୟ ଭାବେ କାନ୍ଦୁଥାଏ । କିନ୍ତୁ ତା'ରି ଭିତରେ ମୋ ମନରେ ଗୋଟାଏ ମତଲବ ମଧ୍ୟ ଉଠୁଥାଏ । ରାଜା ଓ ସେନାପତି ମରି ପଡ଼ିଥାନ୍ତି । ସେମାନଙ୍କର ଖଣ୍ଡା ଦୁଇଟି ମଧ୍ୟ ଅର୍ଣ୍ଣିତଙ୍କ ଭଳି ତାଙ୍କ ପାଖରେ ପଡ଼ିଥାନ୍ତି । ମୋର ଇଚ୍ଛା ହେଉଥାଏ—ସାଙ୍ଗେ ସାଙ୍ଗେ ଏଠୁ ଉଠିଯାଇ ସେଥିରୁ ଗୋଟାଏ ଖଣ୍ଡା ଉଠେଇ ନେଇ ପାମରୀ

ରାକ୍ଷସୀ ସଙ୍ଗେ ଯୁଦ୍ଧ ଆରମ୍ଭ କରିଦେବ ଓ ରାକ୍ଷସୀକୁ ଛିନାଗଡ଼ କରି ହାଣିସାରି ରାଜକୁମାରୀ ପାଖକୁ ଯିବ—ଆଉ ତାକୁ ଆଲିଙ୍ଗନ କରି ତା'ର ମାଳକଇଁ ଫୁଲପରି ଆଖି ଦୁଇଟିରୁ ଲୁହ ପୋଛିଦେଇ ତାକୁ ପ୍ରବୋଧନା ଦେଇ କହିବ—କିଛି ଚିନ୍ତା କରନାହିଁ, ରାଜକୁମାରୀ ! ରାକ୍ଷସୀ ବର୍ତ୍ତମାନ ମୃତ । ତୁମର ସ୍ୱର୍ଗଗାମୀ ପିତାଙ୍କ ଲାଗି ଆଉ ବୃଥା ଶୋକ କରନାହିଁ—ଯାହାହେବାର କଥା ହୋଇଯାଇଛି—ଏବେ ତୁମେ ଓ ତୁମ ରାଜ୍ୟ ନିରାପଦ । ବର୍ତ୍ତମାନ ଚାଲ...

ବାସ୍ ଏତିକି ଯାଏ ଭାବିନେଇ ଆଉ ସେଣିକି ଭାବି ପାରିଲି ନାହିଁ । "ବର୍ତ୍ତମାନ ଚାଲ"—ମାନେ କୁଆଡ଼େ ? ରାଜକୁମାରୀ ଯଦି ପଚାରି-ଦେବ—କୁଆଡ଼େ ଯିବା ? ତା'ହେଲେ ମୁଁ କଅଣ ଉତ୍ତର ଦେବି ? ମୁଁ କ'ଣ ରାଜାଝିଅକୁ ଆମ ଘରକୁ ନେଇଆସି ପାରିବି ? ଆମେ ଅବଶ୍ୟ ଗାଁରେ ଧନୀଲୋକ—କିନ୍ତୁ ରାଜାଝିଅ ରହିବା ପାଇଁ ଆମର ଘର କାହିଁ ? ସେ ଗାଧୋଇବା ପାଇଁ ପୋଖରୀ କାହିଁ ? ତା'ର ସହଚରୀମାନଙ୍କ ସଙ୍ଗେ ବୁଲିବାକୁ ଏଡ଼େ ସୁନ୍ଦର ବଗିଚା ବି ଆମର କାହିଁ ? ତା'ର ଉପଯୁକ୍ତ ସଖୀ ସହଚରୀ ହେବାକୁ ଆମଘରେ ବା ଗାଁରେ ସେମିତି ସୁନ୍ଦରୀ, ପରିଚ୍ଛନ୍ନ ଭଲ ବେଶଭୂଷା ହୋଇଥିବା ଝିଅ ବି କାହାନ୍ତି ? ମୋର ଦୁଇଟା ଭଉଣୀ ଅବଶ୍ୟ ଅଛନ୍ତି । କିନ୍ତୁ ସେଗୁଡ଼ାକ ସିଂଘାଣିନାକୀ ଆଉ ଭାରି କଳିହୁଡ଼ୀ । ମାସ୍ୱାଧର ସାନଭଉଣୀଟା ପିଲାଦିନୁଁ ରୋଗ ଭୋଗି ଭୋଗି କାନ୍ତାମା ଭଳି ଦିଶେ । ଅବଶ୍ୟ ବନୁମାଷ୍ଟ୍ରଙ୍କ ଝିଅଟି ଭାରି ଉଜଳଉଜଳ । ଭାରି ପରିଷ୍କାର । ଆଉ ମଧ୍ୟ ଏହି ରାଜା ଝିଅ ଭଳି ବେଶଭୂଷା ହୋଇଥାଏ । କିନ୍ତୁ ତା'ର କୁଆଡ଼େ ବାହାଘର ଲାଗିଲାଣି—ସେ ଆଉ ଘରୁ ବାହାରୁ ନାହିଁ । ଆଉ ଯୋଉ କେଇଟା ଝିଅ ଆମ ଗାଁରେ ଅଛନ୍ତି ସେଗୁଡ଼ାକ ଭାଲୁକୁଣୀ ପରି ଦିଶନ୍ତି । ରାଜକୁମାରୀର ସହଚରୀ ହେବାର ଯୋଗ୍ୟତା କାହାରି ନାହିଁ । ଛାଡ଼—ସେକଥା କିଛି ନୁହେଁ...

ଅବଶ୍ୟ ମୋ ଭିତରେ ଆଉ ଗୋଟିଏ ଛୋଟିଆ ମତଲବ ମଧ୍ୟ କାମ କରୁଥିଲା । ତା' ହେଉଛି ରାଜକୁମାରୀଙ୍କୁ ସାଙ୍ଗରେ ଧରି ତାଙ୍କ ନିଜ

ରାଜପ୍ରାସାଦକୁ ଚାଲିଯିବା—କିନ୍ତୁ କଥା ସେତିକ ମଧ୍ୟ ନୁହେଁ—ମନର ଖୁବ୍ ଅତଳ ତଳରେ ସୁରକ୍ଷିତ ବାସନାଟିଏ ମଧ୍ୟ ଧୂପଧୂଆଁ ଭଳି ଉପରକୁ ଲଟେଇ ଲଟେଇ ଉଡ଼ୁଥିଲା ··ଆଃ ! ରାଜକୁମାରୀ ଯଦି ମୋର ଏହି ଅଭୁତପୂର୍ବ ଶାରତ୍ୱରେ ଖୁସିହୋଇ ମୋତେ ତା'ର ହୃଦୟେଶ୍ୱର ବୋଲି ଥରେ ଡାକ ଦିଅନ୍ତା !!! ··କିନ୍ତୁ ଏତେକ ମନ ଭିତରକୁ ସ୍ପଷ୍ଟ ହୋଇ ଆସିବାମାତ୍ରେ ମୋର ଜିଭ ଆପଣାଛାଏଁ କାମୁଡ଼ି ହୋଇଗଲା । ଆଃ ! ଆପଣା ବାସନାର ଗୁରୁଗୁରୁପଣରେ ଆପେ ଗୃପି ହୋଇ ମୁଁ ସେମିତି ସ୍ଥାଣୁଭଳି ବସି ରହିଲି ଆଖି ଛଳ ଛଳ କରି । ମୋ ନିଜଠାରୁ ମୋର ଏହି ବାସନା ଥିଲା ଖୁବ୍ ଖୁବ୍ ଓଜନଦାର । ମୋର ଆଉ ବସିବା ଥାନରୁ ଉଠିବାର ଶକ୍ତି ପାଇଲି ନାହିଁ । ସାହସ ବି ପାଇଲି ନାହିଁ ।

ଏତିକବେଳେ ତେଣେ ରାକ୍ଷସୀ ରାଜାଙ୍କର ଅନୁଚରମାନଙ୍କୁ ମାର ଖାଇବା ଲାଗି ଖୋଜୁଖୋଜୁ ବିଦୂଷକଙ୍କୁ ଦେଖିଲା । ବିଦୂଷକ ବହୁବେଳୁ ରାଜକୁମାରୀଙ୍କ ଏକାକମା ଛାଡ଼ିଦେଇ ଯାତ୍ରାଦେଖାଳୀମାନଙ୍କ ଭିତରେ ଯାଇ ସାଧାରଣ ଲୋକଟିଏ ଭଳି ବସିଥାଏ ଏବଂ ସେ ପାପିଷ୍ଠ ତା'ର ମୁଣ୍ଡରୁ ସେହି ପାଗଳବାଳିଆ ଓଢ଼ଣା ଚୂଟିଥିବା ପରଚୂଲିଟିକୁ କାଢ଼ିଦେଇ ହାତରେ ଲୋକ୍ସକୋଚ୍ଛ କରି ଧରିଥାଏ । ଉଦ୍ଦେଶ୍ୟ ହେଲା—ରାକ୍ଷସୀ ତାକୁ ଆଉ ରାଜାଙ୍କ ପକ୍ଷ ବିଦୂଷକ ବୋଲି ଚିହ୍ନି ପାରିବ ନାହିଁ । ସେ ପାପିଷ୍ଠ ଜଣେ ଯାତ୍ରା ଦେଖାଳୀଠାରୁ ବଟୁଆ ମାଗି ତା' ବଟୁଆରୁ ପାନଭଙ୍ଗି ଖାଉଥାଏ—ସତେକି ସେ କିଛି ଜାଣିନ । ସେ ଯାତ୍ରାବାଲାଙ୍କ ଭିତରୁ ଜଣେ ନୁହେଁ—କି ରାଜାଙ୍କ ଲୋକ ନୁହେଁ ! ସେ ଜଣେ ପାଖଗାଁରୁ ଆସିଥିବା ନିରୀହ ଯାତ୍ରା ଦେଖାଳୀଟିଏ ! କିନ୍ତୁ ତା' କପାଳରେ ସେଥିପାଇଁ ତ୍ରିପୁଣ୍ଡି ଚନ୍ଦନ ଟିକା ସେମିତି ଥାଏ । ରାକ୍ଷସୀ ଯେତେବେଳେ ତା' ଆଡ଼କୁ ହାତ ବଢ଼ାଇଲା—ବିଦୂଷକ ନିର୍ବିକାର ଭାବେ ମିଛଗୁଡ଼ାଏ କହି ପକାଇଲା—

ଆରେ, ଆରେ, ମତେ କାହିଁକି ଧରୁଛ ? ମୁଁ କ'ଣ ରାଜାଙ୍କ ଲୋକ ନା କ'ଣ ? ମୋ ଘର ପରା ଜଗନ୍ନାଥପୁର କୁମ୍ଭାର ସାହି ! ମୁଁ

ଆସିଛୁ ମାହାଲ ପାର୍ଟି ଗନ୍ଧର୍ବ ମହାତ୍ମାଙ୍କ କାଞ୍ଚନବାଳା ନାଟକ ଦେଖିବାକୁ ! ଯା-ଯା—ଯଦ ତୋ ପେଟ ପୂରନ—ହୋଇଚି ସେଠି ଠିଆ ହୋଇ କାନ୍ଦୁଚୁ ଗଜାଝିଅ, ତା' ମାଉଁସ ଖର କଅଁଳ ଲଗିବ—ତାକୁ ଖାଇବୁ ଯା—ମୋ ଭଳଆ ବୁଢ଼ାଟା ସାଙ୍ଗରେ କାହିଁକି ମିଛରେ ଲଗିଛୁ ଲେ ?

ଲୋକମାନେ ସେହି କରୁଣ ପରସ୍ଥିତିରେ ବି ହୋ ହୋ କର ହସି ଉଠିଲେ । ମାତ୍ର ସେହି ବଦମାସ, ସ୍ୱାର୍ଥପର, ଲୋଭୀ, ବଦୂଷକଟାର ମୁହଁରେ ମୁଥ ମାରବାକୁ ମୋର ହାତ ଉଠି ଯାଉଥାଏ । ତା'ପରେ ରାକ୍ଷସୀ ତାକୁ ଛାଡ଼ ରାଜକୁମାରୀ ପାଖକୁ ଚଲସି ଆସିଲା । ଆମ ଛାତି ଧଡ଼ପଡ଼ ହୋଇ ଉଠିଲା । ରାଜକୁମାରୀ କନ୍ତୁ ସେଇଭଳି ଶୋକ କରୁଥାନ୍ତି ନର୍ଭୟରେ । ତାଙ୍କ ଶୋକ ଉଚ୍ଛାସରେ ଆକାଶ ବଦୀର୍ଣ୍ଣ ହୋଇ ଯାଉଥାଏ । ରାକ୍ଷସୀ ଯାଇ କାଞ୍ଚନବାଳାର ହାତ ଧରଲା ମାତ୍ରେ ସେ ତାଙ୍କର କାନ୍ଦଣା ବନ୍ଦକର ଶୋକ ଗଦ୍‌ଗଦ୍ କଣ୍ଠରେ ବଚନକାଟିଏ ଆରମ୍ଭ କଲେ—

"ନେ-ନେ ଲୋ ନୃଶଂସୀ ରାକ୍ଷସୀ ! ନେ, ମୋତେ ନେଇ ତୋର ସେହି ପୋଡ଼ା ଗର୍ଭକୁ ଚଞ୍ଚଳ କ୍ଷେପଣ କର । ମୁଁ ଅତ ହତଭାଗିନୀ ଅଲକ୍ଷଣୀ । ପିଲାଦନୁ ମାଆକୁ ଖାଇଥିଲ—ଏବେ ଯୌବନରେ ମୁଁ ମୋର ପ୍ରାଣରେ ଦେବତା ସଦୃଶ ପିତାଙ୍କୁ ହରାଇଲି । ଯୋଉ ପାଟିରେ ତୁ ମୋର ପିତାଙ୍କ ରୁଧିର ପାନ କରଛୁ, ସେହି ପାଟିରେ ତୁ ଶୀଘ୍ର ମୋର ଶୋଣିତ ପାନକର । ରାକ୍ଷସୀ, ମୋର ପିତାଙ୍କ ବଚ୍ଛେଦରେ ମୁଁ ଆଉ କଦାପି ମୋର ଜୀବନ ରଖିବ ନାହିଁ । ନେ—ଶୀଘ୍ର ମୋତେ ଭକ୍ଷଣ କର ମୋର ସନ୍ତପ୍ତ ଆତ୍ମାକୁ ଶାନ୍ତ ପ୍ରଦାନ କର ।"

ଏତେବେଳେ ମୋ ଛାତି ଦପ୍ ଦପ୍ ହେଉଥିଲା । ମୋ ଆଖି ଆଗରେ ସବୁ ଅନ୍ଧାର ହୋଇ ଆସୁଥିଲା । ରାକ୍ଷସୀ ରାଜକୁମାରୀକ ଧର ମୋ ଆଗରେ ତା ଚର୍ଣ୍ଣ କଣାକର ରକ୍ତପାନ କରବ, ମୁଁ ବୋଧେ ଏହି ଦୁଃସହ ଦୃଶ୍ୟ ଆଉ ଦେଖି ପାରବ ନାହିଁ । ଘୋର ଦୁଃଖ ଆଉ ନୈରାଶ୍ୟ

ମୋତେ ଘେରି ବସିଲା । ମୁଁ ମନେମନେ ଆମ ଗାଁର ଇଷ୍ଟଦେବତା ମା’ କୁଟାମଚଣ୍ଡୀଙ୍କୁ ଡାକ ଲଗିଥାଏ । ମା ! ବହୁ ବହୁ ବିପଦରେ ତୁ ମତେ ସାହାଯ୍ୟ କରିଛୁ । ତୋତେ ବର୍ତ୍ତମାନ ନେହୁରା ହୋଇ ଡାକୁଛି—ତୁ ରାଜକୁମାରୀଙ୍କୁ ଏହି ଦୁଷ୍ଟା ରାକ୍ଷସୀ ମୁହଁରୁ ରକ୍ଷାକର । ଏଇଥରକ ମୋ ଗୁହାରି ଶୁଣିଆ—ଆଉ ତତେ କେବେ ଡାକ ହଇରାଣ କରିବି ନାହିଁ ।

କୁଟାମଚଣ୍ଡୀ ସତକୁ ସତ ମୋ ଡାକ ଶୁଣିଲେ । ତାଙ୍କର ଦୟା ମହିମା । କାଞ୍ଚନବାଳା ତାଙ୍କ ବଚନିକା ଶେଷକରି ଯେତେବେଳେ ରାକ୍ଷସୀ ଉଦ୍ଦେଶ୍ୟରେ ଗୋଟିଏ କରୁଣ ଗୀତ ବୋଲିବାକୁ ଆରମ୍ଭ କଲେ—ସେତେବେଳେ ମୋ ଛାତିରେ ସାହସ ପଶିଲା । ଏତିକିବେଳେ ମାୟାଧର ମୋ କାନ ପାଖରେ ଧୀର ସ୍ୱରରେ କହିଲା—ଏଇ ଗୀତ ବୋଲି ରଜାଝିଅ ରାକ୍ଷସୁଣୀକୁ ବଶ୍ୟ କରିଦେବ, ଦେଖ୍ ତୁ । ମାତ୍ର ମୁଁ କିଛି ନ କହି ଚୁପ୍ ରହିଲି, ରଜାଝିଅ ଗାଉଥାଏ—

ଆଲୋ ନିଶାଚରୀ, ଏଡ଼େ ତୁ ନିଠୁରୀ
ହରିଲୁ ମୋ ପିତୃପ୍ରାଣ
ଏବେ ମୋତେ ମାରି ମେଣ୍ଟାଅ ତୋ ଆଶା
ବିଳମ୍ବେ ନାହିଁ କାରଣ ଲୋ···
ଆଲୋ ସର୍ବନାଶୀ
ମୋର ଜୀବନରେ ନାହିଁ ଆଶା ଲୋ ।

ରାଜକୁମାରୀ ଏହିଭଳି ଗୀତଟି ବୋଲିଲାବେଳେ କିନ୍ତୁ ରାକ୍ଷସୀ ସ୍ତବ୍ଧ ହୋଇ ଠିଆ ହୋଇଥାଏ । ସେ ମନଦେଇ ଗୀତଟି ଶୁଣିଲାପରି ଲାଗୁଥାଏ । ଜଳନ୍ତା ନିଆଁ ପରି ତା’ର ସେହି ଭୀଷଣ ଗୋଲଗାଲ ଆଖି ନରମ ହୋଇ ଆସୁଥାଏ । ସେ ଆଉ ତା’ର ସେହି ନାଲିଆ ଜିଭଟିକୁ ଲହଲହ କରୁ ନ ଥାଏ । ଗୀତ ସରିଲା ମାତ୍ରେ ସେ ହଠାତ୍ ରାଜକୁମାରୀଙ୍କୁ ଟେକିନେଇ କାଖରେ ବସାଇ ଦେଲା ଏବଂ ମା’ଆଟିଏ ତା’ର ଝିଅକୁ କାଖେଇ ଗେଲ କଲାପରି ତା’ର ଓଠରେ ହାତମାରି ଓ ଚୁମାଖାଇ କହିଲା—

ଦେଖ୍ ଝିଅ, ମୁଁ ତୋତେ କେବେ ବି ମାରିବି ନାହିଁ । ତୋର ଏଇ ନରମ ବେକକୁ ଚପିବାକୁ ମୋର ହାତ ବଳୁ ନାହିଁ । ବହୁ ନରନାରୀ ବାଳକ ବାଳିକାଙ୍କୁ ମାରି ମୋର ଗର୍ଭକୁ ଷେପିଛି । କିନ୍ତୁ ତୋତେ ଦେଖିଲା ମାତ୍ରେ ମୋର କାହିଁକି ତୋ ପ୍ରତି ମାୟା ଆସୁଛି । ମୁଁ ତୋତେ ମାରି ପାରିବି ନାହିଁ । ମୋର ତୋ' ଭଳି ଝିଅଟିଏ ନ ଥିବାରୁ ମୁଁ ଭାରି ହାଇରାଣ ହେଉଛି । ତୁ ମୋ ଆଖିକି କେଡ଼େ ସୁକୁମାରୀ ଦିଶୁଛୁ । ମୁଁ ତୋତେ ମୋର ଝିଅ କରି ରଖିବି । ବୁଢ଼ୀ କାଳରେ ତୁ ମତେ କାରଣ ଦେବୁ । ଶୁଣ୍ ମା—ମୁଁ ତୋତେ ପାଳିବି-ପାଳିବି-ବଢ଼େଇବି—

ତା'ପରେ ଅସୁରୁଣୀର କଣ୍ଠ କ୍ରମଶଃ ଖୁବ୍ ମଧୁର ବି ଶୁଭିଲା । ସେ ମଧ୍ୟ ଗୀତଟିଏ ବୋଲିଲା ତା'ର କଣ୍ଠକୁ ଯଥା ସମ୍ଭବ ନରମ କରି—

ମାରିବି ନାହିଁ ମୁଁ ପାଳିବି ତୋତେ ଶୁଣଣୁ ବାଳିକା
ଗିଳିବି ନାହିଁ ମୁଁ ପାଳିବି ତୋତେ ମୋ ମାଆ ମାଳିକା ।
ମଣିଷ ମାଉଁସ ସିଝାଇ
ମତେ ପରଷିବୁ ମନ ରଞ୍ଜାଇ
ମଣିଷ ରକତେ ପଣାକରି ନିତି ପିଆଇବୁ ମନଭରିକା
ଗିଳିବି ନାହିଁ ମୁଁ ପାଳିବି ତୋତେ ମୋ ମାଆ ମାଳିକା ।

ଯେତେ କଅଁଳ କରି ଗାଇଲେ ବି ରାକ୍ଷସୀର କଣ୍ଠସ୍ୱର ଖୁବ୍ କର୍କଶ ଥିଲା ଏବଂ ତା'ର ଏହି ଗୀତର ଅର୍ଥ ମଧ୍ୟ ଅତି ବୀଭତ୍ସ ଥିଲା । ମୁଁ ସେ ବୟସରେ ଯେତିକି ବୁଝିଥିଲି, ସେଥିରେ ମୋର ମନ ଅତ୍ୟନ୍ତ ବ୍ୟଥିତ ହୋଇପଡ଼ିଲା । ଏହି ସୁନ୍ଦରୀ ସୁକୁମାରୀ ରାଜକୁମାରୀ ପ୍ରତିଦିନ ସକାଳୁ ଉଠି ମଣିଷ ରକ୍ତରେ କିଛି ଚିନି ଓ ଦହି ଇତ୍ୟାଦି ମିଶାଇ ସକାଳୁ ଏହି ପାପିଷ୍ଠା ଅସୁରୁଣୀକୁ ପିଆଇବ । ଏବଂ ପୁଣି କେତେବେଳେ ମଣିଷ ମାଉଁସକୁ ମସଲା ମସଲି ଦେଇ ରାନ୍ଧି ତାକୁ ଥାଳିରେ ବାଢ଼ି ଏହି ପାପିଷ୍ଠାକୁ ଖୁଆଇବ—ଏହା ଭାବିବା ମାତ୍ରେ ମୋ ଦେହ ଶିରିଶିରେଇ ଉଠିଲା, ଏବଂ ମୋତେ ବଡ଼ ଅସ୍ଥିର ଲାଗିଲା । ଅବଶ୍ୟ ରାକ୍ଷସୀ ଯେ

ରାଜକନ୍ୟାକୁ ଏଠି ଆମ ସମସ୍ତଙ୍କ ସମକ୍ଷରେ ନଖାଇ ତା' ପ୍ରତି ହଠାତ୍ ସ୍ନେହଶୀଳ ହୋଇ ତାକୁ ଝିଅଭଳି ପାଳିବ ବୋଲି ନିଜଆଡ଼ୁ ଏତେ ବ୍ୟାକୁଳ ହେଉଛି—ଏକଥାଟା ମତେ ଖୁବ୍ ଆଶ୍ୱାସ ଦେଉଥିଲେ ବି, ରାଜକନ୍ୟାର ପରବର୍ତ୍ତୀ ଜୀବନର କର୍ତ୍ତବ୍ୟ ସମ୍ବନ୍ଧେ ଅସୁରୁଣୀର ବକ୍ତବ୍ୟ ଶୁଣି ମୁଁ ଭୀଷଣ ଅଶ୍ୱସ୍ତିବୋଧ କଲି ଏବଂ ଚଟିଗଲି । ମୋ ଧାରଣାରେ ଏଭଳି ରାଜଜେମା ଖାଲି ସୁନ୍ଦର ବେଶଭୂଷା ହୋଇ ଫୁଲ ବଗିଚାରେ ବୁଲୁଥାନ୍ତା । ମଲ୍ଲୀ, ଗୋଲାପ, ରଜନୀଗନ୍ଧା, ସୁଗନ୍ଧରାଜ ଇତ୍ୟାଦି ଫୁଲ ତୋଳି ବେଳେ ବେଳେ ନିଜର ସେଇ ସୁନ୍ଦର କବରୀରେ ଖୋଷୁଥାନ୍ତା କିମ୍ବା ମାଳଗୁନ୍ଥି ଅବାଟରେ ତୋରଣଗାର କାଠି ବସିରହନ୍ତା ଏଇ ଉଦ୍ଦେଶ୍ୟରେ ଯେ, ଯେଉଁ ଭାଗ୍ୟବାନ ତରୁଣ ସେହି ତୋରଣଗାରକୁ ଘୋଡ଼ାରେ ବସି ଅଜାଣରେ ଡେଇଁଯିବ, ତାଆରି ବେକରେ ସେ ବରଣମାଳା ଲମ୍ବାଇ ଦେବ । କିମ୍ବା ସେ ମେଘ ବଉଦରେ ବସି ଭାସି ଭାସି ଯାଉଥାନ୍ତା ଆକାଶମାର୍ଗରେ—ପ୍ରଜାପତିର ରଙ୍ଗ ରଙ୍ଗ ପକ୍ଷ ପରି ତା'ର ପଣତ ଉଡୁଥାନ୍ତା ମୃଦୁ ପବନରେ—ତା'ର ସେଇ ନାଲି ଗୁଲୁଗୁଲୁ ଓଠରୁ ଅଞ୍ଜୁଳା ଅଞ୍ଜୁଳା ହରଗଉରୀ ଫୁଲପରି ନାଲି ହସ ଆକାଶରୁ ତଳକୁ ଝରି ପଡ଼ୁଥାନ୍ତା—ଏବଂ ଆମେ ସବୁ ମାୟାଧର, ପଦ୍ମଲି, ରାଜ, ଅଗାଧୁ ହେରିକା ସାଙ୍ଗମାନେ ପୋଖରୀ ହୁଡ଼ାରେ ଠିଆହୋଇ ଆକାଶରେ ଉଡ଼ିଯାଉଥିବା ରଙ୍ଗ ରଙ୍ଗ ପକ୍ଷ ଗେଣ୍ଡାଳିଆମାନଙ୍କୁ ଆନନ୍ଦରେ ଦେଖିଲାପରି କିମ୍ବା ଉଡ଼ାଜାହାଜକୁ ଦେଖିଲାପରି—କିମ୍ବା ତା' ଠାରୁ ଅଧିକା ଆନନ୍ଦ ଆହ୍ଲାଦ ଉତ୍ସୁକତାରେ ତାକୁ ଅନାଇ ରହନ୍ତୁ । ଆଉ ମୁଁ ମଧ୍ୟ ତଳେ ଠିଆହୋଇ ତାକୁ ଶୁଣାଇବା ଭଳି ଗୋଟେ ସୁନ୍ଦର ଗୀତ ବୋଲି ହଅନ୍ତି । ·· କିନ୍ତୁ କି ଦୁର୍ଭାଗ୍ୟ ! ଏସବୁ ନ ହୋଇ ଏହି କୁତ୍ସିତରୂପା ବିକଟାଳ ପ୍ରକୃତି ଅସୁରୁଣୀ ଘରେ ରହି ତାକୁ ମଣିଷ ମାଉଁସ ସିଝେଇ ଖାଇବାକୁ ଦେବାର ଏହି ଜଘନ୍ୟ ପ୍ରସ୍ତାବ ଶୁଣି ମୋ ମନ ବିଦ୍ରୋହ କରି ଉଠିଲା । ନାଃ ! ଏଇ ଦୁଷ୍ଟା ରାକ୍ଷସୀଟାକୁ ମାରି ରାଜକନ୍ୟାକୁ ଉଦ୍ଧାର କରିବାକୁ ପଡ଼ିବ ।

ମୁଁ ଦେଖିଲି ଆଉ ସମ୍ଭାଳି ରହିହେବ ନାହିଁ । ସମସ୍ତ ମଧ୍ୟ ଗଡ଼ି ଯାଉଛି । ଏଇ ବେଳରେ କିଛି ଗୋଟାଏ କରିବାକୁ ହେବ । ରାକ୍ଷସୀଟାକୁ

ନଶ୍ଚିନ୍ତଭାବେ ଏଇ ମୁହୂର୍ତ୍ତରେ ମାରଦେବାକୁ ହେବ । ଏହାଛଡ଼ା ରାଜା ଝିଅକୁ ଉଦ୍ଧାର କରିବାର ଆଉ ବାଟ ନାହିଁ । କନ୍ତୁ କପରି ଏଇ ଦୁଃସାଧ କର୍ମଟି ସାଧନ ହେବ ? କୋଉ ଉପାୟରେ ? କେଉଁମାନଙ୍କ ସାହାଯ୍ୟରେ ? ମୁଁ ଗୁରିପଟେ ମୋର ସାଙ୍ଗମାନଙ୍କୁ ଦେଖିଲି । ଦୁଆର ଗୁଡ଼ଆ ଗୋଟାଏ ବଡ଼ ପାଟିରେ ପୂରାଇ ଧୂଆଁ ଗୁଡ଼ୁଥାଏ । ପାଳ ଘୁମାଉଥାଏ । ଅପର୍ଣ୍ଣି ଭେଇ ଶୋଇଗଲାଣି କେତେବେଳୁ । ପଦ୍ମଲଟା କ’ଣ ବୁଝୁଥାଏ କେଜାଣି, ଖାଲି ହସି ହସି ଗଡ଼ପାଉଥାଏ । ମୁଁ ସେମାନଙ୍କ ଆଡ଼ୁ ବିରକ୍ତିରେ ମୁହଁ ଫେରାଇ ନେଲି ବେଖାତିର ଭାବେ । କନ୍ତୁ ମୋର ପରମ ମରମୀ ବନ୍ଧୁ ମାୟାଧର ମୋ ପାଖକୁ ଲାଗି ବସି ରହିଥାଏ ଓ ମୋରଭଳି ଉତ୍ସୁକତାରେ ଓ ଗଭୀର ଉତ୍କଣ୍ଠାରେ ଗୁହିଁ ରହିଥାଏ, ସେହି ବିସଦୃଶ ଦୃଶ୍ୟଟି ଆଡ଼େ । ସେ ବୋଧେ ଠିକ୍ ମୋରି ଭଳି ଭାବୁଥିଲା । ମୁଁ ତା’ କାନ୍ଧରେ ହାତ ରଖି ଅତ୍ୟନ୍ତ ନିର୍ଭୟରେ ପଚାରିଲି – ମାୟାଧର ! କ’ଣ କରିବା ? ସେ ମଧ୍ୟ ସମାନ ସମ୍ପୃକ୍ତତା ଦେଖାଇ କହିଲା—ଅବସ୍ଥା ବଡ଼ ଖରାପ – କନ୍ତୁ ଠିକ୍ ଏତିକିବେଳେ ଯଦି ଭୂଷଣ୍ଡପୁର ରାଜ୍ୟର ରାଜକୁମାର ଆସି ପହଞ୍ଚିଯାନ୍ତା—ତା’ହେଲେ···

ଏ ପ୍ରକାର ଚିନ୍ତା ମୋ ମନକୁ ମଧ୍ୟ ଜୁଟିଥିଲା । ଏହାହିଁ ମଧ୍ୟ ସମୀଚୀନ ହୁଅନ୍ତା—ଶୁଭଙ୍କର ହୁଅନ୍ତା । ରାଜାଝିଅ କଥା ରାଜାପୁଅ ବୁଝନ୍ତା । ଆମେ ସବୁ ଦେଖଣାହାରି ଏଭଳି ଭଲ ଦୃଶ୍ୟଟିଏ ଦେଖି ଖୁସି ହୁଅନ୍ତୁ । କନ୍ତୁ—ନାଃ—ମୋର ଅବଚେତନରେ ବହୁ ଦୁଷ୍ଟ ଅନୁପଲବ୍ଧ୍ୟ ଅସମ୍ଭବ ଉଚ୍ଚାକାଂକ୍ଷା ଲୁଚିରହି ମତେ ତେଜାଉଥିଲା— ଉନ୍ମନ କରୁଥିଲା । ମୋର ସେତେବେଳେ ଧାରଣା ହୋଇଗଲା ଯେ କୋଉ ଭୂଷଣ୍ଡପୁର ପୁଷଣ୍ଡପୁର ରାଜକୁମାରର ଉପସ୍ଥିତି ଏ କ୍ଷେତ୍ରରେ ବର୍ତ୍ତମାନ ଅବାନ୍ତର । ଏ ପରିସ୍ଥିତିର ସୁଯୋଗ ମୋତେଇ ନେବାକୁ ହେବ । ମୋତେଇ ରାଜକନ୍ୟା ଆଗରେ ବୀରତ୍ୱ ଦେଖାଇ ରାକ୍ଷସୀକୁ ବଧ କରିବାକୁ ହେବ ଏବଂ ରାଜକନ୍ୟାର ବରଣମାଳା ପାଇବାର ଯୋଗ୍ୟତା ଅର୍ଜନ କରିବାକୁ ହେବ । ଏ କ୍ଷେତ୍ରରେ ମୁଁ ଆଉ କାହାର ଉପସ୍ଥିତି ଓ କାର୍ଯ୍ୟ ସହ୍ୟ କରି ପାରିବି ନାହିଁ । ତେଣୁ ମୁଁ ମାୟାଧର ଉପରେ ସାମାନ୍ୟ ବିରକ୍ତି

ଦେଖାଇ କହିଲ—ସେ ଭୂଷଣ୍ଡପୁର ରାଜାପୁଅ କଥା ଛାଡ଼—ଆମେ କ'ଣ ବାବେନାଭୂତ ପୁଅ କି ? ଆମେ କ'ଣ କରିପାରିବା, ସେ କଥା କହ । ମାୟାଧର ମଧ୍ଯ ସାଙ୍ଗେ ସାଙ୍ଗେ ବାଧ୍ଯ ଅନୁଗତ କଣ୍ଠରେ କହିଲା—ଠିକ୍ ଅଛି । କ'ଣ କରିବାକୁ ହେବ କହ—କରିବା । ମୁଁ କହିଲି—ତା'ହେଲେ ଉଠ୍—ଚାଲ ସେ ରାକ୍ଷସୀକୁ ମାରିଦେଇ ରାଜାଝିଅକୁ ଉଦ୍ଧାର କରିବା । ହେଇ ଦେଖ ! ସେଠି ସେନାପତି ଆଉ ରାଜାଙ୍କ ମୂର୍ଦ୍ଧାର ପାଖେ ଦୁଇଟା ଖଣ୍ଡା ପଡ଼ିଛି—ତୁ ଗୋଟେ ଧର—ମୁଁ ଗୋଟେ ଧରୁଛି । ଉଠ୍—ଆଉ ଉଛୁର କରନା—ହେଇ ଦେଖ୍—ଅସୁରୁଣୀ ରାଜାଝିଅକୁ ଫେର୍ କାଖ କରିବ ବୋଲି ଗଲାଣି ।

ମାୟାଧର ସାଙ୍ଗେ ସାଙ୍ଗେ ଉଠି ପଡ଼ିଲା । ଆମେ ଦୁହେଁ ଯାତ୍ରା ମଞ୍ଚିକୁ ଯାଇ ଖଣ୍ଡା ଦୁଇଟି ଧରି ରାକ୍ଷସୀ ଆଡ଼କୁ ଚହଲିଗଲୁ । ତେଣେ ଖୁବ୍ ଜୋରରେ କନ୍‌ସାର୍ଟ ଚାଲିଥାଏ । ଢୋଲକି, ଝାଞ୍ଜ ଆଉ ବଗୁଲ ସାଇତାଳରେ ଦ୍ରୁତଗତିରେ ବାଜୁଥାଏ । ଉଚ୍ଚ କାଂସ୍ଯର ଗରମ ସ୍ରୋତ ମୋ ଶିରାମାନଙ୍କରେ ଉତ୍ତାଳ ହୋଇ ବହି ଚାଲିଥାଏ । ଆମେ ଦୁହେଁ ସେ ବାଜାରେ ଉନ୍ମତ୍ତ ହୋଇଗଲୁ । ଇତିମଧ୍ଯରେ ମୁଁ ରାଜାଝିଅ ଆଡ଼କୁ ଥରେ ମାତ୍ର ଚାହିଁ ଦେଇଥିଲି । ସେ ସାମାନ୍ୟ ହସିଦେଇ ମୋତେ ସମର୍ଥନ କଲାଭଳି ଲାଗିଲା । ରାଜାଝିଅର ସେହି ଚାହାଣୀ ମଧ୍ଯ ମତେ ଖୁବ୍ ପ୍ରେରଣା ଦେଲା । ମୁଁ ଉନ୍ମାଦନାରେ ଅଧିର ହୋଇଉଠିଲି । ମାୟାଧର ଢୋଲକୀ ଆଉ ବଗୁଲର ତାଳେ ତାଳେ ଖଣ୍ଡା ବୁଲାଇ ଲାଗିଥାଏ । ମାତ୍ର ମୁଁ ଭାବିଲି—ଅସୁରୁଣୀ ବହୁତରେ ଖଣ୍ଡା ବୁଲାଇବା ପୂର୍ବରୁ ଆଗ ତା' ବିରୋଧରେ ଗୋଟାଏ ଧମକପୂର୍ଣ୍ଣ ଗର୍ଜନ କରି ବଚନିକା ଝାଡ଼ିଦେବି । ସେମିତି ସେ ମୋର ପ୍ରାକର୍ମ ବୁଝିପାରି ମୋ ସାଙ୍ଗେ ଲଢ଼ିବାକୁ ମୋ ଆଡ଼କୁ ମାଡ଼ି ଆସିବ । ସେତିକିବେଳେ ମୁଁ ବସେଇଦେବି ତା' ବେକରେ ଚୋଟ । ମୁଁ ଆରମ୍ଭ କଲି—

ଆଲୋ ଦୁଷ୍ଟା ନିଶାଚରୀ ରାକ୍ଷସୀ ବୁଢ଼ୀ ମାଙ୍କୁଡ଼ୀ ! ତୋର ମନସ୍କାମନା କେବେ ପୂର୍ଣ୍ଣ ହୋଇ ପାରିବ ନାହିଁ । ତୁ ପାମରୀ ମୋର କରାମତି ଜାଣିନାହୁଁ । ଏଇ ଖଣ୍ଡାରେ ତୋତେ ଛିନଗଡ଼ କରି ହାଣି

ଏଇ ମୁହୂର୍ତ୍ତରେ ତୋତେ ମୁଁ ଶମନପୁରୀ ପଠାଇ ଦେବି । (ପ୍ରକାଶ ଥାଉକ, ଗୀତ ଗୀତ ଯାତ୍ରା ଦେଖି ଦେଖି ମୁଁ ଏସବୁ ଭାଷା ଆୟତ୍ତ କରି ନେଇଥାଏ ।) ଏତକ କହି ଖଣ୍ଡାଟି ଧରି ମୁଁ ରାକ୍ଷସୀ ଆଡ଼କୁ ଚାଲିକି ଗଲି ।

ମାତ୍ର ଠିକ୍ ସେହି ମୁହୂର୍ତ୍ତରେ ମୋତେ ଅବାକ୍ କରିଦେଇ କେହି ଜଣେ ଆସି ମତେ ପଛଆଡ଼ୁ ଧରିନେଲା ଓ ମୋ ହାତରୁ ଖଣ୍ଡାଟି ଛଡ଼େଇ ଫୋପାଡ଼ ଦେଲା—ଏବଂ ମୋତେ ଶୂନ୍ୟେ ଶୂନ୍ୟେ ଟେକିନେଇ ଯାତ୍ରା ଭିତରୁ ପଦାକୁ ବାହାରି ଯାଇ ବାହାରେ ମୋତେ ଭୂଇଁକି ତଳେ କରିଦେଇ କହିଲା—ଶଳା—ଖେତଡ଼ କାହିଁକା ।

ମୁଁ ସେ ଲୋକଟିକୁ ଚିହ୍ନେ । ସେ ହେଉଛି ସେ ଗାଁର ଦାମ ଶ୍ରେଷ୍ଠୀ । ଭାରି ବଳୁଆ । ସମସ୍ତେ ତାକୁ ଡରନ୍ତି । ସେ ଗାଁର ଯାତ୍ରା ପର୍ବରେ ଦୁଷ୍ଟଲୋକମାନଙ୍କୁ ମାଡ଼ ଦେଇ ସାଧି କରେ । ଯାତ୍ରା ମେଳନାଦରେ ଶାନ୍ତିରକ୍ଷା କରିବା ଦାୟିତ୍ୱ ତା' ଉପରେ । ସେ ପାଦାର ତାକୁ ଗ୍ରାମବାସୀମାନେ ଦେଇଛନ୍ତି । ତା' ସାଙ୍ଗକୁ ପୁଣି ଥାଏ ପଠାଣ ସାହିର ନାମଜାଦା ଗୁଣ୍ଡା ନସୀର ମିଆଁ । ତା'ର ନିଶଦାଢ଼ୀ, ଲଣ୍ଡାମୁଣ୍ଡ ଓ ନାଲ୍ ନାଲ୍ ଆଖି ଦେଖିଲେ ଆମ ପିଲାମାନଙ୍କ ପିଳେହି ଭୟରେ ପାଣି ହୋଇଯାଏ । ସେ ମଧ୍ୟ ଗାଁରେ ଶାନ୍ତିରକ୍ଷା କରିବାର ପାଦାର ପାଇଥାଏ ।

ସେ ଯାହାହେଉ କିନ୍ତୁ ମୋ ଉପରେ ଏହି ଆକସ୍ମିକ ବଜ୍ରାଘାତରେ ବି ମୋର ପୂର୍ବ ମୋହ ଭାଙ୍ଗିଗଲା ନାହିଁ । ମୋର ସ୍ୱପ୍ନ ମଧ୍ୟ ଭାଙ୍ଗିଗଲା ନାହିଁ । ମୋଠାରୁ ଉଚ୍ଚାକାଂକ୍ଷାର ନିଶା ଛାଡ଼ିଗଲା ନାହିଁ । ବରଂ ମନର ଆଛନ୍ନଭାବ ଆହୁରି ବଢ଼ିଗଲା । ରାଜକୁମାରୀର କରୁଣ ଦୁରବସ୍ଥା ମୋ ପକ୍ଷରେ ଏତେ ବେଦନାଦାୟକ ହୋଇଥିଲା ଯେ, ସେହି ଭାବ ମୋତେ ନିଶାଭଳି ଘାରି ଯାଇଥିଲା । ମୁଁ ମୋ କଡ଼କୁ ଅନାଇଁ ଦେଖିଲି ଯେ ମାୟାଧର ମଧ୍ୟ ମୋ ପାଖେ ଆସି ଠିଆ ହୋଇଛି ଅସହାୟ ଭାବେ । ତାକୁ ମଧ୍ୟ ମୋ ପଛେ ପଛେ ଶୂନ୍ୟେ ଶୂନ୍ୟେ ଟେକି ଆଣିଥିଲା ନସୀର

ମିଆଁ । ମୋ ପାଖେ କଚଟେଇ କହିଲା—ଶାଳା ହାରାମୀକା ବେଟା ! ଆମେ ଦୁହେଁ ଦୁହିଁଙ୍କୁ ଦେଖି ଫେର୍ ଥରେ ହତବଳ ହୋଇଗଲୁ । ଏବଂ ଆମକୁ ଫେର୍ ଦ୍ୱିଗୁଣ ବେଗରେ ନିଶା ଲାଗିଗଲା । ଅବଶ୍ୟ ମାୟାଧର ମୋଠାରୁ ବୁଦ୍ଧିମାନ ଓ ସ୍ଥାନକାଳ ପାତ୍ର ବିବେଚନା କରିପାରେ । ସେ ମତେ ପଚାରିଲା—ଏବେ ଆଉ ଆମେ କ'ଣ କରି-ପାରିବା ? ମୁଁ କହିଲି—ଅନ୍ୟ ଉପାୟ ଚିନ୍ତାକର । ସେ କହିଲା—ଶୁଣ୍—ରଜାଝିଅ କାନ୍ଦ କାନ୍ଦ ଗୀତ ବୋଲି ଅସୁରୁଣୀକୁ କ'ଣ କହୁଛି । କିନ୍ତୁ ଏତେ ଜୋରରେ ସେଠି ଢୋଲକି ଆଉ ବିଗୁଲ୍ ବାଜୁଛି କାହିଁକି ? କିଛି ତ ବୁଝି ପଡ଼ୁନାହିଁ ! ତା' କଥା ଶୁଣି ମୁଁ ସେଇଆଡ଼କୁ ଲକ୍ଷ୍ୟ କଲି ଏବଂ ମୁହୂର୍ତ୍ତକ ପରେ କହିଲି—ରହ ! ଆମେ ଏଇଠି ଅପେକ୍ଷା କରିବା । ରାକ୍ଷସୀ ରାଜାଝିଅକୁ କାଖେଇକରି ଏଇ ବାଟ ଦେଇ ଆସିବ । ଏଇ ଅନ୍ଧାରିଆରେ ଲୁକି ରହି ଆମେ ତାକୁ ତା'ଠାରୁ ଛଡ଼େଇ ନେବା ।

ମାୟାଧର କହିଲା - କିନ୍ତୁ ଆମ ହାତରେ ଅସ୍ତ୍ର କାହିଁ ? ସେ ଦୁଷ୍ଟ ନିଶାଚରୀ ଭାରି ବଳପୂର୍ବା ।

ଏବେ ଆଉ ମୋ ତୁଣ୍ଡରୁ କିଛି ଉତ୍ତର ଫୁଟିଲା ନାହିଁ । ମୁଁ ଭୀଷଣ ଅସହାୟ ଆଉ ନିରାଶ ବୋଧ କଲି । ବର୍ତ୍ତମାନ ଦାମ ଗ୍ରେଟସ୍ ଆଉ ନସୀର ମିଆଁ ଆମ ଭଳି ଖେଚଡ଼ ଆଉ ହାରାମୀ ବେଟାମାନଙ୍କୁ ଆଉ ଯାତ୍ରା ଭିତରେ ପୂରେଇ ଦେବେ ନାହିଁ । ସମବେତ ଯାତ୍ରା ଦେଖାଳୀମାନେ ମଧ୍ୟ ଆମକୁ ଖେଚେଡ଼ା ପିଲା ବୋଲି ଚିହ୍ନିଗଲେଣି । ତେଣୁ ଅନ୍ୟ କୌଣସି ଦିଗରୁ ମଧ୍ୟ ତା' ଭିତରକୁ ପ୍ରବେଶ କରିବା ସହଜ ନୁହେଁ । କିଛି ଉପାୟ ନପାଇ ବଡ଼ ବିବ୍ରତ ବୋଧ କଲି । ଘାଣ୍ଟି ଛଟପଟ ହେଲି । କିନ୍ତୁ ଏଣ୍ଣ ସମୟରେ ଜନତାର ପ୍ରବଳ ହୋ ହୋ ଏବଂ କରତାଳି ମାଡ଼ ମୋ କାନରେ ପଡ଼ିଲା । ତା' ସଙ୍ଗେ ସଙ୍ଗେ ଜଣେ ବୀର ପୁରୁଷର ହୁଙ୍କାର ଗର୍ଜନ ସହ ଉଚ୍ଚସ୍ୱରରେ ବଚନିକା ମଧ୍ୟ ଶୁଣାଗଲା । ମୁଁ କିଛି କହିବା ଆଗରୁ ମାୟାଧର ହାତତାଳି ଦେଇ ନାଚିଗଲା ପରସ୍ତେ । ମୋ ପାଟିରୁ ବାହାରି ପଡ଼ିଲା କଅଣ ହେଲା କିରେ ? ମାୟାଧର ସେମିତି ତାଳି

ମାରୁ ମାରୁ ହସି ହସି କହିଲା—ଆସିଗଲା ଭାଇ ! ଆଉ ଚିନ୍ତା କରନା । ମୋ ପାଖିରୁ ବାହାରି ପଡ଼ିଲା—କିଏ ଆସିଗଲା ? କିନ୍ତୁ ମୁଁ ସବୁ ବୁଝି ସାରିଲିଣି । ମୋ କଣ୍ଠ ନଳିରେ ଶୁଖି ଆସୁଥାଏ । ମାୟାଧର ଅତ୍ୟନ୍ତ ଉତ୍ସାହରେ କହିଲା—କିଏ ଆଉ ଆସିବ ? ଭୁଷଣ୍ଡପୁର ରଜାର ପୁଅ—ଅନଙ୍ଗ ବିକ୍ରମ ।

ମୋର ସମଗ୍ର ସତ୍ତାକୁ ଏକ କରୁଣ ବିଷର୍ଣ୍ଣତା ଗ୍ରାସ କରିଗଲା । ମୁଁ ସବୁ ଜାଣିଗଲି । ମୁଁ ସବୁ ବୁଝିଗଲି । ଏହାପରେ—ଅସୁରୁଣୀକୁ ବଧ କରି ସାରିବା ପରେ କ'ଣ ଘଟିବାକୁ ଯାଉଛି, ତା' ମଧ୍ୟ ମୁଁ ବୁଝିଗଲି । ମୋ ଦେହରୁ ସବୁତକ ବଳ ଓ ଉତ୍ସାହ ଖସି ପଡ଼ିଲା । ମୁଁ ସେଇଠି ଭଗ୍ନ ମନୋରଥ ହୋଇ ତଳେ କଣ୍ଢେଇ ହୋଇ ବସି ପଡ଼ିଲି ।

ମାୟାଧର କିନ୍ତୁ ସେମିତି ଠିଆ ହୋଇ ଦୂରରେ ଭୁଷଣ୍ଡପୁର ଯୁବରାଜ ଅନଙ୍ଗ ବିକ୍ରମର ରାକ୍ଷସୀ ସଙ୍ଗରେ ଘୋରତର ଯୁଦ୍ଧ ବ୍ୟାପାର ଦେଖୁଥାଏ ଓ ତାଳିମାରି ନାଚୁଥାଏ । ତାକୁ ଖୁବ୍ ଉଚ୍ଛାହ ଲାଗି-ଯାଇଥାଏ । ତେଣେ ଅନଙ୍ଗ ବିକ୍ରମର ଯୁଦ୍ଧକାଳୀନ ଗର୍ଜନଶୀଳ ସ୍ୱର-ରସର ଧମକାଣୀ ବାକ୍ୟାଂଶମାନ ମୋ କାନରେ ପଡ଼ୁଥାଏ···ଆଲୋ ପାପିଷ୍ଠା ! ଏବେ ତୋର ଇଷ୍ଟ ସ୍ମରଣ କର—ଇତ୍ୟାଦି ଇତ୍ୟାଦି······ ସଭାଜନେ ଘନଘନ କରତାଳି ଦ୍ୱାରା ଅନଙ୍ଗ ବିକ୍ରମକୁ ଉତ୍ସାହିତ କରୁଥାନ୍ତି । ଯୁଦ୍ଧ ବାଜା ଖୁବ୍ ଜୋର୍‌ରେ ବାଜୁଥାଏ । ମଝେ ମଝେ ରାକ୍ଷସୀର ହୁଙ୍କାର ଓ ମଝେ ମଝେ ରଜାପୁଅର ହୁଙ୍କାର ଓ ଧମକାଣି ଶୁଭୁଥାଏ । ମାୟାଧର ଉନ୍ମତ୍ତ ହୋଇ ଦେଖୁଥାଏ । ମୁଁ କିନ୍ତୁ ବ୍ୟର୍ଥ ମନୋରଥ ହୋଇ ତଳକୁ ମୁହଁ ପୋତି ଆଖି ବୁଜି ବସିଥାଏ । ଆଉ କୁଆଡ଼କୁ ଦୃଷ୍ଟି ନ ଥାଏ । ଅତଃପର ଘଟଣାମାନ ମୋତେ ଜଣା । ଅନଙ୍ଗ ବିକ୍ରମ ନିଶ୍ଚୟ ରାକ୍ଷସୀକୁ ବଧ କରିବ । ଏହା ପ୍ରାୟ ସବୁ ଯାତ୍ରାରେ ଘଟିଥାଏ । କିନ୍ତୁ ତା'ପରେ ? ରାକ୍ଷସୀ ମଲାପରେ ? ଓଃ ! ତା'ପରେ ? ମୁଁ ଜାଣେ · ମୁଁ ଜାଣେ···ଓଃ ! ନା—ନା ମୋର ଆଉ କିଛି ଦେଖିବାର ନାହିଁ, ଆଉ କିଛି ଶୁଣିବାର ନାହିଁ—ଆଉ କିଛି ବୁଝିବାର ନାହିଁ—ମୋର ଆଶା-ବୃକ୍ଷ ଉପୁଡ଼ି ପଡ଼ୁଛି—ମୋର ଆଶା-ଫୁଲ ଝଡ଼ି ପଡ଼ୁଛି । ···ହେଇ

ତେଣେ ଘନ ଘନ କରତାଳରେ ଓ ଦର୍ଶକମାନଙ୍କ ଉଲ୍ଲାସ ଧ୍ୱନିରେ ଯାତ୍ରାସ୍ଥଳୀ କମ୍ପି ଉଠୁଛି ଏବଂ ତା'ର ଭିତରେ ଗୋଟାଏ ବଳଦର ଗାଁ ଗାଁ ଶବ୍ଦ ମଧ୍ୟ ଶୁଣାଯାଉଛି—ହେଇ ହେଇ ମଲା ମଲା—ସଣ୍ଢୀ ଅସୁରୁଣୀ କେମିତି ଦାନ୍ତ ନିକୁଟି ଜଭ କାଢ଼ି ପଡ଼ିଛି ଦେଖରେ !! ମାୟାଧର ଉନ୍ମତ୍ତ ହୋଇ ଚାଲିଥାଏ ।..."ଜୟ ଅନଙ୍ଗ ବହ୍ମଙ୍କର ଜୟ" ବୋଲି ରାଜପୁରର ସେନାବାହିନୀ ଚାଲିଥାନ୍ତି ।...ଇତି ମଧ୍ୟରେ ଯୁଦ୍ଧବାଜା ବନ୍ଦ ହୋଇ ଗୋଟାଏ ବାହାଘରିଆ ବାଜା ବାଜିବା ଆରମ୍ଭ ହୋଇ ଯାଇଥାଏ । ରାଜାଝିଅର କୋକିଳ କଣ୍ଠରୁ କ'ଣ ସବୁ ବଚନିକା ଝରି ପଡ଼ୁଥାଏ । ମୁଁ ଆଣ୍ଠୁକୁ କୁଣ୍ଢାଇ ଧରି ଆଖିବୁଜି ତଳେ ବସିଥାଏ । ମାୟାଧର ହଠାତ୍ ତାଳମାରି ନାଚି ନାଚି ଆନନ୍ଦରେ କୁହୁଳି ଉଠିଲା— ଏବଂ ତଳେ ବସିପଡ଼ି ମୋତେ କୁଣ୍ଢାଇ ଧରି ହସି ହସି ମତେ ତଳେ ଗଡ଼େଇ ଦେଲା—ନୀଳମଣି ଦେଖ୍ ଦେଖ୍—କାଞ୍ଚନବାଳା କେମିତି ଅନଙ୍ଗ ବହ୍ମ ଗଳାରେ ବରଣମାଳା ଲମ୍ବାଇ ଦେଉଛି—ଦେଖ୍ ଦେଖ୍—ଅନଙ୍ଗ ବହ୍ମ କେମିତି ତାକୁ କୁଣ୍ଢାଇ ଧରିଛି—ଦେଖ୍ରେ...

ମୁଁ କଇଁ କଇଁ ହୋଇ କାନ୍ଦି ଉଠିଲି । ମୋତେ ଲାଗିଲା—ମୋର ସମସ୍ତ ଜୀବନ ଶୂନ୍ୟ ହୋଇଗଲା—ଆଉ ଏ ବୃଥା ଜୀବନ ରଖି କିଛି ଲାଭ ନାହିଁ— ! ତା'ଛଡ଼ା ହାମ ପ୍ରୋଫେସର ଏବଂ ନସୀର ମିଆଁ ମୋ ପ୍ରତି ଯେଉଁ ଅନ୍ୟାୟ କଲେ— ତା'ର ବିଚାର କିଏ କଲେ ନାହିଁ ଅଥଚ ଅନଙ୍ଗ ବହ୍ମଙ୍କୁ ସେମାନେ ରାକ୍ଷସୀ ସଙ୍ଗେ ଯୁଦ୍ଧ କରିବାକୁ କେମିତି ଅନାୟାସରେ ଛାଡ଼ିଦେଲେ ? କ'ଣ ରାଜାପୁଅ ବୋଲି ତା' ପ୍ରତି ଏଇ ପକ୍ଷପାତ ? ଉଃ ! ନାଃ—ଆଉ ଏ ଜୀବନ ରଖିବାରେ କିଛି ଲାଭ ନାହିଁ !...ମୋ କାନ୍ଦିବା ଦେଖି ମାୟାଧର ମତେ ପଚାରିଲା—କିରେ ତୁ କାନ୍ଦୁଛୁ କାହିଁକି ? ମୁଁ ତାକୁ କିଛି ଉତ୍ତର ଦେଲି ନାହିଁ । କାରଣ ମତେ ସେତେବେଳେ ଲାଗୁଥିଲା ମାୟାଧର ମଧ୍ୟ ମୋ ପକ୍ଷର ଲୋକ ନୁହଁ—ସେ ହେଉଛି ଅନ୍ୟ-ମାନଙ୍କ ଭଳି ରାଜପୁତ୍ର ଅନଙ୍ଗ ବହ୍ମ ପକ୍ଷର ଲୋକ । ମୋର ଏ ସଭାସ୍ଥଳୀରେ କେହି ହୋଇ କେହି ନାହାଁ । ମୁଁ ସମ୍ପୂର୍ଣ୍ଣ ଏକୁଟିଆ ଓ ବ୍ୟର୍ଥମନୋରଥ ଅସହାୟ ପିଲାଟିଏ ।......

ସେ ଦିନର କଥା ଆଜି କେବେ ମନେ ପଡ଼ିଲେ—ମୁଁ ବଡ଼ କରୁଣ ସ୍ନେହାର୍ଦ୍ର କଣ୍ଠରେ ମୋର ସେହି ପିଲାଦିନର ସତ୍ତାକୁ ଆଉଁସି ଆଉଁସି ପଚାରେ—ହଇରେ ପିଲା ! ଗେଣ୍ଡା ବାଙ୍ଗୁରା ହତଭାଗ୍ୟ ! ତୋର ସେଇ ଗ୍ରେଟିଆ ଘଟଣାରେ ତୁ କେଡ଼େ ବଡ଼ ଆଶା ପୋଷିଥିଲୁରେ !

ଏବଂ ସାଙ୍ଗେ ସାଙ୍ଗେ ମୋ ପିଲାଦିନର ସତ୍ତା ମୋତେ ଉତ୍ତର ଦିଏ—ସାବଧାନ ! ମୋର ବ୍ୟର୍ଥତା ଦେଖି ମତେ ଦୟା କର ନାହିଁ । ତୁମେ ମୋଠାରୁ ବଡ଼ ହୋଇପାର—କିନ୍ତୁ ବ୍ୟର୍ଥତା ଉପରେ ରାଜକୁମାରୀ ପାଇବାର ଆଶା କି ଉଦ୍ୟମ ତୁମେ କରି ପାରନାହିଁ । ତୁମେ କପରି ବୁଝିବ ଯେ ସେତେବେଳେ ଏଇ ବ୍ୟର୍ଥତା ହିଁ ମୋତେ ପୂର୍ଣ୍ଣକରି ରଖିଥିଲା ? ଆଉ ଏଇ ବ୍ୟର୍ଥତାର ଅଭାବରେ ତୁମେ ବର୍ତ୍ତମାନ କେତେ ଶୂନ୍ୟ !! ମୁଁ ବରଂ ତୁମକୁ ଦୟା କରୁଛି ।



# ଉଦ୍ଧ ବେହେରା କାଳେସୀ, ମୁଁ ଓ ପେଙ୍ଗା ଉଚ୍ଛୁବା ସମ୍ବାଦ

ପିଲାଦିନେ ଆମର ଗ୍ରାମ୍ୟଜୀବନ ଥିଲା ବହୁ ରହସ୍ୟ ରୋମାଞ୍ଚରେ ପରିପୂର୍ଣ୍ଣ । ବିଭିନ୍ନ ଦେବଦେବୀ, ଯକ୍ଷ, ରକ୍ଷ, ଗନ୍ଧର୍ବ, କିନ୍ନର, ମୁନି ଋଷି, ଭୂତ ପ୍ରେତ ପ୍ରଭୃତିଙ୍କୁ ନେଇ ବହୁ ରହସ୍ୟପୂର୍ଣ୍ଣ କଥା ତ ଆମେ ଶୁଣୁଥିଲୁ —ତା' ଛଡ଼ା ମଧ୍ୟ ଆମ ଆଖି ଆଗରେ ଘଟିଥିବା ବହୁ ବିଚିତ୍ର ମଣିଷଙ୍କର ବିଚିତ୍ର ଦୁର୍ବୋଧ ଜୀବନଲୀଳା ଆମ ମନ ଭିତରେ ନାନା ବୋଧାବୋଧ ରହସ୍ୟର କଦାଚିତ୍ ପ୍ରୀତିପ୍ରଦ ବା କଦାଚିତ୍ ଭୀତିପ୍ରଦ ଅନୁଭୂତି ସଞ୍ଚାର କରୁଥିଲା ଏବଂ ମୋର ବହୁ ବାଲ୍ୟବନ୍ଧୁଙ୍କଠାରୁ ମୁଁ ଏହି ଦିଗରେ ଭିନ୍ନଥିଲି ଯେ, ସେମାନେ କେବଳ ସେହି ସବୁ ରହସ୍ୟାବୃତ ଘଟଣା ବା ଚରିତ୍ରଗୁଡ଼ିକୁ ଚର୍ମ ଆଖିରେ ଦେଖୁଥିଲେ ଏବଂ ସେଗୁଡ଼ିକ ସେମାନଙ୍କୁ କେବଳ କୌତୂହଳପ୍ରଦ ଖେଳ ସାମଗ୍ରୀ ଭଳି ମନେ ହେଉଥିଲା । ଆଜି ମଧ୍ୟ ସେମାନେ ସେହିସବୁ ରହସ୍ୟପୂର୍ଣ୍ଣ ଘଟଣା ଓ ଚରିତ୍ରଗୁଡ଼ିକଠାରୁ ସବୁବେଳେ ନିରାପଦ ଦୂରତାରେ ରହୁଥିଲେ ।

କିନ୍ତୁ ମୋର ଧାତୁ ଥିଲା ସ୍ୱତନ୍ତ୍ର । ମୋ ସତ୍ତାର ସଙ୍ଗଠନ ମଧ୍ୟ ଥିଲା ଅନ୍ୟ ପ୍ରକାର । ଯେ କୌଣସି ରହସ୍ୟପୂର୍ଣ୍ଣ ଘଟଣା ବା ଚରିତ୍ର

ମତେ ଏତେଦୂର ଆକର୍ଷଣ କରେ ଯେ ମୁଁ ସେ ସବୁଠାରୁ ଆଦୌ ଦୂରେଇ ରହିପାରେ ନାହିଁ । ଅଙ୍ଗାଙ୍ଗୀ ଭାବେ ମିଶିଯାଏ । ତା' ଭିତରକୁ ସାହସର ସହିତ ପଶିଯାଏ । ମୋ ଭିତରର କୌତୂହଳ ଅନ୍ୟମାନଙ୍କ କୌତୂହଳ ଭଳି କେବଳ ବିଷୟଟିକୁ ବୁଦ୍ଧିଦ୍ୱାରା ଜାଣିପିବାରେ ତୁଷ୍ଟ ହୁଏ ନାହିଁ । ସବୁ କଥାକୁ ମୁଁ ମୋ ନିଜ ଦେହରେ ନ ଭେଟଦେଇବା ଯାଏ ମୋର ଶାନ୍ତି ନ ଥାଏ । ବିଶେଷତଃ ଅପ୍ରାକୃତିକ ଓ ଅସାଧାରଣ ଚରିତ୍ରଗୁଡ଼ିକ ଏବଂ ତତ୍‌ସଂଲଗ୍ନ ଘଟଣାଗୁଡ଼ିକର ଆବେଦନ ମୋ ନିକଟରେ ଖୁବ୍ ତୀବ୍ର ଓ ଗମ୍ଭୀର ହୋଇଉଠେ । ବାବାଜୀ, ତାନ୍ତ୍ରିକ, ଗୁଣିଆ, ପ୍ରେତଗ୍ରସ୍ତ ସ୍ତ୍ରୀ ପୁରୁଷ, କାଳେସୀ, କେଳା, ଇନ୍ଦ୍ରଜାଲିକ, ଭକ୍ତ ଓ ପ୍ରେମରେ ପଡ଼ିଥିବା ଲୋକମାନଙ୍କ ସଙ୍ଗେ ମିଶିବାକୁ ମତେ ସେହି ପିଲାଦିନୁଁ ଖୁବ୍ ଭଲ ଲାଗେ । ସେହିପରି ମଧ୍ୟ ସଙ୍ଗୀତଜ୍ଞ, ନାଟବାଲା, ଯୋଗୀ, ଦରବେଶ୍ ଓ ଫକୀରମାନଙ୍କ ସହିତ ଚେଲା ସୂତ୍ରରେ ସାଙ୍ଗହେବା ମୋର ସେହି ପିଲାଦିନୁ ଅଭ୍ୟାସ ।······

ମୁଁ ବର୍ତ୍ତମାନ ଯୋଉ ଚରିତ୍ର ଏବଂ ଘଟଣାଟି ବର୍ଣ୍ଣନା କରିବାକୁ ଯାଉଛି—ତାହା ଆଜକୁ ପ୍ରାୟ ପଇଁତିରିଶି ବର୍ଷ ତଳର ଆମ ଗାଁର କଥା । ସେତେବେଳେ ମୁଁ ଓ ମୋର ଘନିଷ୍ଠ ବାଲ୍ୟବନ୍ଧୁ ମାୟାଧର ଆମ ଗାଁ ପ୍ରାଥମିକ ବିଦ୍ୟାଳୟରେ ପଢ଼ୁଥିଲୁ । ସେ ବିଦ୍ୟାଳୟଟି ଆମ ଘରଠାରୁ ପ୍ରାୟ ଏକ ମାଇଲ ଦୂରରେ । ବିଦ୍ୟାଳୟରେ ଥିବା ସମୟ-ତକ ଛାଡ଼ିଦେଲେ ମୋର ପାଠପଢ଼ା ବା ବହିପତ୍ର ସଙ୍ଗେ ଆଦୌ ସମ୍ପର୍କ ନ ଥିଲା । ମୋର ସାଙ୍ଗମାନଙ୍କୁ ଧରି ମୁଁ ଗାଁର ଓ ଗାଁ ପାଖର ତୋଟା, ବଣ, ନଈ, ପଡ଼ିଆ, ଗହୀର ସବୁଆଡ଼େ ଖେଦୁଥିଲି । ତା' ଛଡ଼ା ବି, ଆମ ଗାଁ ଓ ତା'ର ଆଖପାଖରେ ପ୍ରାଚୀ କୂଳଯାକ ଅସଂଖ୍ୟ ମଠ, ମନ୍ଦିର, ଗାଦି, ମଣ୍ଡପାଦି ଥିଲା । ଅସଂଖ୍ୟ ଭଗ୍ନ ମନ୍ଦିର ଓ ମୂର୍ତ୍ତିମାନ ଏଠି ସେଠି ପଡ଼ିଥିଲେ । ଆଜି ମଧ୍ୟ ପଠାଣ ବସ୍ତି ଭିତରେ ଓ ରାସ୍ତା ଆରପଟେ ବହୁ ପୀରସ୍ଥାନ (କୌଣସି ମୁସଲମାନ ମହାପୁରୁଷଙ୍କ ସମାଧି) ଓ ମସଜିଦ୍ ପ୍ରଭୃତି ବି ଥିଲା । ଆମେ ବହୁବେଳେ ସେ ସବୁ ଜାଗାକୁ ଯାଇ ବହୁକଥା ଉଣ୍ଡୁଥିଲୁ ଏବଂ ମୋର ରହସ୍ୟବାଦୀ ଶରୀରକୁ ମୋ ପାଇଁ ସବୁ ଜାଗାରେ

କୌଣସି ନା କୌଣସି ରହସ୍ୟମୟ ବିଚିତ୍ର ଘଟଣା ବା ଚରିତ୍ର ବା ଦୃଶ୍ୟ ଲୁଚି ରହିଥାଏ । ମୋର ଘନିଷ୍ଠତମ ବନ୍ଧୁ ମାୟାଧର ବହୁ ବିଷୟରେ ନିଶ୍ଚୟ ମୋ ଠାରୁ ବିଜ୍ଞ ଥିଲା । ମାତ୍ର ଭାବଜଗତରେ କୌଣସି ସତ୍ତା ପିଛୁ ଆମେ ଲାଗିଲାବେଳେ, ମାୟାଧର ଶେଷ ପର୍ଯ୍ୟନ୍ତ ମୋ ସାଙ୍ଗରେ ଚାଲ ଦେଇ ପାରୁ ନ ଥିଲା । ଶେଷ ସୋପାନର ପୂର୍ବ ପାହାଚରେ ଠିଆ ହୋଇ ସେ ଭାବେ ଯେ ସେଇଠି ସେ ରହସ୍ୟର ବାସ୍ତବ ରୂପ ଦେଖି ସାରିଲାଣି । ଆଉ ଉପରକୁ ଗଲେ ବୃଥା ମୁଣ୍ଡ ବୁଲେଇବ । ଅଗତ୍ୟା ମୁଁ ମାୟାଧରକୁ ସେଠି ଛାଡ଼ି ଏକୁଟିଆ ଉପରକୁ ଉଠିଯାଏ ଏବଂ ସେଠାରେ ରହସ୍ୟ ଓ ମୁଁ ଏକୀଭୂତ ହୋଇ ଏକ ବିଚିତ୍ର ରସବୋଧରେ ଏକୁଟିଆ ଜୁଡ଼ୁବୁଡ଼ୁ ହେଉଥାଏ । ମୋର ଆଜିମଧ୍ୟ ଧାରଣା ହେଲା ଯେ ମାୟାଧର ଭଳି ତଥାକଥିତ ବାସ୍ତବବାଦୀ ବିଜ୍ଞମନ୍ୟ ଲୋକମାନେ ଜାଣନ୍ତି ନାହିଁ ଯେ କୌଣସି ରହସ୍ୟବାଦୀ ମଧ୍ୟ ସତ୍ତାର ବାସ୍ତବ ରୂପ ଦେଖିସାରିଛି—କିନ୍ତୁ ସେତିକ ମାତ୍ର ବାସ୍ତବତା ତା'ର ବାସ୍ତବତାବୋଧ ପାଇଁ ଯଥେଷ୍ଟ ନୁହେଁ । ସେ ଆହୁରି ଗଭୀରକୁ ଯିବାକୁ ଚାହେଁ ଓ ରହସ୍ୟ-କୂପରେ ନିଜେ ବୁଡ଼ିବାକୁ ଚାହେଁ ।

ହଁ—ବର୍ତ୍ତମାନ, ଆମ ସିଦ୍ଧେଶ୍ୱର ମହାଦେବଙ୍କ କାଳେସୀ ଉଦ ବେହେରା ଓ ତା'ର ଶିଷ୍ୟ, ସେବକ, ପେଙ୍ଗା ଉଛବାଙ୍କ ରହସ୍ୟଗାଥା ଶ୍ରବଣ କରିବା ହେଉ । ଆମ ଗାଁରେ ସେତେବେଳେ ପ୍ରାୟ ପାଞ୍ଚ ଛଅ ଜଣ କାଳେସୀ ଥିଲେ ଏବଂ ସେମାନେ ଥିଲେ ବିଭିନ୍ନ ଦେବଦେବୀଙ୍କ କାଳେସୀ—ଯେଉଁମାନେ ସେତେବେଳେ ଖୁବ୍ ପ୍ରତ୍ୟକ୍ଷ ଥିଲେ ଏବଂ ଯେଉଁମାନଙ୍କର ମହିମା ଖୁବ୍ ପ୍ରବଳ ଥିଲା—ଏବଂ ଯେଉଁମାନେ ଗ୍ରାମର ଦୁଃଖ ସୁଖ, ହାନିଲାଭ, ପାପପୁଣ୍ୟ ସଙ୍ଗେ ଖୁବ୍ ସକ୍ରିୟ ଭାବେ ଜଡ଼ିତ ଥିଲେ । ଗାଁରେ ହଇଜା, ବସନ୍ତ କି ହାଡ଼ଫୁଟି ଆଦି ହେଲେ କୁଟାମ ଚଣ୍ଡୀଙ୍କ କାଳେସୀ ଅଙ୍କୁରି ଭୋଇ ଦେହରେ କୁଟାମ ଚଣ୍ଡୀ ପ୍ରବେଶ କରନ୍ତି ଓ ସେତେବେଳେ ଠାକୁରାଣୀଙ୍କ ପାଖରେ ପୂଜା, ମାନସିକ, ଜନ୍ତାଳ ଆଦିର ମାତ୍ରା ଖୁବ୍ ବଢ଼ିଯାଏ ।

ସେହିଭଳି ଆମ ଗାଁର ଅନ୍ୟତମ ମହାଦେବ ଗୋକର୍ଣ୍ଣେଶ୍ୱରଙ୍କ କାଳେସୀ । ମଧ୍ୟେ ମଧ୍ୟେ ଗୋକର୍ଣ୍ଣେଶ୍ୱରଙ୍କ ଜଣେ ବଡ଼ୁ ପୂଜକ ଆଉ

ମହାପାତ୍ରଙ୍କ ଉପରେ ଗୋକର୍ଣ୍ଣେଶ୍ୱର ଘର ହୁଅନ୍ତି ଓ ଶହେ ଏକ ମାଠିଆ ଦୁଧରେ ଗୋକର୍ଣ୍ଣେଶ୍ୱରଙ୍କୁ ଅଭିଷେକ କରି ମହୋତ୍ସବ କରିବା ଲାଗି ଗ୍ରାମବାସୀଙ୍କୁ ଆଦେଶ ଦିଅନ୍ତି । ତାଙ୍କର ଆଜ୍ଞା—ସମ୍ପୂର୍ଣ୍ଣଭାବେ ପାଳିତ ହୁଏ । ଏମାନଙ୍କ ବ୍ୟତୀତ ପଣାସନ୍ଧାନ୍ତି ଦିନ ବାଉରୀ ସାହି-ମାନଙ୍କରେ ବହୁ କାଳେସୀଙ୍କର ଆବିର୍ଭାବ ହୁଏ କିନ୍ତୁ ସେମାନେ ଗ୍ରାମର ଆବ୍ରାହ୍ମଣ ଚଣ୍ଡାଳ ସବୁ ବର୍ଣ୍ଣର ଲୋକଙ୍କ ଉପରେ କିଛି ପ୍ରଭାବ ବା ଅଧିକାର ବିସ୍ତାର କରିପାରନ୍ତି ନାହିଁ ।

କିନ୍ତୁ ଆମ ଗାଁର ବୈଷ୍ଣବ ପ୍ରବର କୃଷ୍ଣ-ଭାବଭୋଳ ଭାଇଗୀ ମିଶ୍ରଙ୍କ ଭିତରେ ଥରେ ଥରେ ନଗର ସଙ୍କୀର୍ତ୍ତନ ବେଳେ ଯେତେବେଳେ ମହାଭାବମୟୀ ରାଧାରାଣୀ ଅବତରନ୍ତି, ସେତେବେଳର ଦୃଶ୍ୟ ସତକୁ ସତ ଅତ୍ୟନ୍ତ ହୃଦୟସ୍ପର୍ଶୀ । ଭାଇଗୀ ମିଶ୍ରେ ବୈଷ୍ଣବଙ୍କ ଚେହେରା, ବର୍ତ୍ତମାନ ବି ମୋ ଆଖି ଆଗରେ ସ୍ପଷ୍ଟ ହୋଇ ଦିଶି ଉଠୁଛି । ମୁଁ ଏମ୍. ଏ. ପଢ଼ିବା ବେଳକୁ ସେ ଖୁବ୍ ବୃଦ୍ଧ ହୋଇ ଅତ୍ୟନ୍ତ ଶୋଚନୀୟ ଭାବେ ପ୍ରାଣ-ତ୍ୟାଗ କରିଥିଲେ । ଖୁବ୍ ସୁନ୍ଦର ଆକୃତି । ସିଧା ଡେଙ୍ଗା ସୁଗଠିତ ବପୁ । ସମ୍ପୂର୍ଣ୍ଣ ଗୋରା ଦେହର ରଙ୍ଗ । ମୁଣ୍ଡରେ କୁଞ୍ଚିତ ଘନକୃଷ୍ଣ ବାବୁରି ବାଳ । ସ୍ତ୍ରୀ ଲୋକଙ୍କ ପରି ଦୁଇପଟକୁ ଚିକ୍କଣ କରି କୁଣ୍ଡାଇଥାନ୍ତି । ଆଖିରେ କଜଳ, ମଥାରେ ସିନ୍ଦୂର ଟୋପା—ଚନ୍ଦନପାଣ୍ଟି । ଦୁଇ ମଣିବନ୍ଧରେ ଛୋଟ ରୁଦ୍ରାକ୍ଷମାଳା । ଗଳାରେ ତୁଳସୀ ମାଳ । ବାମ ବାହୁରେ ମଧ୍ୟ ରୁଦ୍ରାକ୍ଷମାଳା । ଗୋଟିଏ ଗେରୁଆ ଶାଢ଼ୀ ସେ ସ୍ତ୍ରୀ ଲୋକଙ୍କ ପରି ବେହରଣ କରି ପିନ୍ଧିଥାନ୍ତି । ଆଖିର ଚାହାଣୀରୁ ଓ ଅଧରର ହସରୁ ମାଧୁର୍ଯ୍ୟ ଝରି ପଡ଼ୁଥାଏ । ମୁହଁକୁ ଦେଖିଲେ ମନେହେବ—ସତକୁ ସତ ସେ କାହାପାଇଁ ଦିନ ରାତି ଝୁରି ହେଉଛନ୍ତି । ଦିନେ ଦିନେ କାର୍ତ୍ତିକ ପୂର୍ଣ୍ଣିମା ପରି ରାତିରେ ଆମ ଗାଁରେ ନଗର ସଙ୍କୀର୍ତ୍ତନ ବାହାରେ । ପାଞ୍ଚହଳ ଝାଞ୍ଜ, ପାଞ୍ଚହଳ ଗିନି ଓ ଗୁରେଟି ଦକ୍ଷିଣୀ ମୃଦଙ୍ଗ ଶବ୍ଦରେ ଗାଁ-ଦାଣ୍ଡ ଉଚ୍ଛୁଳ ଉଠେ । ସେମାନେ ରାଧାଙ୍କର କୃଷ୍ଣ-ବିଚ୍ଛେଦ-ବେଦନା ସମ୍ବଳିତ ଗୋଟିଏ କୀର୍ତ୍ତନ ଗାଇ ଗାଇ ରହି ରହି ଚାଲୁଥାନ୍ତି । ଭାଇଗୀ ମିଶ୍ରେ ଓ ଈଶର ବାରିକ ବୁଢ଼ା ଦୁହେଁଯାକ ବେକରେ ଫୁଲମାଳ ପକାଇ

କୀର୍ତ୍ତିମାୟୀଙ୍କ ମଝିରେ ଉପରକୁ ଦୁଇହାତ ଟେକି ନାଚି ନାଚି ଗାଇ ଗାଇ ବୁଲୁଥାନ୍ତି । ହଠାତ୍ କ'ଣ ହୁଏ କେଜାଣି, ଭାଇଗୀ ମିଶ୍ରେ ଉଚ୍ଚକଣ୍ଠ କଣ୍ଠରେ ଗୋଟାଏ ହୁଁକାର ଛାଡ଼ନ୍ତି । ତା'ପରେ "ହା କୃଷ୍ଣ, ହା କୃଷ୍ଣ, ହା' ରାଧା ରାଣିଶ୍ୱେର" ବୋଲି ପାଟିକରି ଉଠନ୍ତି ଏବଂ ତାଙ୍କର ହୃଦୟରେ ବାରମ୍ବାର କରାଘାତ କରୁ କରୁ କାତର ଭାବେ କାନ୍ଦି କାନ୍ଦି ହଠାତ୍ ତଳେ କଚାଡ଼ି ପଡ଼ନ୍ତି ଓ ମୂର୍ଚ୍ଛିତ ହୋଇଯାନ୍ତି । ତାଙ୍କର କପାଳରେ ଗୋଡ଼ାଟିଏ ବାଜି ରକ୍ତ ବହିଯାଏ । ତାଙ୍କୁ ସେପରି ଭାବେ ପଡ଼ିଯିବାର ଦେଖି ଷାଠିଏ ବର୍ଷର ବୁଢ଼ା ପରମ ଭାଗବତ ଈଶର ବାରିକ ଦୁଇହାତ ମେଲେଇ ପାଟିକରି କାନ୍ଦଉଠେ—"ହା ରାଧା ! ହା' ବୃନ୍ଦାବନେଶ୍ୱରୀ ! ହା' କୃଷ୍ଣ ବଲ୍ଲଭୀ" । ତା' ପରେ ସେ ମଧ୍ୟ ସେମିତି ମୂର୍ଚ୍ଛିତ ହୋଇ ବାଣ୍ଡରେ ପଡ଼ିଯାଏ । ମୋ ସାଙ୍ଗ ମାୟାଧର ମତେ ବୁଝାଇ ଦିଏ ଯେ ଭାଇଗୀ ମିଶ୍ରଙ୍କ ଭିତରେ ଯେତେବେଳେ ରାଧାରାଣୀ ପ୍ରବେଶ କରନ୍ତି—ଠିକ୍ ସେତିକିବେଳେ ଈଶର ବାରିକଙ୍କ ଭିତରେ ତାଙ୍କର ସଖୀ ଲଳିତା, କି ବିଶାଖା ପ୍ରବେଶ କରିଯାନ୍ତି । ସେ ଦୁହେଁ ଗୁରୁଶିଷ୍ୟ । ପାଞ୍ଚୋଟି ଭେଣ୍ଡିଆ ପୁଅ ଓ ଦୁଇଟି ବିବାହିତା ଯୁବତୀ ଝିଅଙ୍କ ବାପ ଈଶର ବାରିକ ସର୍ବଦା ନିଜକୁ ରାଧା ଠାକୁରାଣୀଙ୍କ ଦାସୀ ବୋଲି କହନ୍ତି ।

ସେମାନଙ୍କୁ ସେହିପରି ଅଧଘଣ୍ଟାଏ କାଳ ଗୋଡ଼ ହାତ ଖସରା ପୂର୍ଣ୍ଣ ବାଣ୍ଡ ମାଟିରେ ମୂର୍ଚ୍ଛିତା ହୋଇ ପଡ଼ିଥିବା ଅବସ୍ଥାରେ କେହି ଉଠାନ୍ତି ନାହିଁ ବା ସେମାନଙ୍କ ମୁହଁରେ ପାଣି ଛିଟାଛିଟି କରନ୍ତି ନାହିଁ ବା ସ୍ପର୍ଶ ମଧ୍ୟ କରନ୍ତି ନାହିଁ । କେବଳ ଖୁବ୍ ଜୋରରେ ଝାଞ୍ଜ ମୃଦଙ୍ଗ ବଜାଇ ସେମାନଙ୍କ ଚତୁଃପାର୍ଶ୍ୱରେ ବୃତ୍ତାକାରରେ ପ୍ରଦକ୍ଷିଣ କରୁ କରୁ ସମବେତ କଣ୍ଠରେ ଖୁବ୍ ଉଚ୍ଚ ଗଳାରେ ବାଣ୍ଡ କମ୍ପାଇ ଗାଇ ବୁଲନ୍ତି—

"ଗୋବିନ୍ଦ ଜୟ ଜୟ ଗୋପାଳ ଜୟ ଜୟ,
ରାଧାରମଣ ହରି ଗୋବିନ୍ଦ ଜୟ ଜୟ ।"

ବାଣ୍ଡରେ ଉଭୟ ପାର୍ଶ୍ୱରେ ଦୀପ ହସ୍ତରେ ଦଣ୍ଡାୟମାନା ପଲ୍ଲୀ-ରମଣୀମାନେ ହୁଳହୁଳି ପକାଉଥାନ୍ତି ଏବଂ ଘନ ଘନ ହରିବୋଲ ଶବ୍ଦରେ

ଗାଁ ଦାଣ୍ଡ କମ୍ପିଉଠେ । ଏମିତି କିଛି ସମୟ ଗ୍ଲଲିବା ପରେ ପ୍ରଥମେ ଭାଇଗୀ ମିଶ୍ରେ ଆଖି ମେଲି ଗୃହାନ୍ତି ଓ "କୃଷ୍ଣକୃଷ୍ଣ" ବୋଲି ଚିତ୍କାର କରି ହଠାତ୍ ଉଠି ପଡ଼ନ୍ତି । ତାଙ୍କ ପରେ ପରେ ଈଶରା ବାରିକଙ୍କର ମଧ୍ୟ ସଂଜ୍ଞା ଫେରି ଆସେ ଏବଂ ସେ ଭାଇଗୀ ମିଶ୍ରଙ୍କ ପାଦ ଧରି କାନ୍ଦି କାନ୍ଦି କହନ୍ତି—ହା' ରାଧା ! ସେ ଶଠ ଶିରୋମଣି ଲାଗି ଏ ଲବଣୀ ପିତୁଳା ଦେହକୁ କି କଷ୍ଟ ଦେଲୁଣି !

ମାସ୍ଥାଧର ସହିତ ମୁଁ ସେମାନଙ୍କୁ ଦେଖୁଥାଏ । ମୋର ହୃଦୟରେ ମଧ୍ୟ କ'ଣ ସବୁ ଅବୋଧ କାରୁଣ୍ୟର ତରଙ୍ଗ ଉଠୁଥାଏ । ସେ ଦୁହିଁଙ୍କର ମୂର୍ତ୍ତିମାନ ଅତି କରୁଣ ଦିଶୁଥାଏ । ସେମାନଙ୍କର ସେହି ସ୍ୱପ୍ନାଛନ ଭାବାବସ୍ଥା ଗୃହାଣୀ ଭିତରେ ପ୍ରକାଶ ପାଉଥାଏ ଯୁଗ ଯୁଗାନ୍ତର ଗହନ ରହସ୍ୟଭରା ବିଚ୍ଛେଦ ବେଦନା । ସେ ସବୁ ମୋର ଚିତ୍ତ ଭିତରେ ହେଇଥିବନୁ ପଶିଯାଇଛି ଏବଂ ଆଜି ମଧ୍ୟ ମୋର କଲମର ସେ ସାଧ୍ୟ ନାହିଁ—ସେଇ ସବୁ କଥାକୁ ସେହିଭଳି ସ୍ୱପ୍ନମୟ ଭାଷା ଶୈଳୀରେ ପ୍ରକାଶ କରିପାରିବ ।

ଏହାବ୍ୟତୀତ ପୁଣି ଆମ ଗାଁର ବିଖ୍ୟାତ ଚଇତି ଘୋଡ଼ା ଦଳର ଘୋଡ଼ା ନଚେଇ ପବନ ବେହେରାଙ୍କୁ ଥରେ ଥରେ ଚଇତି ମାସରେ ରାତିରେ ଘୋଡ଼ାନାଚ ଗ୍ଲଲିଥିବା ବେଳେ ବାସୁଳୀ ଲାଗନ୍ତି । ଆମେ ତାଙ୍କୁ କହୁଥିଲୁ ଘୋଡ଼ା-କାଳେସୀ । ପବନ ବେହେରା ବେଶ ସୁସ୍ଥ ଆଉ କୁନ୍ଦାକୁନ୍ଦ ହୋଇ ବସ୍ଥିବ ମଣିଷଟିଏ । ଚୂଡ଼ାକୁଟା, ଚୂଡ଼ା ହୁଡ଼ୁମ ବିକା, ଜାଲବୁଣା, ମାଛଧରା ଇତ୍ୟାଦି କାମରେ ଖୁବ୍ ଧୂରନ୍ଧର । ସେତେବେଳେ ତାଙ୍କୁ ଦେଖିଲେ କେହି ବିଶ୍ୱାସ କରିବ ନାହିଁ ଯେ ଏଇ ଲୋକକୁ ପୁଣି ଗୋଟାଏ ଗୋଟାଏ ବେଳାରେ ବିଶେଷତଃ ରାତି ସେତେବେଳେ ପ୍ରଗାଢ଼ ହୁଏ—ଆଉ ସମୁଦ୍ର ଆଡ଼ୁ ହୁହୁ ହୋଇ ସାମୁଦ୍ରିକ ପବନ ମତୁଆଲି ହୋଇ ବହି ଆସି ନଡ଼ିଆ ଆଉ ତାଳଗଛମାନଙ୍କୁ ଝାଙ୍କିଝୁଙ୍କି ପକାଏ—ବରି ଏବଂ ଅଶ୍ୱତ୍ଥ ଗଛର ପତ୍ରମାନଙ୍କ ଭିତରେ ହାଲହୋଳ ପଡ଼ିଯାଏ, ସେତେବେଳେ ସେଇ ଲୋକକୁ କ'ଣ ନାଇଁ କ'ଣ ସବୁ ଦୃଶ୍ୟ ହୋଇଯାଏ । କ'ଣ ନାଇଁ କ'ଣ ସବୁ ଶୁଣା ପଡ଼ିଯାଏ—କିଅଣ

ନାଇଁ କ'ଣ ସବୁ ଅନୁଭବ ହୋଇପାଏ ଯେ ସେ ଘଣ୍ଟାଘଣ୍ଟା ନ ଖାଇ ନ ପିଇ ବାଇଆଙ୍କ ଭଳିଆ ଘୋଡ଼ାଟାକୁ ଧରି ଗାଁ ଦାଣ୍ଡରେ ନାଚି ଲାଗିଥାଏ ? ବେଳେ ବେଳେ ଘୋଡ଼ା ଭଳି ହିଁ ହିଁ ହୋଇ ହସିଉଠେ । ବାଜାବାଲାମାନେ ଯେତେ ତାଳ ଛିଣ୍ଡାଇଲେ ବି ସେ ଥକ୍ସି ହୁଏ ନାହିଁ ? ବରଂ ବେଶୀ ବେଶୀ ଉନ୍ମତ୍ତ ହେଉଥାଏ ?

ସେମିତି ମଧ୍ୟ ଆମ ଗାଁର ମଙ୍ଗୁଳି ସେନାପତି । ହେଇ ଚଇତି ମାସ ରାମନବମୀ ଦିନ ଗାଁରେ ରାମଲୀଳା ଚାଲିଥିବା ବେଳେ—ସେ ସାଜି-ଥାନ୍ତି ପବନ ସୁତ ରାମ-ଦାସ ହନୁମାନ । ହନୁମାନ ଭୂମିକାରେ ବେଶଭୂଷା ହୋଇ ବାହାରିଲାବେଳେ ତାଙ୍କୁ ହନୁମାନ ଲାଗିଯାନ୍ତି । ତାଙ୍କ ଭିତରେ କି ଅଦ୍ଭୁତ ଭାବ ଓ ଉନ୍ମାଦନା ଜାଗ୍ରତ ହୁଏ ଏବଂ କି ଅଦ୍ଭୁତ ବଳ ଓ ସାହସ ପ୍ରକାଶ ପାଏ ଯେ ସେ ହଠାତ୍ ହୁପ୍ ହୁପ୍ କରି ଗୋଟାଏ ତେଙ୍ଗା ନଡ଼ିଆ ଗଛରେ ଚଢ଼ିଯାଇ ଗୁଡ଼ାଏ ନଡ଼ିଆ ଖପାଖପ୍ ପାରି ତଳେ ପକାଇ—ସେହି ଗଛ ଉପରୁ କାହା ଘରର ଚାଳ ଉପରକୁ ଭୂସକିନା ଡିଆଁ ମାରନ୍ତି ଓ ଚାଳ ଉପରୁ ଆଉ ଗୋଟାଏ ଖେପା ମାରି ତଳକୁ ଆସି ଦୁଇ ଚାରିଟା ନଡ଼ିଆ ଦାନ୍ତରେ ଛଡ଼ାଇ—ମଡ଼୍‌ମାଡ଼୍ ଭାଙ୍ଗି ଚୋବେଇ ଚାଲନ୍ତି ? ଏବଂ ଏଣେ ଦେଖଣାହାରିଏ ହରିବୋଲ ଶବ୍ଦରେ ଦାଣ୍ଡକୁ ପକାଉଥାନ୍ତି ଉଠାଉଥାନ୍ତି । ମୋର ତ ମନେହୁଏ, ମୁଁ ଯଦି ପିଲାଦିନୁଁ ଭାଇଗାଁ ମିଶ୍ରେ ବୈଷ୍ଣବ, ଈଶାଣ ବାରିକ ଆଉ ମଙ୍ଗୁଳି ସେନାପତି ପ୍ରଭୃତିଙ୍କୁ ସେହି ଭାବରେ ଦେଖି ନ ଥାନ୍ତି, ତେବେ ଆଜି କୃଷ୍ଣ, ରାଧା, ରାମ, ହନୁମାନ ପ୍ରଭୃତି ଦେବ ଚରିତମାନଙ୍କୁ ଏତିକି ଦୂର ବୁଝିପାରି ନ ଥାନ୍ତି—କି ବିଶ୍ୱାସ ମଧ୍ୟ କରିପାରି ନ ଥାନ୍ତି ! ମୋ ପାଖରେ ସେ ସବୁ ଦିବ୍ୟ ଚରିତମାନେ ଏତେଦୂର ଜୀବନ୍ତ ହୋଇ ଅନୁଭୂତ ହୁଅନ୍ତେ ନାହିଁ । ଆଉ ମଧ୍ୟ ମୁଁ ଏକଥା ନିର୍ଧାର୍ଯ୍ୟ ଭାବେ ଦୃଢ଼ ସ୍ୱରରେ କହିପାରେ ଯେ ସେଇସବୁ କାଳେସୀ ଓ ଭବାବିଷ୍ଟମାନେ କେହି ଅଭିନୟ କରୁ ନ ଥିଲେ —କି ବେହେଲ ପଣିଆ କରୁ ନ ଥିଲେ—କି ଅନ୍ୟମାନଙ୍କ ମନକୁ ପ୍ରତାରିତ କରି କିଛି ନିଜ ପାଇଁ ଆଦାୟ କରି ନେବାକୁ ବସି ନ ଥିଲେ, ଯେମିତି ଆଜିକାଲି ଆମେ କରିଥାଉଁ ।

[ ଅବଶ୍ୟ ଆଜକାଲି ଭଳି ଏଇ ସବ୍‌ଜାନତା ମନୋବୈଜ୍ଞାନିକ ଯୁଗରେ ଏସବୁ ଭାବାକ୍ରାନ୍ତ ମଣିଷମାନଙ୍କ ବିଷୟରେ ମୋଟାମୋଟି କେତୋଟି ମନସ୍ତାତ୍ତ୍ୱିକ ବିଶ୍ଳେଷଣାତ୍ମକ ତଥ୍ୟ ଯୋଗାଇବା ଅସମ୍ଭବ ନୁହେଁ । ପୁନଶ୍ଚ ଯୋଗ ବିଜ୍ଞାନରେ ମଧ୍ୟ ମନୁଷ୍ୟ ଭିତରର ବିଭିନ୍ନ ସତ୍ତ୍ୱ, ଏବଂ ସେହିସବୁ ସତ୍ତ୍ୱମାନଙ୍କ ଚେତନାର ବିଭିନ୍ନ ସ୍ତରରେ ବିଭିନ୍ନ କ୍ରିୟା ପ୍ରତିକ୍ରିୟା ଓ ପ୍ରକୃତି ବିକୃତିର ଉଲ୍ଲେଖ ରହିଛି । ମନୁଷ୍ୟର କ୍ରମବିକାଶର ସୁଦୀର୍ଘ ଇତିହାସ ବହନ କରି କୋଟି କୋଟି ଯୁଗର କୋଟି କୋଟି ପ୍ରାଣୀ-ମାନଙ୍କ ନାନାଦି ବିଚିତ୍ର ଦୁର୍ବୋଧ୍ୟ ଅଭିଜ୍ଞତା, ଆବେଗ ପ୍ରବେଗାଦି ମିଶି-ମାଶି ଜମାଟ ବାନ୍ଧି ଏକ ବିରାଟ ରହସ୍ୟମୟ ଅତ୍ୟନ୍ତ ଅନ୍ଧକାରାଚ୍ଛନ୍ନ ଗଭୀର ଅବଚେତନ ରୂପେ ମଣିଷ ଭିତରେ ଅବସ୍ଥାନ କରି ତାକୁ ତା'ର ବେଳା-ଅବେଳାରେ ପକାଉଛି, ଉଠାଉଛି—ହୁଏତ ସେଇଠି ରହିଛି ସ୍ୱାର ମୂଳ-ସୂତ୍ର । କିମ୍ବା ଆମ ଗୃହପଟେ ଆମ ଅଦୃଶ୍ୟରେ ଯେଉଁସବୁ ସୂକ୍ଷ୍ମାତିସୂକ୍ଷ୍ମ ଅର୍ଦ୍ଧଗଠିତ ଓ ଆଂଶିକ ବିକଶିତ ପ୍ରାଣସତ୍ତ୍ୱମାନେ ଆତଜାତ ହେଉଛନ୍ତି ଏବଂ ଆମ ମଧ୍ୟରୁ କେତେ ଲୋକଙ୍କ କୋମଳ ସମ୍ବେଦନଶୀଳ ହୃଦୟ ଭିତରକୁ ସେମାନେ କାହିଁକି କେମିତି କୋଉ ଅପ୍ରସ୍ତୁତ ମୁହୂର୍ତ୍ତରେ ପ୍ରବେଶ କରି ଏଇସବୁ ହଠକାରୀ ଭାବଦୃଶ୍ୟର ସୃଷ୍ଟି କରନ୍ତି, ସେ ସମ୍ବନ୍ଧେ ହୁଏତଃ ଅତି-ଭୌତିକ ଗୂଢ଼ବାଦୀମାନେ ଅବଗତ ଥିବେ । ମୁଁ ସେ ସବୁ ଉପରେ ଆଲୋଚନା କରିବାକୁ ଯାଉନାହିଁ । ମୋର କହିବା କଥା ହେଲା --ଆମେ ଯେଉଁମାନଙ୍କ ସଙ୍ଗେ ନିତିପ୍ରତି ଆତଜାତ ହେଉଛୁ ଏବଂ ଯେଉଁମାନେ ଖୁବ୍ ମାନସିକ ଭାରସାମ୍ୟ ରକ୍ଷାକରି ଭଦ୍ର ଓ ସଂଯତ-ଭାବେ ଚଳୁଛନ୍ତି—ଏବଂ ସଂସାରକୁ ସମାଜକୁ ଚଳାଉଛନ୍ତି ବୋଲି ମନେ ମନେ ଖୁବ୍ ଆତ୍ମପ୍ରସାଦ ଅନୁଭବ କରନ୍ତି—ଅଥବା ଗୋଟିଏ କଥାରେ କହିଲେ ଯୋଉମାନଙ୍କୁ ଆଦୌ କାଳେସୀ ଲାଗେ ନାହିଁ—କି କୌଣସି ଭାବାଦର୍ଶ ବା ବିଶେଷଭାବ ତୀବ୍ର ସଂବେଗଶୀଳ ହୋଇ ଯେଉଁମାନଙ୍କ ଉପରେ ସବାର ହୁଏ ନାହିଁ—ସେମାନେ କ'ଣ ସତରେ ଏମିତି ଭଲ ମଣିଷ ? ଆଦର୍ଶ ମଣିଷ ? ମୋ ମତରେ କାଳେସୀ ବା ବେଳେବେଳେ ଭାବୋନ୍ମତ୍ତ ମଣିଷଟି ଏହି ବାସ୍ତବ ଜୀବନକୁ ଓ ତା'ର ଅନ୍ତରଙ୍ଗ ଜୀବନକୁ ଯେପରି ନିବିଡ଼ଭାବେ, ତୀବ୍ର ଓ ପ୍ରଜ୍ୱଳନ୍ତଭାବେ ଅନୁଭବ କରିଥାଏ—

ଆମ୍ଭମାନଙ୍କ ଭଳି ତଥାକଥିତ ଭଦ୍ର ଭବ୍ୟ ସୁସଂଯତ ସୁମାର୍ଜିତ ମାନସିକ ଭାରସାମ୍ୟ ରକ୍ଷାକାଂକ୍ଷୀ ମଣିଷମାନେ ସେପରିଭାବେ ଜୀବନକୁ ଅନୁଭବ କରି ପାରନ୍ତି ନାହିଁ । ତେଣୁ ଆମ୍ଭମାନେ ଯେତେଦିନ ବଞ୍ଚୁ ଓ ଯେତେ ସୁସ୍ଥ ଭାବେ ବଞ୍ଚୁ ପଛକେ, ସେ ଜୀବନରେ ବଞ୍ଚିବା ସ୍ୱାଦ କିଛି ନ ଥାଏ । ଏହା ଏକ ଗତାନୁଗତିକ, ଯୌନ ପୌନିକ ନିର୍ବେଦ ଆପଣାମୁଖୀ ନିଷ୍ପ୍ରାଣ ଜୀବନ । କାଳେସୀ ବା କୌଣସି ବିଶେଷ ଭାବରେ ଆବିଷ୍ଟ ବ୍ୟକ୍ତିଟି ଜୀବନର ବାସ୍ତବତା ଓ ସ୍ୱପ୍ନକୁ ଏକାଠି ଗୋଳେଇ ପୋଳେଇ ଦେଖି ଓ ଅନୁଭବ କରେ । ତା'ର ଚେତନାରେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ କାଳ ତ୍ରିକାଳ ଏକାଠି ତ୍ରିବେଣୀ ସ୍ରୋତରେ ବହିଯାଉଥିଲେ । ଆମ୍ଭମାନେ କେବଳ ଜୀବନର ବାହ୍ୟ ଉପର ସ୍ତରର ବାସ୍ତବତାଟିକୁ ସତ୍ୟ ମନେକରି ବଞ୍ଚିବାକୁ ଚାହୁଁ । ଏବଂ ଅନ୍ତରର ଗଭୀରତମ ସ୍ୱପ୍ନର ସତ୍ୟଟିକୁ ଅଳୀକ ଓ ବୃଥା ଶକ୍ତି କ୍ଷୟକାରୀ ଭାବପ୍ରବଣତା ମନେକରି ସଦାବେଳେ ତାକୁ ଅସ୍ୱୀକାର କରୁ । କିମ୍ବା ସ୍ୱପ୍ନ ନ ଦେଖିବା ଲାଗି ଦିନରାତି ଉଜାଗର ରହି ଜାଗତିକ ଜଞ୍ଜାଳ, କର୍ମ ଓ କୋଳାହଳ ଭିତରେ ନିଜକୁ ବ୍ୟସ୍ତ ବିବ୍ରତ ରଖୁ । ଦିବାରାତ୍ର ଆମ ହୃଦୟର ଦ୍ୱାର ଝର୍କାଗୁଡ଼ିକୁ ବନ୍ଦ କରି ରଖୁ । କାଳେ ବାହାରର କୌଣସି ଭାବାବେଗ ବା ଭୂତପ୍ରେତ ବା ଦେବାଦେବୀ ବା ଏପରିକି କେହି ପ୍ରେମିକ ପ୍ରେମିକା ସେଇ ବାଟେ ଆମ ଭିତରକୁ ପଶିଯିବେ ।]

କିନ୍ତୁ ମୁଁ ନିଧାର୍ଯ୍ୟ ଭାବେ ଜାଣେ ଯେ, ନିଜ ଭିତରକୁ କୌଣସି ଅଲୌକିକ ଶକ୍ତି, କିମ୍ବା ଭାବାବେଗ, କିମ୍ବା ସ୍ୱପ୍ନକୁ ପ୍ରବେଶ କରିବାକୁ ନ ଦେବା ପଛରେ ରହିଛି ମଧ୍ୟ ଆମର ସେସବୁ ପ୍ରତି ମହାଭୟ । ପୁଣି ପାଗଳ ହୋଇଯିବାର ଆଶଙ୍କା ମଧ୍ୟ । ସତକଥା ! ମୁଁ ସିନା ଏମିତି ହାତରେ କଲମ ପଡ଼ିଛି ବୋଲି ବାହାଦୁରୀ ଦେଖାଇ ଲମ୍ବା ଚଉଡ଼ା କଥା କହି ଦେଉଛି, କିନ୍ତୁ ମୁଁ ତ ଏବେ ବେଳେବେଳେ ଭାବେ ମୋର ବର୍ତ୍ତମାନର ଏହି ଅପେକ୍ଷାକୃତ ସୁସ୍ଥ, ଶାନ୍ତ, ଭଦ୍ର, ନିଶ୍ଚିନ୍ତ ଓ ସ୍ୱାଭାବିକ ଭାବେ ଛଅଘଣ୍ଟା ଘୁଂଗୁଡ଼ିମାରି ସ୍ୱପ୍ନହୀନ ଗଭୀର ନିଦରେ ଶୋଇ ପାରୁଥିବା ଜୀବନ ମୋର ସତ୍ତାଟି ଭିତରକୁ ଯଦି କୌଣସି ପ୍ରକାରେ କୁତାମଚଣ୍ଡୀ, ଆଲମଚଣ୍ଡୀ, ବାସୁଲୀ ବା ହନୁମାନଜୀ, କିମ୍ବା, କେହି ସୂକ୍ଷ୍ମ ଜଗତର

ଅଧିବାସୀ ଗନ୍ଧର୍ବ, କିନ୍ନର, ଯକ୍ଷ, ରକ୍ଷ କିମ୍ବା କେଉଁ ଭୂତପ୍ରେତ ପିଶାଚ, ଅଥବା ନିତାନ୍ତପକ୍ଷେ ଗାନ୍ଧୀ, ମାର୍କସ, ସାର୍ତ୍ରେ, ନିତ୍ସେ କି ବିବେକାନନ୍ଦ, ରାମକୃଷ୍ଣ, ଅରବିନ୍ଦଆଦିଙ୍କ ଆତ୍ମା ପ୍ରବେଶ କରିଯାନ୍ତି, ତାହା ଯେତେ ଆଂଶିକ ଧରଣର ହେଉ ପଛେ, ତା' ହେଲେ ତ ମୋର ଦଫା ଶେଷ ହୋଇଗଲା ଭଳି ଜାଣିବି । ଘୋର ଅଶ୍ୱସ୍ତିରେ ମୁଁ ଛଟପଟ ହୋଇଯିବି । ମୋର ସବୁ ଭଦ୍ରତା, ଭବ୍ୟତା, ସଂଯମ, ସଙ୍ଗତି, ଔଚିତ୍ୟବୋଧ ଓ ଭାରସାମ୍ୟ ମୁହୂର୍ତ୍ତକେ ନଷ୍ଟ ହୋଇଯିବ—ଏବଂ ମୁଁ ନିଶ୍ଚୟ ପାଞ୍ଚମିନିଟ ଭିତରେ ବାଉଳା ହୋଇଯିବି ଓ ତା' ପରେ ପରେ ମୋର ମୃତ୍ୟୁ ଅନିବାର୍ଯ୍ୟ ହୋଇ ଉଠିବ ।

କିନ୍ତୁ ଯଥାର୍ଥ ସତ୍ୟଟି ହେଲା— କିଏବି ବାଉଳା ନ ହେଲେ ଏହି ସ୍ଥୂଳ ଜଗତରେ ସ୍ଥୂଳଦୃଶ୍ୟ ବା ସ୍ଥୂଳଶବ୍ଦ ଗୁଡ଼ିକ ବି ଆମର ସ୍ଥୂଳ ଆଖି କାନରେ ଦେଖା ବା ଶୁଣାଯିବ ନାହିଁ । ସେ ସ୍ଥଳେ ଅନ୍ୟ ସବୁ ସୂକ୍ଷ୍ମ ଜଗତରେ ସୂକ୍ଷ୍ମ ଦୃଶ୍ୟ ବା ସୂକ୍ଷ୍ମ ଶବ୍ଦ, ଗନ୍ଧ, ସ୍ପର୍ଶାଦିର କଥା ଅବା କାହିଁକି ପଡ଼ୁଛି ? ପୁଣି ଏକଥା ମଧ୍ୟ ସମାନ ସତ୍ୟ ଯେ ଆମେସବୁ ଯେଉଁମାନେ ନିଜକୁ ସୁସ୍ଥ ମସ୍ତିଷ୍କ ବୋଲି ଭାବିଥାଉଁ—ଆମେ କ'ଣ ପ୍ରକୃତରେ ସେଇଆ ? ଆମେ ମଧ୍ୟ ଆଉ ଗୋଟାଏ କୁତ୍ସିତ ଦିଗରୁ ବଡ଼ ପାଗଳ । ମାତ୍ର ଆମର ଏଇ ପାଗଳାମିଟି କେବଳ ଆମକୁ ନେଇ । ଆମର କ୍ଷୁଦ୍ର ଅଥଚ ସ୍ଫୀତ ଅହଂକାରଟିର ଛୋଟିଆ ମୋଟିଆ କାମନା ବାସନା ଓ ଦାବୀ ଗୁହାରି ଇତ୍ୟାଦିକୁ ନେଇ । ଏଇ ପାଗଳାମୀରେ କିନ୍ତୁ ଜୀବନର ଅସଲ ରସ ମିଳେ ନାହିଁ । ନିର୍ବୋଧ ଝିଦଖୋର ଘରଚଟିଆଟି କାନ୍ଥରେ ଟଙ୍ଗା ହୋଇଥିବା ଦର୍ପଣରେ ନିଜର ପ୍ରତିବିମ୍ବକୁ ଦେଖି ପାଗଳ ଭଳି ତା'ର ସାଥୀରେ ହଣ୍ଟୁଣେଇ ଲାଗି ରହିଥିବା ଭଳି । ଆମେ ନିତ୍ୟ ନିୟତ କେବଳ ଆମର କଥାକୁ ନେଇ ଲାଗି ରହିଛୁ । ବଡ଼ ପାଗଳ ନୋହୁଁ ତ ଆଉ କ'ଣ ?

ଆଉ ଗୋଟିଏ କଥା ମଧ୍ୟ ମୁଁ ବରାବର ଲକ୍ଷ୍ୟ କରିଛି ଯେ ଏଇ ସବୁ କାଳେସୀମାନେ, ବା ଆବିଷ୍ଟ ଲୋକମାନେ ବା ବିଶେଷ ବିଶେଷ ଭାବାକ୍ରାନ୍ତ ମଣିଷମାନଙ୍କ ମୁହଁରେ ଯୋଉ ପ୍ରକାର ଉତ୍ତେଜନା ବା

ଉନ୍ମାଦନା ଦେଖାଯାଏ, ତା'ର ଅନ୍ତରାଳରେ ପ୍ରଚ୍ଛନ୍ନଭାବରେ ଗୋଟାଏ ପ୍ରକାରର ଅବସନ୍ନ ବିଷଣ୍ଣତା ମଧ୍ୟ ଲାଗି ରହିଥାଏ । ଗୋଟାଏ ଧରଣର ଅବୋଧ କାରୁଣ୍ୟଭାବ, ବା କାନ୍ଦୁଣି ମାନ୍ଦୁଣି ଭାବ ସେମାନଙ୍କ ମୁହଁକୁ ଆଚ୍ଛନ୍ନ କରି ରଖିଥାଏ । କିନ୍ତୁ ତାହା ନାସ୍ତିବାଦୀର ବ୍ୟର୍ଥତାମୂଳକ ବିଷଣ୍ଣତା ନୁହଁ । ବରଂ ଅସ୍ତିତ୍ୱ ବା ପ୍ରାପ୍ତିର ଏକ ଗଭୀର ଆସ୍ଥା ବା ବିଶ୍ୱାସ ବି ସେ ବିଷଣ୍ଣତା ବା କାରୁଣ୍ୟ ଭାବ ସଙ୍ଗେ ମିଶିକରି ଥାଏ । ସେ ପ୍ରକାରର ବିଷଣ୍ଣତା ବା କାରୁଣ୍ୟଭାବ କିନ୍ତୁ ତୁମ ଆମ ଭଳି ଭଦ୍ର ଭବ୍ୟ ସଯତ୍ନ ଓ ମାନସିକ ଭାରସାମ୍ୟ ରକ୍ଷା କରି ଚଳୁଥିବା, ଅଥଚ ଆପଣାର କ୍ଷୁଦ୍ର ଅହଂକୁ ନେଇ ମାତିଥିବା ବଡ଼ ପାଗଳଙ୍କ ମୁହଁରେ ଦେଖାଯାଏ ନାହିଁ । ବରଂ ଆମମାନଙ୍କ ମୁହଁରେ ସର୍ବଦା ଗୋଟାଏ ଉନ୍ମତ୍ତ ଅସ୍ଥିରତାର ଲାଲ୍‌ସା ତରଙ୍ଗ ଦେଖିବାକୁ ମିଳେ । କିମ୍ବା ଗୋଟାଏ ସମ୍ବେଦନହୀନ ଜଡ଼ ନିର୍ବେଦତା ଅତି କୁତ୍ସିତଭାବେ ପ୍ରକାଶ ପାଏ । ସେଥିପାଇଁ ଆମର ଚାହାଣୀ ମଧ୍ୟ ତା'ର ସ୍ୱପ୍ନିଳ ଦୂରଗାମିତା ହରାଇ ଅଦୃଶ୍ୟ ଠାରୁ ଦୃଶ୍ୟକୁ ପୃଥକ୍ କରି ଆଣି ଦେଖେ । ସମଗ୍ର ଠାରୁ ଦୃଷ୍ଟି ଫେରାଇ ଆଣି କେବଳ ବସ୍ତୁର ଗୋଟିଏ ଅଂଶ ଉପରେ ଦୃଷ୍ଟି ନିବଦ୍ଧ କରେ । ସେଥିପାଇଁ ତ ଆମର ଚାହାଣୀ ଭିତରେ ସର୍ବଦା ଏକ କୁତ୍ସିତ ଲୋଲମୟ ଅଶ୍ଳୀଳତା ପ୍ରକଟିତ ହୋଇଉଠେ । ଏଇସବୁ କାରଣରୁ ବର୍ତ୍ତମାନ ମୋର ଧାରଣାଟି ହେଲା ନିଜକୁ ଛାଡ଼ି ଅନ୍ୟକୁ ନେଇ ମାତିଥିବା ସେଇସବୁ କାଳୀମାନେ ବା ଆବିଷ୍ଟମାନେ ନିଶ୍ଚୟ ଆମମାନଙ୍କଠାରୁ ଅଧିକ ଜୀବନ୍ତ ମଣିଷ ଓ କେତେକାଂଶରେ ଉନ୍ନତ ଓ ଭଲ ମଣିଷ ମଧ୍ୟ । ଆପଣାପାଇଁ ଧନ କ୍ଷମତା ପ୍ରତିପତ୍ତି ଓ ନାନାଦି ଭୋଗ ଉପଭୋଗ ପଛରେ ଖୁବ୍ ଧୀର ସ୍ଥିର ବିଚାର ବୁଦ୍ଧି ପ୍ରୟୋଗ କରି, ହିସାବୀ ଚାଲରେ ଗତିକରି କେବଳ ଆପଣାକୁ କେନ୍ଦ୍ର କରି ଯାପିଜୀବନ ଘୂରୁଥିବା ଆମମାନଙ୍କୁ ଧିକ୍ ।

ଛାଡ଼ନ୍ତୁ ସେ କଥା । ବର୍ତ୍ତମାନ ସିଦ୍ଧେଶ୍ୱରଙ୍କ କାଳେସୀ ଉଦ୍ଧବ ବେହେରାଙ୍କ ଇତିବୃତ୍ତ ଶୁଣିବା ହେଉ । ଉଦ୍ଧବ ବେହେରା ଜାତିରେ ଥିଲେ ଗୋପାଳ । ତାଙ୍କୁ ଯେତେବେଳେ ଆଠ ନଅ ବର୍ଷ ବୟସ, ସେତିକବେଳୁ ସେ କୁଆଡ଼େ ବହୁ ଅଲୌକିକ ଅଭିଜ୍ଞତା ଓ ଅନୁଭୂତିମାନ

ପାଉଥିଲେ; କିନ୍ତୁ ମୁଁ ତାଙ୍କୁ ଦେଖିଲା ବେଳକୁ ତାଙ୍କୁ ନିଶ୍ଚୟ ପଚିଶ ବର୍ଷରୁ ଅଧିକ ବୟସ ହୋଇଥିଲା । ସେତେବେଳକୁ ସେ ସିଦ୍ଧେଶ୍ୱରଙ୍କ କାଳେସୀ ରୂପେ ବିଖ୍ୟାତ ହୋଇ ଗଲେଣି । ସେତେବେଳେ ମଧ୍ୟ ସିଦ୍ଧେଶ୍ୱର ମହାଦେବଙ୍କ ମହିମା ଖୁବ୍ ପ୍ରତ୍ୟକ୍ଷ ଥିଲା । ବହୁ ଲୋକ ଭୟଙ୍କର ବିପଦରେ ପଡ଼ି ଉଦ୍ଧବ ବେହେରାଙ୍କୁ ଧରି ସିଦ୍ଧେଶ୍ୱରଙ୍କ କୃପା ଲାଭ କରି ବିପଦମୁକ୍ତ ହେବାର ଦୃଷ୍ଟାନ୍ତ ସେତେବେଳେ ବହୁତ ଥିଲା । ଯେମିତି କେତେ ଲୋକ ମଧ୍ୟ କୁଷ୍ଠ, ଯକ୍ଷ୍ମା, ଶ୍ୱାସ ଓ ଗର୍ମି ପ୍ରଭୃତି ଦୁଃସାଧ୍ୟ ରୋଗରୁ ମୁକ୍ତି ପାଇଛନ୍ତି ସିଦ୍ଧେଶ୍ୱରଙ୍କ ପାଖରେ ମାସାବଧିକାଳ ଗୁହାରିଆ ପଡ଼ି । କିନ୍ତୁ ଏହି ଉଦ୍ଧବ ବେହେରାଙ୍କ ମୁହଁରେଇ ସିଦ୍ଧେଶ୍ୱର ଯାହା କିଛି କୃପା ବା ହୁକୁମ ଦେଇଥାନ୍ତି । ପ୍ରତି ମାସ ସଂକ୍ରାନ୍ତିକ ଉଦ୍ଧବ ବେହେରାଙ୍କୁ ସେଥିଲାଗି ଆଂଶିକ କାଳେସୀ ଲାଗେ ଏବଂ ଉଦ୍ଧବ ବେହେରା ମଧ୍ୟ ବର୍ଷକଯାକ ଖୁବ୍ ନୀତି ନିୟମ ମାନି ଚଳନ୍ତି । ମାଛ ମାଂସ ତ ଛୁଇଁବାକୁ ମନା । ପିଆଜ ରସୁଣର ମଧ୍ୟ ଗନ୍ଧ ତାଙ୍କ ନାକରେ ବାଜିବ ନାହିଁ ଏବଂ ବର୍ଷ ଶେଷରେ ଦୋଳ ପୂର୍ଣ୍ଣିମୀ ଓ ତା' ବାସୀ ଦିନ ତାଙ୍କ ଉପରେ ସିଦ୍ଧେଶ୍ୱର ପୂରା ଅବତରନ୍ତି ।

ଦେଖିବାକୁ ଉଦ୍ଧବ ବେହେରା ଥିଲେ ବାଙ୍ଗରା ହୋଇ ଦୁବଳିଆ ମଣିଷଟିଏ । ଆଖି ଦୁଇଟି ପେଜୁଆ ପେଜୁଆ । ବେଳେବେଳେ ପୁଣି ନାଲିଆ; କିନ୍ତୁ ଦୃହାଣୀଟି ଖୁବ୍ ନରମ, ମେଦୁର, ବିଷଣ୍ଣ ଆଉ କେମିତି କାନ୍ଦୁଣିମାନ୍ଦୁଣି ଦେଖାଯାଏ ଏବଂ ବେଳେବେଳେ ବି କେମିତି ଗୋଟେ ଆଚ୍ଛନ୍ନ ଦେଖାଯାଏ । କି ଶୀତ କି ଗ୍ରୀଷ୍ମ ସବୁବେଳେ ଝାଳ ବହୁଥାଏ ଦେହରୁ । ମଥାରେ କେଶ ପାକଲା ମିଶି ସ୍ତ୍ରୀ ଲୋକଙ୍କ ପରି ବୋଝେ ବାଳ ଏବଂ ସେତକ ସେ ବାଙ୍କ ଖୋଷାଟିଏ କରି ପାରିଥାନ୍ତି । ତାଙ୍କ ଦେହରୁ ସବୁବେଳେ ଘିଅ ଲହୁଣୀର ଫୁଙ୍କିଟିଆ ଗନ୍ଧ ବାହାରୁଥାଏ । ଆଖିରେ ସେ ବୋଧହୁଏ କଜଳ ଲଗାଉଥିଲେ । ସିଦ୍ଧେଶ୍ୱର ମହାଦେବଙ୍କ ପାଚେରୀ-କଡ଼ ଝାମ୍ପୁଡ଼ା ସାହାଡ଼ା ଗଛ ମୂଳେ ପଥର ବେଦୀଟିଏ ଉପରେ ନଡ଼ିଆ ବୁଞ୍ଚଗଟିଏ ପାରି ସେ ତା' ଉପରେ ସବୁବେଳେ ବସିଥିବାର ଆମେ ଦେଖୁ । ବେଳେବେଳେ ହାଇଁ ପାଇଁ ହୋଇ ଭୂମିକି ଆମ୍ପୁଡ଼ି କାନ୍ଦ

ଉଠନ୍ତି—ଗୁଣୁଗୁଣୁ ସ୍ୱରରେ ମନକୁମନ କଅଣ ସବୁ ବାହୁନ ଉଠୁଥାନ୍ତି । ଗାଁର ବଡ଼ ମଣିଷମାନେ ସେବାଟେ ଯା'ନ୍ତି, ଆସନ୍ତି । କିନ୍ତୁ କେହି ସେ ଆଡ଼କୁ ନଜର କରନ୍ତି ନାହିଁ । ସେଥିପ୍ରତି କାହାର ଆଗ୍ରହ ନ ଥାଏ । ଲୋକମାନେ ତଳକୁ ମୁହଁପୋତି ଯେଝା କାମରେ ଗଲାଥାନ୍ତି ପିମ୍ପୁଡ଼ି ଭଳି ।

କିନ୍ତୁ ସାରା ଗାଁଟି ଭିତରେ ଜଣେ ଥାଏ ଉଦ୍ଧ ବେହେରାଙ୍କ ଅନୁଗତ । ତାଙ୍କର ଭକ୍ତ, ଶିଷ୍ୟ ସେବକ, ଆଉ ଅନ୍ତରଙ୍ଗ ବନ୍ଧୁ । ତା' ନାଁ ଉଚ୍ଛବ ବେହେରା । ଲୋକେ ଡାକନ୍ତି ପେଙ୍ଗା ଉଚ୍ଛବା । ତା'ର ପୁଅ ମାଇପ କେହି ନ ଥାନ୍ତି । ସମସ୍ତେ ଗୋଟିଏ ବର୍ଷରେ ହଇଜାରେ ମରି ଯାଇଥିଲେ । କୁଆଡ଼େ ସେ ଥାଏ କେଜାଣି, ବାଡ଼ିଟିଏ ଧରି ପେଙ୍ଗେଇ ପେଙ୍ଗେଇ ଆସି ପହଞ୍ଚେ ସେଇ ସାହାଡ଼ା ଗଛ ମୂଳରେ । ତାକୁ ଦେଖିବା ମାତେ ଆଖି ଛଳଛଳ କରି କାନ୍ଦୁରି ମାନ୍ଦୁରି କଣ୍ଠରେ ଉଦ୍ଧ ବେହେରା କହି ଉଠନ୍ତି—

'ଆରେ ହେ ଉଚ୍ଛବା ? କେଉଁଠି ଥିଲୁ ତୁ ଅଳପାଇସିଆ ଏତେ-ବେଳଯାଏ କହିଲୁ ? ଆରେ ଯା' ଚଞ୍ଚଳ ତା' ମୁଣ୍ଡରେ ଗିନାଏ ନଡ଼ିଆଣୀ (ଲହୁଣୀ) ଘଷି ଦେଇ ଆ'ବା ଚଞ୍ଚଳ ! ତା ମୁଣ୍ଡ ତାତିକରି ନିଆଁ ହୋଇଗଲାଣି । ନେ, ନେ, ନହୁଣୀ ଏଠି ଅଛି ନେଇଯା ।'

ପେଙ୍ଗା ଉଚ୍ଛବା କିଛି ଉତ୍ତର ନ ଦେଇ ଗମ୍ଭୀର ଭାବେ ଲହୁଣୀ ଗିନାଟି ଧରି ସେଇ ଉଦ୍ଧ ବେହେରାଙ୍କ ମୁଣ୍ଡରେ ମାଲିସ କରି ବସେ । ସେତେବେଳେ ଚୁପ୍‌ଚାପ୍ ଆଖିବୁଜି ବସି ରହନ୍ତି ଉଦ୍ଧ ବେହେରା । କିଛି ସମୟ ଲହୁଣୀ ମାଲିସ୍ କରିସାରି ପେଙ୍ଗା ଉଚ୍ଛବା ବାଳଗୁଡ଼ିକ ଏକାଠି କରି ତାଙ୍କ ମୁଣ୍ଡରେ ଗୋଟିଏ ବାଙ୍କ ଜୁଡ଼ା ପାରିଦେଇ ଗଛରେ ଡେରା ହୋଇଥିବା ଆଉ ଖଣ୍ଡିଏ ନଡ଼ିଆ ଗୁଣ୍ଡଡ଼ା ଆଣି ତା' ଉପରେ ବସେ କିଛି ସମୟ ।

ବହୁବାର ଏ ଦୃଶ୍ୟ ମୋ ଆଖିରେ ପଡ଼ିଛି । ମୁଁ ଆଦୌ କିଛି ବୁଝିପାରେ ନାହିଁ । ସ୍କୁଲ୍ ଛୁଟି ପରେ ଖରାବେଳେ ଶଗଡ଼ ପାଟୁଆ କୋଳି

ଖାଇବା ପାଇଁ ଆମେ ପିଲମାନେ ରାସ୍ତା କଡ଼େ କଡ଼େ ବୁଦାମାନଙ୍କୁ ଉଣ୍ଡୁ ଉଣ୍ଡୁ କେତେବେଳେ ଆସି ପହୁଞ୍ଚୁଥାଉ ସିଦ୍ଧେଶ୍ୱରଙ୍କ ପାଖରେ ଏବଂ ସାହାଡ଼ା ଗଛ ମୂଳ ବେଦୀ ଉପରେ ଏଇ ଦୃଶ୍ୟ ପ୍ରାୟ ହିଁ ଦେଖୁ । ଅନ୍ୟ ପିଲମାନେ ସେମାନଙ୍କୁ କିଛି ସମୟ ଆଖି ତରାଟି ଅନାଇ ରହନ୍ତି ଏବଂ କ'ଣ ସେମାନଙ୍କୁ ଲାଗେ କେଜାଣି ହିଁ ହିଁ ହୋଇ ହସି ଉଠି ସେଠୁ ପଳେଇ ଯାନ୍ତି । ମାତ୍ର ମୋ ମନ ଭିତରେ ପ୍ରଚଣ୍ଡ କୌତୂହଳ ଜାତ ହୁଏ—କିଛି ସମୀହ ଭାବ ମଧ୍ୟ ଜାତ ହୁଏ । କିଏ ଏଇ ଜଦୁ ବେହେରା ? ଏଠି ଏମିତି ହନହାକ କାହିଁକି ସେ ବସିଥାନ୍ତି ? କାନ୍ଦୁଣୁମାନ୍ଦୁଣୁ ହୋଇ କ'ଣ ସବୁ ସେ କହୁଥାନ୍ତି ? କାହା ପାଇଁ ସେ କାନ୍ଦୁଥାନ୍ତି ? କାହା ମୁଣ୍ଡରେ ଲହୁଣୀ ଢସିବାକୁ ସେ ପେଙ୍ଗା ଉଛବାକୁ କହନ୍ତି ? କାହା ମୁଣ୍ଡ ଏମିତି ନିଆଁ ହୋଇ ଜଳାପୋଡ଼ା କରେ ? ପେଙ୍ଗା ଉଛବା ଏତେକ ଜଦୁ ବେହେରାଙ୍କ ମୁହଁରୁ ଶୁଣି ପୁଣି ତାଙ୍କର ମୁଣ୍ଡରେ କାହିଁକି ସେ ଲହୁଣୀତକ ମାଲିସ୍ କରି ବସେ ? ଏହି ପେଙ୍ଗା ଉଛବା ଜଦୁ ବେହେରାଙ୍କର କ'ଣ ହୁଏ ? କାହିଁକି ସେ ହନରାତି ସବୁ ଛାଡ଼ିଛୁଡ଼ି ଦେଇ ଜଦୁ ବେହେରାଙ୍କ ପିଛା ଲାଗିଛି ?

ଏହି ପେଙ୍ଗା ଉଛବାଟି ମଧ୍ୟ ଗୋଟିଏ ଅଦ୍ଭୁତ ଲୋକ । ଗେରୁଆ ଗାମୁଛାଟି ପିନ୍ଧିଥାଏ । ଆଉ ଖଣ୍ଡିଏ ଗେରୁଆ ଗାମୁଛା କାନ୍ଧରେ ପଡ଼ିଥାଏ । ବେକରେ ଦୁଇ ସରି ମୋଟା ମୋଟା କାଠମାଳି ଝୁଲୁଥାଏ । ମୁଣ୍ଡରୁ ବୋଝେ ବାଳ ଜଟ ହୋଇ ବରଗଛର ଓହଳ ଭଳି କାନ୍ଧ ଉପରକୁ ଝୁଲି ପଡ଼ିଥାଏ । ଦୁଇ ଭୃରୁ ମଝିରେ ମେଞ୍ଚାଏ ସିନ୍ଦୂର—ଆଉ ମଥାରେ ତିନିଧାଡ଼ି ତିଳକ । ବାଡ଼ି ଖଣ୍ଡିଏ ଧରି ଠେଙ୍ଗେଇ ଠେଙ୍ଗେଇ ଚାଲେ । ତାର ବାଁ ଗୋଡ଼ଟି ସାମାନ୍ୟ ଛୋଟ ଓ ସେଇ ବାଁ ପାଦଟି ମଧ୍ୟ ଟିକିଏ ବେଢ଼ଙ୍ଗିଆ । ଜଦୁ ବେହେରାଙ୍କ ମୁଣ୍ଡରେ ଲହୁଣୀତକ ମାଲିସ କରିସାରି ଠେଙ୍ଗେଇ ଠେଙ୍ଗେଇ ପେଙ୍ଗା ଉଛବା ସିଦ୍ଧେଶ୍ୱରଙ୍କ ମନ୍ଦିର ପଛପଟ ପୋଖରୀକି ଯାଇ ଧୂଆ ଧୋଇ ହୋଇ ଆସେ । ସେଇଠୁ ଗୁମ୍ଫ ଉପରେ ବସି ଖୁବ୍ ସଇଥିଲିଆରେ ତା'ର ସେଇ ରହସ୍ୟପୂର୍ଣ୍ଣ ଝୁଲି ମୁଣିରୁ ଚିଲମ ଆଉ ଗଞ୍ଜେଇ କଳି ବାହାର

କରେ । ନଥାଁ ପେଡ଼ ଓ ଖଣ୍ଡିଏ ନଡ଼ଆକତା ବାହାର କରେ । ଢ଼'ଖଣ୍ଡ ଷଡ଼ ମଧ ବାହାର କରେ । ଷଡ଼ତକ ଛୁଡ଼ାଇ ତା ଭିତରୁ ଧୂଆଁପତର ଚୂର୍ଣ୍ଣତକ ହାତ ନେଡ଼ରେ ରଖି ଗଞ୍ଜେଇ କଲତକ ତା ସାଙ୍ଗରେ ମିଶାଇ ଖୁବ୍ ଜୋରରେ ଦଳ ଲଗେ ଏବଂ ମଝିରେ ମଝିରେ ଦୁଇ ଗୁଣଥର କାଶି ଗଳା ସଫା କରେ । ସେତକ ସମସ୍ତ ଜଦ ଜ ଉଚ୍ଛବା କେହ୍ବ କାହାକୁ କଛୁ କଥା କହୁ ନ ଥାନ୍ତି । ସାହାଡ଼ାଗଛରେ ହଳଦଆ କୋଳ ସବୁ ଲଦ ହୋଇଥାନ୍ତି । ସେହ୍ବ ଗଛ ଭିତରୁ ଗୋଟାଏ ହଳଦାବସନ୍ତ ଓ ଗୋଟିଏ ଗୁଣ୍ଡୁଚ ମୂଷାର ଖୁବ ଜୋର କଳକଜଆ ଲଗିଥାଏ । ଉଭୟଙ୍କର ଶକ୍ରାରରେ ସେ ଜାଗାଟା କମ୍ପୁଥାଏ । ଚଲମରେ ଦଳା ଗଞ୍ଜାଇତକ ସଜାଇ ତା' ଉପରେ ଜଳନ୍ତା କତା ଗୁଳଟିକୁ ବୁଢ଼ା ଆଙ୍ଗୁଠି ଟିପରେ ମାଡ଼ଦଏ ଉଚ୍ଛବା । ତା'ପରେ ତାକୁ ଗୋଟାଏ ଦମ୍‌ରେ ସୁଜ କନା ଶୋଷି ଦେବାମାତ୍ରେ ଚଲମଟା ଦପ୍‌କନା ଜଳଉଠେ । ସେଇଠୁ ସେ ନୀରବରେ ଚଲମଟା ଜଦ ବେହେରା ହାତକୁ ବଢ଼ାଇଦଏ । ସେଇଠୁ ଜଦ ବେହେରା ନୀରବରେ ଚଲମଟିକୁ ଶୋଷି ଲଗନ୍ତି । ତନ ଚ୍ଛର ଶୋଷା ଦେଲାପରେ ଚଲମଟି ଉଚ୍ଛବା ହାତକୁ ପୁଣି ଫେରଆସେ । ଶେଷ ପର୍ଯ୍ୟନ୍ତ ପେଙ୍ଗା ଉଚ୍ଛବା ଚଲମଟିକୁ ଶୋଷି ଶୋଷି ଗଞ୍ଜେଇତକ ପୋଡ଼ ଭସ୍ମ କରଦଏ ଓ ଚଲମ ଭିତରୁ ଗୁଲ ପାଉଁଶନ୍ତକ ଝାଡ଼ ସଫା କର ତାକୁ ତା'ର ଝୁଲମୁଣିରେ ପୂରାଇ ଦଏ ।

ମୁଁ ପିଲାଦନେ ଏଇ ଏକା ଭଳ ଦୃଶ୍ୟ ବହୁବାର ଦେଖିଛି । ମୋତେ ସେମାନଙ୍କୁ ସେତେବେଳେ ସେହ୍ବପର ଅବସ୍ଥାରେ ଦେଖିବାକୁ ଖୁବ୍ ଭଲ ଲାଗୁଥିଲା । ମୋର ମନେହୁଏ—ଏହ୍ବ ପେଙ୍ଗା ଉଚ୍ଛବା ହିଁ ସିଦ୍ଧେଶ୍ବର ଓ ଜଦ ବେହେରାଙ୍କ ସମ୍ବନ୍ଧେ ବହୁ ରହସ୍ୟ ଜାଣିଛି ଏବଂ ଆମ ଗାଁର ରାମା ଶାମା ଦାମା ମାନେ ଯେମିତ କେବଳ ନଜ ନଜର ପେଟ ପାଟଣା ନେଇ କମ୍ବା କଳ କଜଆ ହିଂସାବାଦ ନେଇ ବ୍ୟସ୍ତ, ଏ ଦୁହେଁ ସେପର ନୁହନ୍ତି । ଏ ଦୁହେଁ ବୋଧେ ଆଉ ଗୋଟିଏ କ'ଣ ଅଧିକା ମଜା ଜନଷ ପାଇଛନ୍ତି । ଆଉ ଗୋଟିଏ କ'ଣ ରହସ୍ୟକୁ ନେଇ

ଏମାନେ ସବୁଠାରୁ ନିଜକୁ ଦୂରେଇ ଆଣି ସେଇ ଜଗତରେ ନିର୍ଦ୍ଦ୍ୱନ୍ଦ୍ୱରେ ବଞ୍ଚିଛନ୍ତି ।

ମୋର ସାଙ୍ଗ ମାୟାଧର ଥରେ ମତେ କହିଲା ଯେ ଏହି ଉଦ୍ଧବ ବେହେରା ଆଉ ପେଙ୍ଗା ଉଚ୍ଛବା ଦୁହେଁଯାକ ହେଲେ ପ୍ରକୃତରେ ସିଦ୍ଧେଶ୍ୱର ମହାଦେବଙ୍କ ନନ୍ଦୀ ଆଉ ଭୃଙ୍ଗୀ । ଏମାନେ ଦିନଯାକ ଏମିତି ମଣିଷଙ୍କ ଭଳିଆ ହୁଅନ୍ତି; କିନ୍ତୁ ଅଧରାତି ବିତିଗଲେ, ଯେତେ-ବେଳେ ଗାଁଟା ସାରା ସମସ୍ତେ ଶୋଇ ପଡ଼ିବେ, ସେତେବେଳେ ଯାଇ ଏ ଦୁହିଁଙ୍କର ଅସଲ ସ୍ୱରୂପ ବାହାରିବ । ସେତେବେଳେ ସେମାନେ ସିଦ୍ଧେଶ୍ୱରଙ୍କ ସାଙ୍ଗେ ଷଣ୍ଢ ଉପରେ ବସି ମଶାଣୀକୁ ବୁଲି ବାହାରିବେ ଓ ସେଠାରେ ରାତିଯାକ ଭୂତ ପ୍ରେତଙ୍କ ସାଙ୍ଗେ ମିଶି ଖେଳିବେ । ମାୟାଧର କଥାକୁ ଅବିଶ୍ୱାସ କରି ହୁଏନା । କାରଣ ଉଦ୍ଧବ ବେହେରା ଓ ପେଙ୍ଗା ଉଚ୍ଛବାଙ୍କର ଦିନ ବେଳା ଯୋଉ ଅଦ୍‌ଭୂତ ଚେହେରା ଆଉ କ୍ରିୟା କର୍ମ ଦେଖାଯାଏ, ତାକୁ ଦେଖି ଏମାନେ ଯେ ଗାଁର ଅନ୍ୟମାନଙ୍କ ଭଳି ସାଧାରଣ ମଣିଷ ନୁହନ୍ତି—ସେଥିରେ ମୋର ଆଉ ସାମାନ୍ୟତମ ଦ୍ୱିଧା ନ ଥିଲା । ଏଠି କହି ରଖିବାର ଅଛି ଯେ ଉଦ୍ଧବ ବେହେରା ସିନା କାହା ସଙ୍ଗେ ବିଶେଷ କଥାବାର୍ତ୍ତା ନ କରି ଚୂପ୍ ଚୂପ୍ ସେଇ ସାହାଡ଼ାଗଛ ମୂଳେ ଦିନରାତି ବସି ରହିଥାନ୍ତି—କିନ୍ତୁ ପେଙ୍ଗା ଉଚ୍ଛବାର ଚରିତ୍ର ସେମିତି ନୁହେଁ । ସାହାଡ଼ାଗଛ ମୂଳେ ଉଦ୍ଧବ ବେହେରାଙ୍କ ପାଖରେ ଥିବା ଯାକ ସେ ଚୂପ୍ ଚାପ୍ । ମାତ୍ର ସେଠୁ ବାହାରି ଆସିଲେ—ତା' ପାଟିରୁ ଅନର୍ଗଳ କଥା ବାହାରୁଥାଏ । ମୁଁ କିନ୍ତୁ କେବେ ତା ସାଙ୍ଗେ କଥାବାର୍ତ୍ତା ହୋଇ ନଥିଲି । ମୋର ତା ପ୍ରତି ଟିକିଏ ଭୟ ମଧ୍ୟ ଥାଏ; କିନ୍ତୁ ମୋ ମନରେ ସବୁବେଳେ ଓର ଜଣ୍ଡୁଥାଏ, କେତେବେଳେ କେଉଁଠି ପେଙ୍ଗା ଉଚ୍ଛବାକୁ ନିରୋଳାରେ ପାନ୍ତି ଯଦି ତା' ସାଙ୍ଗେ କଥାବାର୍ତ୍ତା ହୁଅନ୍ତି ଓ ତାକୁ ସିଦ୍ଧେଶ୍ୱର ମହାଦେବ ଏବଂ ତାଙ୍କର କାଳେସୀ ଉଦ୍ଧବ ବେହେରାଙ୍କ ସମ୍ବନ୍ଧେ ପଚାରନ୍ତି ।

ଦିନେ ସେପରି ସୁଯୋଗ ପାଇ ନିରୋଳାରେ ମୁଁ ପେଙ୍ଗା ଉଚ୍ଛବାକୁ ମନ କଥା ପଚାରି ଦେଲି । ମୋ ଭଳି ଗୋଟିଏ ନିରୀହ ଅଥଚ

ସମ୍ଭ୍ରାନ୍ତ ବଂଶର କିଶୋର ଶ୍ରୋତା ପାଇ ପେଙ୍ଗା ଉଚ୍ଛବା ଖୁବ୍ ଖୁସି ହୋଇ ମହା ଉତ୍ସାହରେ ତା'ର ଗଞ୍ଜେଇ ଖିଆ କଣ୍ଠରେ ଯୋଉ ଘଟଣାଟି ମୋ ଆଗରେ ବଖାନ କଲା, ତାହା ମତେ ପୁରାଣର କଥା ଭଳି ଲାଗି ଅଲୌକିକ ମନେ ହେଲା । ମାତ୍ର ପେଙ୍ଗା ଉଚ୍ଛବା ସେ କଥାଟିକୁ କହି ଚାଲିଥାଏ, ସତେକି ତାହା ଏଇ ଜଗତର କଥା ଓ ଏହି ଗାଁରେ ଘଟିଥିବା ବର୍ଷ ଚାରି ପାଞ୍ଚଟା ତଳର କଥା ! ପେଙ୍ଗା ଉଚ୍ଛବା କହୁଥାଏ—

ଦ୍ୱାପର ଯୁଗ ଶେଷ ହୋଇ କଳିଯୁଗ ଭୋଗ ହୋଇଥାଏ ଅଳ୍ପ କେତୁଟା ଦିନ । ତେଣେ ହେମାଳୟ ପର୍ବତରେ ଦିନେ ଶିବ ପ୍ରାବର୍ତ୍ତୀ ରତ୍ନ କେଳି ଶୃଙ୍ଗାର କରୁଥାନ୍ତି । ଏଣେ ସିଧେସୋର ବୋଲି ଗନ୍ଧର୍ବ ହେମାଳୟରେ ବୁଲୁ ବୁଲୁ ସେ ଶୃଙ୍ଗାର ତା'ର ଆଖିରେ ପଡ଼ିଲା । ସିଧେସୋର ଆଖିରେ ପ୍ରାବର୍ତ୍ତୀଙ୍କ ଯାନୁ ଯଉବନ ଯେମିତ ପଡ଼ୁଛି, ସେମିତି ତାକୁ ମଦନ ଘାରିଲା । ସେ ଅଣକତ ହୋଇ ଭାବିଲା—ପ୍ରାବର୍ତ୍ତୀଙ୍କ ସ୍ତ୍ରୀ ରୂପରେ ନ ପାଇଲେ ଏ ଜୀବନ ହାରିଦେବ । ଏମନ୍ତ ହୋଇ ଭାବୁଛି —ନାରଦ ମୁନି ଢେଙ୍କି ଉପରେ ଚଢ଼ି ଆସି ସେଠି ପହୁଞ୍ଚିଲେ । ପଚାରିଲେ—ଆରେ ସିଧେସୋର ! ଆଜ ଏମିତ ଅପାଷ୍ଟମ ଅଣକତ ଦିଶୁଛୁ କାହିଁକି ? ସିଧେସୋର ମୁନିଙ୍କ ପାଦତଳେ ପଡ଼ି ସବୁ କଥା ଜଣାନ୍ତେ, ନାରଦ କହିଲେ—ତୁ ପ୍ରାଚୀ ନଦୀ କୂଳରେ ବାରବର୍ଷ କାଳ ନର୍ଜଳା ନସ୍ଥଳା ହୋଇ ବସି ତପସ୍ୟା କର । ଶିବ ତୋ' ତପସ୍ୟାରେ ଖୁସି ହୋଇ ତୋ' ଆଗରେ ଉଭା ହେଲେ, ତୁ ତୋ ମର୍ମ କଥା କହିବୁ । ସିଧେସୋର ବାରବର୍ଷ କାଳ ଏଇଠି ଏଇ ପ୍ରାଚୀ କୂଳରେ ବସି ତପସ୍ୟା କଲା । ଦିନେ ତା' ଆଗରେ ଶିବ ଆସି ଉଭା ହୁଅନ୍ତେ ସିଧେସୋର ତା' ମର୍ମ କଥା ତାଙ୍କୁ କହିଲା । ଶିବ ଟିକିଏ ଭାବିତ ହୋଇ କହିଲେ—ଆରେ ବାବୁ ଗନ୍ଧର୍ବ ବୀର ସିଧେସୋର ! ପ୍ରାବର୍ତ୍ତୀ ହେଲେ ଜଗତର ମାତା । ତୁ କାମ ମୋହରେ ଘାରି ହୋଇ ତାଙ୍କୁ ସ୍ତ୍ରୀ ରୂପରେ ପାଇବାକୁ ବାଞ୍ଛା କଲୁ, ତୁ ଜାଣ ମହା ପାପରେ ଭାଗୀ ହୋଇଗଲୁ । ମାତ୍ରକ ତୁ ତପସ୍ୟାରେ ମୋତେ ସନ୍ତୋଷ୍ଟ କରିଛୁ । ମୁଁ ତତେ ବର ଦେଉଛି—ତୁ

ଏଇ ପ୍ରାଚୀ କୂଳରେ ମୋ କଳା ନେଇ ଗୋପାଳ କୂଳରେ ଜନ୍ମନେବୁ । ମୁଁ ତା'ର ବହୁ ବର୍ଷ ଆଗରୁ ସେଠାରେ ସିଦ୍ଧେଶ୍ୱର ମହାଦେବ ରୂପେ ପୂଜା ପାଉଥିବି ଓ ମୋର ମହିମା ଦେଖାଉଥିବି । ତୁ ଯେତେବେଳେ ନଅ ବର୍ଷର ବାଳକ ହୋଇ ଗୋରୁ ଚରେଇବାକୁ ଦଣ୍ଡାକୁ ଯାଉଥିବୁ, ଦିନେ ଉଦୁଉଦିଆ ଖରାବେଳେ ମୋର ଦର୍ଶନ ପାଇବୁ । ସେଇଦିନୁ ମୁଁ ତୋ ଉପରେ ଅବତରିବି—ଆଉ ମହିମା ପ୍ରକାଶ କରିବି । ପ୍ରାଚୀଙ୍କ କଳା ନେଇ ଗୋଟିଏ ଅପୂର୍ବ ସୁନ୍ଦରୀ ସ୍ତ୍ରୀ ମଧ୍ୟ ଏ ମଞ୍ଚ ଭୂମିରେ ଜନ୍ମିବ । ସେ ତୋତେ ବିବାହ କରିବ; କିନ୍ତୁ ବିବାହର ଛଅମାସ ନ ପୂରୁଣୁ ସେ ତୋତେ ଛାଡ଼ି ଜଣେ ମ୍ଳେଚ୍ଛ ସଙ୍ଗେ କୁଆଡ଼େ ପଳେଇବ । ସେଇଠୁ କିଛି ବର୍ଷପରେ ସେଇ ମ୍ଳେଚ୍ଛ ପ୍ରାଚୀଙ୍କ ଅଭିଶାପରେ ଅକାଳରେ ଦିନେ ସର୍ପ ଦଂଶନରେ ମରିବ । ସେଇଠୁ ତୋ ସ୍ତ୍ରୀ ପୁଣି ଥରେ ତୋ ପାଖକୁ ଫେରି ଆସୁ ଆସୁ ମୋ ଅଭିଶାପରେ ସେଇ ତେନ୍ତୁଳି ଗଛ ମୂଳେ ପଡ଼ ପଥର ପାଲଟି ଯିବ । କିନ୍ତୁ ଆଦିମାତା ପ୍ରାଚୀଙ୍କ କଳା ନେଇଥିବାରୁ ପୁଣି ପଠାଣ ସଙ୍ଗେ ଶୃଙ୍ଗାର କରିଥିବାରୁ ତା' ନାଁ ହେବ ଆଲମ୍ ଚଣ୍ଡୀ । ବର୍ଷକେ ଥରେ ଦୋଳ ପୂର୍ଣ୍ଣିମା ବେଳକୁ ସେ ଚୂଆ, ହଳଦୀ, ସିନ୍ଦୂର, ଅବିର ଇତ୍ୟାଦି ଲଗାଇ ପୂଜା ପାଇବ ।

ପେଙ୍ଗା ଉଛବା ଅନର୍ଗଳ କହି ଚାଲିଥାଏ ତା' ନିଜ ଭାଷାରେ । ଯୋଉ ଭାଷା ଶୈଳୀଟିକୁ ମୁଁ ଆଉ ବର୍ତ୍ତମାନ ସମ୍ପୂର୍ଣ୍ଣ ଭାବେ ମନେ ପକାଇ କହିପାରୁ ନାହିଁ । ତା' ଭାଷା ଥିଲା ଅତି ଗ୍ରାମ୍ୟ ଆଉ ଅମାର୍ଜିତ; କିନ୍ତୁ ସେ ଏପରି ଭାବେ ଆନ୍ତରିକ ବିଶ୍ୱାସ ସହ କଥାଟିକୁ ରସମୟ କରି କହୁଥିଲା ଯେ, ମୋ ମନରେ ତା'ର ସ୍ୱପ୍ନିଳ ପ୍ରଭାବ ସେହିଦିନୁ ରହି ଯାଇଛି । ପେଙ୍ଗା ଉଛବା ଏହି କଥାଟିକୁ ଖୁବ୍ ବିସ୍ତୃତ ଭାବେ ମୋ ଆଗରେ ବିଖ୍ୟାନ କରିଥିଲା । ଶିବଙ୍କର ବର ଓ ଅଭିଶାପ ଫଳରେ ସିଦ୍ଧେଶ୍ୱର ମହାଦେବଙ୍କ କାଳେସୀ ଏଇ ଉଦି ବେହେରା କେମିତି ନଅ ବର୍ଷ ବୟସରେ ସତକୁସତ ଗହୀରରେ ଗାଈ ଚରଉ ଚରଉ ଦିନେ ବୈଶାଖ ମାସର ଦୁଇ ପ୍ରହରେ ହଠାତ୍ ଗାଈ ଗୋଠରେ ମହାଦେବଙ୍କୁ ଦେଖି ମୂର୍ଚ୍ଛିତ ହୋଇ ପଡ଼ିଗଲା ଏବଂ ସ୍ୱପ୍ନରେ ସିଦ୍ଧେଶ୍ୱର ମହାଦେବ

ତାକୁ ଦର୍ଶନ ଦେଇ କେମିତି ତାଙ୍କର କାଳେସୀ ହେବାକୁ ଆଦେଶ ଦେଲେ, ସେକଥା ସବୁ ମୁଁ ସେଦିନ ପେଙ୍ଗା ଉଛବା ଠାରୁ ଶୁଣିଥିଲି । ତା' ପରେ ପେଙ୍ଗା ଉଛବା ମୋତେ ଆଉ ଗୋଟିଏ ତଥ୍ୟ ମଧ୍ୟ କହିଥିଲା—ତାହା ହେଲା—ଉଦ୍ଧ ବେହେରାର ସୁନ୍ଦରୀ ଯୁବତୀ ସ୍ତ୍ରୀ କେମିତି ଦିନେ ଗୋଟାଏ ପଠାଣ ସାଙ୍ଗେ ସାତକୁ ସାତ ପଳାଇଲା ଏବଂ ଚାରି ବର୍ଷ ଚାରି ମାସ ଚାରିଦିନ ପରେ କେମିତି ସାତକୁ ସାତ ସେ ପଠାଣକୁ ସର୍ପ ଦଂଶିଲା—ଏବଂ ସେ ସ୍ତ୍ରୀ ପୁଣି ଉଦ୍ଧ ବେହେରା ପାଖକୁ ଫେରି ଆସିଲା । କିନ୍ତୁ ସିଦ୍ଧେଶ୍ୱରଙ୍କ ଅଭିଶାପ ଫଳରେ ସେ କେମିତି ପଥର ପାଲଟି ଯାଇ ସେଇ ପ୍ରାଚୀ ନଦୀ ବନ୍ଧ ତଳେ କଇଁଆ ଗଛ ମୂଳେ ପଡ଼ି ଆଲମ ଚଣ୍ଡୀ ରୂପେ ବର୍ଷକେ ଥରେ ପୂଜା ପାଉଛି—ତା' ମଧ୍ୟ ସେ ମୋ ଆଗରେ କହିଥିଲା । ପେଙ୍ଗା ଉଛବା ଠାରୁ ଏ ବୃତ୍ତାନ୍ତ ଶୁଣିଲାପରେ ମୁଁ ଆଉ ଉଦ୍ଧ ବେହେରାଙ୍କୁ ସାମାନ୍ୟ ମଣିଷ ବୋଲି ଭାବି ପାରିଲି ନାହିଁ । ମୋ ଆଖିରେ ସେ ସିଦ୍ଧେଶ୍ୱର ମହାଦେବଙ୍କ ଭକ୍ତ ପୁରୁଷ ଓ କିମ୍ବଦନ୍ତୀର ରହସ୍ୟମୟ ଚରିତ ହୋଇ ରହିଗଲେ ।

ସିଦ୍ଧେଶ୍ୱର ମହାଦେବଙ୍କ ମନ୍ଦିରଠାରୁ ଅଳ୍ପ ଦୂରରେ ପ୍ରାଚୀ ନଦୀର ବନ୍ଧ ତଳକୁ ଯୋଉ ଅତି ପ୍ରାଚୀନ ଝଙ୍କା ବରଗଛ ଅଛି, ଏବଂ ତା' ପାଖକୁ ରହିଛି ଗୋଟାଏ ମସ୍ତବଡ଼ ପ୍ରାଚୀନ ତିନ୍ତୁଳି ଗଛ (ଯୋଉ ଗଛ ମୂଳେ ଉଦ୍ଧ ବେହେରାଙ୍କର ଅଭିଶପ୍ତା ସ୍ତ୍ରୀ ପଥର ହୋଇ ଯାଇ "ଆଲମ ଚଣ୍ଡୀ" ରୂପେ ପଡ଼ିଛନ୍ତି) ଏବଂ ତା' ପାଖକୁ ବେତବଣ ଓ ମସ୍ତ ବଡ଼ ବଡ଼ ଉଇହୁଙ୍କା ଗୁଡ଼ିଏ—ସେଇଠି ପ୍ରତି ବର୍ଷ ଦୋଳପୂର୍ଣ୍ଣିମା ଦିନ ଆମ ସେ ଅଞ୍ଚଳ ଯାକର ଗୋରୁ ଓ ଗୋପାଳମାନେ ଏକାଠି ହୁଅନ୍ତି । ପେଙ୍ଗା ଉଛବା ମୁହଁରୁ ଉଦ୍ଧ ବେହେରାଙ୍କ ଯୁବତୀ ସୁନ୍ଦରୀ ସ୍ତ୍ରୀ ଗୋଟାଏ ପଠାଣ ସଙ୍ଗେ ପଳାଇଯାଇ, ଓ ପୁଣି ଫେରିଆସି ପଥର ପାଲଟି ଯାଇଥିବା ଓ ଆଲମ ଚଣ୍ଡୀ ରୂପେ ଆଖ୍ୟାତା ହୋଇ ନଈ ବନ୍ଧ ତଳ ତିନ୍ତୁଳି ଗଛ ମୂଳେ ପଡ଼ିଥିବା ସେହି ନାରୀ ମୂର୍ତ୍ତିଟିକୁ ଦେଖିବା ଲାଗି ମୁଁ ବହୁବାର ସେଠିକି ଯାଇଛି ଓ ସେଇ ମୂର୍ତ୍ତିଟିକୁ ଦେଖି ମନେ ମନେ ବହୁତ ରୋମାଞ୍ଚ ଅନୁଭବ କରିଛି । ଏ କଥାର ସତ୍ୟାସତ୍ୟ ସମ୍ବନ୍ଧେ ମୁଁ

ମୋ ମାଆଙ୍କୁ ମଧ୍ୟ ହନେ ପଚାରୁଥିଲି । ସେ ମଧ୍ୟ ମତେ ତାହା ସତ୍ୟ ବୋଲି କହୁଥିଲେ ।

ନଈ ବନ୍ଧ ତଳେ ସେହି ପ୍ରକାଣ୍ଡ ଝଙ୍କା ବରଗଛ । ଛତା ପରି ମେଲେଇ ଥାଏ ତା'ର ଶାଖା ପ୍ରଶାଖା । କାହିଁ କେଉଁ କାଳର ସେହି ପ୍ରକାଣ୍ଡ ବନସ୍ପତିଟିର ଗୋଟାଏ ରହସ୍ୟମୟ ବ୍ୟକ୍ତିତ୍ୱ ଥିଲା । ଗଛଯାକ ଘୂକାଳିକା ଚଢ଼େଇ ଆଉ କୁଆମାନଙ୍କ ବସା । କେତେଟା ବଣି ଆଉ କୁଣ୍ଡାଖିଆ ଚଢ଼େଇ ମଧ୍ୟ ତାଙ୍କ ସଙ୍ଗେ ଯୋଗ ଦେଇଥାନ୍ତି । ଦିନ ରାତି କେଁ କାଁ ଚେଁ ଘୁଁରେ ସେହି ଖଣ୍ଡମଣ୍ଡଳ ଯେପରି ମୁଖରିତ ହେଉଥାଏ । ତାହା ସେହି ରହସ୍ୟମୟତାକୁ ଆହୁରି ବଢ଼େଇ ଦେଉଥାଏ । ସନ୍ଧ୍ୟାର କିଛି ପୂର୍ବରୁ କେତେଥର ମୁଁ ଓ ମାଷ୍ଟ୍ରାଧର ସେବାଟେ ଆସିଲା ବେଳେ ସାମାନ୍ୟ ଦୂରରୁ ଠିଆ ହୋଇ ଆମେ ସେ ଦୃଶ୍ୟ ଓ ଶବ୍ଦମାନ ଶୁଣୁ । ଆମକୁ ଲାଗେ—ଅସଂଖ୍ୟ ଭୂତ, ପ୍ରେତ, ଡାହାଣୀ, ଚିରୁଗୁଣୀ ଓ ଗନ୍ଧର୍ବ କନ୍ନରାଦଙ୍କର ଅଶରୀରୀ ଆତ୍ମା ପକ୍ଷୀମାନଙ୍କ ରୂପ ଧରି ସେଇ ଗଛ ଭିତରେ କେଁ କାଁ ଚେଁ ଘୁଁ କରୁଛନ୍ତି । ସେ ଗଛରୁ ପୁଣି ଅସଂଖ୍ୟ ଓହଳମାନ ବାହାରି ପ୍ରାୟ ପାଞ୍ଚ ଗୁଣ୍ଠ ଜମି ମାଡ଼ି ବସି ସେ ଗୋଟାଏ ଚମତ୍କାର ବଣ ଅରଣ୍ୟର ପରିବେଶ ସୃଷ୍ଟି କରିଥାଏ । ତା'ଠାରୁ ସାମାନ୍ୟ ଘୁଞ୍ଚ ସେହି ପ୍ରକାଣ୍ଡ ତେନ୍ତୁଳି ଗଛଟା । ତା ପାଖକୁ ଲାଗି ରହିଛି ବେତବଣ ଓ କେତେଟା ଗଗନସ୍ପର୍ଶୀ ଗୁଳୁଣ୍ଡା ଗଛ । ତେନ୍ତୁଳି ଗଛ ପାଖକୁ ଲାଗି ଗୋଟାଏ ଭଙ୍ଗା ମନ୍ଦିର । କାହିଁ କେଉଁ କାଳର ତା' ଆଗରେ ଅମୁହାଁ କୂଅଟାଏ । ସେହି ଭଙ୍ଗା ମନ୍ଦିର ଆଗରେ ମାଟି, ଚୂଆ, ହଳଦୀ, ସିନ୍ଦୂରରେ ଆବୃତ ଗୋଟାଏ ମୂର୍ତ୍ତି (ଏବେ ସେ ମୂର୍ତ୍ତିଟିକୁ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଉଦ୍ଧାର କରି ସଫା ସଫି କରି ତାହା ସପ୍ତମାତୃକାଙ୍କ ଏକ ମୂର୍ତ୍ତି ବୋଲି ସିଦ୍ଧାନ୍ତ କରିଛନ୍ତି ଓ ତାହା ରାଜ୍ୟ ସଂଗ୍ରହାଳୟରେ ରହିଛି) । ମୂର୍ତ୍ତିଟି ସେତେବେଳେ ମାଟି ଉପରେ ସାମାନ୍ୟ ନଇଁକରି ରହିଥିଲା ଏବଂ ତା'ର ସେହି ଚୂଆ ହଳଦୀ ସିନ୍ଦୂର-ବୋଳା ମୁହଁକୁ ଦେଖିଲେ ମନେ ହେଉଥିଲା, ସତେକି ମୂର୍ତ୍ତିଟି କାନ୍ଦୁଥିଲା ! ମୋଟ ଉପରେ ବର, କଇଁଆ, ଗୁଳୁଣ୍ଡା, ବେତବଣ ମସ୍ତ ବଡ଼ ବଡ଼ ଉଇହୁଙ୍କା, ସେଇ ଅମୁହାଁ କୂଅଟା ଓ ସେହି ପ୍ରାଚୀନ

'ମାତୃକା ମୂର୍ତ୍ତିଟି ସେ ସ୍ଥାନଟିକୁ ପୌରାଣିକ ଯୁଗର ରହସ୍ୟ ଓ ମହତ୍ତ୍ୱମାରେ ଭରି ଦେଇଥାଏ ।

ପ୍ରତିବର୍ଷ ଦୋଳପୂର୍ଣ୍ଣିମା ଦିନ କେବଳ ସେହି ବରଗଛ ମୂଳରେ ଆସି ଆମ ଗାଁ ଓ ପାଖ ଆଖ ଗାଁମାନଙ୍କର ଗାଈ ଗୋଠ ଜମା ହୁଅନ୍ତି । ଗାଈମାନଙ୍କୁ ଗାଧୋଇ ପାଧୋଇ ଦେଇ ସେମାନଙ୍କ ମୁଣ୍ଡରେ ହଳଦୀ ଆଉ ଫଗୁରେ ଗୁନ୍ଦ କରି ଯାଇଥାଏ । ବେକରେ ଫୁଲମାଳ ପକା ଯାଇଥାଏ । ସିଙ୍ଗମାନଙ୍କରେ ଘିଅରେ ଗୋଳା ସିନ୍ଦୂର ବୋଳା ହୋଇ-ଥାଏ । ବାଛୁରୀମାନଙ୍କ ବେକରେ ଚଉଁରୀ ବନ୍ଧା ହୋଇଥାଏ । କୋଉ କୋଉ ଗାଈ ବେକରେ ଘଣ୍ଟିଘାଗୁଡ଼ି ବା କାଠ ଟିପା ମଧ୍ୟ ବନ୍ଧା ହୋଇଥାଏ । ଶହ ଶହ ଗାଈଙ୍କର ଗୋଠ ହୁଏ ସେଠି ସେଦିନ । ଛୁଣୁଝୁଣୁ, ଗୁଡ଼ୁଗୁଡ଼ୁ, ହମା ହମା ରବରେ ଚତୁର୍ଦ୍ଦିଗ ମୁଖରିତ ହେଉଥାଏ । ଗୋପାଳମାନେ ହଳଦୀ ମଡ଼ା ନୂଆ ଲୁଗା ପିନ୍ଧିଥାନ୍ତି । ଗୋପାଳୁଣୀମାନେ ଆସି ପ୍ରଥମେ ଆଲମ ଚଣ୍ଡୀଙ୍କୁ ଗାଧୋଇ ଦେଇ ମାଜଣା କରନ୍ତି । ତା' ପରେ ଗାଈମାନଙ୍କୁ ବଳ ଦିଆଯାଏ । ଘାସ ବାଉଁଶ ପତ୍ର ଓ କଦଳୀ ପତ୍ର ଭିତରେ ବରି, ଅରୁଆ ଚାଉଳ ଓ ଗୁଡ଼ର କଞ୍ଚା ପନ୍ତୁଣିକୁ ପିଠା ପୁର ପରି ରଖି ଗୋପାଳୁଣୀମାନେ ପ୍ରତି ଗାଈର ମୁହଁରେ ଦିଅନ୍ତି ଏବଂ ଗାଈମାନେ ମହାନନ୍ଦରେ ସେଇ ବଳକୁ ଖାଇଲାବେଳେ, ବେଣୁ, ସିଙ୍ଗା କାହାଳି ଇତ୍ୟାଦି ବଜାଇ ଓ ଲଉଡ଼ି ଧରି ଗୋପାଳମାନେ ପରସ୍ପର ଭିତରେ ବାଡ଼ିଖେଳ ଖେଳନ୍ତି ବହୁ ସମୟ ।

ସେ ବର୍ଷ ଦୋଳପୂର୍ଣ୍ଣିମା ଦିନ ମୁଁ ଓ ମାୟାଧର ସକାଳ ପହରୁ ଆସି ସେଠି ଏ ସବୁ କଥା ଦେଖୁଥାଉଁ । ପ୍ରାୟ ଗୋଟାଏ ବେଳକୁ ଗୋପାଳୁଣୀମାନେ ନାଲି ହଳଦିଆ ରଙ୍ଗର କପଡ଼ାମାନ ପିନ୍ଧି ସେଠାରେ ଆସି ପହଞ୍ଚିଲେ ଆଲମଚଣ୍ଡୀ, ଗାଈ ଓ ଗୋପାଳମାନଙ୍କ ଧର୍ମନେତା ସିଦ୍ଧେଶ୍ୱରଙ୍କ କାଳେସୀ ଉଦି ବେହେରାଙ୍କୁ ବନ୍ଦାପନା କରିବା ଲାଗି । ଆଲମଚଣ୍ଡୀ ଓ ଗାଈମାନଙ୍କୁ ବନ୍ଦାପନା କରିସାରି ଓ ବଳ ଖୁଆଇ ସାରି ସେମାନେ ଆସି ହାଜର୍ ହେଲେ କାଳେସୀ ଉଦି ବେହେରାଙ୍କ ପାଖରେ । ଉଦି ବେହେରା ଗୋଟିଏ ନୂଆ ନଡ଼ିଆ ଗୁଞ୍ଚି ଉପରେ ଗୁମ୍

ହୋଇ ବସିଥାନ୍ତି । ତାଙ୍କର ଗୃହାଣୀ ଖୁବ୍ ଆକ୍ରାନ୍ତ ଓ ନିଶାଗ୍ରସ୍ତ ହେଲାଭଳି ହସୁଥାଏ । ଖୁବ୍ ହର୍ଷଷ୍ଟି ମଧ୍ୟ ହସୁଥାଏ । ତା'ଙ୍କ ହାତରେ ସେ ଦୁଇଟି ଜାଉଁଳ ବେତ ଧରିଥାନ୍ତି । ତାଙ୍କ ପାଖରେ ବସିଥାଏ ପେଙ୍ଗା ଉଚ୍ଛବା । ଗୋପାକୁଣୀମାନେ ଯେଉଁ କଞ୍ଚାଦୁଧ, ଲହୁଣୀ, ଦହି, ଗୁଡ଼ ଆଉ ଘିଅ ପ୍ରଭୃତି ଆଣିଥିଲେ ସେ ସବୁକୁ ପେଙ୍ଗା ଉଛବା ସେମାନଙ୍କଠାରୁ ନେଇ ଉଦ୍ଧ ବେହେରାଙ୍କ ମୁଣ୍ଡରେ ଢାଳିଲା ଓ ତାଙ୍କ ଦେହସାକ ବୋଳିଲା । ତା' ପରେ, ଗୋପାକୁଣୀମାନେ ତାଙ୍କ ଦେହରେ ଅରୁଆ ଚାଉଳ, ଫଗୁ, ହଳଦୀଗୁଣ୍ଡା ଇତ୍ୟାଦି ଛିଞ୍ଚି ହୁଳହୁଳି ପକାଇଲେ । ନିକଟରେ ଦୁଇଜଣ ଢୋଲିଆ ଆଉ ମହୁରିଆ ବସିଥିଲେ । ସେମାନେ ତାଙ୍କର ବାଦ୍ୟ ଆରମ୍ଭ କରିଦେଲେ । ହୁଳହୁଳି ପକାଇ ଗୋପାକୁଣୀ-ମାନେ ଉଦ୍ଧ ବେହେରାଙ୍କୁ ଜଳନ୍ତା ବଳିତା ଧରି ବନ୍ଦାପନା କଲେ । ଝୁଣା ଧୂଆଁରେ ଗଛମୂଳ କୁହୁଡ଼ିଆ ହୋଇଗଲା । ଏତିକିବେଳେ ଗୋପାଲମାନେ ସବୁଆଡ଼ୁ ଛୁଟି ଆସିଲେ । ଆଉ ଉଦ୍ଧ ବେହେରାଙ୍କ ଚାରିପଟେ ଜମା ହୋଇ ହରିବୋଲ ଉପରେ ହରିବୋଲ ପକାଇ ଲାଗିଲେ । ବାଇଦ ଓ ମହୁରୀ ଉଚ୍ଚକିତ ସ୍ୱରରେ ବାଜିଉଠିଲା । ସମବେତ ଦେଖଣାହାରୀଙ୍କ କଣ୍ଠରୁ ମଧ୍ୟ ମହାରୋଳ ଉଠିଲା । ଏଣେ ସୂର୍ଯ୍ୟ କ୍ରମଶଃ ପଶ୍ଚିମ ଆକାଶ ଚକ୍ରବାଳ ଆଡ଼କୁ ଖସି ଆସୁଥାନ୍ତି । ନଈ ଆଡ଼ୁ ହୁ ହୁ ହୋଇ ମଲୁଆଲି ପବନ ବହି ଆସୁଥାଏ । ଗାଈ ବାଛୁରୀଙ୍କ ହମାରଡ଼ି ମଧ୍ୟ ତା' ସାଙ୍ଗକୁ ମିଶି ଯାଇଥାଏ । ମଇଁଷି ସିଙ୍ଗରେ ନିର୍ମିତ ସିଙ୍ଗାମାନ "ହୁତ୍ ହୁତ୍ ହୁତ୍-ହୁ ହୁ ହୁ-ଧୁତ୍‌କୁ ଧୁତ୍‌କୁ ଧୁତ୍‌କୁ" ଶବ୍ଦରେ ଆକାଶ କମ୍ପାଉଥାନ୍ତି । ପେଙ୍ଗା ଉଚ୍ଛବା ଗୋଟିଏ ସରାରେ ଝୁଣାଧୂଆଁ ଧରି ଉଦ୍ଧ ବେହେରାଙ୍କ ମୁହଁ ପାଖରେ ହଲାଉଥାଏ । ଏହି ସମୟରେ ଉଦ୍ଧ ବେହେରା ଘିଅ ସିନ୍ଦୂର ବୋଳା ଓ ଛିଟକନା ବନ୍ଧା ଜାଉଁଳବେତ ଦୁଇଟି ଦୁଇ ହାତରେ ଧରି ଦୁଇପଟକୁ ହାତ ମେଲାକରି ଖୁବ୍ ଜୋରରେ ଥରିବାକୁ ଲାଗିଲେ । ତା' ପରେ ଆଖିବୁଜି ଗୋଡ଼ ହାତ ଗୁଡ଼ି ଚାରିପଟେ ମୁଣ୍ଡକୁ ନୁଆଁଇ ହୁ ହୁ ହୋଇ କମ୍ପି ଲାଗିଲେ । ଢୋଲ ମହୁରୀ ସିଙ୍ଗା କାହାଳୀ ଆହୁରି ଜୋରରେ ବାଜି ଉଠିଲା । ହରିବୋଲ ହୁଳହୁଳିରେ ଗଛମୂଳ ମଧ୍ୟ ଥରିବାକୁ ଲାଗିଲା । ତା'ର ଭିତରେ ହଠାତ୍ ଉଦ୍ଧ ବେହେରା

କର୍ମି କର୍ମି ଉଠି ପଡ଼ିଲେ । ଦେହସାକ ଘିଅ ଜର ଜର—ମୁଣ୍ଡରେ ଲହୁଣୀ ଗୁଡ଼ ସାଲୁବାଲୁ—ମୁହଁଟି ସିନ୍ଦୂର ଆଉ ଅବିରରେ ଉପୃଙ୍କର ଦିଶୁଥାଏ । ବେକରେ ଫୁଲମାଳ । ସେମିତି ଠିଆ ହୋଇଥିବା ଅବସ୍ଥାରେ ସେ ବହୁବେଳଯାଏ କର୍ମି କର୍ମି ବେତ ଦୁଇଟା ହଲାଉଥାନ୍ତି ବାଦ୍ୟର ତାଳେ ତାଳେ । ପେଙ୍ଗା ଉଚ୍ଛବା ଅତି ତତ୍ପରତାର ସହିତ ଗୋଟାଏ ବଡ଼ ମାଟି ସରାରେ ଝୁଣାଧୂଆଁ ଧରି ତାଙ୍କ ମୁହଁପାଖେ ହଲାଉଥାଏ । ହଠାତ୍ ଉଦ୍ଧ ବେହେରା ଦଉଡ଼ିବାକୁ ଆରମ୍ଭ କଲେ ଏବଂ ତାଙ୍କ ପଛପଟେ ସମସ୍ତେ ହିଭିନ୍ନ ନାଦ କରି କରି ଦଉଡ଼ିଲେ । ଉଦ୍ଧ ବେହେରା ସେଇ ବରଗଛଟିକୁ ସମସ୍ତଙ୍କ ସହିତ ସାତଥର ଦଉଡ଼ ଦଉଡ଼ ପ୍ରଦକ୍ଷିଣ କଲେ । ତା'ପରେ ସେଇ ଆଲମଚଣ୍ଡୀ ମୂର୍ତ୍ତି ପାଖକୁ ଆସି ସେଇ ଜାଉଁଳ ବେତରେ ମୂର୍ତ୍ତିଟିକୁ ଷ୍ଟୁରଙ୍କର ପିଟିଲେ । ମୁଁ ଏହାର ଅର୍ଥ ବୁଝି ନ ପାରି ମାୟାଧରକୁ ପଚାରନ୍ତେ—ସେହି ବଙ୍କ ଶିରୋମଣି ବନ୍ଧୁ ମତେ କହିଲା ଯେ ସିଦ୍ଧେଶ୍ୱର ମହାଦେବ ଉଦ୍ଧ ବେହେରା ଭିତରେ ଉଭା ହୋଇ ତାକୁ ପିଟୁଛନ୍ତି । କାରଣ ସେ ତ ପ୍ରକୃତରେ ଉଦ୍ଧ ବେହେରାର ବିବାହିତା ଭାର୍ଯ୍ୟା । ପଠାଣ ସାଙ୍ଗରେ ଗୁରିବର୍ଷ ପଳାଇଯାଇ, ସେ ପଠାଣ ସର୍ପାଘାତରେ ମଲାପରେ ଯେତେବେଳେ ସେ ପୁନର୍ବାର ଉଦ୍ଧ ବେହେରା ପାଖକୁ ଫେରିଆସେ—ଏଇଠି ଏଇ ନଈକୂଳେ ସିଦ୍ଧେଶ୍ୱରଙ୍କ ଅଭିଶାପରେ ପଥର ପାଲଟିଗଲା । ଏମିତି ବେତରେ ଗୁରିପାହାର ପିଟିବାଦ୍ୱାରା ସିଦ୍ଧେଶ୍ୱର ସେଇ ବିକଟାଳୀକ ବର୍ଷକେ ଥରେ ଶାସ୍ତି ଦିଅନ୍ତି । ତଦ୍ୱାରା ସେ ଅନ୍ୟ ସ୍ତ୍ରୀ ଲୋକମାନଙ୍କୁ ଶିକ୍ଷା ଦିଅନ୍ତି । ପାର୍ବତୀଙ୍କ ଅଂଶରେ ଜନ୍ମିଥିବାରୁ ପାର୍ବତୀଙ୍କ ବରରେ ସେ ଆଲମଚଣ୍ଡୀ ନାମରେ ପୂଜା ପାଉଛି ସିନା !

ମୁଁ ମାୟାଧରଠାରୁ ଏତେକ ଶୁଣୁଛି—ହଠାତ୍ ମୋ ଆଖିରେ ପଡ଼ିଲା ଯେ ଉଦ୍ଧ ବେହେରା ସେ ମୂର୍ତ୍ତିଟିକୁ ପିଟିବା ପରେ ପରେ ପେଙ୍ଗା ଉଚ୍ଛବା ସେ ମୂର୍ତ୍ତିଟିକୁ ସର୍ବାଙ୍ଗ ଆଉଁସିବାରେ ଲାଗିଛି । ସତେକି ମୂର୍ତ୍ତିଟିର ମାଡ଼ କଷ୍ଟ ଲାଘବ କରିବା ପାଇଁ ପେଙ୍ଗା ଉଚ୍ଛବା ଖୁବ୍ ସହାନୁଭୂତିରେ ତାକୁ ଆଉଁସି ପକାଉଛି ! ଏତିକିବେଳେ ଉଦ୍ଧ ବେହେରା ସ୍ଥିର ହୋଇ ଠିଆ ହୋଇଗଲେ ଓ ଦୁଇ ହାତରେ ଜାଉଁଳ ବେତ ଦୁଇଟାକୁ ଉପରକୁ

ଟେକଧର ଖୁବ୍ ଜୋର୍‌ରେ କୁହାଟ ଗ୍ଭଡ଼ଲେ – ( ମୁଁ ପ୍ରଥମେ ଏଇଠି ଉଦ୍ଧବ ବେହେରଙ୍କ ଅଲୌକିକ ବଜ୍ରଗମ୍ଭୀର କଣ୍ଠର ନାଦ ଶୁଣିଲି । )—

ଆରେ ହେ ଗୋପାଳେ !

ବାଜା ଓ ଗୋଳମାଳ ସବୁ ସାଙ୍ଗେ ସାଙ୍ଗେ ନିସ୍ତବ୍ଧ ହୋଇଗଲା । ଗୋପାଳମାନେ ଏକ ସ୍ୱରରେ ଉତ୍ତର ଦେଲେ—

ଆଜ୍ଞା ହେଉ—ହୁକୁମ୍ ହେଉ ।

ଉଦ୍ଧବ ବେହେରା ଉଚ୍ଚସ୍ୱରରେ ପ୍ରଶ୍ନ କଲେ—

ଆରେ ଏ ପୃଥୀ କେମିତି ଗ୍ଭଲୁଛି ?

ଗୋପାଳମାନେ ସମସ୍ୱରରେ ଉତ୍ତର ଦେଲେ—

ଯେମିତି ଚଳଉଛ—ସେମିତି ଗ୍ଭଲୁଛି ।

ସେଇଠୁ ଉଦ୍ଧବ ବେହେରା ପାଟିକରି କହିଲେ—

ହଉ ହଉ ହଉ—ହେଲା ହେଲା ହେଲା—ଶାନ୍ତିରେ ରହ—ସୋସ୍ତିରେ ରହ—ଆପଦ କଟିଯାଉ ! ଶଷ୍ଟ ଶାନ୍ତ ହେଉ । ଶ୍ୟାପ ଖଣ୍ଡନ ହେଉ । ସିଧେସୋରଙ୍କ ମହିମା ଉଜଳ ହଉରେ ଏ···ଏ···ଏ ଗୋପାଳେ ! ! ! ବାନା ଟେକ ଉଦ୍ଧବରେ ଏ···ଏ···ଏ ଗୋପାଳେ ଏ··· ଏ···ଏ··· !!!

ଏତିକ ଶୁଣିବା ମାତ୍ରେ ପୁଣି ହରିବୋଲ ହୁଳହୁଳି ସହିତ ବେଣୁ, ସିଙ୍ଗା, କାହାଳୀ ବଇଁଶୀ ଆଉ ବାଇଦ ମହୁରୀ ବାଜି ଉଠିଲା ଏବଂ କିଛିକ୍ଷଣ ପରେ ଉଦ୍ଧବ ବେହେରା ପୁନଶ୍ଚ ଉପରକୁ ଜାଉଁଳି ବେତ ଟେକିବାମାତ୍ରେ—ସବୁ ନୀରବ ନିସ୍ତବ୍ଧ ହୋଇଗଲା । ଗୋପାଳ ଗୋପାଳୁଣୀମାନେ ପୃଥକ୍ ପୃଥକ୍ ହୋଇ ବସି ପଡ଼ିଲେ । ସବୁ ମଧ୍ୟ ଚୁପ୍‌ଚାପ୍ ହୋଇଗଲା । ମତେ ମାଷ୍ଟ୍ରାଧର କହିଲା—ଏଥରକ ଗୀତ ଓଗାଳ ହେବ । ପ୍ରଥମେ ଉଦ୍ଧବ ବେହେରା କାଳେସୀ ପ୍ରଶ୍ନ କରିବେ ଓ ଗୋପାଳମାନଙ୍କ ଭିତରୁ ବଛା ଗୋପାଳମାନେ ତା'ର ଉତ୍ତର ଦେବେ ।

ଉଦ୍ଧବ ବୈଦେହୀ ତାଙ୍କର ଥର ଥର କମ୍ପିତ ଗଳାରେ ବାହୁନବା ସ୍ୱରରେ ପସ୍ୱାର ଛନ୍ଦରେ ଓଗାଳ ପ୍ରଶ୍ନଟିଏ ଗାଇଲେ—

"ଆରେ ହେ ହେ ହେ ଗୋପାଳେ !!"
"ଆଜ୍ଞା ହେଉ—ଆଜ୍ଞା ହେଉ ।"
"ଆରେ ! କାହାଠାରୁ ଜାତ ତୁମେ କେ ତୁମ ପିଅର ?
କିଏ ଦେଲା ତୁମ କାନ୍ଧେ ବାହୁଙ୍ଗୀର ଭର ?
କାହା ଘର ବୋହୁଅଛ କହରେ ଗୋପାଳେ ?
କାହାନାମ ଘୋଷୁଅଛୁ ବେଣୁ ଝରନ୍ତରେ ?
ଏହି ଗଣ୍ଠି ଗୋଟି ଯଦି ନ ପାରିବ ଫେଇ
ଗୋପପୁରେ ଦଣ୍ଡେ ଆଉ ନ ପାରିବ ରହି ?"

ଏହି ପ୍ରଶ୍ନ ପରେ ପୁଣି କିଛି ସମୟ ସିଙ୍ଗା କାହାଳୀ ବାଜି ଉଠିଲା । ଗୋପାଙ୍ଗନାମାନେ ହୁଳହୁଳି ପକାଇଲେ ଏବଂ ସେହି ଘେର ଭିତରୁ ପେଙ୍ଗା ଉଞ୍ଚବା ଲଉଡ଼ୀଟିଏ ଧରି ପେଙ୍ଗେଇ ପେଙ୍ଗେଇ ଆସି ହାତ ଯୋଡ଼ି ଠିଆହେଲା । ସବୁ ଗୁଁ ଗୁଁ ନିସ୍ତବ୍ଧ ହେଲାପରେ କାଳେସୀଙ୍କ ପ୍ରଶ୍ନର ଉତ୍ତର ସେହି ପସ୍ୱାର ଛନ୍ଦରେ ସେ ଗାନ କରି କହିଲା—

"ଶୁଣ ହେ ଗନ୍ଧର୍ବ ବୀର ଯାହା ପଚାରିଲ ।
ଶୂନ୍ୟରୁ ଜନମ ହେଲୁ ଗୋବନ୍ଦ ପିଅର ॥
ଯେ କାଳେ ଇନ୍ଦ୍ର ସପତ ଦିନ ବୃଷ୍ଟି କଲା ।
ବଜ୍ରାଘାତେ ଅନେକ ପଥର ବରଷିଲା ॥
ଗୋରୁ ଗୋପାଳ ସହିତେ ଗୁଡ଼ିଲେ ବୋବାଳି ।
ଆରତେ ଡାକିଲେ ସର୍ବେ ରଖ ବନମାଳୀ ॥
କାଣି ଅଙ୍ଗୋଷ୍ଠେ ପ୍ରବର୍ତ୍ତ ଟେକିଲା କହ୍ନାଇ ।
ଏହା ଦେଖି ନନ୍ଦ ରଜା ହୋଇଲାଟି ବାଇ ॥
କ୍ରୋଧ ହୋଇ ଆମ୍ଭଙ୍କୁ ସେ ବହୁତ ଭର୍ତ୍ସିଲା ।
ବାଳୁତ ପୁଅ ମୋହନ୍ତ ମନ୍ଦର ଟେକିଲା ॥
କିସ କରୁଛରେ ତୁମ୍ଭେ ତଳେ ଠିଆ ହୋଇ ?
ପ୍ରବର୍ତ୍ତ ପରେ ଲଉଡ଼ୀ ଦିଅରେ ଲଗାଇ ॥

ନନ୍ଦ କଥା ମାନ ଆମେ ଲଜ୍ଜାୀ ଛନ୍ଦଲୁ ।
ଗୋବର୍ଦ୍ଧନ ଗିରିକି ଯେ ଟେକଣ ଧଇଲୁ ॥
ସେହିଦିନୁଁ ବୋହୁଅଛୁ ପୃଥିବୀର ଭାର ।
ରାଧାନାମ ବାଉଅଛୁ ବେଣୁ ନିରନ୍ତର ॥
ଏବେ ଆଜ୍ଞା ହେଉ ଆମ୍ଭେ ରହୁ ଗୋପପୁର ।
ଯେତିକ ଗାଁତିବ ଅଛୁ କହିଲୁ ଗୁମୁର ॥"

ଏହି ଉତ୍ତର ଶୁଣିବା ପରେ ପରେ ସଭାସ୍ଥଳରେ ପୁଣି ହରିବୋଲ୍ ହୁଳହୁଳି ଉଚ୍ଛୁଳି ଉଠିଲା ଏବଂ ସିଙ୍ଗା ବେଣୁ ଇତ୍ୟାଦି ବାଜି ଉଠିଲା । କ୍ଷଣେକ ପରେ ପୁଣି ସମବେତ ଗୋପାଳମାନଙ୍କ ଭିତରୁ ଜଣେ ବୟସ୍କ ଗୋପାଳ ସଭା ମଝିରେ ଠିଆ ହେବା ମାତ୍ରେ ପୁଣି ଚାରିଆଡ଼େ ଧୁଆଁ ଧୁଆଁ ନିସ୍ତବ୍ଧ ହୋଇଗଲା । ବିନମ୍ରରେ ହାତଯୋଡ଼ି ଖୁବ୍ ଶାନ୍ତ ଧୀର କଣ୍ଠରେ ସେହି ଗୋପାଳଟି ଆଉ ଗୋଟିଏ ଓଗାଳ ପ୍ରଶ୍ନ ଉପ୍ସାର ଛାନ୍ଦରେ ଗାନ କଲେ ।

କୁହ ହେ ଗୋପାଳମଣି ଯାହା ପଗ୍ଗରଇ
"ଗୋରସ" ବୋଲି ପଦାର୍ଥ କାହାକୁ ଟି କହି ?
"ଠେକ ପସରା" ବୋଲଣ ଯେବଣ ପଦାର୍ଥ
ତାହାର ମରମ ଯାହା କୁହ ପରମାର୍ଥ ।
କାହା ଆଜ୍ଞାରେ ଗୋରସ ବିକୁଛ ଗୋପାଳେ
ଗୋପରେ ରହିବ ଜାଣ ଏତେକ କହିଲେ ।

ପୁଣି ଉଚ୍ଚ ସ୍ୱରରେ ହରିବୋଲ୍ ଓ ହୁଳହୁଳି ଉଚ୍ଛୁଳିଲା ଏବଂ କେତୋଟି ସିଙ୍ଗା ବାଜି ଉଠିଲା । ତା'ର ଭିତରେ ସଭା ମଧ୍ୟରୁ ଆଉ ଜଣେ ଅପେକ୍ଷାକୃତ କମ୍ ବୟସର ଗୋପାଳ ବେକରେ ଚଦରଟିକୁ ଓହଳାଇ ହାତଯୋଡ଼ି ବଡ଼ ସରସ ଗଳାରେ ଉତ୍ତର ଦେଲେ —

"ଶୁଣ ହୋ ଗୋପାଳ ବୀର ତହିଁର ଉତ୍ତର
ସନ୍ଧ କଥାମାନ ଯାହା ଆମ୍ଭକୁ ଗୋଚର ।
ବୃନ୍ଦାବନେ ବନେ କାହ୍ନୁ ବେଣୁ ବାଉଥିଲେ
ଶୂନ୍ୟ ମଣ୍ଡଳରେ ନିରାକାର ତା ଶୁଣିଲେ ।

ଶୁଣୁଶୁଣୁ ନଉକାର ଗଲେଟି ତରଳ
ଭକ୍ତିରସ ହୋଇ ସେଥୁ ପଡ଼ଲେ ଉଛୁଳ ।
ଗୃହୁଁ ଗୃହୁଁ ସେହି ରସ ଶୂନ୍ୟରୁ ଝରଲା
ଯମୁନା ଉଛୁଳ ସେଥୁ ଗୋପେ ମାଡ଼ଗଲା ।
ଷୋଳ ସହସ୍ର ଗୋପୀ ତାଙ୍କୁ କୁଚରେ ଭରଲେ
ତଥାପି ସେ ରସକୁ ସମ୍ଭାଳ ନ ପାରଲେ ।
କାମଧେନୁ ସଙ୍ଗେ ଧେନ ଲକ୍ଷେକ ବାଛୁରୀ
ସେ ରସକୁ ଶୋଷିଲେଟି ପ୍ରାଣପୂର୍ଣ୍ଣ କର ।
ସେ କାଳରେ ନନ୍ଦରଜା ଗୋପାଳଙ୍କୁ ଡାକ
ଆଜ୍ଞା ଦେଲେ ଗୋପାଳେ ହେ ସଜକର ଠେକ ।
ପସରରେ ଧର ତାଙ୍କୁ ବୁଲ ଯାଇ ଯାଇ
ଗୋରସ ବୋଲଣ ତାଙ୍କୁ ବକବଟି ନେଇ ।
"ଗୋ"ରେ ଗୋରୁ ଗୋପାଳ ଆବର ଏ ଶ୍ରୀକୃଷ୍ଣ
"ର"ରେ ଶ୍ରୀରଧା ଠାକୁରଣୀ ରହିଛନ୍ତି ।
"ସ" ବୋଲ କର ଯେଉଁ ଏକଇ ଅକ୍ଷର
"ସାମ" ବେଦ ବୋଲ ତାଙ୍କୁ ମନେ ହେତୁକର ।
"ଠେକ" ଅର୍ଦ୍ଧମାତ୍ରା ଜାଣ "ପସର" ଓଁକାର
ମୁଁ ମୂର୍ଖ ବାଳୁତ ମୋର ଦୋଷ କ୍ଷମାକର ।

ଏ ଉତ୍ତର ପରେ କିଛି ସମୟ ଧର ଗୋପାଳମାନଙ୍କ ଭିତରେ ଆଉ କେତୋଟି ଚଢ଼ାଉତ୍ତର "ଓଗାଳ" ପ୍ରଶ୍ନୋତ୍ତର ଛଳରେ ହେଲାପରେ ଗୋପାଳମାନେ ସେଠାରୁ ଉଠି ଗୋଟିଏ ପ୍ରୋସେସନ୍‌ରେ ସିଦ୍ଧେଶ୍ୱର ମହାଦେବଙ୍କ ମନ୍ଦିର ଆଡ଼କୁ ଏକାଠି ହୋଇ ନାଚ ନାଚ ଗାଇ ଗାଇ ବାହାରଲେ । ସେତେବେଳକୁ ସନ୍ଧ୍ୟା ହୋଇ ଆସିଲାଣି; କିନ୍ତୁ ତଥାପି ଫର୍ଚ୍ଚାଥାଏ । ସିଙ୍ଗା, ବେଣୁ, କାହାଳୀ ଇତ୍ୟାଦ ଘନଘନ ବାଜୁଥାଏ । ଢୋଲ ମହୁରୀ ମଧ୍ୟ ବାଜୁଥାଏ । ସମସ୍ତଙ୍କ ଆଗରେ ଉଦ୍ଧ ବେହେରା ତଳ ତଳ ଦୁଇ ହାତରେ ଛୁଟକନା ବନ୍ଧା ଜାଉଁଳ ବେତ ଉପରକୁ ଟେକ ହଲାଇ ହଲାଇ ଗୃଲଥାନ୍ତି । ପେଙ୍ଗା ଉଛବା ମଧ୍ୟ ଗ୍ରେଟେଇ ଗ୍ରେଟେଇ ଗୋଟାଏ ହାତରେ ବାଡ଼ ଓ ଅନ୍ୟ ହାତରେ ଝୁଣାଧୂଆଁ

ଧରି ତାଙ୍କ ଆଖେ ପାଖେ ବୁଲୁଥାଏ । ଗୋପାଳ ବାଳକମାନେ ନୂଆ ଲୁଗା ପିନ୍ଧି ଅଣ୍ଟାରେ ଘଣ୍ଟିଘାଗୁଡ଼ି ବାନ୍ଧି ଷ୍ଟେଣ୍ଟ ଷ୍ଟେଣ୍ଟ ଲଉଡ଼ୀ ଧରି ଅତି ଉତ୍ସବ ମନରେ ହସି ଖେଳି ବୁଲୁଥାନ୍ତି । ସୁଲୁ ସୁଲୁ ହୋଇ ଶୀତଳ ସାନ୍ଧ୍ୟ ପବନ ବହୁଥାଏ । ଏହି ପ୍ରୋସେସନ ଦେଖିବା ଲାଗି ଖସ୍ତାର ଦୁଇ କଡ଼େ ଗ୍ରାମର ବହୁ ଲୋକ ଜମି ଥାଆନ୍ତି ।

ବୁହୁଁ ବୁହୁଁ ପ୍ରୋସେହନଟି ସିଦ୍ଧେଶ୍ୱରଙ୍କ ପାଚେରି ପାଖେ ପହୁଁଚିଲା । ସେତେବେଳକୁ ରାତି ହୋଇଗଲାଣି । ମାଘ ହୋଳ ପୂର୍ଣ୍ଣିମାର ଜହ୍ନ ଆଲୁଅ ମନ୍ଦିର ସଂଲଗ୍ନ ଗଛମାନଙ୍କ ଉପରେ ପଡ଼ି ସେଠାରେ ଗୋଟିଏ ଅପୂର୍ବ ଛାଇ ଆଲୁଅର ମନୋରମ ରହସ୍ୟମୟ ପରିବେଶ ସୃଷ୍ଟି ହୋଇଥାଏ । ମୁଁ ଶୁଣିଲି ଯେ ଗତ ରାତିରୁ ଉଦ୍ଧ ବେହେରା କାଳେସୀ କାଷ୍ଠା ଉପବାସରେ ଅଛନ୍ତି । କାଲି ରାତିରୁ ଜଳ ସୁଦ୍ଧା ସ୍ପର୍ଶ କରି ନାହାନ୍ତି । ସିଦ୍ଧେଶ୍ୱର ମହାଦେବଙ୍କ ପ୍ରାଚୀନ ବାମ୍ଫି ଭିତରେ ସେ ପଶି କରି ସାତଚାଳ ପାଣି ଆଉ ସାତଚାଳ ପଙ୍କ ଭିତରେ ବୁଡ଼ି ମନ୍ଦାର ଫୁଲର ମାଳା ସଂଗ୍ରହ ଆହୁରି ଅନେକ ଅଦ୍ଭୁତ ଜିନିଷ ସବୁ ବାହାର କରିବେ । ସେହି ଅଲୌକିକ ଦୃଶ୍ୟ ଦେଖିବା ଲାଗି ମୁଁ ଓ ମାୟାଧର ଖୁବ୍ ଉଦ୍‌ଗ୍ରୀବ ହୋଇ ଉତ୍କଣ୍ଠାରେ ରହିଥାଉଁ । ଆମକୁ ମଧ୍ୟ ଖୁବ୍ ଭୋକ ହେଲାଣି ସେତେବେଳକୁ; କିନ୍ତୁ ସାମାନ୍ୟ ପେଟ ଲାଗି ଏତେବଡ଼ ମହାର୍ଘ ଅଭିଜ୍ଞତାରୁ ବଞ୍ଚିତ ହେବାଲାଗି ମୁଁ ରାଜି ହେଲିନାହିଁ । ତେଣୁ ମାୟାଧର ମତେ ଛାଡ଼ି ଚାଲିଗଲା । ଗଲାବେଳେ କହିଗଲା ଯେ ସେ ଏ ଦୃଶ୍ୟ ବହୁବାର ଦେଖିଛି । ଏବେ ସେ ଘରକୁ ଗଲେ ତା'ର ବାପା, ଭାଇ, ଓ ସାନ ଭଉଣୀଟି ଲାଗି ରାତିକ ପାଇଁ ବୋଷେଇ କରିବ । ମାୟାଧରକୁ ବିଦାୟ ଦେଇ ମୁଁ ରହିଲି ।

ଯଥା ସମୟରେ ଉଦ୍ଧ ବେହେରା ପେଙ୍ଗା ଉଛବା ସହ ଗୋପାଳ-ମାନଙ୍କ ଗହଣରେ ମନ୍ଦିର ଭିତରେ ବାମ୍ଫି ପାଖକୁ ଗଲେ । ମନ୍ଦିର ବେଢ଼ା ଭିତରେ କାଳେସୀର ଅଲୌକିକ କ୍ରିୟା ଦେଖିବା ଲାଗି ଲୋକାରଣ୍ୟ ହୋଇଥାଏ । ସିଦ୍ଧେଶ୍ୱରଙ୍କ ମନ୍ଦିର ଭିତରୁ ଘଣ୍ଟ ଘଣ୍ଟା ଧ୍ୱନି ଶୁଭୁଥାଏ ଏବଂ ଗୋପାଳମାନେ ଘନ ଘନ ସିଙ୍ଗା ବେଣୁ ଆଉ କାହାଳୀ

ବଜାଇ ହରିବୋଲ ପକାଉଥାନ୍ତି । ଦେଖଣାହାରୀମାନେ ମଧ୍ୟ ହରିବୋଲ ଉପରେ ହରିବୋଲ ପକାଇ ଲାଗିଥାନ୍ତି । ମନ୍ଦିର ବେଢ଼ା ବାହାରେ ଢୋଲ ମହୁରୀ ଓ ଯୋଡ଼ି ନାଗରା ବାଜୁଥାଏ । ପ୍ରାୟ ଛଅ ସାତଜଣ ମସାଲଧାରୀ ଜଳନ୍ତା ମସାଲ ଧରି ବାମ୍ପି ପାଖରେ ଠିଆ ହୋଇଥାନ୍ତି । ଏହି ସମୟରେ ଜଣେ ବଡ଼ ପୂଜକ ମନ୍ଦିର ଭିତରୁ ସିଦ୍ଧେଶ୍ୱରଙ୍କ ଆଜ୍ଞା-ମାଳ ଆଣି ଉଦ୍ଧବ ବେହେରାଙ୍କ ଗଳାରେ ପକାଇ ଦେଲେ । ମାଳାଟି ପଡ଼ିବା ମାତ୍ରେ ଉଦ୍ଧବ ବେହେରା ଆଖି ବୁଜି ଉପରକୁ ହାତଟେକି ବିକଟ ସ୍ୱରରେ ଗୋଟାଏ ଉଚ୍ଚକିତ ଚିତ୍କାର ଛାଡ଼ିଲେ—ଆରେ ସିଦ୍ଧେଶ୍ୱର ଅ ଅ ଅ ଅ ଅ ଅ ···

ତା'ପରେ ସେ କମ୍ପିବାକୁ ଲାଗିଲେ । ଦୁଇ ହାତ ଉପରକୁ ଟେକି ଜାଙ୍ଗିଳ ବେତକୁ ନଚାଇ ନଚାଇ ଥରି ଥରି ସେ ବହେ ନାଚିଲେ । ହରିବୋଲ ହୁଳହୁଳି ଓ ସିଙ୍ଗା କାହାଳୀ ନାଦ ମଧ୍ୟ ଆହୁରି ବଢ଼ିଗଲା । ସେଙ୍ଗା ଉଚ୍ଛବା ଅତ୍ୟନ୍ତ ତତ୍ପରତାର ସହିତ ଝାଳନାଳ ହୋଇ ଉଦ୍ଧବ ବେହେରାଙ୍କ ମୁହଁ ପାଖେ ଝୁଣା ଧୂପ ଦେଉଥାଏ । ସେଇଠୁ ଆମ ସମସ୍ତଙ୍କୁ ଅପ୍ରସ୍ତୁତ ଓ ଚକିତ କରି ଉଦ୍ଧବ ବେହେରା ନାଚି ନାଚି ସେହି ବିରାଟ ବାମ୍ପି ଭିତରକୁ ଡେଇଁ ପଡ଼ିଲେ । ସିଦ୍ଧେଶ୍ୱରଙ୍କ ବେଢ଼ାଭିତର ହରିବୋଲ ହୁଳହୁଳିରେ ଉଚ୍ଛୁଳି ଉଠିଲା ।

ତା' ପରେ ସବୁ ନିସ୍ତବ୍ଧ ହୋଇଗଲା । ଲୋକମାନେ ଅଲୌକିକ ଦୃଶ୍ୟ ଦେଖିବାକୁ ପ୍ରବଳ ଆଗ୍ରହରେ ଠେଲା ପେଲା ହେଲେ । ପ୍ରତିବର୍ଷର ବିଧାନ ଅନୁଯାୟୀ ସେଙ୍ଗା ଉଚ୍ଛବା ବାମ୍ପି ଉପରୁ ଉଦ୍ଧବ ବେହେରା ଉଦ୍ଦେଶ୍ୟରେ ଡାକ ଗୋଟି ଗୋଟି କରି ଅପୂର୍ବ ଜିନିଷ କାଢ଼ିବାକୁ ଅନୁରୋଧ କରିବ ଏବଂ କୂଅ ଭିତରକୁ ଜଣେ ବାଲ୍‌ଟିଟିଏ ପକାଇଥିବେ । ସେଇ ବାଲ୍‌ଟି ବା ଗରା ଭିତରେ ସାତତାଳ ପାଣି ସାତତାଳ ପଙ୍କ ଭିତରୁ କାଢ଼ିଥିବା ଅପୂର୍ବ ଜିନିଷମାନ ଥୋଇଦେବା ପରେ ସେଇଟିକୁ ଉପରକୁ ଉଠାଇ ଆଣି ସର୍ବସାଧାରଣଙ୍କୁ ଦେଖାଇ ଦିଆଯିବ । ସେଇଠୁ ପରସ୍ତେ ହରିବୋଲ ପଡ଼ିଯିବ ।

ସେଇ ବଧାନରେ ପେଙ୍ଗା ଉଚ୍ଛବା ଗୋଟି ଗୋଟି କର ଜନଷର ନାମ ଧର ଡାକଲେ । ଯଥା, ପ୍ରଥମରୁ ମନ୍ଦାର ଫୁଲର ମାଳା, ସେଇଠୁ ଚମ୍ପା ନିର୍ମିତ ଗଣ୍ଡୁ, ସେଇଠୁ ଚନ୍ଦନ କାଠ, ସେଠୁ କଜଳପାତ—ଏମିତ ଏମିତ ସବ ମୋଟ ସାତଟି ଜନଷ ବାହାର କରବା କଥା । ତାଠାରୁ ବେଶୀ ଜନଷ ବାହାର କରବାକୁ ଅନୁରୋଧ କରବା ମନା । ପେଙ୍ଗା ଉଚ୍ଛବାର ଅନୁରୋଧରେ ଉଦ ବେଦେବ ଛଅଟି ଜନଷ କୁଅରୁ ବାହାର କର ଉପରକୁ ପଠାଇଲେ । ଅବଶ୍ୟ ତା ଭତରୁ ତନୋଟି ତନ ପ୍ରକାର ଫୁଲର ମାଳାଥିଲ । ବାମ୍ପି ନକଟରେ ଠିଆ ହୋଇଥିବା ଲୋକଙ୍କ ଭତରୁ ଦୁଇଜଣ ଅନ୍ୟ ଏକ ଦୂର ଗ୍ରାମର ଲୋକ ଥିଲେ । ସେମାନେ ଆମ ଗାଁରେ କାହା ଘରକୁ କୁଣିଆ ହୋଇ ଆସିଥିଲେ । ସେମାନଙ୍କ ବେଶଭୂଷା, ଚାଲଚଳନ, କଥାବାର୍ତ୍ତା ଓ ଚାହାଣୀରୁ ସେମାନେ ଯେ କେବଳ ଆମ ଗାଁର ଲୋକ ନୁହନ୍ତ ସେ କଥା ତ ବେଶ୍ ବୁଝା ପଡ଼ୁଥିଲ— ତା' ଛଡ଼ା ସେମାନେ ଯେ ଭନ୍ନ ଏକ ଜଗତର ଲୋକ, ତାହା ମଧ୍ୟ ଅତ ସ୍ପଷ୍ଟ ଭାବେ ଜଣା ପଡ଼ୁଥିଲ । ସେ ଦୁହେଁ ଆମ ଗ୍ରାମର ସଂସ୍କୃତ, ଧର୍ମ, ସାହତ୍ୟ, କଳା, ପରମ୍ପରା, ବଶ୍ୱାସ ଓ ସ୍ୱପ୍ନ ସହତ ଆଦୌ ସମ୍ପର୍କିତ ନ ଥିଲେ । ସେମାନେ ନାକତଳେ ପରଜାପତଆ ନଶ ରଖିଥିଲେ । ଖୁବ୍ ସଫା ଇସ୍ତ୍ରୀକରା ହାଫ୍‌ସାର୍ଟ ଓ ଧୋତ ପିନ୍ଧଥିଲେ । ସେ ଦୁହିଁଙ୍କ ପାଟିରୁ ଇଂରାଜୀ ଶବ୍ଦ ମିଶା କଥା ବାହାରୁଥିଲ ଏବଂ ସେମାନେ ଆମ ସମସ୍ତଙ୍କୁ ଦେଖି ଖୁବ୍ କୌତୁକବୋଧ କରୁଥିଲେ—ଏବଂ ମଝେ ମଝେ କ'ଣ ପରସ୍ପର ଭତରେ ଇଂରାଜୀରେ କଥାବାର୍ତ୍ତା ହୋଇ ପରସ୍ପରେ ହସି ଯାଉଥିଲେ । ସେମାନେ ଏମିତ ଭାବ ଦେଖାଉଥିଲେ—ଯେତେ କ ସେ ଦୁହେଁ କୋଉ ବଲାତ କ ଆମେରକାରୁ କୋଉ ବଜ୍ଞାନୀ ସାହେବ ଦ୍'ଜଣ ଆସି ଏଇ ଅଜ୍ଞାନ କୁସଂସ୍କାର କେଳା, କାଳେସୀ, ତେତଶିକୋଟି ଦଅଁ ଦେବତା, ନରବଳ, ସତୀଦାହ ଓ ବାଉଁଶ ଗାଳ ବଣ ଘେରା ଗୋଟାଏ ଅଖ୍ୟାତ ଅସଭ୍ୟ ଭାରତୀୟ ପଲ୍ଲୀ ଗାଁରେ ଆସି ପହଞ୍ଚ ଯାଇଛନ୍ତ ଓ ଏସବୁ କୁସଂସ୍କାର ଦେଖି କଞ୍ଚତ୍ ଘୃଣା ଓ କଞ୍ଚତ୍ କୌତୁକ ଅନୁଭବ କରୁଛନ୍ତ । ମୁଁ ପ୍ରଥମରୁ ସେମାନଙ୍କୁ ଦେଖି ସାରଥିଲ ଏବଂ ବେଡ଼ା ଭତରେ ଜମା ହୋଇଥିବା ଶହ ଶହ ମୋର ପ୍ରିୟ ଗ୍ରାମବାସୀଙ୍କ ଠାରୁ

ସେମାନଙ୍କୁ ଭିନ୍ନ ବୋଲି ଓ ସେମାନଙ୍କର ଆମର ଗ୍ରାମବାସୀଙ୍କ ପ୍ରତି କପଟ ଧାରଣା ତାହା ମଧ୍ୟ ଆପଣା ଗୁଏଁ ବୃଦ୍ଧି ଘାରିଥିଲା । ସେହି ଅବିଶ୍ୱାସୀ ବିଦେଶୀ ଦୁଇଜଣଙ୍କ ପ୍ରତି ମୋର ମନ ମଧ୍ୟ ଖୁବ୍ ଚିଡ଼ି ଯାଇଥିଲା ଏବଂ ସେ ଦୁହିଁଙ୍କର ଏଇ ଅନଧିକାର ପ୍ରବେଶ ପ୍ରତି ମୋର ମନ ମଧ୍ୟ ଖୁବ୍ ଅସନ୍ତୁଷ୍ଟ ହୋଇ ଉଠିଥିଲା; କିନ୍ତୁ କ୍ଷଣକ ପାଇଁ ମୁଁ ସେମାନଙ୍କଠାରୁ ମୋର ମନଯୋଗ ଛଡ଼ାଇ ଆଣି କୂଅ ଭିତରେ ବୁଡ଼ି ଅନେକତ ଜିନିଷ ବାହାର କରୁଥିବା ଉଦ୍ଧବ ବେହେରା ଓ ପେଙ୍ଗା ଉକ୍ତବାଙ୍କ ପ୍ରତି ନିବଦ୍ଧ ହୋଇଗଲା । କିନ୍ତୁ ଯେତେବେଳେ କୂଅ ଭିତରୁ ଗୋଟି ଗୋଟି ହୋଇ ଛଅଟା ଜିନିଷ ବାହାରୁଥାଏ—ସେତେବେଳେ ସେ ଦୁହେଁ ହସି ହସି କ'ଣ କହୁଥାନ୍ତି ଦେଖି ମୁଁ ଖୁବ୍ ଚିଡ଼ିଗଲି । ମନେ ମନେ ଏବଂ ଏହି ବିଦେଶୀ ବିଧର୍ମୀ ଦୁଇଟାକୁ କେହି ସିଦ୍ଧେଶ୍ୱରଙ୍କ ବାମ୍ଫି ଭିତରକୁ ଠେଲି ଦେବା ଉଚିତ ବୋଲି ମନେ ମନେ ବାଞ୍ଛା କରୁଥିଲି । ସେମାନଙ୍କ କଥାବାର୍ତ୍ତାରୁ କେତୋଟି କଥା ମଧ୍ୟ ମୋ କାନରେ ପଡ଼ିଲା । ଯଥା—ଏଗୁଡ଼ାକ ଏମିତି କି ଅପୂର୍ବ ଜିନିଷ ହୋ ? ଫୁଲମାଳ, ଚମ୍ପାଗଡ଼ୁ, ଚନ୍ଦନକାଠ କିଏ ସବୁ ଆଗରୁ କୂଅରେ ପକାଇ ଦେଇଛି । କାଳେସୀ ସେଇଗୁଡ଼ାକ ବାହାର କରି ବାହାଦୁରି ନେଉଛି, କ'ଣନା ୟା ବାହାର କଲି, ତା ବାହାର କଲି । ଶଃ—କାଳେସୀ ନା' ଠକ ? ଏସବୁ ଭଣ୍ଡାମି ଆମେ ଢେର୍ ଦେଖିଛୁ । ଏସବୁ ଶୁଣିଲା ମାତ୍ରେ ମୋ ଦେହ ଜଳି ଯାଉଥାଏ । ମୋ ପାଖରେ ମୋର ଜଣେ ସାଧାରଣ ସାଙ୍ଗପିଲା ଠିଆ ହୋଇଥିଲା । ସେ ମତେ କହିଲା—ଜାଣିଛୁ ? ଏ ଦୁହେଁ କିଏ ? ସେ ଦୁହେଁଯାକ ଆମ ଗାଁ ଦୀନବନ୍ଧୁ ଷଡ଼ଙ୍ଗୀଙ୍କ ଶଶୁର ଘର ଗାଁର । ବସିନପୁର । ତାଙ୍କ ଗାଁରେ ହାଇସ୍କୁଲ ଅଛି । ଏତିକି ଶୁଣି ମୁଁ ଟିକିଏ ଦବିଗଲି । କାରଣ, ସେତେବେଳେ ଆମ ଗାଁରେ ନୂଆ ହୋଇ ଅପର ପ୍ରାଇମେରୀ ସ୍କୁଲଟି ମାଇନର ସ୍କୁଲରେ ପରିଣତ ହୋଇଥାଏ ଏବଂ ହାଇସ୍କୁଲ ଆମ ପକ୍ଷରେ ଗୋଟାଏ ବିରାଟ ଜିନିଷ ବୋଲି ମନେ ହେଉଥାଏ । କୌଣସି ମାଟ୍ରିକ୍ ପଢୁଥିବା ଯୁବକକୁ ଦେଖିଲେ ଆମେ ଶଙ୍କିଯାଇ ଲୁଚୁ । ମୋ ବଡ଼ ଭିଣୋଇ ମାଟ୍ରିକ୍ ଦଶମ ଶ୍ରେଣୀରେ ପଢୁଥିଲେ । ସେ ଆମ ଗାଁକୁ ଆସିଲେ ଲୋକେ ତାଙ୍କୁ ଭାରି ସମ୍ଭ୍ରମ

ଦେଖାଉଥିଲେ । ସତେ କ କୋଉ ବଳାତ ଦେଶର ପଣ୍ଡିତ । ଅବଶ୍ୟ ସେତେବେଳେ ସୁଦ୍ଧ ଆମ ଗାଁ ବାର ସାହାରୁ ଜଣେ ଏମ୍. ଏ. ଓ ଦୁଇଜଣ ଗ୍ରାଜୁଏଟ ହୋଇ ସାରଥିଲେ । କନ୍ତୁ ପିଲାଦନୁ ସେମାନେ କଟକରେ ଥିଲେ ଓ ଶେଷ ପର୍ଯ୍ୟନ୍ତ କଟକରେ ହିଁ ରହିଲେ । ତଥାପି ମୋର ମନେ ଅଛି—ଅକାଳେ ସକାଳେ ସେମାନେ ଗାଁକୁ ଆସିଲେ ଗାଁ ଦାଣ୍ଡରେ ମୁଁ ସେମାନଙ୍କୁ ଦେଖିଲା ମାତ୍ରେ ସେମାନଙ୍କ ତେଜରେ ଝାଉଁଳ ଯାଇ କୁଆଡ଼େ ଲୁଚଯାଏ । ଇଲେ ବୋପାଲେ ! ବ. ଏ.—ଏମ୍. ଏ. !! ଥରେ ଜଣେ ଏମ୍. ଏ. ଆମ ଘରକୁ ବାପାଙ୍କ ପାଖକୁ ଆସିଥିଲେ । ସେ ହଠାତ ମୋର କାନ୍ଧରେ ହାତ ରଖି ପଗ୍ଚରଲେ—କୋଉ କ୍ଲାସ ହେଲା ? ମୁଁ ପ୍ରାୟ ମୂର୍ଚ୍ଛା ହୋଇ ଯାଇଥିଲ । ମୋ ପାଟିରୁ କଥା ବାହାରଲା ନାହିଁ । ଖାଲ ବାଜୁ ବାଜୁ ହୋଇ ଫେଣ ବାହାରଲା ।

ସେ ମୋଠାରୁ ଉତ୍ତର ନ ପାଇ ହସି ହସି ମୋର ହାଣ୍ଡସେକ କର ବାପାଙ୍କ ସାଙ୍ଗେ ବସି କ'ଣ କଥାବାର୍ତ୍ତା କଲେ । ମୋର ମହାମାବନ୍ତ ଜମିଦାର ବାପା ତାଙ୍କୁ ଖୁବ୍ ସମୀହ ଦେଖାଇ କଥାବାର୍ତ୍ତା କରୁଥାନ୍ତି । ମୁଁ ସେଠୁ ପଳାଇ ଯାଇ ମୋ ସାଙ୍ଗ ମାୟାଧରକୁ କହିଲ—ଶୁଙ୍ଘିଲୁ ମୋ ହାତ । କେମିତି ବାସୁଛି ? ମାୟାଧର ମୋ ହାତକୁ ଶୁଙ୍ଘି କହିଲା—ଇସ୍ ଭାର ବାସୁଚ । କ'ଣ କରେ ? ମୁଁ ବାହାଦୂରୀ ଦେଖାଇ କହିଲ—ସେଇ ଏମ୍. ଏ. ବାଲା ମୋ ହାତ ଧରଥିଲେ । ଇସ୍—ମୋ ଛାତ ଧଡ଼ପଡ଼ ହେଉଛିରେ ।

ତେଣୁ ମୋଭଳ ପିଲା ଯେତେବେଳେ ଶୁଣିଲା ଯେ ସେହି ବଦେଶୀ ଦ୍ୱ'ଜଣ ଗୋଟିଏ ହାଇସ୍କୁଲ ଥିବା ଗାଁରୁ ଆସିଛନ୍ତି—ମୋର ମନ ଖୁବ୍ ଦବଗଲା । ମୁଁ ଭାବଲ—ଏ ଦ୍ୱ'ଜଣ ଆଜର ସବୁ ମଜା ସାରଦେଲେ । ସେଇଠୁ ମୁଁ ତାଙ୍କ ଆଡ଼କୁ ଖରୁ ଦୃଷ୍ଟିରେ ଗ୍ଚହିଁଲ ଓ ତାଙ୍କ କଥାକୁ କାନେଇଲ । ତାଙ୍କ ଭତରୁ ଜଣେ ପେଙ୍ଗା ଉଚ୍ଛବାକୁ ଲକ୍ଷ୍ୟକର କହୁଥାଏ—"ହେଇ ! କ'ଣ ତୁମ ନାଁ ? ଶୁଣ ! ଏସବୁ ଘଣ୍ଟାମି ଚଳବ ନାହିଁ—ବୁଝୁଛ ? ଏଇ ଜନଷ ଗୁଡ଼ାକ ବାହାରକର ତୁମେ ବାହାଦୂରୀ ନେବ, ନାଇଁ ? ଏସବୁ ଠକାଠକ ପଟିବ ନାହିଁ ।"

ପେଙ୍ଗା ଉଚ୍ଛବା କହୁଛ ସମସ୍ତ ଆବାକାବା ହୋଇ ସେ ଦୁହିଁଙ୍କ ମୁହଁକୁ ଚାହିଁଲ । ସେ ତ ଗୋଟାଏ ଭିନ୍ନ ଅନୁଭୂତିମୟ ଜଗତରେ ଥିଲ । ବର୍ତ୍ତମାନ ତା'ର ସମ୍ପୂର୍ଣ୍ଣ ଅଚିହ୍ନା ଏହି ବିଦେଶୀ ଦୁଇଜଣଙ୍କ ମୁହଁରୁ ଏଭଳି ଅସମ୍ଭବ୍ୟ କଥା ଶୁଣି ସେ ଟିକଏ ଉତ୍ତେଜିଲ । ତାପରେ କିଛି ପୂର୍ବତେଜ ଓ ପୂର୍ବ ବିଶ୍ୱାସ ଫେରାଇ ଆଣି ଖୁବ୍ ତୀବ୍ର ସ୍ୱରରେ ପଚାରିଲ—

"ଆଉ କୋଉ ଜିନିଷ ବାହାର କରିବାକୁ କହୁଛ କହୁନ !"

ଏକଥା ଶୁଣି ସେଇ ଭିନ୍ନ ଗାଁ ଓ ଭିନ୍ନ ବିଶ୍ୱାସର ଲୋକଙ୍କ ଭିତରୁ ସବୁଠାରୁ ବାହାଦୁରିଆ ଲୋକଟି କହିଲ— ଆମେ ଯାହା ବିଗିଦ କରିବୁ ବାହାର କରିପାରିବ ?

ପେଙ୍ଗା ଉଚ୍ଛବା କହିଲ—"ଜଲଦକୁହ କ'ଣ ବାହାର କରିବା । ମାତ୍ରକ ଏଇ ଗୋଟିକ ଥର । ଏଥରକ ମିଶାଇ ସାତଥର ହୋଇଯିବ । ତାପରେ ଆଉ କିଛି ବାହାରିବ ନାହିଁ ।"

ସେଇଠୁ ସେଇ ଲୋକଟା ତାଚ୍ଛଲ୍ୟ କଲାଭଳି କହିଲ—"ଆଚ୍ଛା ଠିକ୍ ଅଛି । ଯାହା ବିଗିଦ କରିବୁ ସେକଥା ତୁମ କାଳେସୀ ଏ କୂଅ ଭିତରୁ ବାହାର କରି ଦେବ ତ ?"

ପେଙ୍ଗା ଉଚ୍ଛବା କହିଲ—"ଆଜ୍ଞା କହିଲି ତ ଥରେ । ସିଧେସୋରଙ୍କ ଆଜ୍ଞାରେ ଯାହା ଚାହିଁବ ତାହା ବାହାରିବ । କାଳେସୀ କ'ଣ ଏଇନେ ମଣିଷ ହୋଇଅଛି କି ? ସିଧେସୋର ଅବତରିଛନ୍ତି— ସିଧେସୋରଙ୍କ ମହିମା ପ୍ରକାଶିବ ।"

ସେ ଲୋକଟି ତଥାପି ତାଚ୍ଛଲ୍ୟ କରି କହିଲ—"ଆଚ୍ଛା ! ଏମିତି ତୁମ କାଳେସୀ ? ତାହେଲେ ତାକୁ କୁହ—କୂଅ ଭିତରୁ ସୁନାମୁଦଟାଏ ବାହାର କରୁ ।"

ପେଙ୍ଗା ଉଚ୍ଛବା କୌଣସି ଦ୍ୱିଧା ନ କରି, ସାମାନ୍ୟ ମାତ୍ର ସଂଶୟ ବା ସଙ୍କୋଚ ନ କରି ଖୁବ୍ ମେଘ ଗମ୍ଭୀର ଗଳାରେ କୂଅ ଭିତରକୁ ଚାହିଁ

ଡାକଲ—"ଆହେ ସିଧେସୋରେ ଏ ! ! ଭଗତଙ୍କର ବରାଦ ହେଉଛି—
କୂଅ ଭିତରୁ ସୁନାମୁହଁଟାଏ ବାହାର କର !"

ବର୍ତ୍ତମାନ ବେଢ଼ା ଭିତର ଲୋକେ ସମସ୍ତେ ଏଇ ନୂତନ ପରିସ୍ଥିତିରେ ଖୁବ୍ ଉତ୍ତେଜିତ ହୋଇ କୂଅଆଡ଼କୁ ମାଡ଼ି ଆସିଲେ ଏବଂ ଯେଉଁମାନେ ଏପର୍ଯ୍ୟନ୍ତ ଉଦ୍ଧବ ବେହେରା ପ୍ରତି ଓ ସିଦ୍ଧେଶ୍ୱରଙ୍କ ପ୍ରତି ଭକ୍ତି, ବିଶ୍ୱାସ ଓ ଆସ୍ଥାରଖି ହରିବୋଲ ପକାଉଥିଲେ; କିନ୍ତୁ ବର୍ତ୍ତମାନ ସମସ୍ତେ ସେଇ ଭିନ୍ନ ଗାଁର ଭିନ୍ନ ସଂସ୍କୃତି ଓ ବିଶ୍ୱାସର ସବ୍ଜାନ୍ତା ବାହାଦୁରିଆ ଲୋକ ଦି'ଟାଙ୍କ ପକ୍ଷ ଧରିଗଲେ ଏବଂ ସେ ଦୁହିଁଙ୍କୁ ଖୁବ ସମ୍ମାନ ଦେଖାଇ କଥାବାର୍ତ୍ତା ଆରମ୍ଭ କରିଦେଲେ—ଶଳା ଉଦ୍ଧବ ବେହେରା କାଳେସୀର ଆଜି ଜାଣି କାଳେସୀ ପଣିଆ ଛୁଟିବ । ଫୁଲମାଳ, ଚମ୍ପାଗଡ଼ୁ, ଚନ୍ଦନକାଠ ସିନା ଆଗରୁ କୂଅରେ ପକାଇ ଏବେ ବାହାର କରି ଦଉଥିଲା । ସୁନା ମୁହଁଟାଏ କୋଉଠୁ ସେ ବାହାର କରିପାରିବ ? ଆଉ କେତେକ ଗ୍ରାମବାସୀ ସେଇ ଅବିଶ୍ୱାସୀ ବଦମାସ ବିଦେଶୀ ଦୁଇଟାଙ୍କୁ ତୋଷାମଦି କଲାଭଳି କହିଲେ—"ଏ ଆଜ୍ଞା ଆମ ମଫସଲି କଥା ! ଗଉଡ଼ଆଙ୍କ ବେପାର ! ଗୋଟେ ପ୍ରଥା ଚାଲିଆସିଛି । ସେ ସବୁ ଆଗ କାଳର କାଳେସୀ ଆଉ କ'ଣ ଅଛନ୍ତି ? ଏ ଉଦ୍ଧବ ବେହେରାଟା ଗୋଟେ ପାଗଳା ଅସ୍ପୃଶ୍ୟ ରୁଷା ବୁଢ଼ା ଆଜ୍ଞା ! ତା' ମାଇପକୁ ପଠାଣ ନେଇ ଯାଇଥିଲା ବୋଲି ଆମେ ଆଜ୍ଞା ଆମ ବାପା କକାଙ୍କ ଠାରୁ ଶୁଣି ଆସୁଛୁ । ସେ କ'ଣ ଗୋଟେ କାଳେସୀ ? ଆଜିକାଲି ଏ କଳିଯୁଗରେ ଆଉ ଧର୍ମକର୍ମ ଅଛି ନା କି ଦେବତାଙ୍କ ସେ ମହିମା ବୋଲି କରୁଛୁ ? କିଅଁ ଦେବତା ସବୁ ପଥର ହୋଇଗଲେଣି ? ଜଗନ୍ନାଥଙ୍କ ସବୁ ବଡ଼ଠାକୁରଙ୍କୁ ତ କଳା-ପାହାଡ଼ ଚମ ଦଉଡ଼ା ପକେଇ ଘିଡ଼ି ଘିଡ଼ି କରି ଘୋସାରି ନେଲା ବୋଲି ଆମେ ଆମ ବାପ ଅଜାଙ୍କଠାରୁ ଶୁଣି ଆସିଛୁ !! ଆପଣ ଯା'ନ୍ତୁ ଆଜ୍ଞା ! ଆପଣଙ୍କ ପରି ଲୋକ ଏଠି ଏ ଗଉଡ଼ଆଙ୍କ କଥାରୁ କ'ଣ ପାଇବେ ?"

କିନ୍ତୁ ଆମ ଗାଁର ଆଉ କେତେକ ଲୋକ ହାତରେ ହାତ ବାଡ଼ାଇ ଚିତ୍କାର କଲେ—"କେମିତି ? ଆମେ ଛାଡ଼ିଦେବୁ ? ଶଃ — ଉଦ୍ଧ

ବେନ୍ଦେଗର ଆଜ କାଳେମୀ ପଣିଆ ଛଡ଼େଇବୁ—ଶଃ—ପେଙ୍ଗା ଉଛବାର ଜନ୍ଠା କାଟିବୁ । ତା ହେଲେ ଯାଇ ଏଠୁ ଯିବୁ । ବାହାର କରୁ କାଳେସୀ ଯଦ ହୋଇଛୁ—କୂଅ ଭିତରୁ ସୁନା ମୁଦ ବାହାର କରୁ । ଶଃ—ଏମିତ ଆମକୁ ପ୍ରତବର୍ଷ ଭଣ୍ଡି ଆସୁଛୁ । ବାହାର କର—ବାହାର କରବେ ସୁନା ମୁଦ !!"

ପେଙ୍ଗା ଉଛବା କନ୍ତୁ କାହା କଥାକୁ କାନ ନ ଦେଇ—କାହା ଆଡ଼କୁ ନ ଚାହିଁ ସେମିତ ବଜ୍ର ସ୍ୱରରେ କୂଅ ଭିତରକୁ ଚାହିଁ ଚଲାଇଥାଏ —"ଆହେ ସିଧେସୋରେ ଏ ଏ ଏ—ଭଗତ ନୋକ ବସ୍ୱ କରିଛନ୍ତ— ସୁନା ମୁଦଟାଏ ବାହାର କର ଉପରକୁ ପଠାଅ । ସିଧେସୋରଙ୍କ ମହିମା ରହୁ—ବାନା ଠେକ ରହୁ ।"

କୂଅ ଭିତରେ ଗସ୍ୱ ପଡ଼ୁଛୁ । ଗସ୍ୱ ଦଉଡ଼ ଧର ଜଣେ ଗୋପାଳ ଉତ୍କଣ୍ଠାର ସହିତ ଅପେକ୍ଷା କରିଛନ୍ତ; କନ୍ତୁ ଭିତରୁ ଗସ୍ୱ ଉଠାଇବା ଲାଗି ନର୍ଦ୍ଦେଶ ଆସୁନାହିଁ । ପେଙ୍ଗା ଉଛବା ବାରମ୍ବାର ଡାକ ଛାଡ଼ୁଛୁ— "ଆହେ ସିଧେସୋରେ ଏ ଏ ଏ ? କ'ଣ ଶୁଭୁଛୁଟିକ ? ମହିମା ପ୍ରକାଶ କର ଚଞ୍ଚଳ ହେ ସିଧେସୋରେ ଏ ଏ ଏ !!!" ମାତ୍ର ଗସ୍ୱ ଉଠାଇବାର ନର୍ଦ୍ଦେଶ ତଥାପି କୂଅ ଭିତରୁ ଆସୁନାହିଁ । ପ୍ରଥମେ ପ୍ରଥମେ ହରିବୋଲ ଓ ସିଙ୍ଗା ନାଦ ହେଉଥିଲା, ମାତ୍ର ବାରମ୍ବାର ପେଙ୍ଗା ଉଛବାର ଡାକ ବିଫଳ ହେବାରୁ ଓ ବହୁ ସମୟ ବିତ ଯାଇଥିବାରୁ କ୍ରମଶଃ ଗ୍ରାମବାସୀଏ ନୈରାଶ୍ୟ ଓ ବିରକ୍ତିରେ ହରିବୋଲ ବନ୍ଦ କରିଦେଲେ ଓ ଗୋପାଳ-ମାନେ ମଧ୍ୟ ବ୍ୟର୍ଥ ମନୋରଥ ହୋଇ ସିଙ୍ଗାନାଦ ବନ୍ଦ କରିଦେଲେ । ଲୋକେ କେବଳ ଥଟ୍ଟା ତାମସାରେ ବ୍ୟସ୍ତ ରହିଲେ ଓ ସେହି ବିଦେଶୀ ଦୁଇଜଣଙ୍କୁ ଖୁବ୍ ସମ୍ଭ୍ରମ ଦେଖାଇ ତୋଷାମଦ କରିବାରେ ଲାଗିଲେ ।

ପେଙ୍ଗା ଉଛବା ଡାକ ଚାଲିଥାଏ । କ୍ରମେ ତା'ର କଣ୍ଠସ୍ୱର ମଧ୍ୟ ନରମ ଓ ଭଙ୍ଗା ଭଙ୍ଗା ଶୁଭିଲା । ଜନତା ଭିତରୁ କେହି କେହି କହୁଥାନ୍ତ —ଆବେ ସେ ଅଣପୁରୁଷା ଉଦ ବେନ୍ଦେବ କୂଅ ଭିତରେ ଘଟଲାଣି ବେ ? ଆଉ କିଏ କିଏ କହୁଥାନ୍ତ—ଆରେ ସେ ପେଙ୍ଗା ଉଛବାଟାକୁ

ଘୋଷାର ଆଣି ତା'ର ବାଡ଼ୀ ଆଉ ଜଟ କାଟିଦିଅ । ଶଃ—ଗେ ଟାଏ ସୁଆଙ୍ଗ ଲଗେଇଛନ୍ତି ।

ପାଠକେ ! ମୋ ଅବସ୍ଥା କଥା କହିବ ? ମୋ ଭିତରେ କ୍ରୋଧ ଓ କୋହ ଫାଟି ପଡ଼ୁଥାଏ । ମୁଁ ସେ ବିଦେଶୀ ଦୁଇଟାଙ୍କୁ ମନେ ମନେ ସିଦ୍ଧେଶ୍ୱରଙ୍କ ନାଗ ମୁହଁକୁ ଠେଲି ଦେଉଥାଏ । ମୋ ଆଖିରୁ ଉଦ୍ଧବ ବେହେରା ଆଉ ପେଙ୍ଗା ଉଚ୍ଛବାଙ୍କ ପାଇଁ ଧାର ଧାର ଲୁହ ବହି ଯାଉଥାଏ । ମୁଁ ମନେ ମନେ ମୁଣ୍ଡ ବାଡ଼େଇ ସିଦ୍ଧେଶ୍ୱରଙ୍କୁ ଡାକୁଥାଏ —ହେ ପ୍ରଭୁ ସିଦ୍ଧେଶ୍ୱର ! ଯଦି କୂଅ ଭିତରୁ ତୁମ ମହିମାରୁ ଆଜି ସୁନା ମୁଦି ନ ବାହାରେ, ତେବେ ନିଶ୍ଚୟ ତୁମର ଏ କୂଅ ଭିତରକୁ ଡେଇଁପଡ଼ି ମୁଁ ଜୀବନ ହାରିଦେବି ।

ହଠାତ୍ ଆମ ସମସ୍ତଙ୍କୁ ଚକିତ କରି ଘୂରୁ ଘୂରୁ କରି କୂଅ ଭିତରୁ ଗରାଟା ଉପରକୁ ଉଠିବା ଆରମ୍ଭ କଲା ଏବଂ ସଙ୍ଗେ ସଙ୍ଗେ ଲୋକମାନେ ସେ ଗରାକୁ ଘେରିଗଲେ । ପେଙ୍ଗା ଉଚ୍ଛବା ଉତ୍ତେଜିତ ଓ କମ୍ପିତ କଳେବରରେ ଗରାଟାକୁ ତଳେ ଅଜାଡ଼ି ଦେଲା—ପଙ୍କମିଶା କେତେକ ପାଣି ତଳେ ଢାଳି ହୋଇଗଲା ଏବଂ ସେହି ପଚୁପଚ ପଙ୍କୁଆ ପାଣିରେ କ'ଣ ସେଇଟା ଜକ ଜକ କରୁଛି ? ଏଁ ? କ'ଣ ସେଇଟା ? ସୁନା ମୁଦି ? ଛଅଟା ମଶାଲ ତାକୁ ଆଲୋକିତ କରି ଦେଖାଇଦେଲେ । ହରିବୋଲ—ହରିବୋଲ । ହେ ସିଦ୍ଧେଶ୍ୱର ! ମହିମା ପ୍ରକାଶ ହେଲା ପ୍ରଭୁ—ମହିମା ପ୍ରକାଶ ହେଲା—ହରିବୋଉଉଲ ! ହରିବୋଉଉଲ ! ଧୂତ୍‌କୁ ଧୂତ୍‌କୁ ଧୂତ୍‌କୁ ଧୂ ଧୂ ଧୂ ଉଉ—ଘନ ଘନ ସିଂଗା ବାଜି ଉଠିଲା । ହୁଳହୁଳି ଶବ୍ଦରେ ବେଢ଼ା କମ୍ପିଲା ।

ସୁନାମୁଦିଟିକୁ ହାତରେ ଧରି "ହେ ସିଧେସୋରେ ଏ ଏ" ବୋଲି ଭଙ୍ଗା କଣ୍ଠରେ ଚିତ୍କାର କରୁ କରୁ ପେଙ୍ଗା ଉଚ୍ଛବା ସେଇଠି ତଳେ ପଡ଼ି ମୂର୍ଚ୍ଛା ହୋଇଗଲା । ସିଦ୍ଧେଶ୍ୱରଙ୍କ ବେଢ଼ା ଭିତରେ ହରିବୋଲ ହୁଳହୁଳି ସେମିତି ଗୁଞ୍ଜୁଥାଏ । ସିଦ୍ଧେଶ୍ୱରଙ୍କ ମନ୍ଦିର ଆଗରେ ତ୍ରିଶୂଳ ଉପରେ ଜହ୍ନ ଆଲୁଅ ପଡ଼ି ଚକ୍ ଚକ୍ କରୁଥାଏ । ଧୀର ପବନରେ ପତାକା ଫର ଫର ହୋଇ ଉଡ଼ୁଥାଏ । ମୁଁ ମନ୍ଦିର ଆଡ଼କୁ ଦଉଡ଼ି ଗଲି ଏବଂ

ବାସୁଆ ବଳଦକୁ କୁଣ୍ଢାଇ ଧରି ଭେଁ ଭେଁ କରି କାନ୍ଦି ଉଠିଲା । ସିଦ୍ଧେଶ୍ୱରଙ୍କୁ ଢେର୍ ଢେର୍ କୃତଜ୍ଞତା ଜଣାଇଲା । ......

ତା' ପରଦିନ ସକାଳେ । ବିଛଣାରୁ ଉଠିଲା ମାତ୍ରେ ପ୍ରଥମେ ମାୟାଧର ଘରକୁ ଯାଇ ତାକୁ ଏ ଖବରଟା ଦେଲି ଏବଂ ସେଦିନ ଘଟଣାଟିକୁ ବର୍ତ୍ତମାନ ଯେମିତି ବର୍ଣ୍ଣନା କରିଛି—ତା' ଠାରୁ ସହସ୍ର ଗୁଣ ଚମତ୍କାରିତାରେ ବର୍ଣ୍ଣନା କଲି ଏବଂ ମାୟାଧର କେମିତି ଆପଣା ଦୋଷରୁ ଏଭଳି ଅଲୌକିକ ଦୃଶ୍ୟ ଦର୍ଶନରୁ ବଞ୍ଚିତ ହେଲା—ସେଥିପାଇଁ ତାକୁ କିଛି ମୃଦୁ ଭର୍ତ୍ସନା ବି ଶୁଣାଇଲି । ମୋ କଥା ଶୁଣି—ମାୟାଧର କିଛିକ୍ଷଣ ଗୁମ୍ ମାରିଗଲା । ତା'ର ମୁହଁ ଶୁଖିଗଲା ମାତ୍ର ତା'ର ଅନୁଶୋଚନା କଥା ସେ ମତେ ଜଣାଇଲା ନାହିଁ । ତା'ପରେ—ଆମେ ଅନ୍ୟକଥାରେ ମାତିଗଲୁ ।

× × ସେଦିନ ସନ୍ଧ୍ୟାବେଳେ । ମାୟାଧର ନିଜେ ଆମଘରକୁ ଆସିଲା । ସେ ଖୁବ୍ ହସ ହସ ଦେଖାଯାଉଥାଏ । ମୁଁ ସେତେବେଳେ ଫାଷ୍ଟ ବୁକ୍‌ରୁ ବି ଏ ବେ, ବି ଇ ବି, ବି ଆଇ ବାଇ ପଢ଼ୁଥାଏ ଓ ଘୋଷୁଥାଏ । ସେ ମୋ ପାଖେ ବସି ପଡ଼ି ମୋ ପିଠିରେ ହାତମାରି ଖୁବ୍ ଗୋଟାଏ ମହତ୍ତ୍ୱପୂର୍ଣ୍ଣ ଖବର ଘୋଷଣା କଲାପରି କହିଲା—ଶୁଣିଲୁଣି ସେ ମୁଦିକଥା ? ମୁଁ ଚମକିପଡ଼ି ପଚାରିଲି—କ'ଣ ହେଲା ? ମାୟାଧର ହସି ହସି କହିଲା—ସିଦ୍ଧେଶ୍ୱରଙ୍କ ବଡ଼ ପୂଜକ ମାଗୁଣି ମହାପାତ୍ରର ସାନଝିଅ ତା' ମାଆ ହାତରୁ ମୁଦିଟା ନେଇ ନିଜ ଆଙ୍ଗୁଠିରେ ପିନ୍ଧି-ଥିଲା । ସେ ଆଜିକୁ ପାଞ୍ଚ ଛଅବର୍ଷ ତଳର କଥା । ସେ ମୁଦିଟା ତା' ପିଲା ଆଙ୍ଗୁଠିକି ଗଳି ଗଳି ହେଉଥିଲା । ଦିନେ ସେ ସିଦ୍ଧେଶ୍ୱରଙ୍କ କୂଅରୁ ପାଣି କାଢ଼ୁ କାଢ଼ୁ ମୁଦିଟା ତା ଆଙ୍ଗୁଠିରୁ ଗଳି ପଡ଼ିଛି କୂଅ ଭିତରେ । ତାକୁ ଜଣାନାହିଁ । ସେମାନେ ମୁଦିଟାକୁ ବହୁତ ଖୋଜିଲେ କିନ୍ତୁ ସେ ତ ସିଦ୍ଧେଶ୍ୱରଙ୍କ ବାର୍ଣ୍ଣିରେ ପଡ଼ିଛି—ମିଳିବ କୋଉଠୁ ? ମାଗୁଣି ମହାପାତ୍ର ମାଇପ କାଲି ସନ୍ଧ୍ୟାରେ ସେ ମୁଦିଟାକୁ ତା'ର ବୋଲି ଚିହ୍ନିଲା । ଏତିକି କହି ମାୟାଧର ଖୁବ୍ ଗୋଟାଏ ବାହାଦୁରୀ ହସ ହସି ନିଜର ବିଜ୍ଞତା ମୋ ଆଗରେ ପ୍ରମାଣିତ କଲା । କିନ୍ତୁ ମୁଁ ତା' କଥାର କିଛି ଜବାବ

ଦେଲି ନାହିଁ କିମ୍ବା ତା' ସାଙ୍ଗରେ ହସିଲି ମଧ୍ୟ ନାହିଁ କିମ୍ବା ତା'ର ଏହି ଅଭିନବ ତଥ୍ୟ ପ୍ରକାଶରେ ମୋ ମନ ସାମାନ୍ୟ ବିଚଳିତ ମଧ୍ୟ ହେଲାନାହିଁ କିମ୍ବା ମୋର ବିଶ୍ୱାସରେ ସାମାନ୍ୟତମ ଆଂଚ୍ ମଧ୍ୟ ଆସିଲା ନାହିଁ । ମୁଁ ମୋର ବିଶ୍ୱାସରେ ରହସ୍ୟମୟ ଉପଲବ୍ଧିକୁ ନିଜ ଭିତରେ ଖୁବ୍ ସଯତ୍ନରେ ସାବଧାନ ହୋଇ ରକ୍ଷାକରି ଗମ୍ଭୀର ହୋଇ ରହିଲି ।

ଆଜି ମୋର ଏହି ପରିଣତ ପରିପକ୍ୱ ଜୀବନରେ ତା'ଠାରୁ ଆହୁରି ବିଚିତ୍ର ଗଭୀର ଅଲୌକିକ ଘଟଣା ବା ଅନୁଭୂତି ମୁଁ ଅଙ୍ଗେ ଲିଭେଇଲିଣି ଏବଂ ଆଜି ମଧ୍ୟ ମୋ ଗୃହପଟେ ମାସ୍ଟାଧରଠାରୁ ବଳି ବହୁ ବହୁ ବିଜ୍ଞ ବନ୍ଧୁ ଘେରି ରହିଛନ୍ତି; କିନ୍ତୁ ମୁଁ ଜାଣେ—ମୋର ସିଦ୍ଧେଶ୍ୱର ମହାଦେବ, ମୋର ଉଦ୍ଧ ବେର୍ଦ୍ଧେଗ୍ର କାଳେସୀ, ମୋର ପେଙ୍ଗା ଉଚ୍ଛବା, ମୋର ସିଦ୍ଧେଶ୍ୱରଙ୍କ ସାତ ତାଳ ପାଣି ଆଉ ସାତ ତାଳ ପଙ୍କଭରା କୂଅ—ମୁଁ ନିଜେ ଓ ମୋର ଅଲୌକିକ ବିଶ୍ୱାସର ଅଲୌକିକ ଅଭିଜ୍ଞତାର ଚକ୍ରବ୍ୟୂହ ଭିତରକୁ ଅପର କେହି ପ୍ରବେଶ କରିପାରିବେ ନାହିଁ ଓ ପ୍ରବେଶ କଲେ ମଧ୍ୟ ନିର୍ବିଘ୍ନରେ ବାହାରି ଆସି ପାରିବେ ନାହିଁ ।



# ମିଛୁ ଅବଧାନ

## ଦର୍ପ ଦଳନ ବିସମ୍ବାଦ

ବାଲ୍ୟକାଳରୁ ଆଜିପର୍ଯ୍ୟନ୍ତ ମୋର ଏହି ଅଙ୍କ ବା ଗଣିତ ପାଠଟି ପ୍ରତି ମନ ଭିତରେ ମହାଆତଙ୍କ ଆଉ ଭୟ ରହି ଆସିଛି । ସଂଖ୍ୟା ବା ସେମାନଙ୍କ ଭିତରେ ଯୋଉ ସବୁ ଆଦାନପ୍ରଦାନ ଓ କାଣ୍ଡ-କାରଖାନା ମାନ ଚାଲେ, ମୋର ସାମାନ୍ୟ ମୁଣ୍ଡ ସେଥିରେ ଆଦୌ ପ୍ରବେଶ କରିପାରେ ନାହିଁ । ଏବଂ ଯଦିଓ ମୁଁ ଭଲଭାବେ ବୁଝି ସାରିଲଣି ଯେ ଏ ପୃଥିବୀ ଓ ଏ ଜୀବନ, ଯେତେ ପରିମାଣରେ କବିତା, ଗଳ୍ପ, ଦର୍ଶନ, କଳା, ସଙ୍ଗୀତ ବା ଧର୍ମରେ ନ ଚାଲୁଛି ତା'ଠାରୁ ଲକ୍ଷେ ଲକ୍ଷେ ଗୁଣରେ ଏ ସାଂଖ୍ୟ ବା ଅଙ୍କ କଷାକଷିରେ ଚାଲିଛି । ଏବଂ ଶତକଡ଼ା ଶହେ ଲୋକଙ୍କ ଜୀବନଧାରା ଏହି ଗାଣିତିକ ସାଧ୍ୟ ସାଧନା ଉପରେ ହିଁ ନିର୍ଭର କରୁଛି । ମୋର ନିଜ ଜୀବନ ମଧ୍ୟ ସେଥିରୁ ବହିର୍ଭୂତ ନୁହେଁ । ଖାଲି ସେତିକି ନୁହେଁ—ଆଧୁନିକ ଜ୍ଞାନ ବିଜ୍ଞାନର ସବୁ ବିଭାଗକୁ ବର୍ତ୍ତମାନ ଅଙ୍କ ହିଁ ଅଧିକାର କରି ସାରିଲଣି । ବର୍ତ୍ତମାନର ଦର୍ଶନ, ବ୍ୟାକରଣ, ଅର୍ଥନୀତି, ଚିତ୍ରକଳା, ଏପରିକି ସଙ୍ଗୀତ, ସବୁ ବିଭାଗରେ ଅଙ୍କ ନ ହେଲେ ଚଳୁନାହିଁ । ପରିମାପ ଓ ପରିସଂଖ୍ୟାନ ବିଦ୍ୟାରୂପେ ମଧ୍ୟ ଏହି ସାମ୍ରାଜ୍ୟବାଦୀ ଫାସିଷ୍ଟ ଗଣିତଶାସ୍ତ୍ର ଆମ ଜୀବନର ସବୁ ତତ୍ତ୍ୱ ଓ ତଥ୍ୟର ସୀମାଞ୍ଚଳକୁ ଅଧିକାର କରି ବସିଅଛି । କିନ୍ତୁ ମୋର

ଦୁର୍ଭାଗ୍ୟକୁ ସେଇ ବାଲ୍ୟକାଳରୁ ହିଁ ମୁଁ ଏହି ମହାନ୍ ବିଦ୍ୟାଟି ପ୍ରତି ମନେ ଯୋଗ ଦେଇ ପାରିଲି ନାହିଁ । କେବଳ ସାହିତ୍ୟ, ଧର୍ମ, ଦର୍ଶନ, ସଙ୍ଗୀତ ଇତ୍ୟାଦିକୁ ନେଇ ମାତିଲି । ଅବଶ୍ୟ ଅଙ୍କ ପ୍ରତି ମୋର ଏହି ଆତଙ୍କ ବା ବିରାଗ ପାଇଁ କେବଳ ମୁଁ ଯେ ଦାୟୀ, ତାହା ଆଦୌ ନୁହେଁ । ମୋତେ ବାଲ୍ୟ କାଳରେ ପାଠ ପଢ଼ାଇଥିବା କେତେକ ମଷ୍ଟର-ଙ୍କ ଅଧିକାଂଶ ପଣ୍ଡିତମନ୍ୟ ବେତଧାରୀ ଗଣିତ ଶିକ୍ଷକ ହିଁ ସେଥିପାଇଁ ନିଶ୍ଚୟ ବେଶୀ ଦାୟୀ । ସେମାନେ ଯେତେବେଳେ ମୋତେ ଏକ ଦୁଇ ଆଦି ଶିଖାଇଲେ, ତାହା ମୁଁ ଆଗ୍ରହରେ ତୁରନ୍ତ ଶିଖିଗଲି । ଏବଂ ସେମାନେ ଯେତେବେଳେ ମତେ କେବଳ ସଂଖ୍ୟା ଗୁଡ଼ିକର ମିଶାଣ ଶିଖାଇଲେ ତାହା ମୁଁ ଚଟାପଟ୍ ଶିଖିଗଲି । ମୋର ମନେ ଅଛି— ଉପରତଳ ହୋଇ ସଜ୍ଜିତ ରହିଥିବା ଶୂନ୍ୟଅଙ୍କ ବିଶିଷ୍ଟ ଏକ ଲମ୍ବ ଛଅସ୍ତରିଆ ମିଶାଣକୁ ମୁଁ ପ୍ରାୟ ଗୋଟିଏ ମିନଟ୍‌ରେ ନିର୍ଭୁଲ ଭାବେ ମିଶାଇ ଦେଇ ପାରୁଥିଲି । ସେତେବେଳ ପର୍ଯ୍ୟନ୍ତ ମୋର ଗାଣିତିକ ବୁଦ୍ଧି ଉପରେ କାହାର ସନ୍ଦେହ ନ ଥିଲା । ମାତ୍ର ଅସୁବିଧାଟି ଆସିଲା—ଫେଡ଼ାଣ ଓ ହରଣ ବେଳକୁ । ଗୁଣନଟି ମଧ୍ୟ ମୁଁ ଖୁବ୍ ଆଗ୍ରହରେ କଷି ଦେଇ ପାରୁଥିଲି – ତାହା ଯେତେ ବଡ଼ ଗୁଣନ ହେଉ । କିନ୍ତୁ ଅସୁବିଧାଟି ହେଲା ୯୫୩୪ରୁ ୮୭୭୯ ସଂଖ୍ୟାଟିକୁ ଫେଡ଼ିଲାବେଳେ । ଶୂନ୍ୟରୁ ନଅକୁ ଫେଡ଼ିଲା-ବେଳେ ତା' ପୂର୍ବ ସଂଖ୍ୟାମାନଙ୍କରୁ କୋଉଠୁ ଠାଏ ଦଶ ଆଣି, ତାକୁ ଶୂନ୍ୟରେ ମିଶାଇ, ପୁଣି ସେଥିରୁ ନଅକୁ ଫେଡ଼, ଫେଡ଼ାଣ ଫଳଟିକୁ ତଳେ ଲେଖି, ଫେର୍ ଉପର ସଂଖ୍ୟା ଗୁଡ଼ିକ ଆଡ଼କୁ ଚାହିଁ ଭାବିଲା ବେଳକୁ ମୋର ମୁଣ୍ଡ ଗୋଳମାଳ ହୋଇଯାଏ ଓ ମୁଁ କୋଉଠୁ ସେହି ଦଶ ସଂଖ୍ୟାଟି ଧାର ଆଣି ମୋର କାର୍ଯ୍ୟ ଚଳାଇଥିଲି—ଏବଂ ବର୍ତ୍ତମାନ ସେ ଧାରଟିକୁ ମୁଁ କୋଉ ସଂଖ୍ୟାକୁ ସୁଝିବି—ଏବଂ ତା' ଫଳରେ ଅନ୍ୟ ସଂଖ୍ୟାମାନଙ୍କର ଅବସ୍ଥା କ'ଣ ହେବ ତାହା ଜାଣି ନ ପାରି ମୁଁ ହତ୍ଭ-ବଡ଼େଇ ଯାଉଥିଲା ବେଳେ, ମୋର ମଷ୍ଟରଙ୍କ ଅଧିକାଂଶ ଧୈର୍ଯ୍ୟହୀନ ପଣ୍ଡିତମନ୍ୟ ଗଣିତ ଶିକ୍ଷକଙ୍କ ବେତ ପାହାର ସପାତ୍ ସପାତ୍ ମୋ ପିଠିରେ ବସିଯାଏ ଓ ମୂର୍ଖ, ଗଧ, ନିର୍ବୁଦ୍ଧିଆ ପ୍ରଭୃତି ବିଶେଷଣମାନ ମଧ୍ୟ ମୋ ଉପରେ ନିର୍ବିଘ୍ନରେ ବର୍ଷିଯାଏ । ସେତେବେଳେ ପୁଣି ମୋର

ବାଲ୍ୟ ପ୍ରେମିକା ଛଅବର୍ଷ ବୟସ୍କା ଗୃହଲତା ମୋ ପାଖରେ ବସି ସେହି ଫେଡ଼ାଣଟି ଠିକ୍ କରି ଦେଇ ମୋର ମାଡ଼ ଓ ଭର୍ତ୍ସନା ଶୁଣି ହସୁଥାଏ । ଏବଂ ମୋର ମୁଣ୍ଡ ଭିତରେ ମୋର ଆଖିର ଲୁହ ଜମା ହୋଇଯାଇ ମୋର ସାମାନ୍ୟତମ ବୁଦ୍ଧି-ବୃତ୍ତି ସେଥିରେ କୁଆଡ଼େ ବୁଡ଼ିଯାଏ । ଆଖିର ମୁଁ ଫେଡ଼ାଣ ବ୍ୟାପାରଟିକୁ ସେଇଦିନୁଁ ଆଜି ପର୍ଯ୍ୟନ୍ତ ଭଲଭାବେ ଶିଖି ପାରିନାହିଁ । ସେହିପରି ହରଣ ଶିଖିଲାବେଳେ ମଧ୍ୟ ହଇରାଣ ହେଲି—ଓ ମାଡ଼ ଭର୍ତ୍ସନାଦି ଭୋଗିଲି । ୩୮୭୯କୁ ୨୫ ସଂଖ୍ୟାରେ ହରିବା ଠାରୁ ଭଲ ବିପଦ ଆଉ କଷ୍ଟସାଧ୍ୟ ବ୍ୟାପାର କିଛି ନାହିଁ । ପ୍ରଥମଟା ବିଶେଷ କିଛି ଅସୁବିଧା ନାହିଁ । ୨୫ ଦୁଣେ ୫୦ ଯିବନି । ତେଣୁ ୨୫ କେ ୨୫ ବସାଇ କୌଣସି ପ୍ରକାରେ ୩୮ରୁ ଫେଡ଼ ଦେଲେ ସରଳ ଭାବେ ୧୩ ରହିଲା । କିନ୍ତୁ ତା'ପରେ ଯୋଉସବୁ କାଣ୍ଡ କାରଖାନା ଆରମ୍ଭ ହୋଇଯାଏ ଓ ଉପରୁ ତଳକୁ ସଂଖ୍ୟାମାନଙ୍କୁ ଓହ୍ଲାଇ ତାକୁ ପୁଣି ପଚିଶିରେ ହରି ଭାଗଫଳ ଓ ଭାଗଶେଷାଦି କାଢ଼ି—ଓଃ—ଓଃ— ବାପାରେ ! ବାପାରେ ! ମୁଣ୍ଡର ଶିରା ସବୁ ଫାଟିଯିବା ବେଳକୁ ସେହି ନିଷ୍ଠୁରଚରିତ୍ର ଧୈର୍ଯ୍ୟହୀନ ପଣ୍ଡିତମନ୍ୟ ଗଣିତ ଶିକ୍ଷକଙ୍କ ସପାତ୍ ସପାତ୍ ବେତାଘାତ ଓ ଗର୍ଦ୍ଦଭ, ମୂର୍ଖ, ନିର୍ବୁଦ୍ଧିଆ ଆଦି ଅପମାନକର ବିଶେଷଣାଦିର ଭର୍ତ୍ସନା ଏବଂ ମୋର ବାଲ୍ୟ ପ୍ରେମିକା ଛଅବର୍ଷ ବୟସ୍କା ଗଣିତ-ବିଦୁଷୀ ଓ ଆମ କ୍ଲାସର ଲୀଳାବତୀ ଗୃହଲତାର ଗର୍ବ ମିଶ୍ରିତ ମନ୍ଦ ମନ୍ଦ ହସ । ଓଃ କି ଜ୍ୱାଳା ଯନ୍ତ୍ରଣାମୟ ନ ଥିଲା ମୋର ସେଦିନର ଅଙ୍କ କ୍ଲାସ ଗୁଡ଼ିକ ।

ତା'ଛଡ଼ା ପୁଣି ମୋର ମନରେ କେତେକ ନିଜସ୍ୱ ସନ୍ଦେହ ମଧ୍ୟ ଉଠୁଥିଲା—ଯାହାକୁ କି ସେତେବେଳେ କେହି ବୁଝାଇ ଦେଇ ନଥିଲେ । ଯଥା—୫ଟା କାଠି ସଙ୍ଗେ ସାତଟା ବାଲିଗରଡ଼ା ମିଶିଲେ କେତେ ହେଲା ? ମୁଁ ଭାବେ କେତେ କ'ଣ ହେଲା ? କେତେ କେମିତି ହେବ ? ପାଞ୍ଚଟା କାଠି ସଙ୍ଗେ ପାଞ୍ଚଟା ବାଲିଗରଡ଼ା ପୁଣି ମିଶିବେ କେମିତି ? ପାଞ୍ଚଟା ଛେଳି ସଙ୍ଗେ ଅବା ସାତଟା ମେଣ୍ଢା ମିଶାମିଶି ପଡ଼ିଆରେ ଚରି ପାରନ୍ତି ମାତ୍ର କାଠିଗୁଡ଼ାକ ସଙ୍ଗେ ବାଲିଗରଡ଼ାମାନେ ମିଶିବେ କେମିତି ? କିନ୍ତୁ ଅଙ୍କ ମାଷ୍ଟ୍ରେ ଏମିତି ଅଖାଡ଼ୁଆ ପ୍ରଶ୍ନ ସବୁ ପଚାରୁଥିଲେ ।

ସେମିତି ପଚିଶିଟା କଦଳୀକୁ ପାଞ୍ଚଜଣଙ୍କ ଭିତରେ ବାଣ୍ଟିଦେଲେ ଜଣକୁ କେତେ ପଡ଼ିଲା ? ଏମିତି ପ୍ରଶ୍ନ ହେବ—କିନ୍ତୁ କଦଳୀର ଦେଖା ନ ଥିବ, କି ସତକୁ ସତ କେଉଁ ଭାଗ୍ୟବାନମାନଙ୍କୁ ସେଗୁଡ଼ିକୁ ବଣ୍ଟାଯିବ—ବା ସେହି ବଣ୍ଟନ ଦାୟିତ୍ୱରେ ସଠିକ ଭାବେ କାହାକୁ ରଖାଯିବ ଓ ସେହି ବଣ୍ଟନକାରୀ ନିଜେ ସେଥିରୁ କଦଳୀଟିଏ ଖାଇ ପାରିବ କି ନାହିଁ—ସେ ସମ୍ବନ୍ଧେ ମୋ ମୁଣ୍ଡରେ ପ୍ରଶ୍ନମାନ ଖେଳୁଥିଲେ ବି ଅଙ୍କ ମାଷ୍ଟ୍ରେ ସେ ବିଷୟରେ ସାମାନ୍ୟତମ ମଧ୍ୟ ସୂଚନା ଦେବେ ନାହିଁ । ଯାହା ଫଳରେକି ପାଞ୍ଚ ପଞ୍ଚା ପଚିଶି ମୋତେ ଜଣାଥିଲେ ମଧ୍ୟ ମୋ ମୁଣ୍ଡରେ ସେଇସବୁ ସମସ୍ୟା ଖେଳୁଥିବାରୁ ମୁଁ "ପାଞ୍ଚଟା ଲେଖା ପଡ଼ିଲା" ବୋଲି କହିପାରେ ନାହିଁ ଓ ଅଙ୍କ ମାଷ୍ଟ୍ରଙ୍କ ଦିବ୍ୟଦୃଷ୍ଟି କି ଅନ୍ୟମନସ୍କ କିମ୍ବା ନିର୍ବୁଦ୍ଧିଆ ବୋଲି ପ୍ରଶଂସିତ ହେବାରୁ ପିଠିରେ କିମ୍ବା ଗାଲରେ କିଛି ଉତ୍ତମ ମଧ୍ୟମ ପାଇଯାଏ । ସେହିପରି କ୍ରମଶଃ ସଂଖ୍ୟାଗୁଡ଼ିକ ଯେତେବେଳେ ବ୍ୟକ୍ତି-ବିଶେଷ ବା ପ୍ରାଣୀମାନଙ୍କ ସଙ୍ଗେ ମିଶି ଆହୁରି ଅଯୌକ୍ତିକର ଓ ଜଟିଳ ଗାଣିତିକ ସମସ୍ୟାମାନ ସୃଷ୍ଟି କରନ୍ତି, ସେତେବେଳେ ମଧ୍ୟ ମୋର ମୁଣ୍ଡ ଗୋଳମାଳ ଧରିଯାଏ । ଧରିଯାଉ—ଗୋଟିଏ ଅଙ୍କ ପ୍ରଶ୍ନ ହେଲା—ରାମ ଯୋଉ କାମକୁ ୬ ଦିନରେ କରିପାରିବ ଶ୍ୟାମ ଓ ହରି ମିଶି ସେ କାମକୁ ଦୁଇ ଦିନରେ କରି ପାରିବେ । ତା'ହେଲେ ଶ୍ୟାମ ଏକୁଟିଆ ସେ କାମକୁ କେତେ ଦିନରେ କରି ପାରିବ ? ମୁଁ ଅବଶ୍ୟ ପିଲାଦିନେ ବର୍ତ୍ତମାନ ଭଳି ନିର୍ବୁଦ୍ଧିଆ ଥିଲି । କିନ୍ତୁ ସେହି ଅଙ୍କ ପ୍ରଶ୍ନଟି ମୋ ମୁଣ୍ଡରେ ବହୁ ବୌଦ୍ଧିକ ସମସ୍ୟା ସୃଷ୍ଟି କରୁଥିଲା । ଯଥା—ପ୍ରଶ୍ନରେ ଥିବା ସେହି "କାମ"ଟି ପ୍ରକୃତରେ କୋଉ ପ୍ରକାର କାମ ? ଶାଗ ତୋଳିବା ଗୋଟିଏ କାମ—ଅମ୍ବ ଗୋଟାଇବା ମଧ୍ୟ ଗୋଟିଏ କାମ—ହଳ ବୁଲାଇବା ମଧ୍ୟ ଗୋଟିଏ କାମ—ମାଟି ଚକଟିବା ମଧ୍ୟ ତଦ୍ରୂପ ଏକ କାମ । ଏବଂ ଅଙ୍କ କଷିବା ମଧ୍ୟ ଗୋଟିଏ କାମ ତଳେ ଗଣାଯିବ କି ନାହିଁ, ତାହା ଅଙ୍କ ମାଷ୍ଟ୍ରେ ତାଙ୍କ ପ୍ରଶ୍ନରେ ଉଲ୍ଲେଖ କରନ୍ତି ନାହିଁ । ସେହିପରି ରାମ, ଶ୍ୟାମ ଓ ହରି ଆଦି ମହାନ୍ କର୍ମୀମାନେ କିଏ ଓ ସେମାନଙ୍କର ସାଧାରଣ ସ୍ୱାସ୍ଥ୍ୟ, ଶକ୍ତି ଓ କର୍ମ ଦକ୍ଷତା ସହିତ ସେମାନଙ୍କର ପାରିବାରିକ ଜଞ୍ଜାଳାଦିର ବିବରଣୀ ମଧ୍ୟ ସେ ପ୍ରଶ୍ନରୁ ମିଳୁନାହିଁ । ଏବଂ ସର୍ବୋପରି

ରାମ ଶ୍ୟାମ ହାମ ନାମରେ ସତକୁ ସତ କେହି ବ୍ୟକ୍ତି ଅଛନ୍ତି କି ? ଓ କୋଉଠି ସେମାନେ ଥାନ୍ତି—ସେମାନେ ଡେଙ୍ଗା ନା ଗେଡ଼ା—ମୋଟା-ସୋଟା ନା ପତଳା-ଧେଡ଼େଙ୍ଗା—ଗୋରା ନା କାଳିଆ ଏବଂ ସେମାନେ ସେହି ପ୍ରଶ୍ନଗୁଡ଼ିକ କାମଟିକୁ କାହିଁକି କରନ୍ତି—ଓ କରସାରି କ'ଣ ପାନ୍ତି—ଏସବୁ ପ୍ରଶ୍ନ ମଧ୍ୟ ମୋ ମୁଣ୍ଡ ଭିତରେ ସେତେବେଳେ ଖେଳୁଥାଏ ଓ ତେଣୁ ମୁଁ ପ୍ରଶ୍ନଟିର ଉତ୍ତର ଦେଇ ନ ପାରି ମାଡ଼ ଗାଳି ଖାଏ ।

ତା'ପରେ କ୍ରମେ ମୁଁ ଯେମିତି ଆଉ ଟିକିଏ ବଡ଼ ହେଲି ଓ ମୋ ପାଇଁ ବାଧ୍ୟବାଧ୍ୟ ଭାବେ ଗୋଟିଏ ଗଣିତ ବହି ଆସିଲା—ସେ ବହିଟିକୁ ଦେଖିବାମାତ୍ରେ ମୋ ମୁଣ୍ଡ ବୁଲିଗଲା । ଆମେ ସେତେବେଳେ ପଢ଼ିଥିବା କୌଣସି ବହି—ସାହିତ୍ୟ, ଭୂଗୋଳ, ଇତିହାସ କି ପ୍ରକୃତି ପାଠ—ସେହି ଗଣିତ ବହିଟି ପରି ଏମିତି ଭୟଙ୍କର ଦେଖାଯାଉ ନ ଥିଲା । ସବୁ ବହିରେ ଗୁଣା ଅଧିକ ନାନା ରଙ୍ଗର ଛବିମାନ ଥିଲା । ବିଲେଇ, କୁକୁର, ପୁରୀ ଦେଉଳ, ସାପ, ନେଉଳ, ପାହାଡ଼, ଗଛ, ଚଢ଼େଇ, ମାଛ, ତାଜମହଲ, ମଣିଷ, ଚନ୍ଦ୍ରସୂର୍ଯ୍ୟ, ମେଘ, ବାବର, ଆକବର, ଦଶରଥ, ଋଷି, ଏପରିକି ଇନ୍ଦ୍ର, ବାପୁ ପ୍ରଭୃତି ଦେବଗଣଙ୍କର ଛବିମାନଙ୍କରେ ସେ ବହି ଅତ୍ୟନ୍ତ ଆକର୍ଷଣୀୟ ଥିଲା । ମାତ୍ର ଏଇ ରୁକ୍ଷ ଗଣିତ ବହିଟିରେ ମୂଳରୁ ଶେଷ ପର୍ଯ୍ୟନ୍ତ ଖାଲି ଅଙ୍କ ପ୍ରଶ୍ନଛଡ଼ା ଆଉ କିଛି ଆଖିଦୃଶିଆ ଛବି ନ ଥିଲା । ତେବେ ବହୁ କଷ୍ଟରେ ମୁଁ ସେଥିରେ ଗୋଟିଏ ଘଣ୍ଟାର ଛବି ଆବିଷ୍କାର କରିଥିଲି । ସେ ଛବିଟାର ଦେହ ମଧ୍ୟ କାଳି ମିଞ୍ଜି ମିଞ୍ଜି ହୋଇ ଯାଇଥିଲା—ମାତ୍ର ତା' ଭିତରେ ତିନିଟା କଣ୍ଟା ସ୍ପଷ୍ଟ ଭାବେ ୧ ଠାରୁ ୧୨ ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ସଂଖ୍ୟାମାନଙ୍କ ଭିତରୁ କାହାକୁ ନା କାହାକୁ ନିର୍ଦ୍ଦେଶ କରୁଥିଲା । ଏବଂ ତା' ତଳେ ଅତି କଷ୍ଟକର ପ୍ରଶ୍ନମାନ ଲେଖା ଯାଇଥିଲା । ଯଥା—ଘଣ୍ଟାକଣ୍ଟା ଯେତେବେଳେ ଦଶ ଉପରେ ଏବଂ ମିନିଟ କଣ୍ଟା ଯେତେବେଳେ ଦୁଇ ଉପରେ, ସେତେବେଳେ ଦଶଟା ବାଜି କେତେ ମିନିଟ ହୋଇଛି ? ଅଥବା ସେତେବେଳେ ଏଗାରଟା ବାଜିବାକୁ ଆଉ କେତେ ମିନିଟ ବାକିଅଛି ?

ସ୍ୱତନ୍ତ୍ର—ସେ ବହିଟାକୁ ଦେଖି ମୁଁ ଖୁବ୍ ବିଗିଡ଼ ଗଲି । ସେ ବେଠା ଲେଖକ ବା ପ୍ରକାଶକ ପୁଣି ବହିଟାର ମଲାଟ ଉପରେ ମଧ୍ୟ ଗୋଟାଏ ଭଲ ଛବି ଦେଇ ନ ଥିଲେ । ସାଧା ମଲାଟର ବହିଟା ଗୋଟେ ପିତାଶୁଣୀ ଭଳିଆ ମୋ ଆଖିକୁ ଦିଶୁଥିଲା । ଚଣ୍ଡାଳଟା ବହି ଉପରେ ଗୋଟିଏ ସାମାନ୍ୟ ଛବି ମଧ୍ୟ ଦେଇ ପାରିଥାନ୍ତା—ଯୋଉଥିରେ କି ପିଲାଟିଏ ସିଲଟରେ ହରଣଟିଏ କରୁଛି—ଓ ଗୋଟିଏ ପୁଷି ବିରାଡ଼ି ତା ପାଖରେ ଗୁମ୍‌ସୁମ୍ ହୋଇ ବସିଛି ଓ ତା'ର ସ୍ଲେଟ ଉଜଣୀକି କେତୋଟି କାଠି ସଙ୍ଗେ କେତୋଟି ବାଲିଗରଡ଼ା ମିଶାଉଛି ଏବଂ ମିଶାଇ ନ ପାରି କାନ୍ଦୁଛି ? ମନେ ମନେ ଚିଡ଼ିକରି ଭାବୁଥାଏ—ସ୍ୱାଃପ, ପାଠଟା ଯେମିତି ପିତାଶୁଣୀଆ, ମାଷ୍ଟ୍ର ବି ସେମିତି ପିତାଶୁଣୀଆ ଆଉ ଏ ବହିଟା ବି ସେମିତି ପିତାଶୁଣୀଆ ।

ଏବଂ ସେଇ ବହିଟାରୁ ଅଙ୍କ ଶିଖିଲାବେଳେ ମୋ ମୁଣ୍ଡଟା ସମ୍ପୂର୍ଣ୍ଣ-ଭାବେ ବିଗିଡ଼ିଗଲା । ଅଙ୍କଟିଏ କଷିବାକୁ ପଡ଼ିଲେ, ବା ମାନସାଙ୍କଟିଏ କିଏ ପଚାରି ଦେଲେ, ସେଇଦିନୁ ମୋର ଆଖିକି ଘୋର ଅନ୍ଧାର ହୋଇ ଆସେ । ବିଶେଷତଃ ଏହି ମାନସାଙ୍କ ବିଷୟଟି ସବୁଠାରୁ ବଡ଼ ବିପଦ-ଜନକ । କ୍ରମଶଃ ଅଙ୍କ ପ୍ରତି ମୋର ବିମୁଖତା ଯେତିକି ବଢ଼ି ଚାଲିଲା—କ୍ଲାସରେ, ସ୍କୁଲରେ, ଘରେ, ଏପରିକି ଗାଁରେ ମଧ୍ୟ ମୋର ମୋଟା-ବୁଦ୍ଧିଆ ବା ନିର୍ବୁଦ୍ଧିଆ ଅପବାଦ ସେତିକି ସେତିକି ମୁହଁରେ ମୁହଁରେ ପ୍ରଚାରିତ ହେବାକୁ ଲାଗିଲା । ଆମ କ୍ଲାସରେ କୋଡ଼ିଏ ଜଣ ଛାତ୍ର ଛାତ୍ରୀଙ୍କ ଭିତରୁ ଆମେ ତିନିଜଣ ଛାତ୍ର ଗର୍ଦ୍ଦଭ ଆଖ୍ୟା ଓ ଉପାଧି ସର୍ବସମ୍ମତି କ୍ରମେ ପ୍ରାପ୍ତ ହେଲୁ । ମୋ ଛଡ଼ା ଅନ୍ୟ ଦୁଇଜଣ ହେଲେ ମାଧିଆ ବାରିକ, ତାକୁ ଆମେ ମାଧା ବୋଲି ଡାକୁଥିଲୁ—ଏବଂ ତାର ମାଧା ବା ମାଧିଆ ନାମ ସଙ୍ଗେ ଗଧା ବା ଗଧିଆ ଉପାଧିଟି ବେଶ୍ ଖାପିଯାଏ ଓ ଭଲ ଶୁଭେ । ଯଥା ଗଧା ମାଧିଆ ବା ଗଧିଆ ମାଧା । ଏବଂ ସେଥିପ୍ରତି ତା'ର ମଧ୍ୟ କୌଣସି ଲଜ୍ୟା ବା ଅପମାନ ବୋଧ ନ ଥାଏ । ତାକୁ ସେମିତି ଡାକଲେ ବା ତା' ପିଠିରେ ଦୁଇବିଧା ଥୋଇ ତାକୁ ସେଇ ନାମରେ ଡାକଲେ ସେ ବରଂ ହସି ହସି ଗଡ଼ିଯାଏ । "ଧ" ଅନୁପ୍ରାସଟି ତା' କାନକୁ ବଡ଼ କୁତୁକୁତିଆ ଲାଗେ । (ଆହା ! ଥାଉ ଥାଉ—ତା' ବିଷୟରେ ଆଉ

କିଛି କହିବ ନାହିଁ । ତାକୁ କୁଷ୍ଟରୋଗ ହେଲା ଓ ସେ ଘା' ଘାଉଡ଼ ହୋଇ ତାଙ୍କ ବାରି ବାରଣ୍ଡାରେ ଛିଣ୍ଡା ଢେଁସ ଓ କନାରେ ଶୋଇ ଶୋଇ ମାଛି ଡାଆଁସ ମଶା କାମୁଡ଼ା ଖାଇ ଖାଇ, ଦିନେ ମରିଗଲା । ଏବଂ ତାକୁ ତା' ଭାଇମାନେ ଟିଣେ କିରାସିନରେ ପୋଡ଼ିଦେଲେ ।)

ଆଉ ଗର୍ଦ୍ଦଭଟିର ନାଁ ହେଉଛି ଯୋବନା ଶେଣ । ସେ ଟୋକାଟା କିନ୍ତୁ ସତକୁ ସତ ଏତେ ନିର୍ବୁଦ୍ଧିଆ ନୁହେଁ । ବାଟି ଆଉ ଡାଗରପୁଆ ଖେଳରେ ମହା ଓସ୍ତାଦ୍ । ଡାଳି ମାଙ୍କୁଡ଼ି ଖେଳରେ ତାକୁ ମାଙ୍କଡ଼ ବି ପାରିବେ ନାହିଁ । ତା' ଛଡ଼ା, ତା' ଠାରେ ଗୁରୁକଳା ମଧ୍ୟ ଥିଲା । ଏବଂ ମିଛ କହିବାରେ ତା' ପାଟିରେ ବାଟୁଳି ବାଜିବ ନାହିଁ । ବେଳେବେଳେ ମାଡ଼ ଫଉଜଦାରି ମଧ୍ୟ କରେ । ହେଡ୍ ପଣ୍ଡିତଙ୍କ ଟ୍ରଙ୍କ୍ ଫିଟାଇ ଟଙ୍କା ଚୋରି କରିବା ଠାରୁ ଆରମ୍ଭ କରି, ଗୋବିନ୍ଦ ସେନାପତି ବାରି ନଡ଼ିଆ ଗଛରେ ରାତିରେ ଚଢ଼ି ନଡ଼ିଆ ପାରି ଆଣିବା ଯାଏ, ସବୁ ଅସାଧ୍ୟ ପାପ-କର୍ମମାନ କରି ମଧ୍ୟ ସେ ଆପଣାର ଜାଲିଆତି ବୁଦ୍ଧି ବଳରେ ସବୁଠୁଁ ନିର୍ଦ୍ଦୋଷରେ ଖସି ଆସେ । ଅଥଚ ଏଇ ଅଙ୍କ କଷିଲା ବେଳକୁ ତା'ର ସେ ବିଚିତ୍ର ବୁଦ୍ଧି ଆଦୌ କୁଳାଏ ନାହିଁ । ଗଣିତ ସାର୍‌ଙ୍କ ଠାରୁ ଗଧ ଗାଳି ତ ଶୁଣେ—ବେତ ମାଡ଼ ମଧ୍ୟ ଖାଏ । କିନ୍ତୁ ଆଶ୍ଚର୍ଯ୍ୟ କଥା—ସେଥିପାଇଁ ମଧ୍ୟ ତା'ର କୌଣସି ଶୋଚନା ନଥିଲା । ତାକୁ କେହି ବୁଦ୍ଧିମାନ ବା ବୁଦ୍ଧିହୀନ କହିବା ଉପରେ—ବା ଘୋଡ଼ା କି ଗଧ କହିବା ଉପରେ ତା'ର କିଛି ଗୁରୁତ୍ୱ ନ ଥିଲା । ସେ ତା'ର ଚେଷ୍ଟା ଫଉଜଦାରି ଓ ମିଛ କହିବାର କ୍ଷମତାକୁ ନେଇ ଆନନ୍ଦରେ ଥାଏ ।

କିନ୍ତୁ ସବୁତକ ଶୋଚନା ମୋର । ସବୁତକ ଦୁଃଖ ମଧ୍ୟ ମୋର । ମାଡ଼ ଖାଇବା ପ୍ରତି ମୋର ଯେତେ ଆପତ୍ତି ନ ଥିଲା—(କାରଣ, ଆମେ ସେତେବେଳେ ଗୋଟିଏ ନୀତିବାକ୍ୟ ବାରମ୍ବାର ଶୁଣୁଥିଲୁ ଯେ ମାଡ଼ ଖାଇଲେ ପାଠ ଆସେ ।) ଏଇ ନିର୍ବୁଦ୍ଧିଆ ଓ ଗଧ ଉପାଧିଟି ପ୍ରତି ମୋର ଖୁବ୍ ବ୍ୟଥା ବେଦନା ବୋଧ ହେଉଥିଲା । ମୁଁ ନିଜକୁ ଖୁବ୍ ଆହତ ଏବଂ ଅପମାନିତ ମନେ କରୁଥିଲି । ଦିନେ ଆମ ସେକେଣ୍ଡ ପଣ୍ଡିତେ ଅଙ୍କ ସାର୍‌ଙ୍କ ଅନୁପସ୍ଥିତିରେ ଆମ କ୍ଲାସକୁ ଆସି ଆମ ସାଙ୍ଗେ ନାନାଦି

ମଜା ଗପ କଲେ । ଏବଂ ତାର ଭିତରେ ସେ ଗୋଟିଏ ମାନସାଙ୍କ ମଧ୍ୟ ଆମ ସମସ୍ତଙ୍କୁ ପଚାରିଲେ—ସେଇଟି ହେଉଛି—ଗୋଟିଏ ଗଛରେ ଶହେ ଛଅଟି ଚଢ଼େଇ ବସିଥିଲେ । ଗୋଟିଏ ବନ୍ଧୁକବାଲା ଆସି ବନ୍ଧୁକ ଲକ୍ଷ୍ୟ ଦେବାରୁ ସେଥିରୁ ଛଅଟି ଚଢ଼େଇ ମରି ତଳକୁ ଖସି ପଡ଼ିଲେ । କହିଲ ଦେଖି—ଗଛରେ ଆଉ କେଇଟା ଚଢ଼େଇ ରହିଲେ ? ଆମ କ୍ଲାସର ପ୍ରଥମ ଗଧ ମାଧା ବାଳକ ମୂଳରୁ ପ୍ରଶ୍ନଟା ବୁଝିପାରିଲା ନାହିଁ । ଚଢ଼େଇ ଓ ଗଛ କଥାଟା ବୁଝିଲା । ମାତ୍ର ବନ୍ଧୁକ ଶବ୍ଦଟା ଓ ଲକ୍ଷ୍ୟଦେବା ହିପ୍ସାଟି ତାକୁ ବଡ଼ ଅଡ଼ୁଆରେ ପକାଇ ଦେଲା । ସେ ଖାଲି ପ୍ରଶ୍ନଟି ଶୁଣି କୁରୁକୁରୁ ହୋଇ ହସି ଲାଗିଲା । ତା'ପରେ, ଆମର ଦ୍ୱିତୀୟ ଗର୍ଦ୍ଦଭ ସୋବନା ଶେଣ ମୂଳରୁ ସେ ପ୍ରଶ୍ନଟି ଶୁଣୁ ନ ଥିଲା । ସେ ଝରକା ବାଟେ ବାହାରକୁ ଚାହିଁ ବାରେଣ୍ଡାରେ ଉଙ୍କି ମାରୁଥିବା ଆଉ ଗୋଟାଏ ବଜାତ ଟୋକାକୁ ଆଖିମାରି କ'ଣ ଇସାରା ଦେଉଥିଲା । ନିଶ୍ଚୟ ତା' ମୁଣ୍ଡରେ କୌଣସି ଦୁଷ୍ଟ ବୁଦ୍ଧି ଖେଳୁଥିଲା । ମୁଁ କିନ୍ତୁ ପ୍ରଶ୍ନଟିକୁ ଭଲକରି ଶୁଣି ତା'ର ଉତ୍ତର ଠିକ୍ କରି ନେଇଥିଲି ମନେ ମନେ । ଏବଂ ସାର୍ ଯେତେବେଳେ "କିଏ କହିପାରିବ ହାତ ଟେକ" ବୋଲି ଆଦେଶ ଦେଲେ, ସେତେବେଳେ ଅନ୍ୟ ବୁଦ୍ଧିମାନ ଗଣିତଜ୍ଞ ଛାତ୍ରମାନଙ୍କ ସହିତ ମୁଁ ମଧ୍ୟ ହାତ ଟେକିଲି । ମାତ୍ର ସାର୍ ମୋ ଭଳି ବହୁ-ଆଖ୍ୟାତ ଗର୍ଦ୍ଦଭକୁ ନ ପଚାରି, ଜଣ ଜଣ କରି ବୁଦ୍ଧିମାନମାନଙ୍କୁ ପଚାରି ଗଲେ । ଏବଂ ସବୁ ଗଣିତ-ପଣ୍ଡିତ ବୁଦ୍ଧିଆ ଛାତ୍ରମାନେ—ଏହି ପ୍ରଶ୍ନଟିକୁ ସାମାନ୍ୟ ଫେଡ଼ାଣ ମାତ୍ର ଭାବି ୧୦୬ ରୁ ୬ ସଂଖ୍ୟାଟି ଫେଡ଼ି ଦେଇ "ଶହେ ଚଢ଼େଇ—ଶହେ ଚଢ଼େଇ" ହେଲେ । ମାତ୍ର ମୁଁ ହଠାତ୍ ସେଇସବୁ ବୁଦ୍ଧିମାନମାନଙ୍କ ପତନରେ ଅତ୍ୟନ୍ତ ଉତ୍ସାହିତ ହୋଇ ଠିଆ ହୋଇପଡ଼ି ଖୁବ୍ ବଡ଼ ପାଟିରେ କହି-ଉଠିଲି—ସାର୍ ! ଆଉ ଗୋଟିଏ ବି ଚଢ଼େଇ ଗଛରେ ରହିଲେ ନାହିଁ । ସାର୍ ମୋ ଠାରୁ ଏତକ ଶୁଣି ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ ମୋ ମୁହଁକୁ ? ଗଧାର ପୁଣି ଏତେ ମେଧା ! ଏବଂ ପରାଜିତ ବୁଦ୍ଧିମାନ ଅଙ୍କ କଷାଳୀମାନେ ମୋ ଉତ୍ତର ଶୁଣି ମୋର ଫେଡ଼ାଣ ଜ୍ଞାନର ଏହି ଶୋଚନୀୟ ପରିଣତି ଦେଖି ହସି ଉଠିଲେ । କିନ୍ତୁ ସାର୍ ଯେତେବେଳେ ମୋ ଉତ୍ତରଟିକୁ, ଠିକ୍‌ହେଲା—ଏବଂ କେମିତି ଠିକ୍ ହେଲା—ତା'ର

କାରଣ ବୁଝାଇ ଦେଲେ—ସେତେବେଳେ ଯାଇ ସେମାନେ ବୁଝିପାରି ଲଜ୍ଜିତ ହେଲେ ଓ ମୋ ଉପରେ ପ୍ରଥମ ଥର ଲାଗି ଈର୍ଷାନ୍ୱିତ ହୋଇଗଲେ ।

ମୋ ଉତ୍ତରଟି ଠିକ୍ ହେବାର କାରଣ ହେଲା—ମୁଁ ଶହେ ଛଅ ଓ ଛଅ ସଂଖ୍ୟା ଦୁଇଟିର ହଠଚମଠ କିଆ ଆଡ଼କୁ ମନ ନ ଦେଇ ବନ୍ଧୁକର ଶବ୍ଦ ଓ ପକ୍ଷୀମାନଙ୍କ ମନସ୍ତତ୍ତ୍ୱ ବା ସ୍ନାୟୁର ଗଠବଧି ସମ୍ବନ୍ଧେ ବେଶ୍ ଜାଣିଥିଲି । କିନ୍ତୁ ଆମ କ୍ଲାସର ସେଇ ତଥାକଥିତ ବୁଦ୍ଧିମାନ ଅଙ୍କ କଷାଳିମାନେ ଶହେ ଛଅଟି ପକ୍ଷୀଙ୍କୁ କେବଳ ଶହେ ଛଅଟି ସଂଖ୍ୟା ବୋଲି ମନେ କରିଥିଲେ ।

ସେଦିନ ସେକେଣ୍ଡ ପଣ୍ଡିତ ଆଉ ଗୋଟିଏ କଉତୁକିଆ ମାନସାଙ୍କ ମଧ୍ୟ ପଚାରିଲେ—ତା' ହେଲା—

ଗୃହରେ ଅଶୀ—ଶୂନ ନେଇଗଲା ବୁଢ଼ୀ ମାଉସୀ—ରହିଲା କେତେ ? ଗଲା କେତେ ?

ଆମ କ୍ଲାସର ବୁଦ୍ଧିମାନ ଗଣିତ-ବେତ୍ତାମାନେ ସାଙ୍ଗେ ସାଙ୍ଗେ ଗୃହରେ ଅଶୀରୁ ମନେ ମନେ ଶୂନ୍ ଲିଭାଇ ଦେଇ ୮ ରଖିଲେ ଓ ୮୦ ରୁ ପୁଣି ୮ ଫେଡ଼ ଦେଇ ସଙ୍ଗେ ସଙ୍ଗେ ଫେଡ଼ାଣ ଫଳ ବାହାର କରି ସମସ୍ୱରରେ କହି ଉଠିଲେ—୭୨ ସାର୍ ୭୨ । ଗଲା ୭୨— ରହିଲା ୮ ।

ସେକେଣ୍ଡ ପଣ୍ଡିତ ହସି ହସି ମୋ ମୁହଁକୁ ଚାହାନ୍ତେ, ମୁଁ ସାମାନ୍ୟ ଡରି ଡରି କହିଲି—କିଛି ସାର୍ ଗଲା ନାହିଁ । ଯାହା ଥିଲା ସେଇଆ ରହିଲା—ସେଇ ୮୦ ।

ଏଥରକ ମଧ୍ୟ ସେକେଣ୍ଡ ପଣ୍ଡିତେ ମୋ ମୁହଁକୁ ବିସ୍ମୟରେ ଚାହିଁ ରହିଲେ ଓ ମୋ ସମ୍ବନ୍ଧେ ମତ ପରିବର୍ତ୍ତନ କରିବାକୁ ସ୍ଥିର କରି—ଅନ୍ୟ ପିଲାମାନଙ୍କୁ "ଶୂନ" ଶବ୍ଦଟିର ସାଂଖ୍ୟ ଅର୍ଥ ବ୍ୟତୀତ, ତା'ର ଅନ୍ୟ ତାତ୍ପର୍ଯ୍ୟ ବୁଝାଇ ମୋ ଉତ୍ତରଟିର ସଠିକତା ପ୍ରମାଣ କଲେ । ଏବଂ ଏଥର ମଧ୍ୟ

ଅନ୍ୟ ବୁଦ୍ଧିମାନ ପିଲାମାନେ ମୋ ଆଡ଼କୁ ବିସ୍ମୟ, ପ୍ରଶଂସା ଓ ଈର୍ଷା ମିଶ୍ରିତ ଦୃଷ୍ଟିରେ ଅନାଇ ରହିଲେ । ଏମିତି ଏମିତି ସେଦିନ ସେକେଣ୍ଡ ପଣ୍ଡିତେ ଆଉ ସ୍ଥିର ପାଞ୍ଚୋଟି କୌତୁକ ପ୍ରଶ୍ନ ପଚାରିଲେ—ଏବଂ ଅନ୍ୟ-ମାନଙ୍କ ଉତ୍ତର ଭୁଲ ହେଲା ଓ ମୋ ଉତ୍ତର ଠିକ୍ ହେଲା ।

ସେଇ ଦିନଟି ଥିଲା ଜାଣ ମୋ ଜୀବନରେ ସୌଭାଗ୍ୟତମ ଦିନ । କାରଣ ମୁଁ ମନେ ମନେ ସେଦିନ ନିଜକୁ ବୁଦ୍ଧିମାନ ବୋଲି ଭାବି ପାରିଲି । ଏବଂ ଅଙ୍କ ନ ଆସୁଥିବାରୁ ଯେଉଁ ନିର୍ବୁଦ୍ଧିଆ ଏବଂ ଗଧା ଉପାଧି ପାଇଥିଲି, ତାକୁ ମନେ ମନେ ଉପେକ୍ଷା କରିବାକୁ ଲାଗିଲି । ଏବଂ ଅଙ୍କ ପଢ଼ାଉଥିବା ଶିକ୍ଷକମାନଙ୍କ ପ୍ରତି ମୋର ଘୃଣା ଓ ବିଦ୍ୱେଷ ମଧ୍ୟ ବଢ଼ିବାକୁ ଲାଗିଲା ।

ମୋର ଆଉ ଗୋଟିଏ ଗୁଣ ଥିଲା । ତା' ହେଲା ମୁଁ ପଦ ମିଳାଇ ପଦ୍ୟ ରଚନା କରି ପାରୁଥିଲି । ମୋର ସେ କାଳ ରଚିତ କେତୋଟି ପଦ୍ୟର କେତେକ ଧାଡ଼ି ମନେପଡ଼ୁଛି । ଯଥା—

କଜଳ ପାତିଟି ଗାଉଛୁ
କେଡ଼େ ମଧୁର ଗୀତ
କଳା ବୋଲି ତାକୁ କିମ୍ପାଇଁ
ଗାଳି ଦେଉଛ ମିତ ?

କିମ୍ବା—

ଟପ୍‌ଟପ୍ ପଡ଼େ ବରଷା
ଆକାଶ ନ ଦିଶେ ଫରସା ।
ଘଡ଼୍ ଘଡ଼୍ ହୁଏ ଘଡ଼ଘଡ଼ି
ଚଡ଼୍ ଚଡ଼୍ ମାରେ ଚଡ଼ଚଡ଼ି
ଗୁଇଁ ଗୁଇଁ ମାରେ ବିଜୁଳି
ଗଛରେ ପାତିଛି ପିଜୁଳି ।

କେଁ କେଁ କେଁ କଣ୍ଠର
ବେଙ୍ଗ ପଢ଼ୁଅଛି ମନ୍ତ୍ରର ।
ପଚ ପଚ ହୁଏ କାଦୁଅ
ମାସ୍ଟରର ନାମ ଖେଦୁଅ ।
ଗମ୍ଭୀର ସେପଟୁ ବରଷା
ମାଡ଼ି ଆସୁଅଛି ସହସା ।
ଦିନରେ ଘୋଟଇ ଅନ୍ଧାର
ଘରୁ କେହି ନୁହେଁ ବାହାର ।

ଏମିତି ଏମିତି ପଦ ମିଳାଇ ବହୁ ପଦ୍ୟ ମୁଁ ଲେଖୁଥିଲି । ଲେଖିବାକୁ ବସିଲେ ଧୁଏଁ ଧୁଏଁ ଶବ୍ଦମାନ ଜୁଟି ଯାଉଥିଲେ ଓ ପଦ ମଧ୍ୟ ମିଳି ଯାଉଥିଲା । ଖଗ ସାଙ୍ଗରେ ଚଗ – କଳ ସାଙ୍ଗରେ ବଳ—ମନ ସାଙ୍ଗରେ ଧନ କମ୍ବା ଗୀତ ସାଙ୍ଗେ ମିତ ମିଳାଇ ପଦ୍ୟ ଲେଖିବାରେ ମୁଁ ଭାରି ଆତ୍ମପ୍ରସାଦ ଅନୁଭବ କରୁଥିଲି । କିନ୍ତୁ ଅଳ୍ପ କେତେକ ଅନ୍ତରଙ୍ଗ ସାଙ୍ଗଙ୍କ ବ୍ୟତୀତ ତାହା ମୁଁ ଆଉ କାହାକୁ ଦେଖାଉ ନ ଥିଲି । ବିଶେଷତଃ ମୋର ସବୁଠାରୁ ପ୍ରିୟ ସାଙ୍ଗ ମାୟାଧର ଷଡ଼ଙ୍ଗୀକୁ ସେ ସବୁ ପଢ଼ି ଶୁଣାଉଥିଲି । ଏବଂ ମାୟାଧର ତାହା ଶୁଣି ଖୁବ୍ ଖୁସି ହୋଇ ଯାଉଥିଲା । ଏବଂ ଭବିଷ୍ୟତରେ ମୁଁ ଜଣେ ବଡ଼ କବି ହେବି ବୋଲି ନିଶ୍ଚିନ୍ତରେ ଭବିଷ୍ୟତବାଣୀ କରୁଥିଲା । ଅବଶ୍ୟ "କବି" କାହାକୁ କହନ୍ତି ଓ କବି ହେବା ଖୁବ୍ ଭଲ ବା ବଡ଼କଥା କି ନୁହେଁ, ତାହା ମଧ୍ୟ ମତେ ଜଣା ନ ଥିଲା । କିନ୍ତୁ ମାୟାଧରର ଏକଥା ଶୁଣି ମତେ ଖୁବ୍ ଆନନ୍ଦ ଓ ଗର୍ବ ବୋଧ ହେଉଥିଲା । ମାୟାଧର ମୋ ତଳ କ୍ଲାସରେ ପଢ଼ୁଥିଲେ ବି ସେ ତା'ର ପାଣୀ ବ୍ୟବସାୟୀ ବାପା ଭାଇଙ୍କ ସଙ୍ଗେ ଗାଁ ବାହାରକୁ ବହୁବାର ଯାଇ ମୋ ଠାରୁ ବହୁ ଅଧିକ କଥା ଜାଣିଥିଲା ।

ସେ ମତେ କହିଲା ଯେ—ଖୁବ୍ ବୁଦ୍ଧିଆ ନ ହେଲେ କେହି କବି ହୋଇ ପାରିବେ ନାହିଁ । କବିଙ୍କୁ ସମସ୍ତେ ଖୁବ୍ ଭଲପାନ୍ତି ଓ ମାନ୍ୟ କରନ୍ତି । ମୁଁ ମନେ ମନେ ଭାବେ—ଦୁତ୍‌ତେରି ! ମୁଁ କି କବି ହେବି ମ ? କବି ନା କୋବି । କିନ୍ତୁ ମୋ ମନ ଭିତରେ ସନ୍ଦେହର ଅନ୍ତ ନ ଥିଲା । ମୁଁ

ଖୁବ୍ କରୁଣ ଆଜ ସନ୍ତପ୍ତ କଣ୍ଠରେ କହିଲେ—ମାଷ୍ଟ୍ରାଧର ! ମତେ ତ ଅଙ୍କ ଆସୁନାହିଁ । ମୋର ଏତେ ବୁଦ୍ଧି କାହିଁ ଯେ ମୁଁ କବି ହେବି ?

ମାଷ୍ଟ୍ରାଧର ମୋର ଏମିତି ସାଙ୍ଗ ଯେ ମୋର ଦୁଃଖ ସେ ସହି-ପାରେ ନାହିଁ । ଏବଂ ମୋର ଅପମାନ ବା ଅବମାନନା ସେ କେବେ ସହ୍ୟ କରି ପାରେନା । ମୋତେ ଅଙ୍କ ଆସୁ ନଥିବା ବା ପରୀକ୍ଷା ଖାତାରେ ମୋର ଅଙ୍କରେ ଶହେରୁ ଶୂନ୍ ବା ପାଞ୍ଚ ଛଅ ରହୁଥିବା ସେ ଜାଣିଥିଲା । ଏବଂ ସାରା ସ୍କୁଲରେ ମୋର ନିବୁଦ୍ଧିଆ ଏବଂ ଗଧା ଅପବାଦ ସମ୍ବନ୍ଧେ ମଧ୍ୟ ସେ ଶୁଣିଥିଲା । ଏବଂ ମନେ ମନେ ସୁଯୋଗ ଖୋଜୁଥିଲା, କେମିତି ମତେ ଦିନେ ମୋର କ୍ଲାସ ପିଲାଙ୍କ ଆଗରେ ସବୁଠାରୁ ବୁଦ୍ଧିମାନ ବୋଲି ପ୍ରମାଣ କରି ଛାଡ଼ିବ ।

ଦିନେ ମୁଁ "ସାଧବ ବୋହୂ" ଉପରେ ଗୋଟିଏ ଗୁଲୁଗୁଲିଆ ପଦ୍ୟ ଲେଖିଥିଲି । ତାକୁ ମାଷ୍ଟ୍ରାଧରକୁ ପଢ଼ାନ୍ତେ ସେ ଖୁବ୍ ଉତ୍ଫୁଲ୍ଲ ଏବଂ ଉଲ୍ଲାସରେ ଫାଟି ପଡ଼ିଲା । ସେ କହିଲା—ପିଲାଦିନୁଁ ଏମିତି ପଦ୍ୟ ଯେ ଲେଖିଲଣି, ସେ ନିଶ୍ଚେ ସବୁଠାରୁ ବୁଦ୍ଧିମାନ ଓ ବଡ଼ ହେଲେ ଗୋଟାଏ ମସ୍ତବଡ଼ କବି ହେବ । ମୋର ସେଇ ପଦ୍ୟର କେତୋଟି ଧାଡ଼ି ବର୍ତ୍ତମାନ ବି ମନେ ଅଛି ।

ନାଲି ଗୁଲୁ ଗୁଲୁ ସାଧବ ବୋହୂ
କୁଆଡ଼େ ଆଜ ତୁ ? କୁଆଡ଼େ ଯାଉ ?
କିଏ ଦେଲା ତୋତେ ଦକ୍ଷିଣୀ ପାଟ ?
ଓଢ଼ଣା ପକାଇ ଗୁଲୁ ଗୁ ବାଟ ।
ଆମକୁ ଦେଖିଣ ଯାଉଛୁ ଲୁଚି
ଆମେ କଣ ତୋର ଦେଢ଼ଶୁର କି ?
କି କଅଁଳ ତୋର ଟିକି ଦେହଟି
କେଉଁ ବିହି ତୋତେ ଗଢ଼ି ଅଛଟି ?
ସବୁଜ ଘାସର ଗାଲିଚା ପରେ
ବୁଲୁଅଛୁ ତୁହି କେଡ଼େ ମଉଜରେ ।

ଯାଧବ ଥିଅନ୍ତେ ସାଧବ ବୋଦ୍,
ଶୋଭରେ ତୋହର ଜଗତ ମୋହ୍ନ ।

ଏହି କବିତାଟିକୁ ସେ ମୋ ହାତରୁ ଝିଙ୍କି ନେଇ ନିଜର ପକେଟରେ ରଖିଲା । ମୁଁ ମଧ୍ୟ ତାକୁ ସେଇଠି ଆଉ ମାଗିଲି ନାହିଁ । ତା’ ପରଦିନ ସ୍କୁଲରେ ସେ ଆମ କ୍ଲାସକୁ ଆସିଲା । ଏବଂ ସେ ପିରିଅଡ୍‌ରେ ଶିକ୍ଷକ ନ ଥିବାରୁ ସେ ପଦ୍ୟଟିକୁ ସେ ପାଠକରି ପଢ଼ି ଆମ କ୍ଲାସ ପିଲାଙ୍କୁ ଶୁଣାଇଲା । ଆମ କ୍ଲାସର ବୁଦ୍ଧିଆ ଅଙ୍କ-କଷା-ପିଲା କେତେଜଣ ମାୟାଧରର ମୁହଁରୁ କବିତାଟି ଶୁଣି ଖୁବ୍ ଖୁସି ହେଲେ । ଏବଂ ପଚାରିଲେ—ଏ କବିତା କିଏ ଲେଖିଛି ? ସେତେବେଳେ ମାୟାଧର ମୋ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି ଖୁବ୍ ନାଟକୀୟ ଭଙ୍ଗୀରେ କହିଲା — ଏହି ଯେ ସେଠି ବସିଛନ୍ତି କବି ଶ୍ରୀ ମହାପାତ୍ର ନୀଳମଣି ସାହୁ । ମୁଁ ସେତେବେଳେ ଖୁବ୍ ଗର୍ବିତ ବୋଧ କରୁଥାଏ । କିନ୍ତୁ ସେହି ପିଲାମାନେ ହଠାତ୍ ହସି ଉଠିଲେ । ତାଙ୍କ ଭିତରୁ ଜଣେ ମୋତେ ଚାହିଁ ଛିଗୁଲାଇ କରି କହିଲା—ଯାହାକୁ ସାମାନ୍ୟ ଫେଡ଼ାଣ ହରଣ ଆସୁନାହିଁ—ସେମିତିଆ ଗଧ କେବେ ଏମିତି କବିତା ଲେଖି ପାରିବ ନାହିଁ । ଅସମ୍ଭବ ।

ପ୍ରକାଶ ଥାଉ କି, ଆମେ ସେତେବେଳେ ସପ୍ତମ ଶ୍ରେଣୀରେ ଭକ୍ତକବି ମଧୁସୂଦନ ରାଓଙ୍କ “ସାହିତ୍ୟ ପ୍ରସଙ୍ଗ” ବହି ପଢ଼ୁଥିଲୁ ଏବଂ ସେ କାଳର ଜଣେ ଭର୍ଣ୍ଣାକ୍ୟୁଲାର ପଣ୍ଡିତ ୬ ବଳଭଦ୍ର ନାୟକ ଆମକୁ ତାହା ପଢ଼ାଉଥିଲେ । ମୁଁ ମୋ ଜୀବନରେ ଏପରି ସାହିତ୍ୟ ଶିକ୍ଷକ ଆଉ ଦେଖିନାହିଁ । ତାଙ୍କୁ ସେତେବେଳେ ଚାଳିଶ ବର୍ଷ ବୟସ ଏବଂ ଅତି ମଧୁର ଗଳାରେ ଚମତ୍କାର ବ୍ୟାଖ୍ୟା ଚାଲୁଥିଲା ସହ ସେ “ଜୀବନ ଚିନ୍ତା” ଭଳି ବୈରାଗ୍ୟଭାବ ସମ୍ବଳିତ ସେହି ପ୍ରସିଦ୍ଧ କବିତାଟି ପଢ଼ାଇବା ପରେ ମୋର ମନ ସେତେବେଳେ ଏତେ ବୈରାଗ୍ୟପୂର୍ଣ୍ଣ ହୋଇଗଲା ଯେ, ମୁଁ କିଛିଦିନ ଧରି ବଡ଼ ଶକ୍ତ ଓ ବଳିଷ୍ଠ ମନେ କଲି । ଏବଂ ମାୟାଧର ସଙ୍ଗେ ଘର ଛାଡ଼ି ସନ୍ନ୍ୟାସୀ ହୋଇ କୁଆଡ଼େ ଚାଲିଯିବାକୁ ମସୁଧା କରୁଥିଲି । ଆମର ମଧ୍ୟ ଥରେ ଘର ଛାଡ଼ି ଚାଲିଯିବାର ଦିନ ଧାର୍ଯ୍ୟ

ହୋଇ ଯାଇଥିଲା । କିନ୍ତୁ ମୁଁ ସେତେବେଳେ ହଠାତ୍ ଆମ ସ୍କୁଲର ପଞ୍ଚମ ଶ୍ରେଣୀରେ ପଢୁଥିବା ଜଣେ ଗ୍ରୁଷୀ କୁମାରୀ ମଞ୍ଜୁଲତାର ପ୍ରେମରେ ମୋର ଆଉ୍ ଏକ ପାଖିଆ ପଡ଼ି ଯିବାରୁ ଏବଂ ବାଲ୍ୟକାଳରୁ ମା'ଛେଉଣ୍ଡ ସାନଭାଇ ଓ ଭଉଣୀଙ୍କ ଦୁରବସ୍ଥା କଥା ଭାବି ମାୟାଧରର ମନ ଭ୍ରାତୃପ୍ରେମରେ ହଠାତ୍ ବିଚଳିତ ହୋଇଯିବାରୁ ଆମର ଘର ଛାଡ଼ି ସନ୍ନ୍ୟାସୀ ହେବା ପ୍ରସ୍ତାବ ସେଥିରକ ଲାଗି କାଟ ଖାଇଗଲା । ଏବଂ ଆଜି ପର୍ଯ୍ୟନ୍ତ ବି ସେ ଚିନ୍ତା ଆଉ ଥରେ ହେଲେ ବି ମନକୁ ଜୁଟି ନାହିଁ । ଅବଶ୍ୟ ମନ ଭିତରେ ମୃତ୍ୟୁ ଚିନ୍ତା ପଶିଗଲାଣି ।

ସାହିତ୍ୟରେ ତେଣୁ ଆମ କ୍ଳାସର ପିଲାମାନଙ୍କର ଖୁବ୍ ଭଲ ପ୍ରବେଶ ଥିଲା । ସେଥିଲାଗି ସେମାନେ ମୋ ଲିଖିତ କବିତାଟିକୁ ବେଶ୍ ପସନ୍ଦ କଲେ ମଧ୍ୟ, ମୋର କବିତ୍ୱ ପ୍ରତିଭାକୁ ବିଶ୍ୱାସ କଲେ ନାହିଁ । ସେମାନେ ବାରମ୍ବାର କହୁଥାନ୍ତି ଯେ ମୋ ଭଳି ଗଧ ସେମିତି କବିତା କେବେ ଲେଖି ପାରିବ ନାହିଁ । ମାତ୍ର ମୋର ପରମ ବନ୍ଧୁ ମାୟାଧର ସେମାନଙ୍କୁ ଛାଡ଼ୁ ନ ଥାଏ । ସେ ବରାବର ଜିଦ୍ କରି କହୁଥାଏ ଯେ ମୁଁ ଜଣେ ଭବିଷ୍ୟତରେ ବଡ଼ କବି ହେବ ଏବଂ ଏ କବିତାଟି ମୁଁ ଲେଖି-ଥିବା ସେ ନିଜ ଆଖିରେ ଦେଖିଛି । ମାୟାଧରର ଏତେଦୂର ଜିଦ ଦେଖି—ମୋ କ୍ଲାସରେ ଜଣେ ପିଲା ମୋତେ ପୁଚ୍ଛିଁ କହିଲା—

ତା' ହେଲେ ସେ କୋଉ କବିଙ୍କ ଲେଖାରୁ କପି କରିଥିବ ।

ଏ କଥା ଶୁଣି ମୋ ମୁଣ୍ଡରେ ବଜ୍ର ପଡ଼ିଗଲା । ମୁଁ ଅତ୍ୟନ୍ତ ଅପମାନିତ ମନେ କରି ଭିତରେ ଭିତରେ କାନ୍ଦୁଣି ମାନ୍ଦୁଣି ହେଲି । କିନ୍ତୁ ମାୟାଧର ତଥାପି ସେମାନଙ୍କୁ ଛାଡ଼ୁ ନ ଥାଏ । ସେ ମୋର ଅନ୍ୟାନ୍ୟ କବିତା କଥା ମଧ୍ୟ ଉଲ୍ଲେଖ କଲା । ସେଇଠୁ ଦି'ଜଣ ପିଲା ମାୟାଧରକୁ ଧରି ସେହି କବିତାଟିକୁ ଆମ ସାହିତ୍ୟ ସାର୍‌ଙ୍କୁ ଦେଖାଇବା ଲାଗି ଅଫିସ୍‌କୁ ଗଲେ । ମୁଁ ମଧ୍ୟ ତାଙ୍କ ପଛେ ପଛେ ଗଲି । ଅଫିସରେ ସାହିତ୍ୟ ସାର୍ ନ ଥିଲେ । କିନ୍ତୁ ଗଣିତ ସାର୍ ମୁହଁଟାକୁ ଭ୍ରୂକୁଞ୍ଚିତ କରି ବସିଥିଲେ ଓ ତାଙ୍କ ଆଗରେ ଟେବୁଲ ଉପରେ ତାଙ୍କର ବେତଟି ମଧ୍ୟ ଥୁଆ ହୋଇଥିଲା । ପିଲାମାନେ ମୋତେ ଅପମାନ ଦେବା ଲାଗି ଏତେ

ଉତ୍ତେଜିତ ହୋଇଥିଲେ ଯେ ସେଇ କବିତାଟିକୁ ଅଙ୍କ ସାର୍‌ଙ୍କୁ ଦେଖେଇ କହିଲେ—ସାର୍ ! ଏ କବିତାଟିକୁ ପଢ଼ନ୍ତୁ । ସ୍ୱାଇଁ କୁଆଡ଼େ ନୀଳମଣି ଲେଖିଛି ! ଗଣିତ ସାର୍ କବିତାଟିକୁ ନେଇ ଅଙ୍କ ବହିରେ ମୁହଁ ମାଡ଼ି ପ୍ରଶ୍ନଗୁଡ଼ିକୁ ଦେଖିଲା ପରି ମନେ ମନେ କବିତାଟି ପଢ଼ିଲେ । ତା'ପରେ କ'ଣ ଭାବି ବେତଟିକୁ ଧରିଲେ ଓ ସେଇ ବେତଟା ମୋ ଆଡ଼କୁ ନୁଆଁଇ ମତେ ତାଙ୍କ ପାଖକୁ ଡାକିଲେ—ହେଇ୍ଟ ! ଟୋକା ! ଏଠିକି ଆ ।

ମୁଁ ଡରି ଡରି ତାଙ୍କ ପାଖକୁ ଗଲି । ହାତ ଯୋଡ଼ିଲା ଭଳି କରି ଠିଆ ହେଲି । ସେ ମୋ ମୁଣ୍ଡରେ ବେତଟି ଛୁଆଁଇ ଧମକିଲା ଭଳି ପଚାରିଲେ—

ଏ ପଦ୍ୟ ତୁ ଲେଖିଛୁ ? ସତ କହ । ନ ହେଲେ ତୋ' ପିଠି ଫଟେଇ ଦେବିରେ ତିନି ନମ୍ବର ଗଧା !

ମୁଁ ଡରି ଡରି କାନ୍ଦ କାନ୍ଦ ହୋଇ କହିଲି—ହଁ ସାର୍ ! ମୁଁ ଲେଖିଛି !

ଗଣିତ ସାର୍ ଫେର୍ ନାଲି ଆଖି କରି ମତେ ଧମକେଇଲେ—

ଗ୍ରେଟ୍ ଗଧା ! ଫେର୍ ମିଛ କହୁଛୁ ! ତୁ ସ୍ୱାଇଁ କପି କରିନୁ ?

ମୁଁ ଏଥର ଜୋର୍‌ରେ କାନ୍ଦି ଉଠି କହିଲି—ନା, ସାର୍ । ମୁଁ କୋଉଠୁ କପି କରିନି । ନିଜ ବୁଦ୍ଧିରୁ ଲେଖିଛି । (ହଠାତ୍ "ମନରୁ" ଶବ୍ଦଟି ଜାଗାରେ "ବୁଦ୍ଧି"ରୁ ଶବ୍ଦଟି କାହିଁକି ମୋ ତୁଣ୍ଡରୁ ବାହାରିପଡ଼ିଲା କେଜାଣି !)

ଗଣିତ ସାର୍ ସେଇ ବେତରେ ମତେ ପାହାରେ ପକାଇ ତାଚ୍ଛଲ୍ୟ କରି କହିଲେ—

ବୁଦ୍ଧିରୁ ଲେଖିଛୁ ? ତୋର ପୁଣି ବୁଦ୍ଧି ? ସ୍ୱାଃପ—ଫେଡ଼ାଣ ଆସୁନି ସପ୍ତମ ଶ୍ରେଣୀରେ ପଢ଼ୁଛୁ ! ବାର କାହାଣ ପନ୍ଦର ପଣ କୋଉଠି ଅଛି କହିଲୁ ?

"ତେଇଶି ନୁଆଁ ଦୁଇଶ ସାତ ପଣ ବାର କାହାଣ ପନ୍ଦର ପଣ" —ଏହା ମୁଁ ଜାଣିଥିଲେ ବି, ସେତେବେଳେ ସେହି ଘୋର ଦୁଃଖ ଆଉ କ୍ରୋଧ ବେଳାରେ ମୋର ସେତକ ମନେ ପଡ଼ିଲା ନାହିଁ । ମୁଁ କେବଳ ପାପୁଲିରେ ଆଖିବୁଜ କାଢିବାକୁ ଲାଗିଲି ।

ଗଣିତ ସାର୍ ମୋ ପିଠିରେ ଆଉ ପାହାରେ ପକାଇ କହିଲେ—

ଯାଃ ପଳା । ସ୍ଟୁପିଡ୍ ଗଧ କାହିଁକା ।

ମୁଁ ସେଠାରୁ ପଳାଇ ଆସି ବଞ୍ଚିଲି । ମୋର କ୍ଲାସ ପିଲାମାନେ ମହା ଆନନ୍ଦରେ ଗଡ଼ ଜଡ଼ତି ପରି କୋଳାହଳ କରି କରି କ୍ଲାସକୁ ଗଲେ । ମାୟାଧର କିନ୍ତୁ ଘୋର ନୈରାଶ୍ୟ ଓ ଦୁଃଖରେ ମୋ ସାଙ୍ଗେ ସାଙ୍ଗେ ଆସିଲା ଏବଂ ଆମେ ଦୁହେଁ ଆଉ କ୍ଲାସକୁ ନ ଯାଇ ସ୍କୁଲ ଛାଡ଼ି ପଳାଇଗଲୁ । ମାତ୍ର ଘରକୁ ଗଲୁ ନାହିଁ । ନଈ କୂଳଆଡ଼େ ଗଲୁ । ନଈ କୂଳରେ ଯୋଉଠି ଗୋଟାଏ ବାଲିକୁଦ ଅଛି—ଏବଂ ତାର ସାମନା ତଳକୁ ଯୋଉଠି ଗୁଡ଼ାଏ ତାଳ ଗଛ ଅଛି—ସେଇଠି ଗୋଟିଏ ଜାଗାରେ ଯାଇ ଆମେ ବସିଲୁ । ଦୁଇ ବନ୍ଧୁ ଚୁପ୍ ଚୁପ୍ ହୋଇ ଥାଉ । କେହି କାହାକୁ କିଛି କଥା କହୁ ନ ଥାଉଁ । ଅଳ୍ପକ୍ଷଣ ପରେ ମାୟାଧର ପାଟି ଖୋଲିଲା । କହିଲା—ଏ ସ୍କୁଲରୁ ଧର୍ମ ଛାଡ଼ିଗଲାଣି । କିନ୍ତୁ ମୁଁ ସେ କବିତାଟି ନିଶ୍ଚୟ ସାହିତ୍ୟ ସାର୍‌ଙ୍କୁ ଦେଖେଇବି । ଏ ଗଣିତ ସାର୍ ଗୋଟେ କି ମଣିଷ ? ଅଙ୍କ କଷି କଷି ତା' ହୃଦୟ ଯାଉଛି । ସାହିତ୍ୟ ସାର୍ ନିଶ୍ଚୟ ସବୁ କଥା ଜାଣି ପାରିବେ ।

ମୁଁ ମାୟାଧର ଆଡ଼କୁ ବଡ଼ ବିଷର୍ଣ୍ଣ ଆଖିରେ ଚାହିଁଲି ଏବଂ କରୁଣ ସ୍ୱରରେ କହିଲି—ନାଃ ! ଆଉ କାହାକୁ ସେ କବିତା ଦେଖେଇବା ଦରକାର ନାହିଁ । ସେମାନେ କେହି ବିଶ୍ୱାସ କରିବେ ନାହିଁ ଯେ ମୁଁ ସେଇଟି ଲେଖିଛି । ସାହିତ୍ୟ ସାର୍ ମଧ୍ୟ ଅଙ୍କ ସାର୍‌ଙ୍କ ଭଳି ମତେ ସନ୍ଦେହ କରିବେ । କିନ୍ତୁ ମାୟାଧର ! ମୁଁ ଆମ କୁତାମଚଣ୍ଡୀଙ୍କ ରାଣ ପକାଇ କହୁଛି—ମୁଁ ଯାହାସବୁ ଲେଖିଛି, କୋଉଠୁ କପି କରି-ନାହିଁ ।

ମାୟାଧର ମୋର କଥାଶୁଣି କିଛି ଉତ୍ତର ଦେଲାନାହିଁ । କେବଳ ମୋର ହାତକୁ ଟାଣି ନେଇ ତା'ର କୋଳରେ ରଖି ଚୁପ୍‌ଚାପ୍ ବସିଲା । ସେଇଠୁ ମୁଁ କହିଲି—ବୁଝିଲୁ ମାୟାଧର ! ମୁଁ ଭାବୁଛି—ମୁଁ ଯେବେ ବଡ଼ ହୋଇ ଆହୁରି ବହୁତ ବଡ଼ ବଡ଼ ପଦ୍ୟ ଲେଖିବି, ସେତିକବେଳେ ଏହି ପାଗଳମାନେ ଜାଣିବେ ଯେ ମୁଁ କାହାଠାରୁ କପି ନ କରି ନିଜ ବୁଦ୍ଧିରୁ ସବୁ ଲେଖିଛି ।

ମାୟାଧର ମତେ ସାନ୍ତ୍ୱନା ଦେଇ କହିଲା—ଠିକ୍ କହିଛୁ । କିନ୍ତୁ ସେ ଗଣିତ ସାର୍‌ଙ୍କୁ ଗୋଟେ ଶିକ୍ଷା ଦେବାକୁ ହେବ ।

ମୁଁ କହିଲି—ଛାଡ଼ ସେ କଥା । ଆ ଘରକୁ ପଳାଇବା ।

ଆମେ ଦୁହେଁ ଘରକୁ ଫେରିଲୁ । କିନ୍ତୁ ସେଦିନ ମୋ ମନ ଖୁବ୍ ଦବି ଯାଇଥାଏ । ମୋର ହୃଦୟ ଭାରି ହୋଇ ଯାଉଥାଏ । ସେଦିନ ସ୍କୁଲରେ ମତେ ଯୋଉ ଅପମାନ ମିଳିଲା, ମୋ ଜୀବନରେ ମୁଁ ସେମିତି ଅପମାନ ଆଉ କେବେ ପାଇ ନାହିଁ । ଅପମାନବୋଧ ମୋର ଜୀବନରେ ପ୍ରଥମ କରି ସେଇଦିନ ହିଁ ହେଲା । ତା' ପରେ ହୁଏତ ବିଭିନ୍ନ ସମୟରେ ବିଭିନ୍ନ କ୍ଷେତ୍ରରେ ବିଭିନ୍ନ ଲୋକଙ୍କ ଦ୍ୱାରା ମୁଁ ଯେ ଖୁବ୍ ଅପମାନିତ ନ ହୋଇଛି, ତା ନୁହେଁ । କିନ୍ତୁ ପରବର୍ତ୍ତୀ କାଳରେ ମୁଁ ଆଉ କାହାର ଅପମାନ ଭର୍ତ୍ସନାକୁ ହୃଦୟ ଭିତରେ ସ୍ଥାନ ଦେଇନାହିଁ । କାରଣ କ୍ରମଶଃ ମୋର ଧାରଣା ହୋଇଛି ଯେ, ଅପମାନ ଯେ ଦିଏ—ଅବଶେଷରେ ସେହି ଲୋକ ହିଁ ଅପମାନିତ ହୁଏ । ଅପମାନକୁ ଗ୍ରହଣ ନ କଲେ ତାହା ସେହି ଅପମାନକାରୀ ନିକଟକୁ ଦ୍ୱିଗୁଣ ଶକ୍ତିରେ ଫେରିଯାଇ ତାକୁଇ ଆକ୍ରାନ୍ତ କରେ । ମାତ୍ର ପିଲାଦିନର ସେ ଅପମାନ ମୁଁ ଆଜି ପର୍ଯ୍ୟନ୍ତ ବି ଭୁଲି ପାରିନାହିଁ । ମୋର କଅଁଳ ମନରେ ସେ ଦିନ ଯୋଉ ଆଘାତ ଲାଗିଥିଲା, ତାହାର ଜ୍ୱାଳା ଏ ପର୍ଯ୍ୟନ୍ତ ମଧ୍ୟ ମୋର ମନରେ ଅଛି । ଏବଂ ସେହି ବ୍ୟକ୍ତିଗତ ଗୋପନ ଜ୍ୱାଳାଟି ମତେ ଶିକ୍ଷା ଦେଇଛି ଯେ ନିରୀହ ନିରପରାଧ ଲୋକଙ୍କୁ ଜାଣିତ ବା ଅଜାଣିତରେ ଅପମାନ କଲେ—ତାହା ଈଶ୍ୱର ମାନବାତ୍ମାର ମର୍ମକୁ ସମସ୍ତଙ୍କର ଅଲକ୍ଷ୍ୟରେ ଆଘାତ କରେ ।

ଜଣକର ଅପମାନ ସାରା ମାନବାତ୍ମାର ଅପମାନ ହୋଇଯାଏ । ମୁଁ ମୋ ଜୀବନରେ କାହାର ଆତ୍ମାକୁ ବାଧା ଦେଇ ଭଳି ଅପମାନ ଦେଇନାହିଁ । କିନ୍ତୁ ତତ୍‌ସତ୍ତ୍ୱେ ଓ ମୋ ଜୀବନକାଳ ଭିତରେ ମୋ ଦ୍ୱାରା ବହୁଲୋକ ଅପମାନିତ ହୋଇଛନ୍ତି ବୋଲି ମୁଁ ପରୋକ୍ଷରେ ଶୁଣିବାକୁ ପାଇଛି । ମୁଁ ଭାବୁଛି—ତାହା ହୋଇଥିବ । ଏ ପୃଥିବୀରେ ସର୍ବତ୍ର ପରମାତ୍ମା ବିଦ୍ୟମାନ । କିନ୍ତୁ ଆମେ ମଧ୍ୟ ସବୁବେଳେ ସେ ସମ୍ବନ୍ଧେ ସଚେତନ ନ ଥାଉ ଓ ଆମର ଅହଂକାର-ପ୍ରମତ୍ତତାରେ ଉନ୍ମତ୍ତ ପ୍ରାୟ ଏ ଧରାରେ ଆତଜାତ ହେଉଥାଉ । କେତେବେଳେ କାହା ଦେହରେ ପାଦ ବାଜି ଯାଇଥିବ, କେତେବେଳେ କାହା ମର୍ମରେ ଆମ କଥାର କୁନ୍ତ ବାଜି ଯାଇଥିବ, କେତେବେଳେ ବା କିଏ ଆମର ତାଚ୍ଛଲ୍ୟକାରୀ ଗୃହାଣୀର ଆଘାତରେ ଝାଉଁଳି ପଡ଼ିଥିବ—ସେ କଥା ଆମେ କେମିତି ବା ଅସ୍ୱୀକାର କରିବା ? ସେଇଥିପାଇଁ ତ ଆଜି ସବୁ ପଦାକୁ ବାହାରିଲି ମାତ୍ରେ—ଯାହା ଉପରେ ଆଖି ପଡ଼ୁଛି—ମନେ ମନେ ତାକୁ ମୁଁ ନମୋ ନମୋ କରୁଥାଏ । ସେ ବେଙ୍ଗଟିଏ ହେଉ କି କୁକୁରଟିଏ ହେଉ—ଗଛଟିଏ ହେଉ ବା ମଣିଷଟିଏ ହେଉ । ବୈଷ୍ଣବ ମହାଜନମାନେ ମାନ୍ୟହୀନ ଲୋକଟିକୁ ବି ବହୁମାନ୍ୟ ପୂର୍ବକ ନିବେଦନ କରିବାକୁ କହିଛନ୍ତି—କିନ୍ତୁ ବହୁମାନ୍ୟ ବ୍ୟକ୍ତିଙ୍କୁ ମଧ୍ୟ ଅମାନ୍ୟ କରି ବହୁବେଳେ ଆମେ ମୁହଁ ଫେରାଇ ଚାଲିଯାଉ ।

ଛାଡ଼ ସେ କଥା । ସେହି ଦିନଠାରୁ ଆଉ କେବେ ବି ମୋର କବିତା କଥା ଆମ ସ୍କୁଲରେ ଆଉ ପଡ଼ିନାହିଁ । କିନ୍ତୁ ମୁଁ ମଧ୍ୟ ଅଙ୍କ ପାଠଟିକୁ ଆୟତ୍ତ କରିବାକୁ ଲାଗି ପଡ଼ିଲି । ମାତ୍ର ସେ ପାଠ ମୋ ଦ୍ୱାରା ହେଲାନାହିଁ । ଏ ଜନ୍ମରେ ବି ହେବା କଥା ନୁହେଁ । ମୋ ଧାତୁରେ ସେ ପାଠ ଯିବ ନାହିଁ । ତଥାପି ଘୋଷାଘୋଷି କରି କୌଣସି ମତେ ମାଇନର ପରୀକ୍ଷାରେ ଅଙ୍କ ପେପରରେ ଯେନତେନ ପାସ୍ ମାର୍କ ରଖି ପାସ୍ କରିଗଲି ।

ତା'ପରେ ଆସିଲା ମୋର ହାଇସ୍କୁଲ ପାଠପଢ଼ା ଅଧ୍ୟାୟ । ଆମ ଗ୍ରାମରେ ତ ହାଇସ୍କୁଲ ନଥିଲା । ତେଣୁ ଆମ ଗାଁ ଠାରୁ ପ୍ରାୟ ଦଶ

ପନ୍ଦର ମାଇଲ ଦୂରରେ ଗୋଟିଏ ପ୍ରାଚୀନ ସମୃଦ୍ଧ ଗ୍ରାମରେ ନୂଆ ହୋଇ ହାଇସ୍କୁଲଟିଏ ହୋଇଥାଏ ଏବଂ ତା'ର ଖୁବ୍ ନାମ ଡାକ ହୋଇଥାଏ । ମୁଁ ସେଠିକି ଗଲି—ହଷ୍ଟେଲରେ ରହି ପାଠ ପଢ଼ିଲି । ଏଇଠୁ ଜାଣ ମାସ୍ଟରଧର ସଙ୍ଗେ ମୋର ଆଂଶିକ ବିଚ୍ଛେଦ ହେଲା ।

ମୁଁ ତ ସେମିତି ବିଶେଷ ଭଲ ଛାତ୍ର ନ ଥିଲି । ତା' ଛଡ଼ା ଗଣିତ ବିଷୟଟି ପ୍ରତି ମୋର ଯୋଉ ଆତଙ୍କ ! ସେ ଯାହା ହେଉ ପ୍ରଥମ ବର୍ଷ ପରେ ନବମ ଶ୍ରେଣୀରେ ମୁଁ ସଂସ୍କୃତ ଅପସନାଲ ନେଲି ଏବଂ ବାଧ୍ୟତା-ମୂଳକ ଅଙ୍କ ପେପରଟିକୁ ଖୁବ୍ ମନ ଦେଇ ଜଣେ ଭଲ ଅଙ୍କ ଜାଣିଥିବା ପିଲା ସାଙ୍ଗେ ପଢ଼ିଲି । କୋଡ଼ିଏ ପଚିଶି ନମ୍ବର ରହୁଥାଏ । ତା'ଛଡ଼ା ଆଲଜେବ୍ରା ବା ବୀଜ ଗଣିତ ଓ ଜ୍ୟାମିତି ମଧ୍ୟ ମତେ କିଛି ନମ୍ବର ରଖିବାରେ ସାହାଯ୍ୟ କରୁଥାଏ । ମାତ୍ର ଏଇ ସ୍କୁଲରେ ମୋର ବହୁ ଗୁପ୍ତ ଗୁଣଗୁଡ଼ିକର ବିକାଶ ଲାଗି ସୁଯୋଗ ମିଳିଲା । ଏଠାରେ ତର୍କ-ସଭା, ହାତଲେଖା ପତ୍ରିକା, ବିଭିନ୍ନ ଖେଳ, ନାଟକ, ସ୍କାଉଟ୍ ଇତ୍ୟାଦିରେ ମୁଁ ଭାଗ ନେଇ ସ୍କୁଲରେ ଜଣେ ନେତୃ ସ୍ଥାନୀୟ ଛାତ୍ର ହୋଇଗଲି ଏବଂ ବିଭିନ୍ନ ଦିଗରେ ମୋର କୃତିତ୍ୱ ପ୍ରକାଶ ପାଇବା ହେତୁ ଶିକ୍ଷକ ଓ ଛାତ୍ର ଛାତ୍ରୀଙ୍କ ମହଲରେ ବେଶ୍ ଆଦୃତ ହେଲି । ଇତି ମଧ୍ୟରେ ମୋର ଦୈହିକ ସ୍ୱାସ୍ଥ୍ୟ ମଧ୍ୟ କ୍ରମଶଃ ଯୌବନ ଆଡ଼କୁ ଅଗ୍ରସର ହେଉଥିଲା ଏବଂ ଚେହେରାରେ ମୋର ଗୋଟାଏ ବ୍ୟକ୍ତିତ୍ୱ ମଧ୍ୟ ଫୁଟି ଉଠୁଥିଲା । ଘରପୋଡ଼ି, ବନ୍ୟା, କଲେରା ସେତେବେଳେ ଗାଁ ଗଣ୍ଡାରେ ଖୁବ୍ ପ୍ରବଳ ହେଉଥାଏ ଏବଂ ସେତେବେଳେ ଜଣେ ନେତୃ ସ୍ଥାନୀୟ ସ୍ୱେଚ୍ଛା-ସେବକ ସ୍କାଉଟ୍ ଭାବେ ମଧ୍ୟ ଶିକ୍ଷକ ଓ ଛାତ୍ର ମହଲରେ ମୋର ଖୁବ୍ ସୁନାମ ହୋଇ ଯାଇଥାଏ ଏବଂ ବଜାରରେ ମଧ୍ୟ ମୋତେ ଲୋକେ ଖୁବ୍ ଜାଣିଗଲେ ଓ ଖୁବ୍ ସମ୍ମାନ ଦେଖାଇଲେ । ଦୋକାନୀମାନେ ବିନା ଦ୍ୱିଧାରେ ମତେ କାଳି ବାକିରେ ମଧ୍ୟ ପାନ ଓ ଜଳଖିଆ ବି ଦେଉଥିଲେ । ତା' ସଙ୍ଗେ ସଙ୍ଗେ ମୋର କବିତା ଲେଖାମାନ ମଧ୍ୟ ବଢ଼ି ଚାଲିଲା ଏବଂ ସେ ସ୍କୁଲର ସ୍ୱଭାବ ପିଲାଙ୍କ ଭିତରେ ପାଞ୍ଚ ଛଅ ଜଣ ଛାତ୍ର କବିଙ୍କ ଭିତରେ ମୁଁ ଜଣେ ବୋଲି ଗଣ୍ୟ ହେଲି । ଏଠି କେହି ମୋର କବିତାକୁ ଦେଖି କପି କରିଛି ବୋଲି ସନ୍ଦେହ ମଧ୍ୟ କଲେ ନାହିଁ । ବରଂ

ପ୍ରଶଂସା କଲେ । ପରନ୍ତୁ ସେତେବେଳକୁ ମୁଁ ଭଲଭାବେ ଜାଣି ସାରିଲଣି ଯେ ସେହି ସ୍କୁଲରେ ଆଉ ଦୁଇଜଣ ଛାତ୍ରଙ୍କର ମୋଠାରୁ ଯଥେଷ୍ଟ ଭଲ କବିତା ଲେଖୁଛନ୍ତି ଏବଂ ରାଧାନାଥ ଗ୍ରନ୍ଥାବଳୀର ବହୁ ପଂକ୍ତି ମୋ ଅପେକ୍ଷା ସେମାନଙ୍କର ଅଧିକ ମୁଖସ୍ଥ ଥିଲା । ମୋଟ ଉପରେ ମୁଁ ସେତେବେଳେ ମୋର ବ୍ୟକ୍ତିତ୍ୱର ସ୍ୱରୂପ ଉପରେ ଖୁବ୍ ସଚେତନ ହେଲଣି ଏବଂ ଅନ୍ୟମାନଙ୍କ ଉପରେ ମୋର ବ୍ୟକ୍ତିତ୍ୱ ଓ ଗୁଣରାଜିର ପ୍ରଭାବ ସୃଷ୍ଟି କରି ସାରିଲଣି । ମୋ ଭିତରୁ ସେହି ମାଇଚିଆ କଅଁଳ ସ୍ପର୍ଶ କାତର ବ୍ୟକ୍ତିଟି ଲୋପ ପାଇ ଯାଇଥିଲା ।

ସେତିକି ବେଳର କଥା । ମୋର ଜଣେ ଦଦେଇ ଝିଅ ଭଉଣୀ ଧୋଇଆ ଗାଁରେ ବିବାହ କରିଥିଲା । ସେ ଭଉଣୀଟି ପିଲାଦିନୁଁ ବାପା ମା' ଛେଉଣ୍ଡ ହୋଇ ଥିବାରୁ ମୋର ବାପା ମାଆ ତାକୁ ବଢ଼େଇ କୁଢ଼େଇ ବାହା ଦେଇଥିଲେ । ଏବଂ ମୋର ସେହି ଭିଣୋଇ ଥିଲେ ଜଣେ ଅତି ସରଳ ଭଦ୍ରଲୋକ । ସେ ଆମ୍ଭମାନଙ୍କୁ ଖୁବ୍ ଭଲ ପାଉଥିଲେ । ଏବଂ ଆମେ ମଧ୍ୟ ତାଙ୍କୁ ନିଜ ଭିଣୋଇଙ୍କ ଠାରୁ ଅଧିକ ମଣୁଥିଲୁ । ଆମେ କେବେ ତାଙ୍କ ଘରକୁ ଗଲେ ସେ କୋଟିନିଧି ପାଇଯାନ୍ତି । ମୋର ଦଦେଇ ଝିଅ ଭଉଣୀ ଦୁଇଟି ପିଲାଙ୍କୁ ଛାଡ଼ି ଅକାଳରେ ମରିଗଲା । ସେଇ ଭିଣୋଇଁ ମୋର ଆଉ ଦ୍ୱିତୀୟ ବିବାହ କଲେ ନାହିଁ । ଏବଂ ସେଥି ଯୋଗୁଁ ତାଙ୍କର ଆମ ପ୍ରତି ସ୍ନେହ ସରାଗ ଖୁବ୍ ବଢ଼ିଗଲା । ତାଙ୍କର ସ୍ୱଚ୍ଛଳ ପରିବାର—କିନ୍ତୁ ସେ ଗାଁରେ କେହି ଆଜି ୪ର୍ଥ ଶ୍ରେଣୀ ଯାଏ ମଧ୍ୟ ପାଠ ପଢ଼ି ନ ଥାନ୍ତି । ତିନି ଘରିଘର ମୋଟେ ବ୍ରାହ୍ମଣ । ଏବଂ ଅନ୍ୟମାନେ ପ୍ରାୟ ସମସ୍ତେ ଚାଷୀ, ଗୁଡ଼ିଆ, ତେଲି ଓ କରଣ । ଚାଷ ଓ ବେପାର ସେ ଗାଁ'ରେ ମୂଳ । କିନ୍ତୁ ଗାଁବାଲାମାନେ ଭାରି ଧାର୍ମିକ ଓ ସଂସ୍କୃତିବନ୍ତ । ଭାଗବତ ଘର, ଠାକୁରାଣୀ ମନ୍ଦିର ଓ ମହାଦେବଙ୍କ ମନ୍ଦିର ଥାଏ । ନିତି ସନ୍ଧ୍ୟାରେ ନାମ ସଂକୀର୍ତ୍ତନ ହୁଏ । ପୁରାଣ, ଭାଗବତ ପଢ଼ା-ଯାଏ । ବର୍ଷକେ ବହୁବାର ମେଳା ମଉଚ୍ଛବ ହୁଏ । ରାସଲୀଳା, କୃଷ୍ଣଲୀଳା ହୁଏ । ଯାତ୍ରା ମେଳନ ହୁଏ । ଏବଂ ସବୁଠାରୁ ବଡ଼କଥା ହେଲା ପାଠୁଆ ଲୋକଙ୍କ ପ୍ରତି ସେମାନଙ୍କର ଯୋଉ ଆଦର, ସମ୍ମାନ ଆଉ ଅଭ୍ୟର୍ଥନା ।

ତା ପୁଣି ସେଇ ପାଠୁଆଟି ଯଦି ଇଂରେଜୀ କି ସଂସ୍କୃତ ଭାଷା ଦି’ପଦ ଜାଣିଥାଏ, ତେବେ ଜାତି କି ବୟସ ନିର୍ବିଶେଷରେ ସେ ସେଠି ଗ୍ରାମବାସୀଙ୍କ ଦ୍ୱାରା ଆଦୃତ ହୁଏ ।

ସେଠି ଗାଁରେ ଥାଏ ଗୋଟିଏ ଚାହାଳୀ । ଏବଂ ବହୁ ବର୍ଷ ଧରି ସେଥିରେ ଜଣେ ମାଟିବଂଶ ଅବଧାନ ମାଷ୍ଟରୀ କରୁଥାନ୍ତି । ତାଙ୍କ ନାମ ମିଛୁ ଅବଧାନେ । ସେତେବେଳେ ତାଙ୍କୁ ଷାଠିଏ ଖଣ୍ଡେ ବୟସ ହେବ । ମୋ ଭଉଣୋଇ ମଧ୍ୟ ତାଙ୍କ ପାଖେ ପାଠ ପଢ଼ିଥିଲେ । ମିଛୁ ଅବଧାନ ଭାରି କଡ଼ା ଓ ଚିପ ଟାଣିଆ ମଣିଷ । ପ୍ରାଚୀନ ଗ୍ରନ୍ଥ ଓ ଚୌପଦୀ ଗାଇବାରେ ତାଙ୍କର କେହି ସମକକ୍ଷ ନ ଥିଲେ ସେତେବେଳେ କୋଡ଼ିଏ ଖଣ୍ଡ ମୌଜାରେ । ଶରୀର-ଭେଦ-ଭଜନରେ ମଧ୍ୟ ତାଙ୍କର ଅଗାଧ ପ୍ରବେଶ ଥିଲା । ଗ୍ରାମର ବୟସ୍କ ମଣିଷମାନଙ୍କୁ ବାଲ୍ୟକାଳରେ ପାଠପଢ଼ାଇ ଥିବାରୁ ସମଗ୍ର ଗ୍ରାମ ଉପରେ ତାଙ୍କର ଗୋଟାଏ ଗୁରୁସୁଲଭ ଆଧିପତ୍ୟ ମଧ୍ୟ ଥିଲା । ସମସ୍ତେ ତାଙ୍କୁ ଡରୁଥିଲେ । ନ୍ୟାୟ ନିଶାପରେ ମଧ୍ୟ ସେ ସର୍ବଶେଷ ରାୟ ଦେଉଥିଲେ । ଏବଂ ତାହା ବିନାବିଚାରରେ ଆଜ୍ଞା ପ୍ରାୟ ଗୃହୀତ ହେଉଥିଲା ।

ମିଛୁ ଅବଧାନେ ଦେଖିବାକୁ ବେଶ୍ ଲମ୍ବା ମଣିଷ । ପତଳା କିନ୍ତୁ ଦୃଢ଼ ଶରୀର । ନାକତଳେ ପାଚିଲା ଲମ୍ବା ନିଶ । ବେକରେ ତେଲରେ ପାଚି ଯାଇଥିବା ତିନପ୍ରସ୍ତ ତୁଳସୀ ମାଳି । ମୁଣ୍ଡରେ ସାନ ଚୁଟିଟିଏ ବନ୍ଧା ହୋଇ ତା’ ଭିତରେ କନିଅର ବା କାଠଚମ୍ପା ଫୁଲଟିଏ ଖୋସା ହୋଇଥାଏ । ମୁଖମଣ୍ଡଳ ସାମାନ୍ୟ ଲମ୍ବା, ଏବଂ ଶିରଯୁକ୍ତ । ଆଖିର ଚାହାଣୀ ଖୁବ୍ ତୀକ୍ଷ୍ଣ, ଦୃଢ଼ ଓ ଆତ୍ମପ୍ରତ୍ୟୟଶୀଳ । ଧୋତି ଉପରେ ଚଦରଟିଏ ଅଣ୍ଟାରେ ବନ୍ଧା ହୋଇଥାଏ । କାନ୍ଧରେ ପାଚିଲା ଗାମୁଛା । କାଖ ତଳେ ବଟୁଆଟିଏ । କପାଳ ଓ ବାହୁରେ ବୈଷ୍ଣବ ତିଳକ । ପାଟିରେ ପାନ ଜାକି ଗୋଟିଏ ପଟ ଗାଲ ଉଞ୍ଚା ଦିଶୁଥାଏ । ହାତରେ ପାଚିଲା ବାଡ଼ିଟିଏ ଧରି ପାଦରେ କଠାଉ ମାଡ଼ି ସେ ଯେତେବେଳେ ଉଭା ହୁଅନ୍ତି—ଗାଁର ତିନପୁରୁଷଙ୍କ ମଥା ତାଙ୍କ ପାଖେ ନତ ହୋଇଯାଏ । ସତେ କି ଦେବଗୁରୁ ବୃହସ୍ପତି ବୁଢ଼ା !

ତାଙ୍କର ଆଉ ଗୋଟିଏ ବିଶେଷ ଗୁଣ ଥିଲା । ତା ହେଲା—ପ୍ରାଚୀନ ଭାରତର ଗଣିତ ବିଦ୍ୟାରେ ଅଗାଧ ପ୍ରବେଶ । ଓଡ଼ାଙ୍କ, ଫେଡ଼ାଙ୍କ, ଶୋଧୀ, କାଣୀ, ନଳ ଇତ୍ୟାଦି ଅତ୍ୟନ୍ତ ଗୂଢ଼ ଅଙ୍କମାନଙ୍କର ରହସ୍ୟ ତାଙ୍କୁ ଜଣା ଥିଲା । ଶୁଣାଯାଏ—ତାଙ୍କ ପାଖେ ଲୀଳାବତୀ ସୂତ୍ରର ପ୍ରାଚୀନ ପୋଥି ରହିଛି । ଏବଂ ସେ ସବୁ ସେ ସାଧିଛନ୍ତି । କେବଳ ମୁଁ ନୁହେଁ—ଅଙ୍କ ବିଦ୍ୟାରେ ପ୍ରବୀଣ ବ୍ୟକ୍ତିକୁ ଏ ପୃଥିବୀରେ ଯେ ସମସ୍ତେ ଡରନ୍ତି, ତାହା ମୁଁ ସେଇ ଗାଁରେ ଜାଣିଲି । ସେ ଗାଁର ଲୋକେ କହନ୍ତି ମିଛୁ ଅବଧାନେ ଗଣିତ ବିଦ୍ୟାବଳରେ ଉଡ଼ି ଯାଉଥିବା ଚଢ଼େଇର ପର ଗଣିଦେବେ । ବରଗଛର ପତ୍ର ଗଣିଦେବେ । ଖଣ୍ଡିଏ କାଠିରେ ଗୋଟିଏ ନକ୍ଷତ୍ର ଠାରୁ ଆଉ ନକ୍ଷତ୍ରଟିର ଦୂରତା ମାପିଦେବେ । ଯେତେ ବଡ଼ ପୁରୁଣା ପୋଖରୀ ହେଉ—ତା କୂଳରେ ଠିଆହୋଇ ପୋଖରୀର ଗଭୀରତା ମାପିଦେବେ । ଯେତେ ଅଡୁଆ ଅଙ୍କ ହେଉ—ସେ ତାକୁ ଛିଣ୍ଡେଇ ଦେବେ । ଗଣିତ ବିଦ୍ୟା ଭାରି ଗହନ ବିଦ୍ୟା । ମୋ ଭିଣୋଇଙ୍କ ଗ୍ରାମବାସୀଙ୍କର ଗୋଟେ ଗର୍ବ ଥିଲା ଯେ ଚଉଷଠି ଖଣ୍ଡ ମୌଜାରେ ମିଛୁ ଅବଧାନଙ୍କୁ ଗଣିତ ବିଦ୍ୟାରେ ଜିତିପିବ, ଏମନ୍ତ ବିଦ୍ୟାବନ୍ତ ପୁରୁଷ କେହି ନାହିଁ । ବହୁ ବହୁ ପାଠୁଆ ଗୁଣିଆ ତାଙ୍କ ଗ୍ରାମକୁ ଆସିଛନ୍ତି—କିନ୍ତୁ ମିଛୁ ଅବଧାନଙ୍କ ଗଣିତ ପ୍ରଶ୍ନର ଉତ୍ତର ଦେଇ ନ ପାରି ତାଙ୍କ ପାଖେ ମଥାନତ କରି ପରାଜୟ ସ୍ୱୀକାର କରି ଫେରି ଯାଇଛନ୍ତି ।

ଏମନ୍ତ ମହିମାବନ୍ତ ଷାଠିଏ ବର୍ଷର ବୃଦ୍ଧ ଗୂଢ଼ ଗଭୀର ଗଣିତଜ୍ଞଙ୍କ ସହିତ ଯେ ଦିନେ ମୋର ସମ୍ମୁଖ ସମର ହେବ, ଏହା ମୋତେ ସେତେବେଳେ ଜଣା ନ ଥିଲା—ଯେତେବେଳେ ମୁଁ ଗୋଟାଏ ବଡ଼ ମେଳଣ ଦେଖିବାକୁ ଗ୍ରୀଷ୍ମ ଛୁଟିରେ ତାଙ୍କ ଗ୍ରାମକୁ ଯାଇଥିଲି । ମୋର ସୌଭାଗ୍ୟକୁ ମୋର ପରମବନ୍ଧୁ ମାଧୁଆ ମଧ ମୋ ସଙ୍ଗେ ଯାଇଥାଏ । ମୋର ସେଇଟା ଦଶମ ଶ୍ରେଣୀ । କିନ୍ତୁ ମୁଁ ସେତେବେଳକୁ ନାନାଦି ଗୁଣ ଦୁର୍ଗୁଣରେ ଓସ୍ତାଦ୍ ବନିଗଲିଣି । କଥା କହିବାରେ ମୋ ପାଟିରୁ ବାଟ୍ଲି ବାଜୁ ନ ଥାଏ । ନାନା ଜାଲଆତି କରି ନିଜକୁ ଖରାପ ପରିସ୍ଥିତିରୁ ଖସାଇ ନେବାର କୌଶଳ ମତେ ଖୁବ୍ ଜଣା ହୋଇଗଲାଣି । ମୁଁ ଗୋଟିଏ ଖାକ

କନାର ହାଫ୍‌ପ୍ୟାଣ୍ଟ ଓ ଧଳା ହାଫ୍‌ସାର୍ଟ ପିନ୍ଧିଥାଏ । ପକେଟରେ ଫାଉଣ୍ଟେନ୍ ପେନ୍‌ଟିଏ ଖୋସିଥାଏ । ଏବଂ ମୁଁ ଓ ମାୟାଧର ମୋ କକେଇଙ୍କର ଫିଲିପ୍‌ସ ସାଇକେଲରେ ଡବଲ ରାଇଡ଼ିଂ କରି ନାନାଦି ଗହ୍ୱର, ଦଣ୍ଡା, ନଦୀବନ୍ଧ ଓ ଶ୍ମଶାନମାନ ପାରି ହୋଇ ସେଇ ଗାଁରେ ଆସି ପହଞ୍ଚିଥାଉଁ । ମୋତେ ଦେଖି ମୋ ଭଣୋଇ ଓ ତାଙ୍କ ଗ୍ରାମବାସୀ ଭାରି ଖୁସି ହୋଇଗଲେ । ଏବଂ ଆମ ସାଇକେଲ ବା ଶୂନଗାଡ଼ିଟି ମଧ୍ୟ ସେଇ ଗ୍ରାମର ଆବାଳବୃଦ୍ଧବନିତା ସମସ୍ତଙ୍କର ବିସ୍ମୟ କୌତୂହଳ ଓ ଆନନ୍ଦଜନକ ଦୃଷ୍ଟି ଆକର୍ଷଣ କଲା । ମୋ ଭଣୋଇ ଖୁବ୍ ଗର୍ବରେ ତାଙ୍କ ଗାଁବାଲାଙ୍କୁ ଜଣାଇଦେଲେ ଯେ ତାଙ୍କର ଏହି ଗୁଣସାଗର ଶ୍ୟାଳକଟି ଅତ୍ୟନ୍ତ ବୁଦ୍ଧିମାନ ଓ ପାଠରେ ବଡ଼ ବିଚକ୍ଷଣ—ଏବଂ ବର୍ତ୍ତମାନ ଏଣ୍ଟ୍ରେନସ୍‌ରେ ଇଂରେଜୀ ପଢ଼ା କରୁଛନ୍ତି ।

ଏହା ଶୁଣିବା ମାତ୍ରେ ଗ୍ରାମବାସୀମାନେ ମୋତେ ଖୁବ୍ ସମ୍ଭ୍ରମ କରି ଚାହିଁଲେ । କେହି କେହି ବୟସ୍କ ବ୍ୟକ୍ତି ମଥାନତ କରି ଏହି ପନ୍ଦର ଷୋଳ ବର୍ଷ ବୟସ୍କ ପ୍ରତିଭାବାନ ଏଣ୍ଟ୍ରେନସ୍ ଇଂରେଜୀ ପାଠୁଆଙ୍କ ଉଦ୍ଦେଶ୍ୟରେ ସଭକ୍ତି ପ୍ରଣିପାତ ମଧ୍ୟ ଜଣାଇଲେ । କେହି କେହି ମଧ୍ୟ ସହୃଦୟ ଗଳାରେ ବିନୟ ଦେଖାଇ କହିଲେ—ଆପଣଙ୍କ ଭଳି ଲୋକ ଆମର ଏଇ ମୂର୍ଖ ମଳମୁଣ୍ଡିଆ ମଫସଲ ଗାଁରେ ପାଦ ଦେଲାଇଲେ— ଏଇଟା ଆମର ବଡ଼ ଭାଗ୍ୟ । ଏସବୁ ଶୁଣି ମୁଁ ଖୁବ୍ ଆତ୍ମପ୍ରସାଦ ଅନୁଭବ କରୁଥାଏ—ଏବଂ ମୋର ସାଙ୍ଗ ମାୟାଧର ମୋର ପ୍ରଶଂସାରେ ଅତ୍ୟନ୍ତ ଉତ୍ସାହିତ ହୋଇ ମୋର ଅନ୍ୟାନ୍ୟ ଗୁଣ—ଯଥା ମୁଁ ଜଣେ କବି— ଏହି କଥାଟି ସମସ୍ତଙ୍କ ଆଗରେ ଘୋଷଣା କରୁଥାଏ । ଏବଂ ମୋର ଶ୍ୟାଳକ-ବତ୍ସଳ ଭଣୋଇ ସା'ନ୍ତଙ୍କ ଗୋଡ଼ ଆଉ ତଳେ ଲାଗୁ ନ ଥାଏ । ଆନନ୍ଦରେ ତାଙ୍କର କଣ୍ଠ ଗଦ୍ ଗଦ୍ ହୋଇ ଯାଉଥାଏ ।

ଏହିପରି ଭାବେ ଦୁଇଦିନ ଖୁବ୍ ଆନନ୍ଦରେ କଟିଗଲା । ଖିଆପିଆର ଧୂମ୍ ଉଡ଼ିଲା । ଗୋଟିଏ ଦିନ ମଧ୍ୟ ମେଳନ ଦେଖିବାକୁ ଗଲୁ ପାଖ ଗାଁକୁ । ତା' ପରେ ଆମର ଫେରି ଆସିବା କଥା । ମାତ୍ର ସେ ଗାଁରେ ଆଉ ଦି'ଦିନ ମୁଁ ରହିଗଲି । ଏବଂ ମୋ ଫେରିବାର ପୂର୍ବଦିନ

ଗଛରେ—ଆମେ ଦାଣ୍ଡଘରେ ବସି ତାସ୍ ଖେଳୁଛୁ— ଏବଂ ଆମ ପାଖରେ ମଧ୍ୟ କେତେକ ଗ୍ରାମବାସୀ ଦେଖଣାହାରୀ ବସିଥାନ୍ତି । ମଝିରେ ମଝିରେ ମୁଁ ନାନାଦି ବାହାଦୁରିଆ କଥା ଗପି ସମସ୍ତଙ୍କର ମନୋରଞ୍ଜନ କରୁଥାଏ । ଇଂଲଣ୍ଡ, ଆମେରିକା, ପୋଲାଣ୍ଡ, ଜର୍ମାନୀ, ଋଷିଆ, ବୋମା, ଗାନ୍ଧୀ, ନେହେରୁ, ସୁଭାଷ ବୋଷ, ହିଟଲର, ମୁସୋଲିନ୍, ଚର୍ଚ୍ଚିଲ, ସ୍ୱାଧୀନତା, ଜାଲିଆନା ବାଗ୍, ଚରଖା, ସତ୍ୟାଗ୍ରହ ଇତ୍ୟାଦି ନାନା ଅଶ୍ରୁତପୂର୍ବ ଘଟଣନାମ ଓ ଘଟଣାମାନ ମୋର ବାହାଦୁରିଆ ଉତ୍ତେଜିତ କଣ୍ଠରୁ ଶୁଣିବାବେଳେ ଗ୍ରୁଆଁଙ୍କୁ ଗ୍ରୁଆଁ କରୁଛବେଳ ତାସ ଖେଳ ବନ୍ଦ ହୋଇ ଯାଉଥାଏ । ଏବଂ ସେ ଗାଁ ବାଲାମାନେ ମୋତେ କ'ଣ ନାହିଁ କ'ଣ ବୋଲି ମନେ କରୁଥାନ୍ତି ।

ଏହି ସମୟରେ କଠାଉ ଠକ୍ ଠକ୍ ସଙ୍ଗେ ଗମ୍ଭୀର ଗଳାର ଖଣ୍ଡିକାଶ ଶୁଣାଗଲା । ଏବଂ ପୁଅ ବୋହୂଙ୍କୁ ଧରି ଅଯୋଧ୍ୟା ପଥରେ ଆସୁଥିଲା ବେଳେ ରାଜା ଦଶରଥ ହଠାତ୍ ପର୍ଶୁରାମଙ୍କ ଆଗମନର ଅବ୍ୟବହିତପୂର୍ବ ଏକ ଭୟଙ୍କର ଅଶୁଭ ସଙ୍କେତର କମ୍ପନ ପାଇ ଅସ୍ୱସ୍ତି ଅନୁଭବ କଲାଭଳି ଆମେ ସମସ୍ତେ ଅନୁଭବ କଲୁ । ମୋ ଭଣୋଇଙ୍କ ସମେତ ଗ୍ରାମବାସୀମାନେ ସତର୍କ ହୋଇଗଲେ । ହଠାତ୍ ମୋର ଭଣୋଇ ଉଠିପଡ଼ି କହିଲେ—ଆରେ ହେ ତାସ୍ ବନ୍ଦ କର । ମାଷ୍ଟ୍ରେ ବୋଧେ ଆସୁଛନ୍ତି ।

ତାଙ୍କ କଥା ତାଙ୍କ ପାଟିରୁ ସମ୍ପୂର୍ଣ୍ଣ ବାହାରି ନାହିଁ, ସତକୁ ସତ ମିଛୁ ଅବଧାନ ବାଡ଼ିଟି ଧରି କଠାଉଟି ବାହାରେ ରଖି ଘର ଭିତରକୁ ପଶି ଆସିଲେ । ସମସ୍ତେ ଠିଆ ହୋଇଗଲେ । ମୁଁ କିନ୍ତୁ ଗର୍ବିତ ହୋଇ ବସି ରହିଥାଏ । ମୁଁ ତାଙ୍କ ଆଡ଼କୁ ଚାହିଁଲି । ବାପ୍‌ରେ କି ପ୍ରଚଣ୍ଡ ବ୍ୟକ୍ତିତ୍ୱ ! କି ଅଭିଜାତ ଆତ୍ମପ୍ରତ୍ୟୟଶୀଳ ଆଉ ବୁଦ୍ଧିଦୀପ୍ତ ଦୃପ୍ତ ଗର୍ବିତ ଠିଆ ହେବାର ଭଙ୍ଗୀ ଆଉ ଚାହାଣୀ । ପ୍ରଥମେ ମୁଁ ଟିକିଏ ଶଙ୍କିଗଲି । ସେ ମୋ ଆଡ଼କୁ କଟମଟ କରି ଚାହିଁ ରହିଥାନ୍ତି । କିନ୍ତୁ ମୁଁ ଠିଆ ହୋଇ ତାଙ୍କୁ ନମସ୍କାର କଲାପରେ ତାଙ୍କର ଚାହାଣୀ ନରମ ହୋଇ ଆସିଲା । ସେ ଆସନ ଗ୍ରହଣ କଲେ ଓ ଅନ୍ୟ ଚୌକା, ଦରବୁଢ଼ା ଓ

ବୁଢ଼ାମାନେ ତାଙ୍କର ଖୁବ୍ ନୀରବ, ବାଧ୍ୟ ବାଳ-ଶିଷ୍ୟମାନଙ୍କ ଭଳି ତାଙ୍କୁ ଘେରି କରି ବସିଲେ । ତାଙ୍କର ବସିବା ଭଙ୍ଗୀଟି ମଧ୍ୟ ସେହିପରି ଦୃଢ଼ ଓ ଅଭିଜାତ । କିଛି ସମୟ ନୀରବ ହେଲା ପରେ ସେ ମୋ ଭଣୋଇଙ୍କ ଆଡ଼କୁ ଚାହିଁ ଖୁବ୍ ଗମ୍ଭୀର ଗଳାରେ ପଚାରିଲେ—ଏଇ ବାବୁ ପରା ତୁମର ଶଳା ? ମୋ ଭଣୋଇ ସାମାନ୍ୟ ସଲ୍ଲଜ ଅଥଚ ଖୁବ୍ ଗୌରବ ବୋଧ ସହିତ କହିଲେ—ଆଜ୍ଞା ହଁ । ମୋର ମଝିଆ ଶଳା ।

ତା'ପରେ ମାଷ୍ଟ୍ରେ ମୋ ଆଡ଼କୁ ଚେଁରେଇ କରି ବେଶ୍ କର୍ତ୍ତୃତ୍ୱ-ବ୍ୟଞ୍ଜକ ଗଳାରେ ପଚାରିଲେ—କୋଉଯାଏ ବିଦ୍ୟା ପଢ଼ିଲେଣି ?

ମୋ ଭଣୋଇ ସାମାନ୍ୟ ହସି ହାତ ମଳମଳ କହିଲେ—ଆଜ୍ଞା । ଏଣ୍ଟ୍ରେନ୍ସ୍‌ରେ ଇଂରେଜୀ ପଢ଼ା କରୁଛନ୍ତି । ଦଶମ ଶ୍ରେଣୀ ।

ଗ୍ରାମବାସୀମାନେ ଆଖି ତରାଟି ଥରେ ମୋ ଆଡ଼କୁ ଓ ଥରେ ମାଷ୍ଟ୍ରଙ୍କ ଆଡ଼କୁ ଚାହୁଁଥାନ୍ତି । ସେମାନେ ଦୁଇ ବିଶିଷ୍ଟ ବିଦ୍ୱାନ ବ୍ୟକ୍ତିଙ୍କୁ ଦେଖୁଥାନ୍ତି । ଜଣେ ଆଧୁନିକ ଯୁଗର ଇଂରେଜୀ ଶିକ୍ଷାପ୍ରାପ୍ତ ବିଦ୍ୱାନ୍—ଯୋଉ ବିଦ୍ୟାବଳରେ ଜଣେ ପୋଲିସି ସାହେବ ହୋଇ ପାରେ—ଡେପୁଟି ମାଜିଷ୍ଟ୍ରେଟ ହୋଇ ପାରେ—ଆକାଶରେ ବେମ୍‌ଯାନ୍ ଉଡ଼ାଇ ପାରେ—ରେଳ-ଗାଡ଼ି ଚଳାଇ ପାରେ ଇତ୍ୟାଦି ଇତ୍ୟାଦି । ଏବଂ ଆଉ ଜଣେ ଆମର ଦେଶିଆ ମରହଟ୍ଟି ବିଦ୍ୟାରେ ଧୁରନ୍ଧର, ଯୋଉ ବିଦ୍ୟା ବଳରେ ଜଣେ ଉଡ଼ି ଯାଉଥିବା ଚଢ଼େଇର ପର ଗଣି ଦେଇ ପାରେ—ଛାନ୍ଦ ଚୌପଦୀ ଗାଇ ପାରେ—ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ବଖାଣି ପାରେ ।

ସେଇଠୁ ମାଷ୍ଟ୍ରେ ମୋ ଆଡ଼କୁ ଚାହିଁ ପଚାରିଲେ—ବାବୁଙ୍କର ତ ସାହିତ୍ୟ ନିଶ୍ଚେ ପଢ଼ା ହେଉଥିବ ? କ'ଣ ସବୁ ପଢ଼ା ହେଉଛି ?

ମୁଁ ଖୁବ୍ ଗମ୍ଭୀର ହୋଇ କହିଲି—ରାଧାନାଥଙ୍କ "ଉଷା" କାବ୍ୟ ।

ମାଷ୍ଟ୍ରେ ପଚାରିଲେ—ଉଷା ନା ଉଷା ହରଣ ?

ମୁଁ କହିଲି—ନା-ନା ଉଷା ହରଣ ନୁହେଁ—ଉଷା ।

ମାଷ୍ଟ୍ରେ କହିଲେ, "ଉଷା" ବୋଲି କାବ୍ୟଟାଏ କୁଆଡ଼ୁ ଆସିବ ? ବାଣାସୁରର ଝିଅ ଉଷାକୁ ଶ୍ରୀକୃଷ୍ଣଙ୍କ ପୁତ୍ର ଅନିରୁଦ୍ଧ କପଟରେ ହରଣ କଲେ ସେଇ ବିଷୟ ତ ?

ମୁଁ କହିଲି ଆଜ୍ଞା ନା-ନା । ଆପଣ ସେ ପୁରୁଣା କାବ୍ୟ କଥା କହୁଛନ୍ତି । ଆମେ ପଢ଼ୁଛୁ କବିବର ରାଧାନାଥ ରାୟବାହାଦୂରଙ୍କ "ଉଷା" । ଉଷା କାବ୍ୟ । ଆଧୁନିକ । ଉଷା ଓ ଜୟନ୍ତଙ୍କ କଥା ।

ସିଏ ଅବଧାନେ ସାମାନ୍ୟ ଅପ୍ରସ୍ତୁତ ହୋଇଗଲେ । ସେ ରାଧା-ନାଥଙ୍କର କୌଣସି କାବ୍ୟ ପଢ଼ି ନ ଥିଲେ । କବିସୂର୍ଯ୍ୟ ଗୋପାଳକୃଷ୍ଣଙ୍କ ପରେ ତାଙ୍କୁ ଆଉ କୌଣସି କବି ବା କାବ୍ୟ ଜଣା ନଥିଲା । ସେ ବୋଧେ ପ୍ରଥମ କରି ତାଙ୍କର ଜ୍ଞାନ ବଳୟର ସୀମା ସମ୍ପର୍କରେ ସଚେତନ ହେଲେ ଓ କୁଣ୍ଠିତ ହଇଗଲେ ମଧ୍ୟ । ମାତ୍ର ତାଙ୍କ ବ୍ୟକ୍ତିତ୍ୱଟି ଏହି ଗ୍ରାମରେ ଥାଇ ବର୍ଷ ବର୍ଷ ଧରି ଏତେଦୂର ସୁଗଠିତ ଓ ଦୃଢ଼ ହୋଇ ଯାଇଥିଲା ଯେ ସେ ସାମାନ୍ୟ ମାତ୍ର ଦୋହଲି ଗଲେ ନାହିଁ । ବରଂ ତାଙ୍କର ମହିମା ଏହି ଗୋଟାଏ ଭିନ୍ନ ଗ୍ରାମାଗତ ମେଞ୍ଚଡ଼ା ଟୋକା ଦ୍ୱାରା ସାମାନ୍ୟ ଆକ୍ରାନ୍ତ ହେବାକୁ ଯାଉଛି ଜାଣି ସେ ଖୁବ୍ ଗୋଟିଏ ତୀକ୍ଷ୍ଣ ଶର ସ୍ୱରୂପ ବାକ୍ୟ କହିଲେ—

ଆଧୁନିକ ଯୁଗରେ ଆଉ କାବ୍ୟ କାହିଁ ? ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ, ଅଭିମନ୍ୟୁଙ୍କ ପଦ ପରି ଆଉ କିଏ ପଦବନ୍ଦୀ କରି ପାରିବ ? ସେମାନଙ୍କୁ ମା' ସରସ୍ୱତୀ ପ୍ରସନ୍ନ ହୋଇ ବର ଦେଇଥିଲେ । ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟରୁ ଗୋଟାଏ ଧାଡ଼ିରୁ ପନ୍ଦରଟା ଅର୍ଥ ବାହାରିବ । ଏଇ ଶୁଣ—

ଅହି ମକର ଚାପ ନାଶେ ଶୋଭି ସାରସ ଚନ୍ଦ୍ରେ
ଅହି ମକର ଚାପ ନାଶେ ଶୋଭି ସାରସ ଚନ୍ଦ୍ରେ
ବରି ପ୍ରକାଶିବ ସୁମନ ଶର ସୁମନ ଶର
ମହୀ କି ଆଣିଲା ସୁମନ ଶର-ସୁମନ ଶର !

ଏତେକ ସୁର ଧରି ନିଜ ହାତରେ ତାଳ ପକାଇ ଗାଇ ଦେଇ ସେ ତା'ର ଅନ୍ତଃ ଗୂଢ଼ାର୍ଥ ଅର୍ଥ କାଢ଼ିଲେ । ସମବେତ ଗ୍ରାମବାସୀ ଆଶ୍ଚର୍ଯ୍ୟ ହୋଇ ଏବଂ ଉତ୍ଫୁଲ୍ଲିତ ହୋଇ ମିଶ୍ର ଅବଧାନଙ୍କର ଏହି ବିରାଟ ଜ୍ଞାନ ବୁଦ୍ଧିର ମହିମା ଦେଖିବାକୁ ଲାଗିଲେ । ଏବଂ ତାଙ୍କ ଆଗରେ ମୋର ଇଂରେଜୀ ପଢ଼ୁଆ ବୁଦ୍ଧି ବିଦ୍ୟାର ପରାଜୟ ସୁନିଶ୍ଚିନ୍ତ ଜାଣି ମୋ ପ୍ରତି ସହାନୁଭୂତିଶୀଳ ହୋଇ ପ୍ରମାଦ ଗଣିବାକୁ ଲାଗିଲେ । ମୋ ଭଉଣୋଇଙ୍କ ମୁହଁ ମଧ୍ୟ ଟିକିଏ ମଳିନ ପଡ଼ିଗଲା । ହଠାତ୍, ମାୟାଧର ଅନାହୂତଭାବେ ବଡ଼ ପାଟିରେ କହିଲା—ନୀଳମଣି ବାବୁ ବର୍ତ୍ତମାନ ରାଧାନାଥଙ୍କର କେତୋଟି ପଦ ବୋଲନ୍ତୁ । ଶୁଣିବା !

ଆଶ୍ଚର୍ଯ୍ୟ କଥା । ସତେ କି ଗ୍ରାମବାସୀମାନେ ଏଇ କଥା ଶୁଣୁଁଥିଲେ ! ତେଣୁ ସମସ୍ତେ ଏକ ସ୍ୱରରେ ସମର୍ଥନ କରି କହିଲେ—ହଁ-ହଁ-ନୀଳମଣି ବାବୁ ତାଙ୍କ ବିଦ୍ୟାରୁ ପଦେ ଦ'ପଦ ବୋଲନ୍ତୁ ।

ମୁଁ ସଙ୍ଗେ ସଙ୍ଗେ ମୋର ମଧୁର କିଶୋର ଗଳାରେ କହିଲି—ଶୁଣନ୍ତୁ ! କବିବର ରାଧାନାଥ ରାୟ ବାହାଦୁର ଉଷା ଓ ଜୟନ୍ତର ପ୍ରଣୟ ଭାବକୁ କିପରି ସରଳ ମଧୁର, ଅଥଚ କି ଅପୂର୍ବ ଭାଷା ଶୈଳୀ ଦେଇ ବର୍ଣ୍ଣନା କରୁଛନ୍ତି ! ରାଜକୁମାର ଜୟନ୍ତକୁ ଦେଖି ନୃପ ରାଜଜେମା ଉଷା ଭାବୁଛନ୍ତି—

ଏ ରୂପ ମାଧୁରୀ କାହିଁଥିଲା ପୁଣି
ଭୁବନେ ଲୁଚି ?
ଥରେ ପିଇ ଆହା ! ପାଶବ କି ତାହା
ନେଇ ମୁଁ ରୁଚି ?
ବିଧାତା ସୌନ୍ଦର୍ଯ୍ୟ ସୃଷ୍ଟିରେ ସାର ଏ
ରାଜ କିଶୋର
ହୋଇ ନଥିବଟି କେତେ ରସବତୀ
ହୃଦୟ ଚୋର !

ଇତ୍ୟାଦି ଇତ୍ୟାଦି ପଦମାନ ମୋ ଗଳାରୁ ଶୁଣିବା ମାତ୍ରେଇ ଗ୍ରାମବାସୀ-ମାନେ କରତାଳି କଲେ ଓ ମୋର ବୁଦ୍ଧି ବିଦ୍ୟାକୁ ବିପୁଳ ସମର୍ଥନ ଜଣାଇଲେ । ମୋତେ ବୋଧ ହେଲା—ସତେକି ଏହି ଗ୍ରାମର ଅଧିବାସୀ-ମାନେ ବର୍ଷ ବର୍ଷ ଧରି ଏହି ସୁନାମଧନ୍ୟ ବିଦ୍ୱାନ୍ ଚକ୍ରବର୍ତ୍ତୀ ମିଛୁ ଅବଧାନଙ୍କ ଶାସନରେ ରହି ଖୁବ୍ ଅତିଷ୍ଠ ହୋଇ ଉଠିଲେଣି । ସତେକି ସେମାନେ ନିଜ ନିଜ ଅନ୍ତଃକରଣରେ ତାଙ୍କଠାରୁ ମୁକ୍ତି ଚାହୁଁଥିଲେ । ତାଙ୍କର ପତନ ଚାହୁଁଥିଲେ ଓ ତାଙ୍କର ଅସ୍ତ ମଧ୍ୟ ଚାହୁଁଥିଲେ । କେହି ଜଣେ ଆଧୁନିକ ବିଦେଶୀ ବିଦ୍ୱାନ ଆସି ଏହି ମରହଟ୍ଟି ଅମଳର ଅତ୍ୟନ୍ତ ଅଳଙ୍କାରି ଦୃପ୍ତ ଓ ଆଧୁନିକତା ବିରୋଧୀ ବିଦ୍ୟାଧାରିଟିକୁ ସମ୍ପୂର୍ଣ୍ଣ ପରାସ୍ତ କରି ଏ ଗ୍ରାମ ଅଧିକାର କରୁ ଓ ସେମାନଙ୍କୁ ନୂତନ ଜୀବନ, ଆଲୋକ ଓ ଦିଗ ଦେଖାଉ—ଏହାହିଁ ସତେକି ଥିଲା ସେମାନଙ୍କ ଅବଚେତନର ଗୂଢ଼ ଅଭିଳାଷ । ସେମାନେ ସମସ୍ତେ ମୋ ତୁଣ୍ଡରୁ ବାହାରିଥିବା ଉଷା କାବ୍ୟର ପଦ ଗୁଡ଼ିକୁ ଖୁବ୍ ପ୍ରଶଂସା କରିବାକୁ ଲାଗିଲେ ।

ମୁଁ ମିଛୁ ଅବଧାନଙ୍କ ମୁହଁକୁ ଚାହିଁଲି । ଦେଖିଲି ଯେ ସେ ଏତିକରେ ହାରିଯିବା ଲୋକ ନୁହଁନ୍ତି ! ତାଙ୍କ କାନ୍ଧରେ ସଂଗ୍ରାମ ଲାଗି ଯେଉଁ ତୂଣୀର ଝୁଲୁଛି—ସେଥିରେ ବହୁ ପ୍ରାଚୀନ ଗୂଢ଼କର୍ମୀ ଦେବଦତ୍ତ ବିଚିତ୍ର ଶରମାନ ରହିଛି । ପାଶୁପତ ଠାରୁ ବ୍ରହ୍ମାସ୍ତ୍ରଯାଏ । ସେ ଏତିକରେ ହାରିଯିବେ କିପରି ? ସାମାନ୍ୟ ମାତ୍ର ବିଚଳିତ ନ ହୋଇ—ସେ ପୁଣି ପ୍ରଶ୍ନ କଲେ—

ଏ କବିତା ଲଳିତ ସତ, କିନ୍ତୁ ଏଥିରେ ମାଲ ମସଲା କାହିଁ ? ଅନୁପ୍ରାସ, ଜମକ, ଅବନା, ଶୃଙ୍ଖଳା ବନ୍ଧ, ଦତ୍ତଚ୍ୟୁତାକ୍ଷର, ସ୍ତବକିତ ଗୁପ୍ତ ଅର୍ଥ, ଗୋମୂତ୍ର, ଅଜାଯୁଦ୍ଧ, ମେଷଯୁଦ୍ଧ—ଏସବୁ ନ ଥିଲେ ସେ କି କାବ୍ୟ ? ଆଉ ମଧ୍ୟ ସେ କି କବି ? ସେମିତି କ'ଣ ଆମ ଗାଁ ମାଇପେ ଶାଶୂ ଘରକୁ ଗଲାବେଳକୁ ପଦ ଫାନ୍ଦି ବୋଲୁ ନାହାନ୍ତି କି ? "ଦୁବ ବଢୁଥିଲା କାକର ଖାଇ କି ବୋଉ ମୋର । ମୁଁ ତ ବଢୁଥିଲି ତୋ ସ୍ନେହ ପାଇ କି ବୋଉ ମୋର !"

ଏ କ'ଣ କାବ୍ୟ ? ନା' ଏଥିରେ କିଛି ପ୍ରୌଢ଼ ଭାଷା କି ଭାବ ରହିଛି ? ଆମ ଗ୍ରନ୍ଥମାନଙ୍କରେ ଏମିତି ପଦ ସବୁ ରହିଛି—ଯେତେ ପଣ୍ଡିତ ହେଉ ତା' ଦାନ୍ତ ଝଡ଼ିପିବ ।

ମୁଁ ସେଇଠୁ ଗୋଟାଏ ବାହାପିଥା ବାଣ ଛାଡ଼ି କହିଲି—ଆମ କବିବର ରାଧାନାଥ ରାୟ ଯାହାସବୁ ଲେଖିଛନ୍ତି—ତା'ର ଅବିକଳ ନକଲ କରିଛନ୍ତି ଇଂଲଣ୍ଡର ମହାକବି ଟେନିସନ—ଶୁଣନ୍ତୁ ! କବିବର ଲେଖିଛନ୍ତି ତାଙ୍କର ଚିଲିକା କାବ୍ୟରେ—

ହସି ଖେଳି ସେହୁ ଗମନ୍ତୁ ସମସ୍ତ,
ଜୀବନ ମଣନ୍ତୁ ମହୋତ୍ସବମୟ ।
ଛାର ଭାଗ୍ୟ ମୋର ପିହିତ ପାଷାଣେ,
ମୋ ଜୀବନ ଗଢ଼ା ଭିନ୍ନ ଉପାଦାନେ ।

ଠିକ୍ ଅବିକଳ ସେହି ଭାବକୁ ନେଇ ଇଂଲଣ୍ଡର କବି ଟେନିସନ କହୁଛନ୍ତି—

ସ୍ମାଇଲିଙ୍ଗ୍ ଦେ ଲିଭ୍ , ଆଣ୍ଡ କଲ୍ ଲାଇଫ ପ୍ଲେଜର୍
ବଟ୍ ଟୁ ମି ଦାଟ୍ କପ୍ ଇଜ୍ ଡେଲ୍ଟ ଇନ୍ ଆନାଦର୍ ମେଜର୍ ।

ଏତେକ ଖୁବ୍ ସାହେବୀ କାଇଦାରେ ଦାନ୍ତ ଚିପି ଚିପି ଆବୃତ୍ତି କରି ଦେଇ ମୁଁ ପୁଣି କହିଲି—ଇଂଲଣ୍ଡର ଆଉ ଜଣେ ମହାକବି, ମାନେ ଗ୍ରେଟ ପୋଏଟ, ଆମର ଏଇ ଇଣ୍ଡିଆ, ମାନେ ଭାରତବର୍ଷକୁ ଆସି ଜଙ୍ଗଲରେ ଟାଇଗର, ମାନେ ଏଇ ବାଘକୁ ଦେଖି ଗୋଟାଏ ଏକ୍ସଲେଣ୍ଟ କବିତା ଲେଖିଛନ୍ତି । ଶୁଣନ୍ତୁ ସେଇଟା—

ଟାଇଗର୍ ଟାଇଗର୍, ବର୍ଣ୍ଣିଙ୍ଗ୍ ବ୍ରାଇଟ୍
ଇନ୍ ଦ ଫରେଷ୍ଟ, ଅଫ୍ ଦ ନାଇଟ୍
ହ୍ୱାଟ୍ ଇମୋର୍ଟାଲ ହାଣ୍ଡ ଆଣ୍ଡ ଆଇ
କୁଡ୍ ଫ୍ରେମ୍ ଦାଇ ଫିଅରଫୁଲ ସିମେଟ୍ରି ?

ଏଇ ପଦ କେତୋଟି ମୁଁ ଶିଖିଥିଲି—ଆମ ସ୍କୁଲର ପ୍ରଚଣ୍ଡ ଇଂରାଜୀ ଶିକ୍ଷକ ଶ୍ରୀଯୁକ୍ତ ବଳରାମ ରାୟ ବି. ଏ. ଡ଼ି. ଇଡ଼ଙ୍କ ଠାରୁ । ସେ ଜାତିରେ ଖାଣ୍ଟି ଓଡ଼ିଆ ଖଣ୍ଡାଏତ ଥିଲେ ବି ଭାବ, ଚଳା ଓ ଭାଷାରେ ଥିଲେ ଖାଣ୍ଟି ଇଂରେଜୀ । ତାଙ୍କର ବି. ଏ.ରେ ଇଂରାଜୀ ଅନର୍ସ ଥିଲା—ଏବଂ ନେସ୍‌ଫିଲ୍‌ଡ଼ ଗ୍ରାମାର ତାଙ୍କର ଆମୂଳଚୂଳ ମୁଖସ୍ଥ ଥିଲା । ସେମିତି ମଧ୍ୟ ସେକ୍‌ସପିଅରଙ୍କର "ହାମ୍‌ଲେଟ" ଓ "ଜୁଲିଅସ ସିଜର"ରେ ମହା ମହା ବଚନକା ସବୁ ଆବୃତ୍ତି କଲାବେଳେ ତାଙ୍କ ପାଟିରେ ବାଧୁଲି ବାଜୁ ନଥିଲା । ସେ ଓଡ଼ିଆ କବିମାନଙ୍କୁ ଆଦୌ ଖାତିର କରୁ ନଥିଲେ । ବରଂ କାଳିଦାସ, ମାଘ ପ୍ରଭୃତି ସଂସ୍କୃତ କବିମାନଙ୍କୁ ସେ ସମ୍ମାନ କରୁଥିଲେ । ତାଙ୍କ ମତରେ ରାଧାନାଥ ସବୁ ଇଂରେଜୀରୁ କପି କରିଛନ୍ତି ଓ ମଧୁସୂଦନ ଗଙ୍ଗାଧର ସବୁ କିଛି ସଂସ୍କୃତରୁ କପି କରିଛନ୍ତି । ରାଧାନାଥ କିପରି ସେଲିଙ୍କଠାରୁ କପି କରିଛନ୍ତି ତା'ର ନମୁନା ସେ ଆମକୁ ଜଣାଇଥିଲେ । ସେତକ ମୁଁ ମନେ ରଖିଥିଲି । ବର୍ତ୍ତମାନ ଏହି ବିପଦ ବେଳାରେ ମୁଁ ସେହି ବାହାପିଆ ଶରଟିକୁ ମିଛୁ ଅବଧାନଙ୍କୁ ଲିଟି ଦେଲି । ତା'ପରେ ଦେଖ ମଜା । ମୋ ଆବୃତ୍ତିରୁ ମୁଁ ଜାଣେ ଯେ ଗ୍ରାମବାସୀ ବା ମୋ ଭଣ୍ଡୋଇ କିଛି ବୁଝି ପାରୁ ନ ଥିଲେ । ତଥାପି ଯେମିତି ଷ୍ଟାଇଲରେ ମୁଁ ଗଡ଼ ଗଡ଼ କରି ଇଂରେଜୀ ପଦଗୁଡ଼ିକ ହାଙ୍କି ଦେଇଗଲି, ତାହା ଶୁଣି ଅତ୍ୟନ୍ତ ଉତ୍ସାହ ଉନ୍ମାଦନାରେ ସମସ୍ତେ ତାଳିମାରି ହୋ ହୋ କରି ହସି ଉଠିଲେ । ଜଣେ କିଏ କହିଲା—ଆଉ ସ୍ୱା' ଉପରେ ଆଉ କଥା ଅଛି ? ଇଂରେଜୀ ପଦ ଆଗରେ ଆଉ ଆମର ଏ ମରହଟ୍ଟି ପଦ କୁଆଡ଼େ ଠିଆ ହୋଇ ପାରିବ ? ଯେତେ ହେଲେ ସେ ହେଲା ରାଜବିଦ୍ୟା ! ମହାରାଣୀ ଭିକ୍ଟୋରିଆଙ୍କ ବିଦ୍ୟା । ସମ୍ରାଟ ପଞ୍ଚମ ଜର୍ଜଙ୍କ ବିଦ୍ୟା !

ମୁଁ ଦେଖିଲି—ସମସ୍ତ ଗ୍ରାମବାସୀ ଅଯଥାର୍ଥରେ ଏବଂ ଅତ୍ୟନ୍ତ ନିଷ୍ଠୁର ଭାବେ ଏବଂ ନିତାନ୍ତ ଅକୃତଜ୍ଞ ଭାବେ ସେହି ପରମ ସମ୍ମାନନୀୟ ଯଥାର୍ଥ ଜ୍ଞାନୀ, ପଣ୍ଡିତ, ଚରିତ୍ରବାନ୍, ଏବଂ ଏହି ଅନ୍ଧାରିଆ ଗ୍ରାମବାସୀଙ୍କ ସମ୍ମୁଖରେ ଏକମାତ୍ର ମଶାଲଧାରୀ ମିଛୁ ଅବଧାନଙ୍କୁ ମନ ଭିତରୁ ପରିତ୍ୟାଗ କରି ମୋ ପିଛୁ ଧରିଲେଣି । ଏବଂ ସମସ୍ତେ ସତେକି ବହୁକାଳ ଧରି ଆପଣା ଆପଣା ମନ ଭିତରେ ଏହି ଗୋପନ ଅଭିଳାଷଟିକୁ

ବହୁଦିନ ଧରି ପୋଷଣ କରି ଆସିଥିଲେ । ମୋ କାନରେ ମଧ୍ୟ ଆହୁରି ଦୁଇଜଣ ଗ୍ରାମ୍ୟ ଯୁବକଙ୍କ ଚୂପ୍‌ଚୁପ୍ କଥା ଦି'ପଦ ପଡ଼ିଗଲା । ଜଣେ କହୁଥାଏ—ଶଳା ମରହଟ୍ଟି ବୁଢ଼ାର ଗଉଁ ଜାଣି ଆଜି ଭାଙ୍ଗିଲା । ଶଳା ମୋ ପିଲାଦିନେ ମତେ ସାନଧାଙ୍କ ଆସୁ ନ ଥିଲା ବୋଲି ଯୋଉ ମାଡ଼ ମାରିଛି । ଆଜିଯାଏ ବି ମୋ ପିଠିରେ ସେ ଚିହ୍ନ ଅଛି ! ଶଳାଟାର ଆଖିକୁ ଦେଖୁନ ! ଯେମିତି ନିଆଁ ଭଳି ଜଳୁଛି । ଆଜି ଶଳାର ନିଶ ଉପାଡ଼ି ଦେବ ଏଇ ଇଂରେଜୀବାଲା ଟୋକା । ଶଳାଟା କାଲି ସକାଳ ନ ହେଉଣୁ ଏ ଗାଁ ଛାଡ଼ି ପଳେଇବ ।

ଆଉ ଜଣେ କହିଲା—ତେମେ ଜାଣ ସେ ଏ ଗାଁରେ କେତେ ବର୍ଷ ହେଲା ରହିଲାଣି ? ତିରିଶି ବର୍ଷ । ଶଳା ଏଠି ଆମ ଗାଁରେ ଅଜାମ୍ର ହୋଇ ବସି ଆମ ତିନିପୁରୁଷଙ୍କୁ ପାଠ ପଢ଼େଇ ଛାଡ଼ିଲାଣି । ସେଥିପାଇଁ ସମସ୍ତଙ୍କୁ ଜାଣି ସେ ଡରେଇ କରି ରଖିଛି ।

ଆଉ ଜଣେ କହୁଥାଏ—କଉ, କି ପାଠ ସେ ଆମ ପିଲାଙ୍କୁ ପଢ଼ାଉଛି ? ତା'ର ସେ ପାଠ କ'ଣ ଆଉ ଆଜିକାଲି ବୋଲ କରିବ ? ବିନା ଇଂରେଜୀ ବିଦ୍ୟା ନ ଜାଣିଲେ ଏଇ ଓଡ଼ାଙ୍କ ଫେଡ଼ାଙ୍କ କୋଇଲି ଗୋଘୀ ଭାଷାରେ କ'ଣ ଆମ ପିଲାଏ କିଛି କରି ପାରିବେ ? ସେଇଥିପାଇଁ ପରା କଟକରେ ଜଗୁବାବୁ ହେରିକା ଆମ ଜିଲାବୋର୍ଡ଼ ଚେୟାରମ୍ୟାନ ପଧାନ ବାବୁଙ୍କୁ କହିଲେଣି ଆମ ଗାଁରେ ଗୋଟେ ଇସ୍କୁଲ ବସାଇବାକୁ । ଯେମିତି ନିଆଳୀ ଆଉ କସରଦା ଗାଁରେ ହୋଇଛି ।

ମୁଁ ସବୁ ଶୁଣୁଥାଏ । ମାତ୍ର କାହିଁକି କେଜାଣି, ମୋର ମନ ବଡ଼ କରୁଣ ହୋଇ ଉଠୁଥାଏ । ମୁଁ ଯେତେ ବାହାପିଆ ଆଉ ଉଦ୍ଧତ ସ୍ୱଭାବର ହେଲେ ବି, ସତକୁ ସତ ମୋର ହୃଦୟ ମିଶ୍ର ଅବଧାନଙ୍କ ପାଇଁ କାତର ହୋଇ ଯାଉଥାଏ ଓ ଏଇ କୃତଘ୍ନ ଗ୍ରାମବାସୀଙ୍କ ଉପରେ ଖୁବ୍ ଘୃଣା ଆସୁଥାଏ । ଆଜି ଏତିକିରେ ନୂଆ ପୁରୁଣା ବା ଇଂଲଣ୍ଡ ଭାରତର ବିଦ୍ୟାବିବାଦ ଶେଷ ହେଉ ବୋଲି ମୁଁ ମନେ ମନେ ବାଞ୍ଛା କରୁଥାଏ ।

କିନ୍ତୁ ନିୟତିର ବିଧାନକୁ କିଏ ଲଙ୍ଘନ କରି ପାରିବ ? ତା' ଛଡ଼ା' ସୁପ୍ରତିଷ୍ଠିତ ବିଦ୍ୟାବନ୍ତ ଅହଙ୍କାରୀ ଶିକ୍ଷକ ବା ଗୁରୁବୃତ୍ତିଧାରୀ

ବ୍ୟକ୍ତିମାନଙ୍କର ଅନମନୀୟ ସ୍ୱଭାବକୁ ବା କଏ ପରିବର୍ତ୍ତିତ କରିପାରିବ ? ଉପନିଷଦ ଯଥାର୍ଥ କହିଛନ୍ତି—ଅନ୍ଧକାରକୁ ଆଶ୍ରୟ କରି ବଞ୍ଚୁଥିବା ଲୋକମାନେ ମୂଢ଼ । କିନ୍ତୁ କେବଳ ଆଲୋକକୁ ଆଶ୍ରାକରି ବଞ୍ଚୁଥିବା ଲୋକେ ମୂଢ଼ତର । ଅଜ୍ଞାନ ମଣିଷ ଗତି ମୁକ୍ତି ପାଇପିବ । ମାତ୍ର ଘୋର ଜ୍ଞାନୀ ବ୍ୟକ୍ତିର ଆଉ ନିସ୍ତାର ନାହିଁ ।

ମିଷ୍ଟ୍ର ଅବଧାନ ଏତେ ସହଜରେ ଏଇ ଦି' ପଦ ଇଂରେଜୀ ହାଙ୍କୁଥିବା ଅଧା ପାଠୁଆ ଅଜାତଶ୍ମଶ୍ରୁ (ମୋର କିନ୍ତୁ ସେତେବେଳକୁ ଦାଢ଼ି ଉଠି ଯାଇଥିଲା ଓ ମୁଁ ପ୍ରଜାପତିଆ ଦାଢ଼ି ରଖିଥିଲି) ପ୍ଲେଟକ୍ସଟା ପାଖରେ ହାରିପିବା ଲୋକ ନୁହନ୍ତି । ତାଙ୍କ ମୁହଁ ଖୁବ୍ କଠୋର ଦେଖାଗଲା । ତାଙ୍କ କପାଳର ଶିରଗୁଡ଼ିକ ଫୁଲି ଉଠିଲା । ତାଙ୍କ ଆଖି ଦୁଇଟା ଜଳି ଉଠିଲା । ସେ ଥରେ ତାଙ୍କର ଚୂଟିକି ଫିଟାଇ ଦେଇ ପୁଣି ସାଙ୍ଗେ ସାଙ୍ଗେ ବାନ୍ଧି ପକାଇଲେ । ତା'ପରେ ତାଙ୍କ ବର୍ଚ୍ଛୁଆଟିକୁ କାନ୍ଧରୁ କାଢ଼ି ତଳେ ଦୁମ୍‌କିନା ଥୋଇ ଦେଲେ । ସେଇଠୁ ମୋ ଆଡ଼କୁ ଗାରେଡ଼େଇ ଚାହିଁ ପଚାରିଲେ—

ଗଣିତ ବିଦ୍ୟା କିଛି ଜଣାଅଛି ?

ପ୍ରଥମେ ଏତେକ ଶୁଣୁ ଶୁଣୁ ମୋର ହଲକ ଶୁଖିଗଲା । ମତେ ପରିସ୍ରା ଲାଗିଲା । ମାତ୍ର ମୁଁ ସାଙ୍ଗେ ସାଙ୍ଗେ ସାହସ ଫେରାଇ ଆଣିଲି । ମୁଁ କ'ଣ ବର୍ତ୍ତମାନ ସେଇ ଗାଁ ମାଇନର ସ୍କୁଲର ଷଷ୍ଠ ଶ୍ରେଣୀର ସେଇ ତୃତୀୟ ନମ୍ବର ଗଧ ହୋଇଛି କି ? ମତେ ଏ କ'ଣ କରି ଠଉରାଉଛନ୍ତି କି ? ଦଉଛି ଧରି ଆଉରି ପାନେ, ରହରେ ବୁଢ଼ା ! ମତେ ଅଙ୍କ ପଚାରିବୁ ? ମୋ ମନରେ ଗୋଟାଏ ୱାର ଉସର ବଚନିକା ଚାଲିଥାଏ— ଦେଖ ! ମୁଁ ସବୁ ସହିବି—ମାତ୍ର ମତେ ମୋର ଭିଣୋଇ ଗାଁରେ ଅଙ୍କ ପଚାରି ଯେ ଅପଦସ୍ତ କରିବାକୁ ଚାହିଁବ—ମୁଁ ତାକୁ କଦାପି କ୍ଷମାକରି ପାରିବି ନାହିଁ । ନିଶ୍ଚୟ ତାକୁ ଘାଏଲ କରି ଛାଡ଼ିବି । ଆଉ ତା'ର ରକ୍ଷା ନାହିଁ । ସ୍ୱୟଂ ଗଣେଶ କି ସରସ୍ୱତୀ ଆସି ତାକୁ ସାହାପକ୍ଷ ହେଲେ ବି ମୁଁ ତାକୁ ଚିତ୍ କରି ନ କରି ଛାଡ଼ିବି ନାହିଁ ।

ମୋ ଭିତରୁ ନରମ ଭାବ ନିମିଷକେ କଟିଗଲା । ମୁଁ ସମବେତ ଗ୍ରାମବାସୀଙ୍କ ଆଡ଼କୁ ଚାହିଁ ଦେଖିଲି ଯେ ସମସ୍ତେ ଚୁପ୍‌ଚାପ୍ ହୋଇଯାଇ ପ୍ରମାଦ ଗଣୁଛନ୍ତି । ମୋ ଭଣୋଇ ଉପରେ ପଥର ପାଲଟି ଗଲେଣି । ତାଙ୍କର ଆଶଙ୍କା ଯେ ମୁଁ ଏଇଥରକ ମିଛୁ ଅବଧାନ ହାତରେ ସାବାଡ଼ ହୋଇ ଅଧୋମୁଖ ହୋଇ ବସିବି—ଓ ଲଙ୍ଗୁଡ଼ ଜାକି କାଲି ସକାଳୁ ମୋର ଅପାରଗତାର ବୁଜୁଳି କାନ୍ଧେଇ ପଥପଗାର ପିତୃଗୃହକୁ ଚାଲିଯିବି ଓ ଆଉ ଦିନେ ବି ଏ ଅଯୋଧ୍ୟାର ବାରମାଟି ମାଡ଼ିବି ନାହିଁ । ଏବଂ ମୋର ଏ ଅପମାନରେ ସେ ଆଉ ଏ ଗାଁରେ ମୁଣ୍ଡ ଟେକି ବାଟ ଚାଲି ପାରିବେ ନାହିଁ । ମୋର ଭଣୋଇଙ୍କ ଖିନ୍ନବସ୍ତ୍ର ମୁହଁ ଏବଂ ଆକୁଳ ବିକୁଳ ଗୃହିଣୀ ମୋର ହୃଦୟକୁ ଖୁବ୍ ଆଘାତ କଲା । ମୁଁ ମିଛୁ ଅବଧାନଙ୍କ ଆଡ଼କୁ ଚାହିଁ ଖୁବ୍ ଗମ୍ଭୀର ଗଳାରେ କହିଲି—

ଆମେ ତ ଏରିଥ୍‌ମେଟିକ୍, ମାନେ ପାଟୀଗଣିତ, ଆଲଜେବ୍ରା, ମାନେ ବୀଜଗଣିତ ଓ ଜିଓମେଟ୍ରି, ମାନେ ଜ୍ୟାମିତି ପଢ଼ୁଛୁ । କ'ଣ ପଚାରିବେ ଆପଣ ପଚାରନ୍ତୁ ।

ମିଛୁ ଅବଧାନେ ସାମାନ୍ୟ ତାଚ୍ଛଲ୍ୟ ମିଶ୍ରିତ ବାକ୍ୟରେ ଘୋର ଅହମିକାଗ୍ରସ୍ତ ଜିଘାଂସାପୂର୍ଣ୍ଣ ପଣ୍ଡିତ ସୁଲଭ ବିନୟ ଦେଖାଇ କହିଲେ—ସେ ତ ଆପଣ ନାନାଦି ବିଦ୍ୟା ସାଧୁଛ ! ସେ ସବୁ ଫିରଙ୍ଗୀ ଘର ପାଠ । ଆମେ ହେଲୁ ଗାଉଁଲି ମୂର୍ଖ—ମରହଟ୍ଟୀ । ଆମକୁ କିବା ଜ୍ଞାତବ୍ୟ ଅଛି ? ତେବେ ବିଦ୍ୟା ଅବିଦ୍ୟା ବୋଲି ଦୁଇଟା କଥା ଅଛି । ଦେବଗଣଙ୍କର ବିଦ୍ୟା—ଅସୁରଙ୍କର ଅବିଦ୍ୟା । ଫିରଙ୍ଗୀ ତା' ଆସୁରୀମାୟାବିଦ୍ୟା ବଳରେ ଆକାଶରେ ବେମ୍‌ଯାନ୍ ଉଡ଼ାଉଛି । ହେଲେ, ଆମର ଏ ମରହଟ୍ଟୀ ବିଦ୍ୟାକୁ କେହି ସରି ନୁହଁ । ଏ ହେଲା କୃଷିଘର ବିଦ୍ୟା । ବିନା ଯନ୍ତ୍ରରେ ଖାଲି ସୂତ୍ର ଆଉ ମନ୍ତ୍ର ବଳରେ ଏ ବିଦ୍ୟା କାମ ଦେଖେଇବ । ଉଡ଼ିଗଲା ଚଢ଼େଇର ପର ଗଣିଦେବ, ଏ ବିଦ୍ୟାରେ ଏମିତି କାମତ ରହିଛି । ଆଚ୍ଛା, ମୁଁ ଗୋଟାଏ ଲୀଳାବତୀ ସୂତ୍ରରୁ ଖଣ୍ଡିଏ ଟ୍ରେଟିଆ କରି ଗଣିତ ପଚାରୁଛି—କହିଲି ଦେଖି—ଜାଣିବା କେମିତି ବିଦ୍ୟା ସାଧିଛ ।

ମୁଁ ବୁଝିଲି ଯେ, ଏଥର ବୁଢ଼ା ଅବଧାନେ ତା'ର ଶେଷ ଅସ୍ତ୍ର ପାଶୁପତ ଛାଡ଼ୁଛନ୍ତି ନିଶ୍ଚେ । ଆଚ୍ଛା—ଦେଖାଯାଉ –ମୋ ବାହାପିଆ ତୂଣୀର ଭିତରୁ ମୋତେ ମଧ୍ୟ ସେ ଅସ୍ତ୍ରକୁ କାଟିବା ଲାଗି ବ୍ରହ୍ମାସ୍ତ୍ରଟି ଖୋଜି ବାହାର କରିବାକୁ ପଡ଼ିବ । ମୁଁ ନିର୍ଭୀକ ନିଶ୍ଚିନ୍ତ ଭାବେ କହିଲି—ଶୀଘ୍ର ପଚାରନ୍ତୁ । ଟାଇମ୍ ବହୁତ ଲେଟ୍ ହୋଇ ଗଲାଣି । ମୁଁ ଘର ଟାଇମ୍ ଫିଲ୍ କରୁଛି ।

ମୋର ଏଇ ଇଂରେଜୀ ମିଶା ବାକ୍ୟଟି ଶୁଣିବା ମାତ୍ରେ ଗ୍ରାମବାସୀ-ମାନେ କିଛି ନ ବୁଝି ଖୁବ୍ ଆହ୍ଲାଦିତ ହେଲେ । ସମସ୍ତେ ପୁଣି ମୋ ବିଷୟରେ ଉତ୍ସାହିତ ହୋଇ ସମସ୍ୱରରେ କହିଲେ—ହଉ ପଚାରନ୍ତୁ ଆଜ୍ଞା । ଶେଷ ପରୀକ୍ଷାଟା ହୋଇଯାଉ ।

କିନ୍ତୁ ଅବଧାନେ ଖୁବ୍ ଧୀରସ୍ଥିର ଗମ୍ଭୀର ଓ ଦୃଢ଼ ଅବ୍ୟର୍ଥ ଲକ୍ଷ୍ୟରେ ତାଙ୍କର ପାଶୁପତ ଅସ୍ତ୍ରଟି ମୋ ଉପରକୁ ଛାଡ଼ିଲେ । ଗଣିତ ପ୍ରଶ୍ନଟିକୁ ସେ ଗୋଟିଏ ପଦ୍ୟ ବୋଲିବା ଭଳି ପଚାରିଲେ । ତାହା ମୋତେ କିମ୍ଭୂତ ଓ ଦୁର୍ବୋଧ ଶୁଣାଗଲା । ତାହା ବର୍ତ୍ତମାନ ପୂରାପୂରି ମୋର ମନେ-ନାହିଁ । କିନ୍ତୁ ଯେତିକ ଯେପରି ମନେଅଛି—ମିଶା ମିଶି କରି ତାହା ମୁଁ କହୁଛି—ତାଙ୍କର ପ୍ରଶ୍ନଟି ହେଲା—

ଗଜାନନ ପଚାରନ୍ତି ଷଡ଼ାନନ ଭାଇ
ଗଣିତରୁ ସୂତ୍ରଟିଏ ପଚାରୁଛି ମୁହିଁ ।
ନଅ ଯୋଜନରେ ହଂସ ଯାଉଅଛି ଉଡ଼ି
ନବତାଳ ଗହ୍ୱରରେ ରହିଛି ପୋଖରୀ ।
ତୃଷାରେ ଆତୁର ହୋଇ ସେହି ପକ୍ଷୀମଣି
ତଳକୁ ଖସିଲା ବେଗେ ସ୍ମରି ଚକ୍ରପାଣି ।
ମଧ୍ୟରେ ଖସିଲା ହଂସ ଦୁଇ ପରିତାଳ
ଏ ସମୟେ ଦେଖି ତାକୁ ଗୋଡ଼ାଏ ବେତାଳ
ଲିତାକେ ଖସଇ ହଂସ ଏକଇ ଯୋଜନ
ବଳିତାକେ ସେ ବେତାଳ କଟେ ଫନ୍ଦମଣ ।

ଷାଠିଏ ଯୋଜନେ ତାଙ୍କୁ ବେତାଳ ଧଇଲା
ହାହା ହାହା ବୋଲି ହଂସ ବୋବାଳି ଗୁଡ଼ଲା ।
ଏହିଠାରେ ସନ୍ଧ ଗୋଟି ପୁଛଇ ଭୂମ୍ବଙ୍କୁ
କେତେ ଲତା କାଳଟି ଲାଗିଲା ବେତାଳକୁ ?
କେତେ ତାଳ ତଳେ ପୁଣି ଥିଲାଟି ପୋଖରୀ ?
କହିଦଅ ଷଡ଼ାନନ ମନେ ହେତୁ କରି ।
ଏତେକ କହିଲେ ଆମ୍ଭ ସଙ୍ଗେ ସରି ହେବ ।
ପଣ୍ଡିତ ଗଣେ ମୁଣ୍ଡରେ ଶିରପା ବାନ୍ଧିବ ।
ନ କହି ପାରିବ ଯହିଁ ଚଢ଼ିଣ ମୟୂର
କଇଲାସ ତେଜି ଗୁଳି ଯାଅ ହେ ସତ୍ୱର ।

ଏତେକ ବୋଲି ଦେଇ ମିଶ୍ରୁ ଅବଧାନେ ହାତରେ ତାଳ ଛୁଡ଼ାଇଲା ଭଳି ଫଟ୍‌କନା ଗୋଟାଏ ତାଳି ମାରି ଦେଲେ ଓ ସାଙ୍ଗେ ସାଙ୍ଗେ ଅଟ୍ଟହାସ କରି ଉଠିଲେ । ଏବଂ ଭାବିଲେ ଯେ ଏହି ଅସ୍ତ୍ରରେ ଏହି ନା' ବାଳକ ଗ୍ରେଷ୍ଟକ୍‌ସଟାର ବକ୍ଷସ୍ଥଳ ଏକାଥରକେ ଶତଧା ବିଦୀର୍ଣ୍ଣ ହୋଇଯିବ ଏବଂ ସେ ତା'ର ଇଷ୍ଟସ୍ମରଣ କରିବା ପୂର୍ବରୁ ଶେଷ ନିଃଶ୍ୱାସ ତ୍ୟାଗ କରି ଭୂମି ଉପରେ ଟଳି ପଡ଼ିବ ।

ସେ ଅବଶ୍ୟ ଭୁଲ ଭାବି ନାହାନ୍ତି । ଏହି ମହା ଜଟିଳ ରହସ୍ୟ-ମୟ ଗାଣିତିକ ଚର୍ଚ୍ଚା ସମ୍ବନ୍ଧୀୟ ପଦ୍ୟଟିକୁ ଶୁଣିବା ମାତ୍ରେ ପ୍ରଥମେ ମୋର ମୁଣ୍ଡ ଘୂରାଇ ଦେଲା । କ'ଣ ଏହାର ଅର୍ଥ ? କି ପ୍ରକାର ଅଙ୍କ ଏ ? ତା' ଛଡ଼ା, ପରିସ୍ଥିତି ମଧ୍ୟ ବର୍ତ୍ତମାନ ଖୁବ୍ ସଙ୍କଟମୟ । ମୋର ଭଣେଇଙ୍କ ମୁହଁ ଝାଉଁଳେଇ ଗଲାଣି । ଗ୍ରାମବାସୀଏ ତଟସ୍ଥ ହୋଇ ବସିଛନ୍ତି । ମାସ୍ଟରଧର ଟେରେଇ କରି ମୋତେ ଏକାଲୟରେ ଗୁହାଁଛୁ ଓ ଆମ ଗ୍ରାମ-ଦେବତା କୁଟାମଚଣ୍ଡୀଙ୍କୁ ମନେ ମନେ ଡାକୁଛୁ । ମିଶ୍ରୁ ଅବଧାନେ କନ୍ଧ ପ୍ରଶ୍ନଟି ପଚାରି ସାରି ଖଣ୍ଡିଏ ପାନକୁ ଗୁଳୁଲାଇ ଗୁଳୁଲାଇ ଖାଉଛନ୍ତି ଓ ହୋହଲି ହୋହଲି ମୋର ଛଟପଟ ଅବସ୍ଥା ଦେଖିବା ଲାଗି ପ୍ରସ୍ତୁତ ହେଉଛନ୍ତି ।

ହଠାତ୍ ମୁଁ ମୋ ଭଣୋଇଙ୍କୁ କହିଲି—ଭାଇନା ! ଟିକେଟା ସିଲଟ ଓ ଖଡ଼ି ଆଣ ।

ଭଣୋଇ ଖାର ବେଗରେ ଉଠି ଯାଇ ସଙ୍ଗେ ସଙ୍ଗେ ଟିକୋଟିଏ ବଣାଳ ସିଲଟ ଓ ଖଡ଼ିଟିଏ ଆଣି ମୋ ଆଗରେ ଥୋଇଦେଲେ । ମୁଁ ସେଥିରୁ ଗୋଟିଏ ସିଲଟ ଓ ଖଡ଼ି ମିଶ୍ର ଅବଧାନଙ୍କ ଆଡ଼କୁ ବଢ଼ାଇ ଦେଇ ଖୁବ୍ ବିନୀତ ଅଥଚ ପ୍ରତ୍ୟୟଶୀଳ ଗଳାରେ କହିଲି—ଦୟା କରି ପ୍ରଶ୍ନଟି ଲେଖି ଦିଅନ୍ତୁ ।

ମାଷ୍ଟ୍ରେ ତାଙ୍କ ଚଷମାଟି ବଟୁଆରୁ ବାହାର କରି ଆଖିରେ ଦେଲେ ଓ ବିନା ଆପତ୍ତିରେ ହସି ହସି ପ୍ରଶ୍ନଟିକୁ ସିଲଟରେ ଲେଖି ମତେ ଦେଇ ଦେଲେ । ତା’ପରେ ମୁଁ ସେଇ ପ୍ରଶ୍ନଟିକୁ ଖୁବ୍ ମନ ଧ୍ୟାନ ଦେଇ ପଢ଼ିଲି । ପାଞ୍ଚ ମିନଟ ବିତିଗଲା । ଘର ଭିତରେ ସମସ୍ତେ ଚୁପଚାପ୍ ବସିଥାନ୍ତି । ଏତେ ନିସ୍ତବ୍ଧ ଯେ ପତରଟାଏ ଖସି ପଡ଼ିଲେ ବି ଶବ୍ଦ ଶୁଭିବ । ତା’ ପରେ ମୁଁ ଖୁବ୍ ଗମ୍ଭୀର ହୋଇ ଖଡ଼ି ଓ ଅନ୍ୟ ଏକ ସିଲଟ ଧରି କେତୋଟି ଜ୍ୟାମିତିକ ଦୁର୍ବୋଧ ରେଖା କାଟିଲି । ସେଇଠୁ ପ୍ରାୟ ପନ୍ଦର ମିନଟ୍ ଧରି ବୀଜଗଣିତରେ ସୂତ୍ର ଗୁଡ଼ିକୁ ମିଛେ ମିଛେ ଅର୍ଥହୀନ ଭାବେ ଲେଖି ଚାଲିଲି । ଯଥା—

ଏ ସ୍କୋୟାର + ବି କିଉବ୍ + { ଏ, ବି ସ୍କୋୟାର -

ଫୋର ଏ, ବି } × ସି କିଉବ୍

$\left(\frac{\text{ଏ ସ୍କୋୟାର}}{\text{ବି କିଉବ୍}} + \text{ଥ୍ରି ଏ ବି} - \text{ଏ କିଉବ୍ ବି ସ୍କୋୟାର}\right)\text{ଥ୍ରି} =$

ଥ୍ରି ଏ ବି ସ୍କୋୟାର ।

ଏମିତି ଏମିତି ଦୁଇଟି ସିଲଟର ଚାରିପଟଯାକ ନିରର୍ଥକ ଭାବେ ଲେଖି ଚାଲିଥାଏ ଓ ମଝେ ମଝେ ପୁଣି ଚୁପ୍ ହୋଇ ବସି ଚିବୁକରେ ଖଡ଼ିଟି ଚାପି କ’ଣ ସେପରି ଭାବୁଥାଏ । ସେଇଠୁ ଲେଖିଥିବା ଅଙ୍କରୁ କିଛି ଲିଭାଇ ଫେର କ’ଣ ମନେ ମନେ ହିସାବ କରି ଲେଖୁଥାଏ । ଏମିତି ଏମିତି ପନ୍ଦର ମିନଟ୍ କଟିଗଲା । ସମସ୍ତେ ଉଦ୍‌ଗ୍ରୀବ ହୋଇ ବସି ରହିଁଥାନ୍ତି । ମୋ ଭଣୋଇଙ୍କ ଦେହ ଝାଳରେ ଓଦା ହୋଇଯାଏ ।

ମାଷ୍ଟାଧର ଆତଙ୍କରେ ଆଉ ଧୈର୍ଯ୍ୟ ଧରି ନ ପାରି ସେ ଘର ଛାଡ଼ି ବାହାରକୁ ଉଠିଗଲା । ମୁଁ କିନ୍ତୁ ଖୁବ୍ ଗମ୍ଭୀର ଆଉ ଧ୍ୟାନଶୀଳ ହୋଇ ମିଛେ ମିଛେ ଅଙ୍କ କଷି ଚାଲିଥାଏ । ମିଛୁ ଅବଧାନେ ହସି ହସି ପାନ ପାକୁଳି କରି ଆତ୍ମ ପ୍ରସାଦରେ ଝୁଲି ଝୁଲି ମୋ ଆଡ଼କୁ ଚାହିଁଥାନ୍ତି ।

ଏହି ସମୟରେ ମୁଁ ସେ ଅଙ୍କଟିର ଉତ୍ତର ପାଇଗଲି ବୋଲି ଛଳନା କରି ସିଲଟ ଉପରେ ଗୋଟାଏ ଅର୍ଥହୀନ ବୀଜଗଣିତ ସୂତ୍ର ଲେଖି ସିଲଟ ତଳେ ଥୋଇଦେଇ କହିଲି—ବେତାଳକୁ ଲାଗିଲା ଏ ପ୍ଲସ୍ ବି ହୋଲ୍ ସ୍କୋୟାର ସମୟ । ଆଉ, ପୋଖରୀଟି ଥିଲା ଏକ୍ସ ମାଇନସ୍ ଓ୍ୱାଇ କଉବ୍ ବାଟ ଦୂର ।

ମୋ କଥା ଶୁଣୁ ଶୁଣୁ ସଭାରେ କରତାଳି ପରେ କରତାଳି ଚାଲିଲା । ଯୁବକ ଗ୍ରାମବାସୀମାନେ ମହା ଉତ୍ସାହରେ ବସିବା ଜାଗାରୁ ଉଠି ଆସି ସେଇ ଅର୍ଥହୀନ ଲେଖାରେ ପୂର୍ଣ୍ଣ ସିଲଟ ଦୁଇଟିକୁ ନେଇ ଆଶ୍ଚର୍ଯ୍ୟ ହୋଇ ଦେଖି ଲାଗିଲେ ।

ମୋ ଭଉଣୋଇ ହସି ହସି ଗଡ଼ିଗଲେ । ଏବଂ ସମବେତ ଗ୍ରାମ-ବାସୀଙ୍କ ଭିତରୁ ଜଣେ ଖୁବ୍ ବଡ଼ ପାଟିରେ କହି ଉଠିଲା—ଏ ଥରକ କଏ କୈଳାସ ଛାଡ଼ି ଯିବ, ବର୍ତ୍ତମାନ ଯାଉ ।...ଆଉ ତୁମ ପାଠ ଏଠି ବୋଲି କରିବ ନାହିଁ...ତୁମ କାଳ ପୂରିଗଲା ଆପଣେ । ଏଣିକି ନିଜ ବାଟ ଦେଖ । ଆମ ପିଲାଏ ଏଣିକି ଇଂରେଜୀ ପଢ଼ିବେ ।

କିନ୍ତୁ ମିଛୁ ଅବଧାନଙ୍କ ଆଖି ଦୁଇଟା ପଦାକୁ ବାହାରି ଆସିଲା । ସେ ଖୁବ୍ ଉଚ୍ଚ ସ୍ୱରରେ କହିଲେ—କ'ଣ ଉତ୍ତର ଦେଲି ବାବୁ, ଠିକେ ଓଡ଼ିଆରେ କୁହ । ଆମେ ତ ହେଲୁ ଗାଉଁଲି ମରହଣ୍ଡିଆ ଲୋକ । ଫିରିଙ୍ଗୀ ପାଠରେ ଉତ୍ତର ଦେଲେ ଆମେ କ'ଣ ବୁଝିବୁ ?

ତାଙ୍କ କଥା ଶୁଣି ମୁଁ କହିଲି—ଆଜ୍ଞା ! ଆମେ ତ ସବୁ ବିଦ୍ୟା ଇଂରେଜୀରେ ପଢ଼ୁଛୁ । ଓଡ଼ିଆରେ କେମିତି ଉତ୍ତର ଦେବି । ଆମ ଅଙ୍କ ବି ଇଂରାଜୀରେ ପଢ଼ା ହେଉଛି । ଆପଣଙ୍କ ପ୍ରଶ୍ନରେ ଆଲଜେବ୍ରା, ଟ୍ରିଗୋନ୍‌ମେଟ୍ରି ଆଉ ମେନ୍‌ସୁରେସନ୍ ରହିଛି । ମୁଁ ଆଲଜେବ୍ରାକୁ ଆଣି

ସବୁତକ ଛଡ଼େଇ କଷି ଦେଇ ସେଇ ଆଲଜେବ୍ରାରେ ଉତ୍ତର ଦେଲି । ଆପଣ ନ ବୁଝିଲେ ମୁଁ କ'ଣ କରିବି ?

ମାଷ୍ଟ୍ରେ ହଠାତ୍ ମଳିନ ପଡ଼ିଗଲେ । ତାଙ୍କ ସ୍ୱର ସ୍ତିମିତ ହୋଇଗଲା । ସେ କହିଲେ—ଆଲଜେବ୍ରାଟି କ'ଣ ?

ମୁଁ କହିଲି—ବୀଜ ଗଣିତ ବୋଲି ଓଡ଼ିଆରେ କୁହା ଯାଉଛି ।

ଏହି ସମୟରେ ମୋର ଭଣୋଇ ଖୁବ୍ ଜୋର ପାଟିରେ ଗର୍ଜ୍ଜନ କରି କହିଲେ—ଆଜ୍ଞା ! ଆପଣ ଗଣିତରୁ ପଚାରିଲେ—ସେ ତାକୁ ବୀଜ ଗଣିତରୁ କହିଲା । ଏଇଥିରୁ ବୁଝି ପାରୁ ନାହାନ୍ତି ଯେ ଆଉ ପୁଣି ପାଟି ଫିଟାଉଛନ୍ତି ?

ମୋ ଭଣୋଇଙ୍କ କଥା ଶୁଣି ତାଙ୍କୁ ସମର୍ଥନ ଜଣାଇ ଆଉ ଜଣେ ପ୍ରୌଢ଼ ଗ୍ରାମବାସୀ କହିଲେ—ଆହେ ! ସେ ଗଣିତ ହେଲେ—ଏ ହେଲା ବୀଜ ଗଣିତ । ସବୁ ଗଣିତ ବିଦ୍ୟାର ବୀଜାଙ୍ଗୀ ଜାଣ ସେଥିରେ ରହିଛି । ଫିରଙ୍ଗୀ ବିଦ୍ୟାରେ ସେମିତି ସବୁ ବୀଜାଙ୍ଗୀତକ ରଖିଛି ବୋଲି ସିନା ସେ ଆଜି ଆକାଶରେ ବେମ୍‌ଯାନ ଉଡ଼ାଉଛି । ବାଘ-ବଳଦୀଙ୍କୁ ଏକ୍ କରି ଏକ୍ ଭୁଠରେ ପାଣି ପିଆଉଛି !!! ସେ କଥା ବୁଝିଲେ ହବ ନା ଖାଲି ଏବେ ଭାଉଁ ଭାଉଁ ମେଣ୍ଢାଙ୍କ ଭଳିଆ ହେଲେ କ'ଣ ହେବ ? ତମେ ଦେଖୁନ । ମାଷ୍ଟ୍ରେ କେଡ଼େ ବଡ଼ ଅଙ୍କ ପଚାରିଲେ । ଆଉ ଏ ତାକୁ କେଡ଼େ ସରଳରେ ବୀଜାଙ୍ଗୀ କରି ତା' ଉତ୍ତର ଥୋଇ ଦେଲେ । ଏଇଥିରୁ ବୁଝୁନ ??

ସମବେତ ସମସ୍ତେ ସେଇ କଥାରେ ସମର୍ଥନ ଜଣାଇ ମୋର ବିଜୟ ଏବଂ ମିଛୁ ଅବଧାନଙ୍କ ପରାଜୟ ଘୋଷଣା କରି ଉଠିଲେ । ଏବଂ ଗଲାବେଳେ ସମସ୍ତେ ମୋ ଭଳି ଇଂରେଜୀ ପଢ଼ୁଆ ବିଦ୍ୱାନଙ୍କୁ ନମସ୍କାର ଜଣାଇଲେ । କେହି ମିଛୁ ଅବଧାନଙ୍କ ଆଡ଼କୁ ଚାହିଁଲେ ବି ନାହିଁ । ବରଂ ଜଣେ ଦି'ଜଣ ମାଷ୍ଟ୍ରଙ୍କୁ ଶୁଣାଇ ଶୁଣାଇ କହିଗଲେ—

ଏଥର ପେଡ଼ ପୋଟଳା ବାନ୍ଧି ନିଜ ଗାଁକୁ ବାହାରି ଯାଅ ଅବଧାନେ ! ଆଉ ଗୁହାଳୀ ପାଠ ଏ ଗାଁରେ ଚଳିବ ନାହିଁ । ଏଣିକି ଇଂରେଜୀ ସ୍କୁଲ ବସିବ ଏଠି ।

ଆଉ ଜଣେ କହୁ କହୁ ଗଲା—ଆଜି ଏ ଘଟଣା ପରେ ସେ ବୁଢ଼ା ଆଉ ଏ ଗାଁରେ ରହିବ କେମିତି ଭାବୁଛ କକେଇ ? କାଲି ସକାଳୁ ସେ ଯଦି କନାପଟା ବାନ୍ଧି ସମସ୍ତଙ୍କ ଉଠିବା ଆଗରୁ ତା' ଗାଁକୁ ନ ପଳେଇଛି !!

ଆଉ ଜଣେ କହିବାର ଶୁଣାଗଲା—ଶଳା ବୁଢ଼ାର ଚୁଟିକାଟି ବିଦା କରୁନ ଏ ଗାଁରୁ ?

ଏସବୁ କଥା ମୋ କାନରେ ପଡୁଥାଏ । ସମସ୍ତେ ଯେ ଯୁଆଡ଼େ ଗଲାପରେ—ମିଶ୍ର ଅବଧାନେ ବାଡ଼ି ଖଣ୍ଡିକ ଧରି ଆଉ କାହାକୁ କିଛି ନକହି, ଏପରି କି ଆମମାନଙ୍କ ଠାରୁ ବିଦାୟ ନ ନେଇ ତଳକୁ ମୁହଁ ପୋତି ପୋତି କଠାଉ ଠକ୍ ଠକ୍ କରି ନିଜ ବସା ଆଡ଼କୁ ଏକୁଟିଆ ଚାଲିଗଲେ ।

ମୁଁ ଭାବିଲି—କିଛି ବାଟ ତାଙ୍କୁ ବଳେଇ ଦେଇ ନମସ୍କାର କରି ବିଦାୟ ନେଇ ଆସିବି । ମାତ୍ର ସେ କଥା କରିବାକୁ ମୋର ଆଉ ମନରେ ସତ୍ ସାହସ ହେଲା ନାହିଁ—କି ସତ୍ ପ୍ରେରଣା ବି ହେଲା ନାହିଁ ।

ମୁଁ ବାହାପିଆ ସେଦିନ ରାତିରେ ମୋର ଭଣୋଇଙ୍କ ଘରେ ମୋ ସାଙ୍ଗ ମାୟାଧର ସହିତ ଖଜୁରମୁଣ୍ଡି ଝୋଳ ଓ ଭାତ ଖାଇ ମହା ଆରାମରେ ଶୋଇଲି । ମୋ ଭଣୋଇ ତ ଏଡ଼ି ଆନନ୍ଦରେ ଏତେ ଉତ୍ଫୁଲ୍ଲ ହୋଇ ଯାଇଥାନ୍ତି ଯେ ତାଙ୍କ ପେଟକୁ ଭାତ ଗଲାନାହିଁ—କି ରାତିସାକ ତାଙ୍କ ଆଖିକୁ ନିଦ ହେଲାନାହିଁ ।

ତା' ପରଦିନ ମିଶ୍ର ଅବଧାନେ ସେ ଗାଁ ଛାଡ଼ି ଚାଲିଗଲେ କି ନାହିଁ—ମୁଁ ଆଉ ଜାଣିନି—କିନ୍ତୁ ବଡ଼ ସକାଳୁ କେହି ନ ଦେଖିବା ଆଗରୁ ମାୟାଧର ଓ ମୁଁ ସେ ଗାଁ ଛାଡ଼ି ଆମ ଗାଁକୁ ଫେରି ଆସିଲୁ ।

କାଳ ସ୍ରୋତରେ ଗୃଳଶିଟି ବର୍ଷ ସେଇଦନୁଁ ବହିଗଲାଣି । ଏହା ଭିତରେ ମିଛୁ ଅବଧାନଙ୍କ ସ୍ମୃତି ଏ ପୃଥିବୀରୁ ଲୋପ ପାଇ ଗଲାଣି । ମୋ ଭଣୋଇଙ୍କ ଗାଁର ବର୍ତ୍ତମାନ ଅଧିବାସୀମାନେ କେହି ଆଉ ସେହି ମହାନ୍ ବ୍ୟକ୍ତିଟିର କଥା ମନେ ରଖି ନ ଥିବେ । ମୋ ଭଣୋଇଙ୍କ ଗ୍ରାମରେ ବର୍ତ୍ତମାନ ଗୋଟିଏ ହାଇସ୍କୁଲ୍ ଏବଂ ଗୋଟିଏ ଗାର୍ଲ୍‌ସ ହାଇସ୍କୁଲ । ଏବେ କୁଆଡ଼େ ଗୋଟିଏ କଲେଜ ନୂଆ କରି ସ୍ଥାପିତ ହୋଇଛି ।

ମୁଁ ଜାଣେ—ସେହି ମହାପ୍ରାଣ ମହାତ୍ମା ମହା ତେଜସ୍ଵାନ୍ ମହା ନୈଷ୍ଠିକ ଓ ମହା ଅଭିମାନୀ ପୂଜ୍ୟପାଦ ଗ୍ରାମ୍ୟ ଶିକ୍ଷକ ମହୋଦୟଙ୍କ ପ୍ରତି ମୁଁ ସେତେବେଳେ କି ଶଠ ଆଚରଣ କରିଛି । ଏବଂ ଆଜ ମୋର ବାଲ୍ୟ କାଳର ସ୍ମୃତିଚାରଣ କଲାବେଳେ ମୁଁ ମନେ ମନେ ତାଙ୍କର ସେହି କଠୋର ସଂଲଗ୍ନ ପୂଜ୍ୟପାଦ ଦୁଇଟି ଉପରେ ମଥା ଥୋଇ ତାଙ୍କ ଉଦ୍ଦେଶ୍ୟରେ ଅଜସ୍ର ପ୍ରଣାମ କରୁଛି ଆଉ କ୍ଷମା ପ୍ରାର୍ଥନା କରୁଛି ।

କାଳସ୍ୱରୂପୀ ମହାକାଳ ହିଁ ମହାବଳୀ ଅଟନ୍ତି । ସେ ମଧ୍ୟ ଅଘଟନ ଘଟନ ପଟିୟସୀ ଶକ୍ତିର ଅଧିକାରୀ ବିଚକ୍ଷଣକର୍ମୀ । ସେହି ମହାକାଳଙ୍କ ହାତରେହିଁ ଗୋଟିଏ କାଳର ମହାପ୍ରତାପୀ, ବଙ୍କ ଶିରୋମଣି, ଛନ୍ଦପୁରୁଷର ପ୍ରତିଷ୍ଠିତ ଗୁରୁ, ପୂଜ୍ୟପାଦ ମିଛୁ ଅବଧାନଙ୍କର ମୋ ଭଳିଆ ଗଣିତ-ବୁଦ୍ଧି-ଶୂନ୍ୟ ଗୋଟାଏ ବାହାଦୁରିଆ ମେଞ୍ଚଡ଼ ଟୋକା ହାତରେ ଏପରି ଶୋଚନୀୟ ପରାଜୟ ଘଟିଲା । ମୁଁ ଥିଲି ଜାଣେ ସେ ଘଟଣାରେ ନିମିତ୍ତ ମାତ୍ର ।



# ରାମ୍ ଯେ ରହିମ୍ ଏକ୍......

ସନାତୁଲ୍ଲା ସଙ୍ଗେ ମୋର ପ୍ରଥମ ପରିଚୟ ହେଲା ସେଇଦିନ, ଯେଉଁଦିନ ମୁଁ ପ୍ରଥମ କରି ଆମ ଗାଁ ମାଇନର ସ୍କୁଲରେ ଚତୁର୍ଥ ଶ୍ରେଣୀରେ ନାମ ଲେଖାଇ କ୍ଲାସରେ ଆସି ଯୋଗ ଦେଲି । ସେତେବେଳେ ଜାନୁଆରୀ ମାସରେ କ୍ଲାସ ଆରମ୍ଭ ହେଉଥାଏ । ଶୀତଦିନ । ସ୍କୁଲ୍ ବଗିଚାରେ ପ୍ରଚୁର ଗେଣ୍ଡୁ ଫୁଲ ଫୁଟିଥାଏ । ବଗିଚା ମଝିରେ ଗୋଟିଏ କୂଅ—ଏବଂ ତା' ପାଖେ ଦୁଇଟି ଗଙ୍ଗଶିଉଳି ଗଛ । ମତେ ପରିବେଶଟି ଖୁବ୍ ଭଲ ଲାଗିଲା । ସବୁଠାରୁ ମଜାର ବିଷୟ ହେଲା—ମାଇନର ସ୍କୁଲର ବେଞ୍ଚରେ ବସି ଡେସ୍କରେ ବହିପତ୍ର ଥୋଇ ପାଠ ପଢ଼ିବାକୁ ହେବ । ନି. ପ୍ରା. ସ୍କୁଲରେ ସେ ବ୍ୟବସ୍ଥା ନଥିଲା । ମୋ ସାଙ୍ଗ ମାମୁଧର କିନ୍ତୁ ତୃତୀୟଶ୍ରେଣୀ ପଢ଼ା ସାରି ନ ଥାଏ । ତେଣୁ ମୁଁ ବନ୍ଧୁହୀନ ଭାବେ ପ୍ରଥମେ ସ୍କୁଲରେ ପ୍ରବେଶ କଲି । ତଥାପି ମାମୁଧର ମଝେ ମଝେ ମାଇନର ସ୍କୁଲ ଆଡ଼େ ବୁଲି ଆସି ମତେ ସଙ୍ଗୋଳି ଯାଉଥାଏ—ଏବଂ କହୁଥାଏ ଯେ ଆଉ ମାସ କେଇଟା ପରେ ସେ ଏ ସ୍କୁଲକୁ ଆସି ମୋର ନିଃସଙ୍ଗତା ଦୂର କରିବ ।

ମୁଁ ପ୍ରଥମେ କ୍ଲାସରେ ଆସି ଚୁପ୍‌ଚାପ୍ ବସିଥାଏ । ଅବଶ୍ୟ, ମୋର ଖୁବ୍ ଜଣାଶୁଣା ତିନି-ଚାରିଜଣ ସେ କ୍ଲାସରେ ଥିଲେ । ମାତ୍ର

ସେମାନେ କେହି ମୋର ସାଙ୍ଗ ନ ଥିଲେ । ଅବଶିଷ୍ଟ ୧୫-୧୬ ଜଣ ପିଲା ଆମ ଗାଁଠାରୁ ୫-୬ ମାଇଲ ଦୂର ଗାଁର ପିଲା । ତେଣୁ ମୁଁ ଚୁପ୍‌ଚାପ୍ ବସିଥାଏ । କିଛି ସମୟ ପରେ ସନାଉଲ୍ଲା ନାମଧାରୀ ସେଇ ମୁସଲମାନ ପିଲାଟି ମୋ ପାଖକୁ ପ୍ରଥମ କରି ଆସିଲା । ଏବଂ ମୋ କାନ୍ଧରେ ହାତ ପକାଇ କହିଲା—ତୁମ ନାଁ ନୀଳମଣି ? ମୁଁ କହିଲି—ହଁ । ସେଇଠୁ ସେ ତା' ନାଁ କହି ମତେ ପଦାକୁ ଯିବାକୁ ଡାକିଲା । ମୁଁ ତା' କଥାରେ ସମ୍ମୋହିତ ହୋଇଗଲି । ସନାଉଲ୍ଲା ଦେଖିବାକୁ ଥିଲା ଖୁବ୍ ଗୋରା ଓ ସୁନ୍ଦର ଗଢ଼ଣ । ମୋଠାରୁ ବେଶ୍ ଡେଙ୍ଗା । ସେ ଗୋଟିଏ ବିଚିତ୍ର ଧରଣର ପଞ୍ଜାବି ଓ ପାଇଜାମା ପିନ୍ଧିଥାଏ । ଏବଂ ସବୁଠାରୁ ଆକର୍ଷଣୀୟ ଥାଏ ତା'ର ମୁଣ୍ଡରେ ଚୁମ୍ବିକାମ ଥିବା ଧଳା ଟୋପିଟିଏ । ମୁଁ ସେଇ ସୁନ୍ଦର ଚେହେରା ଓ ପଞ୍ଜାବି, ପାଇଜାମା, ଟୋପି ଦେଖି ଖୁବ୍ ସମ୍ମୋହିତ ହୋଇ ତା' ସାଙ୍ଗରେ କ୍ଲାସରୁ ପଦାକୁ ବାହାରି ଗଲି । ପ୍ରଥମେ ଆମେ ସ୍କୁଲ ପଛପଟେ ଥିବା ଆମ୍ବଗଛ ମୂଳକୁ ଗଲୁ । ସନାଉଲ୍ଲା ମତେ ତା' ପକେଟରୁ ଗୋଟିଏ ସୁନ୍ଦର ଜିନିଷ କାଢ଼ି ଖାଇବାକୁ ଦେଲା । ସିଲେଟ କମଳାର ଖୁବ୍ ଶ୍ରେଷ୍ଠ ଚକୁଡ଼ାଟିଏ ଭଳି ତାହା ଦିଶୁଥାଏ । ମୁଁ ତାକୁ ପାଟିରେ ପକାଇ ଦେଇ ତା'ର ଅପୂର୍ବ ସ୍ୱାଦୁ ଅନୁଭବ କଲି । ଠିକ୍ କମଳା ଲେମ୍ବୁର ବାସନା ଓ ସ୍ୱାଦ । ସନାଉଲ୍ଲା କହିଲା—ତାକୁ ସେମିତି ମଡ଼ ମଡ଼ କରି ଚୋବାଇ ଖାଅନା । ଚୋଷି ଚୋଷି ଖାଅ । ତା' ମଜା ପାଇବ । ଏହାକୁ କହନ୍ତି—ଲେମନ୍-ଡ୍ରପ୍ । ଏଠି ଏ ଜିନିଷ ମିଳେନା । କଟକରେ ମିଳେ । ମୋର ଫୋପା (ମଉସା) ଆଣିଥିଲେ । ସେଇଠୁ ସେ ମତେ କେତେକ କିସିମିସ ମଧ୍ୟ ଖାଇବାକୁ ଦେଲା । କିସିମିସ ମୋ ପକ୍ଷରେ ନୂଆ ନ ଥିଲା । ତା'ପରେ କ୍ରମଶଃ ସେ ତା' ବିରାଟ ରହସ୍ୟମୟ ପକେଟରୁ ବହୁ ଚମତ୍କାର ଖାଇବା ଜିନିଷ ବାହାର କରି ମତେ ଖୁଆଇଲା । କିସିମିସ ତକ ଶେଷ କରି ଆମେ ଖଜୁରି କୋଳି ଖାଇଲୁ । ତା'ପରେ ବଡ଼ ମିଠା ବରକୋଳି ମଧ୍ୟ ସେ ମତେ ଦୁଇଟା ଦେଲା । ମୁଁ ଖୁବ୍ ଆନନ୍ଦରେ ସେତକ ଖାଇଲାବେଳେ ସନାଉଲ୍ଲାକୁ ମୋର ଜଣେ ନୂତନ ବନ୍ଧୁ ଭାବେ ମନ ଭିତରେ ଗ୍ରହଣ କରିନେଲି । ଏବଂ ତା' ପ୍ରତି କ୍ରମଶଃ ମୋର ଆକର୍ଷଣ ସେଇଦିନୁଁ ବଢ଼ି

ବୁଲିଲି । ତା'ର ମୁଖ୍ୟ କାରଣ ଥିଲା ଯେ ସନାଉଲ୍ଲା ଧର୍ମରେ ମୁସଲମାନ । ଆଗରୁ ମୋର କୌଣସି ମୁସଲମାନ ବନ୍ଧୁ ନ ଥିଲେ । ହିନ୍ଦୁ ସାଙ୍ଗମାନଙ୍କଠାରୁ ଏହି ଯବନ ବନ୍ଧୁଟିର ବହୁ ବିଚିତ୍ର ଓ ବିଶେଷ ଗୁଣ ମଧ୍ୟ ଥିଲା । ଏବଂ ତା'ର କଥା କହିବା ଭଙ୍ଗୀ, ତାର ଉଚ୍ଚାରଣ ଭଙ୍ଗୀ ଏବଂ ଉର୍ଦ୍ଦୁମିଶା ଓଡ଼ିଆ ମତେ ଖୁବ୍ ଭଲ ଲାଗିଲା । ଏ ସବୁ ବ୍ୟତୀତ ସନାଉଲ୍ଲା ତା' ଘରୁ ପ୍ରତିଦିନ କିସିମିସ, ଖଜୁର ନଚୁବା ଲେମନ-ଚୁଷ ଆଣି ନିଜେ ଖାଉଥିଲା ଓ ମତେ ମଧ୍ୟ ଦେଉଥିଲା । ସେ ମୁସଲମାନ ପିଲା ବୋଲି ତା' ସଙ୍ଗେ ହିନ୍ଦୁ ପିଲାମାନେ ବେଶି ଘନିଷ୍ଠ ଭାବେ ମିଶୁ ନ ଥିଲେ । ସେମାନଙ୍କ ମନ ଭିତରେ ଜାତି ଯିବା ଭୟ ଓ ଘୃଣାଭାବ ଥିଲା । ତେଣୁ ସନାଉଲ୍ଲା ମୋର ଅତି ଅନ୍ତରଙ୍ଗ ହୋଇ ଉଠିଲା । ତା' ଛଡ଼ା ସନାଉଲ୍ଲାଠାରୁ ମୁଁ ଗୋଟିଏ ନୂଆ ବିଦ୍ୟା ମଧ୍ୟ ଶିଖିଲି । ତା' ହେଲା—ବନ୍‌ଶୀ ପକାଇ ମାଛ ଧରିବା । ବହୁବାର ଅତ୍ୟନ୍ତ ଉତ୍ସାହରେ ମୁଁ ତା' ସାଙ୍ଗେ ଓପରଓଳ ହାଟ ପୋଖରୀକୁ ଯାଇ ବନ୍‌ଶୀ ପକାଏ ଏବଂ କ୍ରମଶଃ ପାଇଁ ବନ୍‌ଶୀ ପକାଇ ମାଛ ଧରିବା ଗୋଟେ ମୋର ନିଶା ହୋଇଗଲା । ଆଉ ଗୋଟିଏ କଥା ମଧ୍ୟ ମୁଁ ତା'ଠାରୁ ଶିଖିଲି । ତାହା ହେଲା—ଗୁଡ଼ି ତିଆରି କରି ସୂତାରେ ମାଞ୍ଜା ଦେଇ ଗୁଡ଼ି ଉଡ଼ାଇବା । ତା'ଛଡ଼ା ସନାଉଲ୍ଲା କୁଆଡ଼େ ମଝିରେ ମଝିରେ ତା'ର ବେପାରୀ ଫୋଫା (ମଉସା) ସଙ୍ଗେ କଟକ ଯାଇ ବାୟସ୍କୋପ କମ୍ପା ସର୍କସ ଦେଖି ଆସିଥାଏ ଏବଂ ସେସବୁ କଥା ମୋ ଆଗରେ ଗପିବା ଫଳରେ ମୁଁ ତା'ଠାରୁ ଅନେକ ନୂତନ ଜ୍ଞାନ ପାଇ ଆହୁରି ତାକୁ ପସନ୍ଦ କରିବାକୁ ଲାଗିଲି ଏବଂ ସବୁ ଗୁଡ଼ୁଚୁଡ଼ ଓ ସମସ୍ତଙ୍କୁ ଗୁଡ଼ୁଚୁଡ଼ ଦେଇ କେବଳ ତା'ରି ସଙ୍ଗେ ମିଶିଲି ଓ ବୁଲିଲି । ଏଥିରେ ପରମବନ୍ଧୁ ମାୟାଧର ବଡ଼ କ୍ଷୁର୍ଣ୍ଣ ହେଲା—ଏବଂ ସେ ମତେ ଦି' ଚାରିଥର ମଧ୍ୟ ଚେତାଇ ଦେଲା—ଦେଖ୍ ! ପଠାଣଙ୍କୁ ବିଶ୍ୱାସ ନାହିଁ । ତା ସାଙ୍ଗେ ଏତେ ମିଶ୍‌ନା । କେବେ ତୋତେ ଛୁରୀ ମାରିଦେବ ।

କିନ୍ତୁ ମାୟାଧର କଥାକୁ ମୁଁ ଆଦୌ କାନକୁ ନଏ ନାହିଁ । ସନାଉଲ୍ଲାର ସୁନ୍ଦର ଗୋରା ଉଜଳ ଡାଉଲ ଚେହେରା—ପୁଣି ତା'ର

ମତେ ପ୍ରତିଦିନ ଏତେ ସୁନ୍ଦର ସୁନ୍ଦର ଉପହାର—ସେ ମୋତେ ଦିନେ ଛୁରି ମାରିଦେବ—ଏ କଥାଟାକୁ ମୁଁ ଜମା ବିଶ୍ୱାସ କରି ପାରୁ ନ ଥାଏ । ଛୁରି କାହିଁ ସେ ମୋତେ ମାରିବ ? ମୁଁ ସିନା ତା’ ସାଙ୍ଗେ କେବେ କଳିକଜିଆ କଲେ ସେ ପରିସ୍ଥିତି ସୃଷ୍ଟି ହେବ ? ମାସ୍ୱାଧରର ସେଇ ଚେତାବନୀକୁ ମୁଁ ଈର୍ଷା ବୋଲି ଭାବିଲି । ଅବଶ୍ୟ ଈର୍ଷା ଶବ୍ଦଟି ମୁଁ ସେତେବେଳ ଯାଏ ବୁଝି ନ ଥିଲି । କିନ୍ତୁ ତା’ର କ୍ରିୟା ପ୍ରତିକ୍ରିୟା ବୁଝିବାରେ ମୋର ଅସୁବିଧା ନ ଥିଲା ।

କିନ୍ତୁ ମୁସଲମାନଙ୍କ ପ୍ରତି ମୋର ସନ୍ଦେହ, ଅବିଶ୍ୱାସ, ଘୃଣା ଓ କ୍ରୋଧ ମୋର ରକ୍ତଗତ ଥିଲା ଏବଂ ଇତିହାସର କେତେକ ବିଷୟ ମଧ୍ୟ ମୁଁ ସେତେବେଳକୁ ପଢ଼ି ସାରିଥିଲି । ରାଜପୁତ୍, ମରହଟ୍ଟା ଓ ପଞ୍ଜାବୀ ଶିଖମାନେ କପରି ଏଇ ଦୁର୍ଦ୍ଧର୍ଷ ନୃଶଂସ, ହିନ୍ଦୁ-ବିରୋଧୀ ପଠାଣମାନଙ୍କୁ ଜବତ କରିଥିଲେ ତାହା ମଧ୍ୟ ମୁଁ ଜାଣିଥିଲି । ତା’ଛଡ଼ା ଆମ ଗାଁରେ ଓ ଘରେ ସଦାସର୍ବଦା ମୁସଲମାନମାନଙ୍କ ନୃଶଂସତା ସମ୍ବନ୍ଧେ ଅନ୍ୟମାନେ ମଧ୍ୟ କଥାବାର୍ତ୍ତା ହେଉଥିଲେ । ଅଥଚ ଆମ ଗାଁରେ ଥିଲା ଖୁବ୍ ବଡ଼ ଗୋଟାଏ ମୁସଲମାନ ବସ୍ତି । ସେତେବେଳେ ସତକୁ ସତ ଆମ ଗାଁରେ ମୁସଲମାନମାନେ ବଡ଼ ବଳପୂର୍ବା ଥିଲେ । କଥା କଥାକେ ମାଡ଼ ମାରିବା—ଛୁରି ମାରିବା—କମ୍ବା ଫଉଜଦାରି ପାଇଁ ପ୍ରସ୍ତୁତ ହୋଇଯିବା ଥିଲା ସେମାନଙ୍କର ସ୍ୱଭାବ । ମୋର ସେମାନଙ୍କ ପ୍ରତି ବିରାଗର ଅନ୍ୟତମ ହେତୁ ହେଲା—ସେମାନଙ୍କ ଭିତରୁ ବହୁ ଲୋକଙ୍କର ମୁଣ୍ଡଟିମାନ ଥିଲା ଲଣ୍ଡା—କିନ୍ତୁ ଗାଲରେ ଥିଲା ଭୟଙ୍କର ଦାଢ଼ି । ଆଉ ଗୋଟିଏ କାରଣ ହେଲା—ସେମାନେ ଗୋରୁ ମାରି ଖାନ୍ତି । ଅଥଚ ଗୋରୁ ଆମର ଦେବତା । ଗୋରୁଙ୍କ ପ୍ରତି ମମତା ଓ ଭକ୍ତି ଆମର ରକ୍ତଗତ । କିନ୍ତୁ ପିଲାଦିନେ ମୁଁ ଦେଖିଛି—ଆମ ଗାଁର ହିନ୍ଦୁମାନେ ଗୋରୁ ବୁଢ଼ା ହଡ଼ା ହୋଇଗଲେ ପଠାଣଙ୍କୁ ବିକି ଦିଅନ୍ତି । ସେ ଯାହାହେଉ—ଏକ ବିରାଟ ପଠାଣବସ୍ତି ଆମ ଗାଁରେ ଥିଲେ ବି—ଏବଂ ଆମର ଜଣେ ପଠାଣ ପିଆଦା ଥିଲେ ବି ପଠାଣଙ୍କ ପ୍ରତି ମୋର ମନୋଭାବ ଆଦୌ ଭଲ ନ ଥିଲା—ସେମାନେ ରକ୍ତମୁଖା ଉଗ୍ର ହିଂସ୍ର ମଣିଷ ବୋଲି ମୋର

ଧାରଣା ଦୃଢ଼ ହୋଇ ଯାଇଥିଲା । ତେଣୁ ପଠାଣଟିଏ ଦେଖିଲେ—ଆମେ ପିଲାମାନେ ଭୟରେ ଲୁଚି ଯାଉଥିଲୁ । ବିଶେଷତଃ, ସିକନ୍ଦର ବୋଲି ଜଣେ ପଠାଣ ଥିଲା—ତା'ର ଥିଲା ଭୟଙ୍କର ବଡ଼ ବଡ଼ କଳା ଦାଢ଼ି ଏବଂ ତା'ର ଆଖି ଦୁଇଟା ଥିଲା ଗୋଲ ଗୋଲ ଓ ବାଘ ଆଖି ଭଳି ସ୍ୱଚ୍ଛ । ଲୋକଟା ଥିଲା ଖୁବ୍ ପତଳା । କିନ୍ତୁ ସେ ଚାଲିଲା ବେଳେ, ତା'ର ମୁଣ୍ଡଟା ବାରମ୍ବାର ତା'ର ଛାତି ଆଡ଼କୁ ସାମାନ୍ୟ ଝୁଙ୍କିପଡ଼ ପୁଣି ଉଠି ଯାଉଥିଲା । ସେ ମଧ୍ୟ ଆମ ଭଳି ପିଲାଙ୍କୁ ଦେଖିଲେ ଟିକିଏ ଗାରେଡ଼େଇ ଚାହିଁ ଦେଉଥିଲା । ସେତିକରେ ଆମର ପିଳେହି ପାଣି କିନ୍ତୁ ପରେ ଜାଣିଲି ଯେ, ସିକନ୍ଦର ଲୋକଟି ଆଦୌ ହିଂସ୍ର ନ ଥିଲା । ବରଂ ସେ ଥିଲା ଖୁବ୍ ରହସ୍ୟପ୍ରିୟ—ଆଉ କୌତୁକ କଥା ଓ ନକଲ କରିବାରେ ଓସ୍ତାଦ । ପଠାଣଙ୍କ ପ୍ରତି ଏଇ ବିସଦୃଶ ସନ୍ଦେହ ଓ ଭୟ ଯୋଗୁଁ ମୁଁ ଏକୁଟିଆ ଦିନ ବି' ପ୍ରହରରେ ବି ପଠାଣବସ୍ତି ଆଡ଼େ ଯାଉ ନ ଥିଲି ।

ଆମ ଗାଁରେ ଯେମିତି ମୁସଲମାନ ବସ୍ତି ଥିଲା ସେମିତି ମଧ୍ୟ ପ୍ରାଚୀନଦୀ କୂଳରେ ବଣ ଭିତରେ ପାନାସିଂହପାଟଣା ବୋଲି ଆଉ ଗୋଟିଏ ବସ୍ତି ଥିଲା । ସେଇ ବସ୍ତିକୁ ଆମେ ସିଂହ ସାଇ ବୋଲି କହୁଥିଲୁ । ତା'ର ଅଧିବାସୀମାନେ ଥିଲେ ରାଜପୁତ କ୍ଷତ୍ରିୟ ଏବଂ ସମସ୍ତଙ୍କ ଉପାଧି ଥିଲା ସିଂହ । ସେମାନେ ଖୁବ୍ ଦୁଃସାହସୀ, ବଳବାନ ଓ ଆତ୍ମମର୍ଯ୍ୟାଦାବନ୍ତ ଥିଲେ । ସେ ସାଇର ସବୁ ଟୋକାଯାକ ଲାଠି ଖେଳ ଜାଣିଥିଲେ ଓ ନିଆଁରେ ବନାଟି ବୁଲାଇ ଜାଣିଥିଲେ । ଫଗୁଖେଳ ବା ଖଣ୍ଡା ଓ ଛୁରୀ ଖେଳରେ ମଧ୍ୟ ଥିଲେ ସେମାନେ ମହା ଓସ୍ତାଦ । ସେ ସାଇର ସମସ୍ତଙ୍କର ନାକ ତଳେ ବାଙ୍କୁଆ ନିଶ ଥିଲା । ଏବଂ ସମସ୍ତଙ୍କର ଶରୀର ଖୁବ୍ ସୁନ୍ଦର ସବଳ ପେଶୀଯୁକ୍ତ ଥିଲା । ସେମାନଙ୍କୁ ଦେଖିଲେ କ୍ଷତ୍ରିୟ ଶବ୍ଦର ଐତିହାସିକ ଅର୍ଥ ବେଶ ବୁଝା ପଡ଼ ଯାଉଥିଲା । ସେ ସାଇରେ ମଧ୍ୟ କେହି କେହି ବନ୍ଧୁକ ରଖିଥିଲେ ଏବଂ ମୁଁ ପିଲାଦିନୁ ଲକ୍ଷ୍ୟ କରି ଆସିଛି ଯେ ଏହି ଦୁର୍ଦ୍ଧର୍ଷ ରାଜପୁତମାନେ ହିଁ ସେତେବେଳେ ଆମ ଗାଁର ଦୁର୍ଦ୍ଦଣ୍ଡ ପଠାଣମାନଙ୍କୁ ଜବତ କରି ରଖିଥିଲେ । ତା' ନ ହେଲେ —ଆମ ଗାଁର ଆମଭଳି ବ୍ରାହ୍ମଣ, କରଣ, ଗୁଡ଼ିଆ, ତେଲି ଓ କୃଷିଜୀବୀ-ମାନେ ପଠାଣଙ୍କ ଅତ୍ୟାଚାରରେ ଆଉ ରହି ପାରି ନ ଥାନ୍ତେ ! ଅବଶ୍ୟ

ଆମ ନିଜ ଘର କଥା ସ୍ୱତନ୍ତ୍ର । ଆମେ ତ ଥିଲୁ ସେତେବେଳେ ଜମିଦାର ମକଦ୍ଦମ ଘର । ଏବଂ ଆମର ଭୂମିକା ଥିଲା ଗ୍ରାମରେ ଅନ୍ୟ ପ୍ରକାର । ପଠାଣମାନେ ଆମକୁ ଅବଶ୍ୟ ଖୁବ୍ ସମୀହ କରୁଥିଲେ । କିନ୍ତୁ ଅନ୍ୟମାନେ ସମସ୍ତେ ମନ ଭିତରେ ପଠାଣଙ୍କୁ ଡରିଡରି ରହୁଥିଲେ । ଯଦିଓ ହିନ୍ଦୁ-ମାନଙ୍କ ସଂଖ୍ୟା ତୁଳନାରେ ସେମାନଙ୍କର ସଂଖ୍ୟା ଥିଲା ଅତି ନଗଣ୍ୟ । ସେ ଯାହାହେଉ, ଆମ ଗାଁର ମାତ୍ର ଗୁଡ଼ିଏ ପରିବାର ଘର ରାଜପୁତ କ୍ଷତ୍ରିୟମାନଙ୍କ ଯୋଗୁଁ ସେତେବେଳେ ପଠାଣମାନଙ୍କ ପ୍ରାଦୁର୍ଭାବରୁ ହିନ୍ଦୁମାନେ ବହୁ ପରିମାଣରେ ରକ୍ଷା ପାଉଥିଲେ । ଏଥିପାଇଁ ଆମ ପିଲାମାନଙ୍କ ଭିତରେ ପଠାଣମାନଙ୍କ ସମ୍ବନ୍ଧେ ବହୁ ସତ-ମିଛ ତଥ୍ୟ ଆଲୋଚନା ହେଉଥିଲା ବହୁ ସମୟରେ ।

ମୋର ଚତୁର୍ଥ ଶ୍ରେଣୀ ବେଳକୁ ମୁଁ ବଙ୍ଗଳା ଭାଷା ଶିଖି ଯାଇଥିଲି । ଏବଂ ମୋର ସାନକକେଇ କେତେକ ବଙ୍ଗଳା ବହି ପଢ଼ୁ-ଥିଲେ । ସେଗୁଡ଼ିକ ଥିଲା ପିଲାମାନଙ୍କ ଉପଯୋଗୀ । ତା' ଭିତରେ ଶିବାଜୀ, ଗୁରୁଗୋବିନ୍ଦ ସିଂହ, ରାଣାପ୍ରତାପ, ତେଜବାହାଦୂର, ଛତ୍ରସାଲ ପ୍ରଭୃତିଙ୍କ ସମ୍ବନ୍ଧେ କେତେକ ବହି ଥିଲା । ମୁଁ ସେ ସବୁ ପଢ଼ି ଦେଇଥିଲି । ଏବଂ ତା' ଫଳରେ ମୁସଲମାନଙ୍କ ପ୍ରତି ମୋର ଘୋର ବିଦ୍ୱେଷ ଭାବ ବଢ଼ି ଯାଇଥିଲା । ସେଥିଲାଗି ମୁଁ ଆମ ଗାଁର ରାଜପୁତ-କ୍ଷତ୍ରିୟମାନଙ୍କୁ ଖୁବ୍ ଭଲ ପାଉଥିଲି । ମଧ୍ୟ ଖୁବ୍ ମାନ୍ୟ କରୁଥିଲି । ସେମାନେ ଯଦି କୋଉଠି ପଠାଣମାନଙ୍କର ସାମାନ୍ୟ ଅତ୍ୟାଚାର କଥା ଶୁଣୁଥିଲେ—ତା' ହେଲେ ସାଙ୍ଗେ ସାଙ୍ଗେ ଉତ୍ତ୍ୟକ୍ତ ହୋଇ ଠେଙ୍ଗା-ବାଡ଼ି-ଖଣ୍ଡା-ବର୍ଚ୍ଛା ଧରି ଫଉଜଦାରୀ ପାଇଁ ତତ୍ପର ହୋଇ ଯାଉଥିଲେ । ସେଥିଲାଗି ମୋ ପିଲାଦିନେ ଆମ ଗାଁରେ ପଠାଣ ଓ ରାଜପୁତମାନଙ୍କ ଭିତରେ ଅହି-ନକୁଳ ସମ୍ପର୍କ ଥିଲା । ସାମାନ୍ୟ ଟିକିଏ ସୁଯୋଗ ବା ଦୁର୍ଯୋଗ ପାଇଲେ ଜଣେ ପଠାଣ ଓ ଜଣେ ରାଜପୁତ ଭିତରେ ଦ୍ୱନ୍ଦ୍ୱଯୁଦ୍ଧ ଲାଗି ଯାଉଥିଲା । ଦିନକର ମଜା କଥାଟିଏ ମୋର ଏବେ ବି ସୁନ୍ଦର ମନେଅଛି । ଦଶହରାରେ ଆମ ଗାଁରେ ପ୍ରତିବର୍ଷ ବାଘନାଚ କମ୍ପା ବାଘ ନାଚଯାତ୍ରା ହେଉଥିଲା । ଏବଂ ସେ ଯାତ୍ରା ଦେଖିବା ଲାଗି ଦର୍ଶକମାନଙ୍କ

ପାଇଁ ସ୍ବତନ୍ତ୍ର ବ୍ୟବସ୍ଥା ଥିଲା । ସ୍ତ୍ରୀଲୋକ ଓ ପଠାଣମାନଙ୍କ ଲାଗି ବସିବାର ପୃଥକ୍ ଜାଗା ନିର୍ଦ୍ଦିଷ୍ଟ ଥିଲା । ବର୍ଷେ ଥରେ ଯାତ୍ରାବାଲା ଗୋଟିଏ ଐତିହାସିକ ନାଟକ କରୁଥିଲେ । ସେଥିରେ ଜଣେ ପଠାଣ ନବାବ ସାଙ୍ଗେ ଜଣେ ହିନ୍ଦୁ ରାଜାର ବିବାଦ ଏବଂ ଶେଷରେ ଯୁଦ୍ଧ ହେଲା । ମଝିରେ ପଠାଣ ନବାବ ଓ ତା'ର କେତେକ ସେନା-ସାମନ୍ତ ଦ୍ୱାରା କେତୋଟି ହିନ୍ଦୁ ସ୍ତ୍ରୀଲୋକଙ୍କ ଉପରେ ଅତ୍ୟାଚାରର ଦୃଶ୍ୟ ମଧ୍ୟ ଥିଲା । ଏହା ଦେଖିବା ବେଳେ ମୁସଲମାନ ଦର୍ଶକମାନେ ଆନନ୍ଦରେ କରତାଳି କରୁଥାନ୍ତି ଏବଂ ଅନ୍ୟ ହିନ୍ଦୁ ଦର୍ଶକମାନେ ନୀରବରେ କାବୁଲ୍ ହୋଇ ବସିଥାନ୍ତି । କିନ୍ତୁ ରାଜପୁତ ଦର୍ଶକମାନେ ଉତ୍ତେଜନାରେ ସଁ ସଁ ହେଉ-ଥାନ୍ତି । କେହି କେହି ନିଜ ଜଙ୍ଘ ଓ ବାହୁ ଉପରେ ବାରମ୍ବାର ଚପେଟାଘାତ କରୁଥାନ୍ତି ଏବଂ କେହି କେହି ଉତ୍ୟକ୍ତ ହୋଇ ଠେଙ୍ଗା ଧରି ଠିଆ ହୋଇ ପଡ଼ୁଥାନ୍ତି ମଧ୍ୟ । ଗାଁର କେତେକ ସ୍ୱେଚ୍ଛାସେବକ ସେମାନଙ୍କୁ ବୁଝାଇ ସୁଝାଇ ବସାଉଥାନ୍ତି । ଏବଂ ଏହା ଯେ ଗୋଟିଏ ନାଟକ ମାତ୍ର—ଏକଥା ସେମାନଙ୍କୁ ବାରମ୍ବାର କହିବାକୁ ପଡ଼ୁଥାଏ । ଏହି ସମୟରେ ନାଟକର ଅଗ୍ରଗତିରେ ସେହି ହିନ୍ଦୁରାଜା ଓ ପଠାଣ ନବାବ ଭିତରେ ଘୋର ଯୁଦ୍ଧ ହେଲା । ପଠାଣ ନବାବଟି ହିନ୍ଦୁ ରାଜାର ସୁନ୍ଦରୀ ଝିଅଟିକୁ ଜବରଦସ୍ତି ନେଇ ସାହା ହେବ ବୋଲି ବନ୍ଦୀକରି ରଖିଥାଏ । ତାକୁ ମୁକ୍ତ କରିବା ଲାଗି ଯୁଦ୍ଧ ହେଲା । ଖୁବ୍ ଜୋରରେ ଡ୍ରମ୍, ବିଗୁଲ୍ ପ୍ରଭୃତି ଯୁଦ୍ଧବାଜା ବାଜି ଉଠିଲା—ଏବଂ ପଠାଣ ଟୋପିପିନ୍ଧା ନବାବ ଓ ତାଙ୍କର ସେନାବାହିନୀ ସହ—ହିନ୍ଦୁରାଜା ଓ ତାଙ୍କର ସେନାଙ୍କ ମଧ୍ୟରେ ଘୋରତର ଯୁଦ୍ଧ ଲାଗିଗଲା । ଯୁଦ୍ଧ ଭିତରେ ହିନ୍ଦୁ-ରାଜାର ସେନାପତି ପଠାଣ ସେନାପତି ହାତରେ ହାଣ ଖାଇଲା ଏବଂ ଅନେକ ହିନ୍ଦୁସେନା ମୃତାହତ ହୋଇ ତଳେ ଗଡ଼ିଲେ ଏବଂ ତାଙ୍କର ମୂର୍ଖ ପେଟୁ ବିଦୂଷକଟି କେବଳ ହୃଷ୍ଟ ହୋଇ କମ୍ପୁଥାଏ ଏବଂ ବାଜା-ବାଲାଙ୍କ ମଝିରେ ଆସି ଲୁଚୁଥାଏ । ଶେଷରେ ସ୍ୱୟଂ ହିନ୍ଦୁରାଜା ଓ ପଠାଣ ନବାବଙ୍କ ମଧ୍ୟରେ ମୁହାଁମୁହିଁ ଖଣ୍ଡାଯୁଦ୍ଧ ଚାଲିଲା । ହିନ୍ଦୁରାଜାର ଆଉ ବେଶି ସୈନ୍ୟ ବଞ୍ଚି ନ ଥାନ୍ତି । ତଥାପି ହିନ୍ଦୁରାଜା ଖୁବ୍ ସାହସରେ ଯୁଦ୍ଧ କରୁଥାନ୍ତି । ବେଳେ ବେଳେ ହିନ୍ଦୁରାଜା ପଠାଣ ନବାବ ପଛରେ

ଖଣ୍ଡା ଧରି ଗୋଡ଼ାଉଥାନ୍ତି—ପୁଣି ବେଳେ ବେଳେ ପଠାଣ ନବାବ ମଧ୍ୟ ହିନ୍ଦୁ ରାଜା ପଛରେ ଖଣ୍ଡାଧରି ଗୋଡ଼ାଉଥାନ୍ତି। ଏମିତି ବହୁ ବେଳଯାଏ ଯୁଦ୍ଧ ଚାଲିଲା। ହଠାତ୍ ନାଟକୀୟ ଭାବେ ହିନ୍ଦୁ ରାଜାଙ୍କର ଏକମାତ୍ର କିଶୋର ବୟସର ପୁତ୍ର ବୀର ଯୋଦ୍ଧାବେଶରେ ଖଣ୍ଡା ଧରି ଯୁଦ୍ଧକ୍ଷେତ୍ରରେ ପ୍ରବେଶ କଲେ ଓ ପଠାଣ ନବାବ ଉଦ୍ଦେଶ୍ୟରେ ବହୁ କଟୂକ୍ତିଥା ବଚନକୀ ଝାଡ଼ ଖଣ୍ଡା ବୁଲାଇ ବାପାଙ୍କ ସପକ୍ଷରେ ପଠାଣ ବିରୁଦ୍ଧରେ ଲଢ଼ିବାକୁ ଲାଗିଲେ। ଓଃ ! କି ଭୟଙ୍କର ଯୁଦ୍ଧ ! ସେ ରଜା ଟୋକାଟା ଖୁବ୍ ଜୋରରେ ଖଣ୍ଡା ବୁଲାଇ ପଠାଣ ନବାବଙ୍କ ଆଡ଼କୁ ଚଢ଼ିକି ଯାଉଥାଏ । ଦୁଇଗୁଣ ଜୋରରେ ଯୁଦ୍ଧବାଜା ବାଜି ଉଠିଲା । ରାଜପୁତ୍ରଙ୍କ ହାତରେ ବହୁ ପଠାଣ ସେନା ମରି ତଳେ ପଡ଼ିଲେ ଓ ମୃତ୍ୟୁ ଯନ୍ତ୍ରଣାରେ 'ୟାଃ ଆଲ୍ଲା, ୟାଃ ଆଲ୍ଲା' ବୋଲି ତଳେ ଗଡ଼ଚଡ଼ି ଚିତ୍କାର ଛାଡ଼ିଲେ । ଇତି ମଧ୍ୟରେ ପଠାଣ ନବାବଙ୍କ ହାତ ମଧ୍ୟ ଅବଶ ହୋଇ ଆସିଲା ଏବଂ ଦେଖାଗଲା ଯେ ସେ ଆଉ ଭଲଭାବେ ଖଣ୍ଡା ବୁଲାଇ ପାରୁ ନାହାନ୍ତି । ପଠାଣ ସୈନ୍ୟମାନେ ଛତ୍ରଭଙ୍ଗ ଦେବାକୁ ଆରମ୍ଭ କଲେ ଏବଂ ଠିକ୍ ସେଇ ସମୟରେ ମୁସଲମାନ ଦର୍ଶକ ଉତ୍ତେଜିତ ହୋଇ ଲାଠିଧରି ଠିଆହୋଇ ପଡ଼ିଲେ ଏବଂ କେତେଜଣ 'ଆଲ୍ଲା ହୋ ଆକବର' ଧ୍ୱନି ଦେଇ ହିନ୍ଦୁରାଜା ସଙ୍ଗେ ଲଢ଼ିବାକୁ ଯାତ୍ରା ଭିତରକୁ ଡେଇଁ ପଡ଼ିଲେ। ଏହା ଦେଖିବା ମାତ୍ରେ ରାଜପୁତ ଦର୍ଶକମାନଙ୍କ ଭିତରୁ 'ବଂ ବଂ ଭୋଲାନାଥ' ଧ୍ୱନିଦେଇ ଠେଙ୍ଗା ଧରି କେତେକ ରାଜପୁତ ଯୁବକ ମଧ୍ୟ ଯାତ୍ରା ଭିତରକୁ ଡେଇଁ ପଡ଼ିଲେ ଏବଂ ସେଇ ଦୁଇଦଳଙ୍କ ଭିତରେ ଖଣ୍ଡେ ଫଉଜଦାରି ହୋଇଗଲା। ଯାତ୍ରା ଭାଙ୍ଗିଗଲା। ଯେ ଯୁଆଡ଼େ ପଳାଇଲେ ଅଚେତ ହୋଇ। ଯାତ୍ରାବାଲାମାନେ ମଧ୍ୟ ବାଦ୍ୟଯନ୍ତ୍ରାଦି ଛାଡ଼ି ପଳାଇଲେ। ଏବଂ ଉଭୟେ ହିନ୍ଦୁରାଜା, ତସ୍ୟ ପୁତ୍ର ଏବଂ ପଠାଣ ନବାବ ମଧ୍ୟ ପ୍ରାଣବିକଳରେ ଦଉଡ଼ ଲାଗିଲେ । ଏବଂ ସେମାନଙ୍କ ପିଛା ଆମର ଠେଙ୍ଗାଧାରୀ ରାଜପୁତ ଓ ପଠାଣ ଦର୍ଶକମାନେ ବଂ ବଂ ଭୋଳା ଶଙ୍କର ଏବଂ ଆଲ୍ଲା ହୋ ଆକବର ନାଦକରି ଗୋଡ଼ାଇଲେ।

ଏମିତି ପାଳିଲା ସେଦିନର ରାତି । ତେଣୁ ମୋ ପିଲାଦିନେ ମୁସଲମାନମାନଙ୍କ ସମ୍ପର୍କରେ ମୋର ଯାହା ଧାରଣ ହୋଇଥିଲା— ତାହା ଏମିତି ବହୁ ସାନବଡ଼ ଘଟଣାରୁ ଦୃଢ଼ ହୋଇ ଯାଇଥିଲା ।

ଏବେ ସନାଭୁଲ୍ଲାକୁ ଦୋସ୍ତରୂପେ ପାଇ ମୋ ଜୀବନରେ ନୂଆ କଥାଟିଏ ହେଲା । ମୁଁ ତା' ମାଧ୍ୟମରେ ପଠାଣମାନଙ୍କୁ ଅଧିକ ସଙ୍ଗତ ଭାବେ ବୁଝିବାକୁ ସୁଯୋଗ ପାଇଲି । ମୁଁ ଜମା ବସ୍ତିକୁ ଯାଉ ନ ଥିଲି । ମାତ୍ର ସନାଭୁଲ୍ଲା ମତେ ତାଙ୍କ ଘରକୁ ନେଲା । ତାଙ୍କ ଘରେ ନାସ୍ତା ଖାଇଲି । ତା'ର ବାପା-ମାଆ ମତେ ଖୁବ୍ ସ୍ନେହ ଆଦର ଦେଖାଇଲେ । କ୍ରମଶଃ ସନାଭୁଲ୍ଲା ଜରିଆରେ ମୁଁ ବସ୍ତିର ଆଉ କେତେକ ପିଲାଙ୍କ ସହ ପରିଚିତ ହେଲି । କଲୁ ଲାଲୁ, ରହେମତ, ଓଲି, କେରାମତ୍ ପ୍ରଭୃତି ଟୋପିପିନ୍ଧା ପଠାଣପିଲାମାନେ ମୋର ଦୋସ୍ତ ହେଲେ । ମୁଁ ସେମାନଙ୍କ ସଙ୍ଗେ ବାଟି ଖେଳିଲି । ଗୁଡ଼ି ଉଡ଼ାଇଲି । ବନଶୀ ପକାଇ ମାଛ ଧରିଲି । ସନାଭୁଲ୍ଲା ମୋ ଉପରେ ଏତେ ପ୍ରଭାବ ବିସ୍ତାର କଲା ଯେ, ମୁଁ ଦିନେ ତା' ଘରେ କୁକୁଡ଼ା ଅଣ୍ଡାରେ ତିଆରି ପିଠା ଖାଇଲି । ସନାଭୁଲ୍ଲା କ୍ରମଶଃ ମୋର ଜାତି ନେଇଗଲା । ଶେଷକୁ ମୁଁ ତା ଘରେ ଦିନେ ଖାସି ତର୍କାରୀ ଲଗାଇ କଲେଇ ଛଡ଼ା ଲୁହା ବାସନରେ ପରଟା ବି ଖାଇଲି । କେବଳ ସନାଭୁଲ୍ଲାକୁ ଧୀର ଭାବେ ସାମାନ୍ୟ ଭୟରେ ପଚାରିଥିଲି—ମତେ ଗୋରୁ ମାଉଁସ ଖୁଆଉ ନାହିଁ ତ ? ସନାଭୁଲ୍ଲାର ମା' ଭାରି ଚମତ୍କାର ମହିଳା ଥିଲେ । ସେ ମୋ ପ୍ରଶ୍ନ ଶୁଣିପାରି କହିଲେ—ବେଟା ! ତୋର ଧରମ ନେଲେ, ଖୋଦା ଆମକୁ ସହିବେ ନାହିଁ । ଆମେ କ'ଣ ଗୋରୁ ଖାଉ ? ଆମ ଘରେ ପରା ଲକ୍ଷ୍ମୀଙ୍କର ମାଣ ବସେ !

ପଚଲୁ ସତ ତାଙ୍କ ଘରେ ଅବିକଳ ଆମ ଘର ଭଳି ମାଣ ଥିବାର ଦେଖିଥିଲି । ତାହା ଦେଖି ମତେ ଖୁବ୍ ଖୁସି ଲାଗିଥିଲା । ଏବଂ ସନାଭୁଲ୍ଲାର ମାଆ ମୋତେ ଖୁବ୍ ଆପଣାର ଜଣାଗଲେ । ତା' ପରଠାରୁ, ମୁଁ ବାରମ୍ବାର ସନାଭୁଲ୍ଲା ଘରକୁ ଯାଏ ଓ ମାଉସୀ ହାତରୁ ନାସ୍ତା ବା ଖାନା ଖାଏ । ସନାଭୁଲ୍ଲାର ବାପା ଥିଲେ ଖୁବ୍ ନୈଷ୍ଠିକ ମୁସଲମାନ । ଦିନକୁ ପାଞ୍ଚଥର ନମାଜ ପଢନ୍ତି । ମୁଣ୍ଡ ଲଣ୍ଡା । ଗାଲରେ ଭରା ଦାଢ଼ି । କିନ୍ତୁ ସ୍ୱଭାବରେ ସେ ଥିଲେ ଖୁବ୍ କୋମଳ ପ୍ରକୃତିର—ସ୍ନେହୀ ମଧ୍ୟ ।

ଦିନେ ସନାଭୁଲ୍ଲା ମତେ ତାଙ୍କ ମସଜିଦ୍ ଭିତରକୁ ନେଇଗଲା । ପ୍ରକାଶ ଥାଉ କି ଆମ ଗାଁର ମସଜିଦ୍‌ଟି ଖୁବ୍ ବଡ଼, ଆଉ ସୁନ୍ଦର ମଧ୍ୟ ।

ମୁଁ ତା' ପୂର୍ବରୁ ତାକୁ ଦୂରରୁ ଦେଖିଥିଲି । କେବେ ଉତିକରି ତା' ପାଖଦେଇ ଯାଉ ନ ଥିଲି । କାରଣ ମସଜିଦ୍ ସମ୍ପର୍କରେ ଆମ ହିନ୍ଦୁ ପିଲାଙ୍କର ଧାରଣା ଥିଲା କିମ୍ଭୂତକିମାକାର ଭୟ ଆଉ ଆଶଙ୍କାରେ ପରିପୂର୍ଣ୍ଣ । ମୋର ଘନିଷ୍ଠ ସାଙ୍ଗ ମାମୁଧର କହୁଥିଲା, ପଠାଣମାନଙ୍କ ମସଜିଦ୍ ଭିତରେ ଦିଅଁ ଦେବତା ନ ଥାନ୍ତି । ଖାଲି ଖଣ୍ଡା, ବର୍ଚ୍ଛା, ତଲୁଆର ପ୍ରଭୃତି ଥାଏ ଏବଂ ପଠାଣମାନେ ହିନ୍ଦୁ କାଫେରଙ୍କୁ ଠେକି ନେଇ ତା' ଭିତରେ ଯବେ (ହତ୍ୟା) କରନ୍ତି । କିନ୍ତୁ ସନାଉଲ୍ଲା ସାଙ୍ଗରେ ତା' ଭିତରକୁ ଯାଇ ଦେଖିଲି ଯେ, ଏହା ଖୁବ୍ ପରିଷ୍କାର ପରିଚ୍ଛନ୍ନ— ଏବଂ ସେଦିନ ତା' ଭିତରେ କେତେକ ମିଆଁ ନୀରବରେ ନମାଜ କରୁଥିଲେ । ମୋତେ ଠିଆ କରାଇ ଦେଇ ସନାଉଲ୍ଲା ନିଜେ ନମାଜ ପଢିଲା । ମୋତେ ସେ ଦୃଶ୍ୟ ଖୁବ୍ ଚମତ୍କାର ମନେ ହେଲା । ସନାଉଲ୍ଲା ଓ ମୁଁ ମସଜିଦ୍ ପାଖେ ଜମା ହୋଇଥିବା ଗୋଟିଏ ବାଲିଗଦା ଉପରେ ବସିଲୁ । ମୁଁ ସନାଉଲ୍ଲାକୁ ପଚାରିଲି—ସନା ! ତୁମ ମସଜିଦ୍ ଭିତରେ ତ କେଉଁ ଠାକୁର ନାହାନ୍ତି ! ତୁମେ କାହାକୁ ପ୍ରାର୍ଥନା କରୁଛ ? ସନା କହିଲା—ଆମେ ମୁସଲମାନ । ଆମର ତୁମମାନଙ୍କ ପରି ଏତେ ଠାକୁର ନାହାନ୍ତି । ଆମର ଜଣେ ଠାକୁର—ଆଲ୍ଲା । ସେ ହେଉଛନ୍ତି ଭଗବାନ-ପରମେଶ୍ୱର । ମୁଁ ପଚାରିଲି—ଆଲ୍ଲା କ'ଣ କରନ୍ତି ? ସେ କହିଲା—ଆଲ୍ଲା ଆମ ସମସ୍ତଙ୍କୁ ତିଆରି କରିଛନ୍ତି । ତାଙ୍କରି ମେହେରବାନିରେ ଏ ଦିନ ଦୁନିଆ ଚାଲୁଛି । ଯେ ଧର୍ମରେ ରହିବ—ଆଲ୍ଲା ତାକୁ ସ୍ୱର୍ଗକୁ ନେବେ । ସେଠି ସେ ବଡ଼ ମଜାରେ ରହିବ । ଆଉ ଯେ ଅଧର୍ମ କରିବ—ଆଲ୍ଲା ତାକୁ ଦଣ୍ଡ ଦେବେ । ସେ ମଲା ପରେ ବଡ଼ କଷ୍ଟ ପାଇବ । ଜହାନ୍ନମା ନରକକୁ ଯିବ । ସନାଉଲ୍ଲାର କଥାରୁ ମୁଁ ମୁସଲମାନ ଧର୍ମ ଭିତରକୁ କିଛିଟା ପ୍ରବେଶ କଲି ବୋଲି ମନେ ହେଲା । ମୋର ତ ମୁସଲମାନଙ୍କ ପ୍ରତି ସନ୍ଦେହ ଓ ଭୟ କଟି ଆସିଥିଲା । ବର୍ତ୍ତମାନ ସେ ଧର୍ମ ବିଷୟରେ ମୋର କିଛି ଆଗ୍ରହ ବଢ଼ିଗଲା । ମୁଁ ମୁସଲମାନ ଧର୍ମ ସଙ୍ଗେ ଆମ ଧର୍ମର କିଛି ସାମଞ୍ଜସ୍ୟ ଅଛି ବୋଲି ବୁଝି ସନାଉଲ୍ଲାକୁ ପଚାରିଲି—ଆଚ୍ଛା ସନା ! ତୁମ ଆଲ୍ଲା ଆଉ ଆମ ଜଗନ୍ନାଥ ଏକା ନୁହନ୍ତି କି ? ସନା ଖୁବ୍ ବିରକ୍ତ ଗଳାରେ ସଙ୍ଗେ ସଙ୍ଗେ ମୋ କଥାକୁ ଉଡ଼ାଇ ଦେଇ କହିଲା—

ଦୂର୍ ! ତୁମ ଜଗନ୍ନାଥ କେବେ ଆମ ଅଲ୍ଲାଙ୍କ ସଙ୍ଗେ ସମାନ ହୋଇ ପାରିବେ ? ମୁଁ ଆହତ ହୋଇ କହିଲି—କାହିଁକି ? ଆମ ଜଗନ୍ନାଥ ମଧ୍ୟ ଭଗବାନ ଓ ସେ ଆମ ସମସ୍ତଙ୍କୁ ଜନ୍ମ ଦେଇଛନ୍ତି ଏବଂ ସେ ମଧ୍ୟ ଧାର୍ମିକ ଲୋକଙ୍କୁ ସୁଖରେ ରଖନ୍ତି ଓ ଅଧର୍ମୀ ଲୋକଙ୍କୁ ନରକରେ ପକାଇ ବଡ଼ କଷ୍ଟ ଦିଅନ୍ତି । ସନା ସଙ୍ଗେ ସଙ୍ଗେ ଖୁବ୍ ଉତ୍ତ୍ୟକ୍ତ ହୋଇ କହିଲା—ଆରେ ଯା ! ତୁମ ଜଗନ୍ନାଥ ଗୋଟାଏ ମୂର୍ତ୍ତି । ତା'ର ଆଖି, ନାକ, ହାତ ସବୁ ଭଙ୍ଗିଛି । ସେ କେମିତି ଆଲ୍ଲାଙ୍କ ସାଙ୍ଗେ ସମାନ ହେବ ? ମୁଁ କହିଲି— ତୁମ ଆଲ୍ଲାଙ୍କର ପଦ ହାତ, ଗୋଡ଼ ନାହିଁ କି ଆଖି, କାନ ନାହିଁ— ତେବେ ସେ କେମିତି ଚଳବୁଲ କରୁଛନ୍ତି ? ସେ କେମିତି ଦୁଷ୍ଟମାନଙ୍କୁ ଦଣ୍ଡ ଦେବେ ? ଆମ ଜଗନ୍ନାଥ ତ ହାତରେ ଗଦା ଆଉ ସୁଦର୍ଶନ ଚକ୍ର ଧରି କେତେ ଦୁଷ୍ଟ ଲୋକଙ୍କୁ ମାରିଛନ୍ତି । ମୁଁ ଗଜ-ଉଦ୍ଧାରଣ ଠାରୁ ଆରମ୍ଭ କରି ପ୍ରହଲ୍ଲାଦ ଓ ହିରଣ୍ୟକଶିପୁ ପର୍ଯ୍ୟନ୍ତ ତିନି ଚାରିଟା ଉଦାହରଣ ଦେଲି । ମାତ୍ର ସନାତୁଲ୍ଲାର ମୁହଁ ଲାଲ ହୋଇଗଲା । ସେ ମୋର କଥା ଶୁଣି ଏତେ ଚିଡ଼ିଗଲା ଯେ ମୋର ପିଠିରେ ଗୋଟେ ଚଟକଣି ମାରି କ୍ରୁଦ୍ଧ ଗଳାରେ କହିଲା—ଚୁପ୍ କର । ଏଠି ଏ ମସଜିଦ୍ ପାଖରେ ବସି ଏମିତି କଥା କହିବୁ ତ ଦେଖିବୁ ।

ମୁଁ ସନାତୁଲ୍ଲାର ମୁହଁକୁ ଚାହିଁଲି । ସେ ମୁହଁ ମତେ ହଠାତ୍ ଭିନ୍ନ ଦେଖାଗଲା । ତା' ମୁହଁଟିର ସୌନ୍ଦର୍ଯ୍ୟ ମତେ ପୂର୍ବରୁ ଖୁବ ମୁଗ୍ଧ କରିଥିଲା । ମାତ୍ର ସେଇ ମୁହୂର୍ତ୍ତରେ ମୋର ସେ ମୁହଁକୁ ଦେଖି ଆଶ୍ଚର୍ଯ୍ୟ ଲାଗିଲା—ଏଡ଼େ ସୁନ୍ଦର ମୁହଁ ହଠାତ୍ ଏମିତି ହିଂସ୍ର ଘାତକର ମୁହଁ ପାଲଟିଗଲା କୋଉଥି ପାଇଁ ? ତା' ଛଡ଼ା—ହଠାତ୍ କଥାବାର୍ତ୍ତା ହେଉ ହେଉ—ସନାତୁଲ୍ଲା ଏମିତି ରାଗିଗଲା କୋଉଥି ପାଇଁ ? ମୁଁ ଏମିତି କ'ଣ ଖରାପ କଥା କହିଲି କି ? ଏମିତି ଭାବି—ମୁଁ ସାମାନ୍ୟ ସାହସ ସଞ୍ଚୟକରି ପୁଣି ପଚାରିଲି—ସନା ! ମୁଁ କ'ଣ କହିଲି ଯେ ତୁ ଏମିତି ରାଗିଯାଇ ମତେ ଧମକାଉଛୁ ? ସନାତୁଲ୍ଲା ମୋ ଆଡ଼କୁ ଗାରେଡ଼େଇ କରି ଚାହିଁ ଖୁବ୍ ରୁକ୍ଷକଣ୍ଠରେ କହିଲା—ଆମେ ପଠାଣମାନେ ସବୁ ସହିପାରିବୁ— କିନ୍ତୁ ଆମ ଧର୍ମର ନିନ୍ଦା ସହିପାରିବୁ ନାହିଁ । ମୁଁ କହିଲି—ମୁଁ ତ ତୁମ

ଧର୍ମର ନିନ୍ଦା କରି ନାହିଁ ? ମୁଁ କେବଳ ଜଗନ୍ନାଥଙ୍କ ସଙ୍ଗେ ତୁମ ଆଲ୍ଲାଙ୍କୁ ସମାନ ବୋଲି କହୁଥିଲି । ତୁମେ କହୁଛ ଯେ ଆଲ୍ଲା ସ୍ୱୟଂ ଭଗବାନ । ଆମେ ବି କହୁଛୁ ଯେ ଆମ ଜଗନ୍ନାଥ ସ୍ୱୟଂ ଭଗବାନ । ଏଥିରେ ଭୁଲ କୋଉଠି ରହିଲା ? ସନାତୁଲ୍ଲା ସେହିଭଳି ରୁକ୍ଷକଣ୍ଠରେ କହିଲା—ତୁ ଗୋଟାଏ ମୂର୍ତ୍ତି ସଙ୍ଗେ ଆମ ଆଲ୍ଲାଙ୍କୁ ସମାନ କରୁଛୁ ? ମୁଁ ପଚାରିଲି—ତୁମ ଆଲ୍ଲାଙ୍କର କ'ଣ କମା ମୂର୍ତ୍ତି ନାହିଁ ? ସେ ଦୃଢ଼ ସ୍ୱରରେ କହିଲା—ଆଦୌ ନୁହେଁ । ଆଲ୍ଲା ସ୍ୱର୍ଗରେ ଅଛନ୍ତି । ମୁଁ ପଚାରିଲି—ତୁମେ ସ୍ୱର୍ଗ ଦେଖିଛ ? ସନାତୁଲ୍ଲା ମୋ ପ୍ରଶ୍ନରେ ମୋ ଆଡ଼କୁ ଗାରେଡ଼େଇ ଚାହିଁଲା । ଏବଂ କିଛି ଉତ୍ତର ନ ଦେଇ ଉଠି ଠିଆହେଲା—ଏବଂ କହିଲା—ଚାଲ ଯିବା । ମୁଁ ଉଠି ଠିଆହେଲି । ଆମେ ଦୁହେଁ ସଡ଼କ ଉପରକୁ ଉଠିଲୁ । ସନା ମୋ ସାଙ୍ଗରେ ଚାଲୁଥାଏ ସିନା, ମାତ୍ର ମନେ କିଛି କଥା କହୁ ନ ଥାଏ । ମୁଁ ମୋ ଆଡ଼ୁ ସନାର ହାତ ଧରି କହିଲି—ସନା ! ତୁ କେମିତି ପଠାଣ ହେଲୁ ? ଆଉ ମୁଁ କେମିତି ହିନ୍ଦୁ ହେଲି ? ସନା କହିଲା—ଶୁଣ ! ତୁମର ପୂର୍ବପୁରୁଷ ଏଠି ଥିଲେ । ଆମର ପୂର୍ବପୁରୁଷ ଆରବ ଦେଶରେ ଥିଲେ । ଆମ ପୂର୍ବପୁରୁଷମାନେ ତୁମ ଦେଶକୁ ଆସି ତୁମ ରାଜାମାନଙ୍କୁ ଯୁଦ୍ଧରେ ପରାସ୍ତ କଲେ । ଏବଂ ସେମାନଙ୍କ ଝିଅ ଆଉ ସ୍ତ୍ରୀମାନଙ୍କୁ ଛଡ଼ାଇ ନେଇ ସାଦି କଲେ । ସେଇଥିରୁ ଆମେ ସବୁ ଜନ୍ମ ହେଲୁ । ମୁସଲମାନଙ୍କ ବାପାମାନେ ମୁସଲମାନ—ମାଆମାନେ ହିନ୍ଦୁ । ସେମାନଙ୍କଠାରୁ ଯେଉଁମାନେ ଜନ୍ମ ହୁଅନ୍ତି, ସେମାନେ ମୁସଲମାନ ହୁଅନ୍ତି ।

ସନାତୁଲ୍ଲାଠାରୁ ଏକଥା ଶୁଣି ମୋ ମନ ଉତ୍ସୁକ ହୋଇଗଲା । ମୋ ମନରେ ପ୍ରଶ୍ନ ଉଠିଲା—ଆଜ ସନାତୁଲ୍ଲା ଏ କ କଥା ସବୁ କହୁଛି ? କେବେ ତ ସେ ଏମିତି ମୋ ସାଙ୍ଗେ ବ୍ୟବହାର କରେନାହିଁ । ସେ ଦେଖିବାକୁ କେଡ଼େ ସୁନ୍ଦର—ତା'ର କଥା ସବୁ କେଡ଼େ ସୁନ୍ଦର ! କିନ୍ତୁ ହଠାତ୍ ତା'ର ରୂପ ଏମିତି ବଦଳିଗଲା କାହିଁକି ? ହଠାତ୍ ତା'ର ସ୍ୱର ଆଉ କଥା ଏମିତି କ'ଣ ହୋଇଗଲା ? ମୁଁ ତ ତାକୁ କିଛି ଆଘାତ ଦେଇନାହିଁ ? ମୁଁ ତ ତା' ଧର୍ମର ନିନ୍ଦା ମଧ୍ୟ କରିନାହିଁ !!...କିଛି ବାଟ ଆମେ ଏକାଠି ଆସିଲା ପରେ, ସନାତୁଲ୍ଲା କହିଲା—ତୁ ତୋ ଘରକୁ ଯା' । ମୁଁ

ଯାଉଛୁ ମୋ ମାମୁଁ ଘରକୁ । କିନ୍ତୁ ମୋ ମୁଣ୍ଡକୁ କ'ଣ ଜୁଟିଲା କେଜାଣି—ମୁଁ ତା'ର ହାତ ଧରି ତାକୁ ଅଟକାଇଲି । କହିଲି—ଶୁଣ୍ ସନା ! ତୁ ଯେ କହିଲୁ ମୁସଲମାନର ମାଆ ହିନ୍ଦୁ—ବାପା ପଠାଣ—ମୁଁ ପଚାରୁଛି—ତୋର ମାଆ କ'ଣ ହିନ୍ଦୁ ଘରର ଝିଅ ?

ଏତେକ ପଚାରିଦେଲି ମୁଁ ଖୁବ୍ ରାଗରେ ଏବଂ ଦରକାର ପଡ଼ିଲେ ବର୍ତ୍ତମାନ ସନାଭୁଲ୍ଲା ସାଙ୍ଗେ ମୁଁ ଫଉଜଦାରୀରେ ବି ମାତିଯାଇ ପାରେ—ଏମିତି ଗୋଟାଏ ପ୍ରସ୍ତୁତି ମଧ୍ୟ ଧୁଆଁକୁ ଧୁଆଁ ମୋ ଭିତରେ ହୋଇ ସାରିଥିଲା । ହଠାତ୍ ମଧ୍ୟ ସନାଭୁଲ୍ଲା ପ୍ରତି ମୋର କ୍ରୋଧ ଓ ବିଦ୍ୱେଷ ମନକୁ ମନ ବଢ଼ି ଯାଇଥିଲା ଏବଂ ସେ ମୋତେ ଗୋଟାଏ ଶତ୍ରୁ ବୋଲି ମନେ ହେଉଥିଲା । ତା'ର ଚେହେରା ମତେ ଖୁବ୍ ଉତ୍ୟକ୍ତ କରୁଥିଲା ଓ ମୋ ଭିତରେ ସତେ କି କିଏ ମୋତେ ମଡ଼ାଉ-ଥାଏ ଯେ ଏଇ ସନ୍ତୁବେଳିଆ ଗୋରା ପଠାଣ ଟୋକାଟାର ତଣ୍ଟିଚିପି ମାରିଦେ । ମାତ୍ର ମୁଁ ନିଜକୁ ଖୁବ୍ ସଂଯତ କରି ରଖିଥିଲି ଏବଂ ମୋର ସେହି ପ୍ରଶ୍ନ ଶୁଣି ସେ ଯେମିତି ମୋ ମୁହଁକୁ ତ୍ରସ୍ତ ହୋଇ ଚାହିଁ ରହିଲା—ସେଥିରେ ମୋ ଭିତରେ ପ୍ରତିହିଂସା ଭାବ ଆହୁରି ବଢ଼ିଗଲା । ତା'ଠାରୁ କିଛି ଉତ୍ତର ନ ପାଇ—ମୁଁ ତା'ର ହାତକୁ ଖୁବ୍ ଜୋରରେ ଚିପିଧରି ପୁଣି ଥରେ ସେହି ଭୟଙ୍କର ପ୍ରଶ୍ନଟାକୁ ପଚାରିଦେଲି—ଏବଂ ମୋ ବାକ୍ୟରେ ଗୋଟାଏ କ୍ରୋଧ ଓ ବିରକ୍ତିସୂଚକ 'ବେ' ପଦ ଧୁଏଁ ଧୁଏଁ ଲାଗିଗଲା । ମୁଁ ତା'ର ହାତକୁ ଜୋର୍‌ରେ ଚିପି ଧରି ଆଉ ଥରେ ଖୁବ୍ ରୁକ୍ଷ ସ୍ୱରରେ ପଚାରିଦେଲି—କହବେ ଚଞ୍ଚଳ ! ତୋ' ବାପା କ'ଣ ମୁସଲମାନ, ଆଉ ତୋର ମାଆ ହିନ୍ଦୁ ? କହବେ ଚଞ୍ଚଳ ।

ଆଶ୍ଚର୍ଯ୍ୟ କଥା । ସନାର ମୁହଁରେ ଭୟଭାବ ସଞ୍ଚରିଗଲା । ସେ ମୋ ମୁହଁକୁ ବଡ଼ ବିକଳରେ ଚାହିଁ ରହିଲା । ତା'ର ଆଖି ଛଳଛଳ ହୋଇଗଲା । କିନ୍ତୁ ମୋ ମନରେ ତା' ପ୍ରତି ସାମାନ୍ୟତମ ମାୟା ମଧ୍ୟ ଆସିଲା ନାହିଁ । ସେ ଆଜି ମତେ ଯେମିତି ଅପମାନିତ କରିଛି—ଆଉ ମତେ ରଗେଇଛି—ମୁଁ ନିଶ୍ଚେ ତା'ର ପ୍ରତିଶୋଧ ନେବି ହିଁ ନେବି ।

ମୁଁ ଆଉ ଦୁଇଥର 'କହବେ ଚଞ୍ଚଳ ! କହବେ ଚଞ୍ଚଳ'—ରଗିକର ପଚ୍ଚାରଦେଲ ମାତ୍ରେ ସନାଭୁଲ୍ଲା ବଡ଼ ଅତଙ୍କରେ କହ ପକାଇଲା—ହଁ ହଁ, ମୋର ମା' ହୃଦ୍‌ଘରର ଝିଅ ।

ସନାଭୁଲ୍ଲାର ଏ ଉତ୍ତର ଶୁଣିଲା ମାତ୍ରେ ମୋ ମୁଣ୍ଡ ଉପରେ ବଜ୍ର ଖସିପଡ଼ିଲା । ମୋର ଅପମାନବୋଧ ଖୁବ୍ ବଢ଼ିଗଲା । ମୁଁ ତାକୁ କ'ଣ କହବ—ବା ସେତେବେଳେ ମୁଁ କ'ଣ କରବ—କଛି ଭାବପାରଲ ନାହିଁ । କନ୍ତୁ ମୁଁ ଦେଖିଲ ଯେ ସନାଭୁଲ୍ଲାର ଆଖି ଲୁହ ଛଳଛଳ ହୋଇ ଯାଉଛି ଓ ସେ ଭୟରେ ଥରୁଛି । କନ୍ତୁ, ତଥାପି ମୁଁ ତାକୁ ଖାତର ନ କର ତା' ହାତଧର ଟାଣି କହଲ—ତା'ହେଲେ ଆ ! ତୁମ ଘରକୁ ଯିବା ଆଉ ତୋ' ମାଆକୁ ସେ କଥା ପଚ୍ଚାରବା । ମୋ ପାଟିରୁ ଏ କଥା ଶୁଣି ସନାଭୁଲ୍ଲାର ମୁହଁରୁ ସବୁ ରକ୍ତ ଶୁଖିଗଲା । ସେ ଭୟରେ ଥରବାକୁ ଲଗିଲା । ଏହ ସମୟରେ ମୋର ଘନଷ୍ଠ ସାଙ୍ଗ ମାୟାଧର କୋଉଠି ଥିଲା—ହଠାତ୍ ନାଟକୀୟ ଭବେ ଆସି ସେଠି ପହଞ୍ଚିଗଲା । ମୁଁ ଆହୁର ସାହସ ପାଇଲ ଓ ଆଉର କ୍ରୁଦ୍ଧ ହୋଇ ଉଠିଲ । ମାୟାଧରକୁ ଦେଖି ମୁଁ ତାକୁ ଆମୂଳଚୂଳ ସବୁ କଥା କହଦେଲ ଏବଂ ସେ ମଧ ଖୁବ୍ ଉତ୍ତ୍ୟକ୍ତ ହୋଇ କହଲା—ଚ଼ଲ—ବର୍ତ୍ତମାନ ଯିବା ତାଙ୍କ ଘରକୁ—ଆଉ ତା' ମାଆକୁ ସେ କଥା ପଚ୍ଚାରବା । ଯଦ ସେ କଥା ମିଛ ହୁଏ—ତା' ହେଲେ ହେଇଟି ଶୁଣ ସନାଭୁଲ୍ଲା ! ତୋ' ମୁଣ୍ଡକୁ ଛେଚ ଆମେ ଛତୁ କରଦେବୁ ।

ସନାଭୁଲ୍ଲା ପ୍ରାୟ କାନ୍ଦ ପକାଇଲା । ଆମେ ଦୁଇଜଣ ତା' ହାତ ଧର ଭଡ଼ ଭଡ଼ ତା' ଘରକୁ ନେଲୁ । ସେ ଭଡ଼ମୋଡ଼ ହେଉଥାଏ । କାନ୍ଦୁଥାଏ । ଆମେ ଯାଇ ତା' ଘରେ ପହଞ୍ଚିବା ମାତ୍ରେ—ହଠାତ୍ ସନାଭୁଲ୍ଲାର ମାଆ ଆମକୁ ଦେଖି ଆମ ପାଖକୁ ଧାଇଁ ଆସିଲେ । ଆଉ ଖୁବ୍ କମ୍ପକଣ୍ଠରେ ପଚ୍ଚାରଦେଲେ—କ'ଣ ହୋଇଛି ? କ'ଣ ହୋଇଛି ମୋ ବେଟାର ? ହେ ଆଲ୍ଲା !

ସନାଭୁଲ୍ଲା ସେମିତ କାନ୍ଦୁଥାଏ । ତାକୁ କୋଳକୁ ନେଇ ତା' ମାଆ ଛଳ ଛଳ ଆଖିରେ ଆମ ଉଦ୍ଦେଶ୍ୟରେ ପଚ୍ଚାରଲେ, କ'ଣ ହେଲା ବାବୁ ! ମେରୁ ବେଟାର କ'ଣ ହେଲା ?

ମୁଁ ହଠାତ୍ କିଛି କହିବା ଆଗରୁ ମାୟାଧର କହିଲା—ତା'ର କିଛି ହୋଇନି ମାଉସୀ । ସେ ଆମ ଧର୍ମକୁ ନିନ୍ଦାକଲା । ସେ କହିଲା—ତୁମେ କୁଆଡ଼େ ହିନ୍ଦୁ ଘରର ଝିଅ ?

ସନାଉଲ୍ଲାର ମାଆଙ୍କ ମୁହଁରୁ ସାଙ୍ଗେ ସାଙ୍ଗେ ସବୁତକ ରକ୍ତ ଶୁଖିଗଲା । ତାଙ୍କ ଆଖି ଉପରେ ଆଶଙ୍କା ଦେଖାଗଲା । ସେ କାଠ ହୋଇଗଲେ ପ୍ରଥମେ । ସନାଉଲ୍ଲା ତାଙ୍କ କୋଳରେ ମୁହଁ ଲୁଚାଇ କାନ୍ଦୁଥାଏ । ମୁଁ ସେ ଦୃଶ୍ୟରେ ଆଉ ଅଧିକ ଅଗ୍ରସର ହେବାକୁ ଚାହୁଁ ନ ଥାଏ । ମାତ୍ର ମାୟାଧରର ମୁଣ୍ଡକୁ ଖୁନ୍ ଉଠି ଯାଇଥାଏ । ସହଜେ ତ ମୋତେ ନେଇ ସନାଉଲ୍ଲା ପ୍ରତି ତା'ର ଇର୍ଷା ଆଉ କ୍ରୋଧ ପାହାଡ଼ ପରି ଜମା ହୋଇଥାଏ । ସେ ପୁଣିଥରେ ସେହି ପ୍ରଶ୍ନଟି ପଚାରି ଦେଇ କହିଲା—ମାଉସୀ ସତ କହିଦିଅ । ତୁମ ଆଲ୍ଲାଙ୍କ କସମ୍ ରହିଲା—ସତ କହିଦିଅ ।

ସନାଉଲ୍ଲାର ମାଆ ସନା ସହିତ ଆମ ଦୁହିଁଙ୍କୁ ମଧ୍ୟ କୋଳରେ ଜାକି ଧରିଲେ କିଛିବେଳ । ତା'ପରେ ଆମ ସମସ୍ତଙ୍କୁ ଘୋଷାରି ନେଲେ ତାଙ୍କ ଅଗଣା ଭିତରକୁ । ଅଗଣା ଭିତରେ ଆମକୁ ବସାଇ ଦେଇ ସେ ରୋଷଘର ଭିତରକୁ ଗଲେ । ଏବଂ ଦୁଇଟି ଥାଳିଆରେ କିଛି ପିଠା ଆଣି ଆମ ଆଗରେ ରଖି କହିଲେ—ଆଗ ଖାଇସାର । ତା' ପରେ ମୁଁ କହିବି ।

ସେତେବେଳକୁ ସନ୍ଧ୍ୟା ହୋଇ ଆସୁଥିଲା । ମାସଟା ଥିଲା କାର୍ତ୍ତିକ । ଏବଂ ସେ ବର୍ଷ ମଧ୍ୟ ମହରମ୍ ପଡ଼ିଥିଲା—ସେଇ ମାସରେ । ମସଜିଦ୍‌ରୁ କେହି ଜଣେ ଧାର୍ମିକ ମୌଲବୀ ଉଚ୍ଚସ୍ୱରରେ ଆଜାନ୍ ଡାକୁଥିଲେ—'ଆଲ୍ଲା ହୋ ଆକବର' । ଏବଂ ଠିକ୍ ସେଇ ସମୟରେ ମସ୍‌ଜିଦ୍‌ର ଅନତିଦୂରରୁ ଶୋଭନେଶ୍ୱର ମହାଦେବଙ୍କ ପ୍ରାଚୀନ ମନ୍ଦିରରୁ କାର୍ତ୍ତିକ ସନ୍ଧ୍ୟାକାଳୀନ ଆଳତି ଘଣ୍ଟଘଣ୍ଟା, ଶଙ୍ଖ ଓ କାହାଳି ବାଜୁଥିଲା । ଲ୍ୟାମ୍ପ ଉବଟିର କ୍ଷୀଣ ଆଲୁଅରେ ସନାଉଲ୍ଲାଙ୍କ ଘର ଅଗଣା ଅସ୍ପଷ୍ଟ ଦିଶୁଥିଲା । ଆମେ ବାରଣ୍ଡାରେ ବସି ପିଠା ଖାଇବାକୁ ଲାଗିଲୁ । ମୋତେ ଖୁବ୍ ଭୋକ ହେଉଥାଏ ଏବଂ ପିଠାଟି ମଧ୍ୟ ନଡ଼ିଆରସ ମିଶି ଖୁବ୍ ସ୍ୱାଦିଷ୍ଟ

ହୋଇଥାଏ । ମୁଁ ସବୁକଥା ଭୁଲି ପିଠା ଖାଇ ଲାଗିଥାଏ । ମାଝ ମାସ୍ତାଧର ଘୁଙ୍କି ଘୁଙ୍କି ହେଉଥାଏ । ପଠାଣ ଘରେ କେମିତି ପିଠା ଖାଇବ ? ଆମେ ଦୁହେଁ ଥିଲୁ ବ୍ରାହ୍ମଣ ଘରର ପିଲା । ମାସ୍ତାଧର ପୁଣି ମୋ ଠାରୁ ବେଶି ବଡ଼ ନୈଷ୍ଠିକ ବ୍ରାହ୍ମଣର ପିଲା । ମୁଁ ମାସ୍ତାଧରକୁ କହିଲି—ଖା, ପିଠା ଖା । ମାସ୍ତାଧର ଇତସ୍ତତଃ ହେଉ ହେଉ ଶେଷରେ ଖଣ୍ଡିଏ ପାଟିକି ନେଲା ଏବଂ ସେହି ସ୍ୱାଦିଷ୍ଟ ପିଠାର ମାହାତ୍ମ୍ୟରେ ତା'ର ବ୍ରାହ୍ମଣ ନୈଷ୍ଠିକତା କୁଆଡ଼େ ଉଭେଇଗଲା । ସେ ମନଦେଇ ପିଠା ଖାଇ ଚାଲିଥାଏ । ମନ୍ଦିର ଆଡ଼ୁ ଘଣ୍ଟ, ଘଣ୍ଟା, କାହାଳି ଶଙ୍ଖ ଶବ୍ଦ ସେମିତି ଶୁଣା ଯାଉଥାଏ । ଏବଂ ମସଜିଦ୍‌ରୁ ମଧ୍ୟ 'ଆଲ୍ଲା ହୋ, ଆକବର' ଆଜାନ ସେମିତି ଶୁଭୁଥାଏ । ହଠାତ୍ ସନାଭୁଲ୍ଲାର ମାଆ କହିଲେ—

ସନାଟା ଉବଡ଼ବାଟାଏ । ତା'ର ଆବାଜାନ୍ ତାକୁ ମନାକରି-ଥିଲେ ସେକଥା କାହା ଆଗରେ କହିବାକୁ । ସେ ବେହୁଦା କାହାଁକା ଆଜି ତୁମମାନଙ୍କୁ ସେକଥା କହିଦେଲା । ଦେଖ, ତୁମେମାନେ ମୋର ସନାଭଳି ବେଟା । ଏକଥା ତ ଜାଣିଲ । ଆଉ ସେମିତି କାହା ଆଗରେ ପ୍ରଘଟ କରିବ ନାହିଁ । ମୁଁ ଚଉଦ ବରଷର ହୋଇଥିଲି—ବ୍ରାହ୍ମଣ ଘର ଝିଅ—ବାଲେଶ୍ୱର ଜିଲ୍ଲା ଆମ ଘର । ସନାର ବାପା ସେତେବେଳେ ସେଠି ପାନବେପାର କରୁଥିଲେ । ତାଙ୍କରି ସାଙ୍ଗରେ ଚାଲି ଆସିଥିଲି । କାହିଁ କେତେ କାଳ ହେଲାଣି ! କୋଡ଼ିଏ କି ପଚିଶ ବର୍ଷ ଜନମ ମାଟି କଥା ଭୁଲି ଗଲଣି ! ବାପ-ମାଆଙ୍କ ଖବର ବି ଆଉ ପାଇନାହିଁ । ମୋର ତିନି ଭାଇ, ତିନି ଉଉଣୀ । ସେମାନଙ୍କ ମୁହଁଟିମାନ ବି ମୁଁ ଆଉ ସେଇଦିନୁ ଦେଖିନାହିଁ । ଜଗନ୍ନାଥେ ସେମାନଙ୍କୁ ସୁଖରେ ରଖିଥିବେ । ସନାର ବାପାଙ୍କୁ ତ ଦେଖିଥିବ । କେଡ଼େ ଭଲ ମଣିଷ । ମାଛକ ମଅ କହନ୍ତି ନାହିଁ । ଦିନକୁ ପାଞ୍ଚଥର ନମାଜ କରୁଥିବେ । ଘରେ ନିଷ୍ଠାରେ ରୋଜା ପାଳନ୍ତି । ମୁଁ ତାଙ୍କୁ କହିଲି—ଦେଖ ! ମୋର ତିନୋଟି କଥା ରଖିବ । ମୁଁ ଘରେ ମାଣ ବସେଇବି ପ୍ରତି ମାର୍ଗଶିର ମାସରେ । ଏ ଘରେ ଗୋରୁ ମାଉଁସ ପଶିବ ନାହିଁ—ଆଉ ପ୍ରତିବର୍ଷ ରଥଯାତ୍ରା ବେଳକୁ ମୁଁ ପୁରୁଷୋତ୍ତମ ଯିବି । ଜଗନ୍ନାଥ ଦର୍ଶନ କରି ଆସିବି । ମତେ ବାରଣ କରିବ ନାହିଁ ।

ସନାର ବାପା ମୋର ସବୁଠିକ କଥା ଆଜଯାଏ ରଖିଛନ୍ତି । ସେ ମୋତେ ବାଧା ଦିଅନ୍ତି ନାହିଁ । ଦଶବର୍ଷ ଯାଏ ମୋର ପିଲାଛୁଆ କଚ୍ଛି ହେଲେ- ନାହିଁ । ଜଗନ୍ନାଥଙ୍କ ପାଖେ ମାନସିକ କଲି । ପ୍ରଭୁ ମୋ ଡାକ ଶୁଣିଲେ । ସନା ଜନମ ହେଲା । ମୁଁ ତା ନାଁ ରଖିଥିଲି ସନାତନ । ତା' ବାପା ତାକୁ ଡାକଲେ ସନାଉଲ୍ଲା । ଏକାକଥା । ମୁଁ ଡାକେ ସନା ! ଯୋଉ ଦିନଠୁଁ ଏ ଘରେ ମାଣ ବସେଇଲି—ଦୁଇ ଏକର ଜମି ବଢ଼ି ବଢ଼ି ଅଇନେ ସାତ ଏକର ହେଲାଣି । ମା ଲକ୍ଷ୍ମୀଙ୍କ ଆଶୀର୍ବାଦ ସନାର ବାପା ଉପରେ ପଡ଼ୁଛି । ହିନ୍ଦୁ-ମୁସଲମାନ ଗୋଟେ କ'ଣରେ ବାପାମାନେ ! ଧର୍ମ ହେଲା ଅସଲ, ଯାହାକୁ ଯାହା ଦିଶିଲା—ସେ ତାକୁ ପୂଜାକଲା । ସେଥିରେ କ'ଣ ଅଛି ? ଆଲ୍ଲା ସେ—ଜଗନ୍ନାଥ ସେ । ଭେଦ କ'ଣ ? ମସଜିଦ୍‌ରେ ସେଇ ଅଛନ୍ତି—ମନ୍ଦିରରେ ସେଇ ଅଛନ୍ତି । ଯାହାକୁ ରୂପ ଦିଶୁଛି, ସେ କହୁଛି ରୂପ—ଯାହାକୁ ଅରୂପ ଦିଶୁଛି—ସେ କହୁଛି ଅରୂପ । ଜନ୍ମବେଳେ ଯାହା—ମଲାବେଳେ ତାହା । ମଲାବେଳେ ଯୋଉ ନାଁ ପାଟିକି ଆସିବ—ଆଲ୍ଲା ହୁଅନ୍ତୁ କି ଜଗନ୍ନାଥେ ହୁଅନ୍ତୁ—ମଲାବେଳେ ପାଟିକି ଆସିଲେ ହେଲା । ପାଟିକି ଆସିଲେ ମୋକ୍ଷ ପାଇଯିବ । କୋରାନ୍, ପୁରାଣ ଏକା କଥା ।

ଶୋଭନେଶ୍ୱର ମନ୍ଦିରରୁ ଘଣ୍ଟ-ଘଣ୍ଟା ଶଙ୍ଖ-କାହାଳର ଶବ୍ଦ ସେମିତି ଶୁଭୁଥାଏ । ଆଉ ମଧ୍ୟ ଶୁଭୁଥାଏ ମସଜିଦ୍‌ରୁ "ଆଲ୍ଲା ହୋ ଆକବର" ଡାକ । କାର୍ତ୍ତିକ ମାସର ଶୀତୁଆ ସଞ୍ଜବେଳା । ସନାଉଲ୍ଲା'ର ମାଆଙ୍କ ମୁହଁରୁ ଏତିକ ଶୁଣି ମୋର ମନ ଖୁବ୍ ପୂର୍ଣ୍ଣ ହୋଇ ଉଠୁଥାଏ । ମୁଁ ପିଠା ଖାଇ ସାରିଥାଏ । ମାତ୍ର ମାସ୍ଟୁଧରର ପିଠା ସରି ନ ଥାଏ । ତଥାପି ସେ ଉତ୍ସାହିତ ହୋଇ ଗୋଟେ ପଦ ଗାଇଦେଲା—

ମାଉସୀ ! ଆମର ବି ସତ୍ୟପୀର ପୂଜା ହୁଏ । ଶିର୍ଣ୍ଣି ଭୋଗ ହୁଏ ସତ୍ୟପୀରଙ୍କ ପାଖେ । ସତ୍ୟପୀର ପାଲା ବହିରେ କ'ଣ ଲେଖା ହୋଇଛି ଶୁଣ !

ରାମ୍ ସେ-ରହିମ୍ ଏକ୍—ଗୋଲକେ ନାହିଁ ତ ଟେକ
ଯାର ଗୁନେ କୋରାନ ପୁରାନ ।

ଆଲ୍ଲା ତାଲ୍ଲା ଜଗନ୍ନାଥ୍—ଏକ ବ୍ରହ୍ମ ଦୁଇ ବାଟ
ଫକୀର ସନ୍ନ୍ୟାସୀ ଧରେ ନାମ ।

ସନାଭୁଲ୍ଲାର ମାଆଙ୍କ ମୁହଁରେ ହସ ଫୁଟି ଉଠିଲା । ତାଙ୍କ ଆଖି ଆହୁରି ଉଜ୍ଜ୍ୱଳ ଦେଖାଗଲା । ସେ ଡାକିଲେ—ଆରେ ସନା ! ଯା' ତୋର ଆବାଜାନ୍‌ଙ୍କୁ ଡାକି ଆଣ । ପିଲା ଦୁଇଟା ଏକୁଟିଆ ଏ ରାତିରେ ତାଙ୍କ ଘରକୁ ଯିବେ କେମିତି ? ମାତ୍ର ସେତେବେଳକୁ ସନାଭୁଲ୍ଲା ସେଠାରେ ନ ଥିଲା । ସେ ଆମର କଥା ମଝିରେ କେତେବେଳୁଁ ସେଠାରୁ ଉଠି କୁଆଡ଼େ ପଳାଇଥିଲା । ମାୟାଧର କହିଲା—ଥାଉ ମାଉସୀ ! ଆମେ ଦୁ'ଜଣ ଅଛୁ । ରାତି ବେଶି ହୋଇନି । ଆମେ ଚାଲିଯିବୁ, ଡରମାଡ଼ିବ ନାହିଁ ।

ଆମେ ଦୁହେଁଯାକ ଉଠି ଘରକୁ ବାହାରିଲୁ । ଗଲାବେଳେ ସନାର ମାଆ ଆମ ଉଦ୍ଦେଶ୍ୟରେ କହିଲେ—ଦେଖ ବାପାମାନେ ! ଏକଥା ସବୁ ଆଉ କାହା ଆଗେ କହିବ ନାହିଁ । ଆଜିକାଲି କାଳ ଯେମିତି ହୋଇଛି—କେତେବେଳେ କୋଉ କଥା !

ମାୟାଧର କହିଲା—ନାଇଁ ମାଉସୀ ! ତୁମେ ନିଶ୍ଚିନ୍ତ ଥାଅ । ଆମେ କାହାକୁ ଆଉ କହିବୁ ନାହିଁ । ସନାଟା ଡବଡବା ବୋଲି କ'ଣ ଆମେ ଡବଡବା ? କିନ୍ତୁ ସନା ଗଲା କୁଆଡ଼େ ?

ମାଉସୀ କହିଲେ—କୁଆଡ଼େ ଗଲା କେଜାଣି ? ବଡ଼ା ବେହୁଦା ବେଅକଲି ଅଛି ଟୋକାଟା ।

ଆମେ ଚୁପ୍‌ଚାପ୍ ଘରୁ ବାହାରି ରାସ୍ତା ଉପରକୁ ଆସିଗଲୁ । ମାୟାଧର ମୋର ହାତ ଧରି ମୋ କାନରେ ଫୁସ୍‌ଫୁସ୍ କରି କହିଲା—ମୁଁ ଆଗରୁ ଜାଣିଥିଲି ବେ ! ସନାର ମାଆ ଯଦି ବ୍ରାହ୍ମଣଘରର ଝିଅ ନ ହୋଇଥାନ୍ତା, ତେବେ ସନାଟା ଏତ୍ତ ଏମିତି ଗୋରା ଆଉ ଉଜଲୁଆଳ କେମିତି ହୋଇଥାନ୍ତା ? ଏ ବସ୍ତିରେ ସନାଭୁଲ୍ଲା ଭଳିଆ ସୁନ୍ଦରିଆ ଟୋକା ଆଉ ଗୋଟାଏ ଦେଖେଇଲୁ ।

ମୁଁ ମାସ୍ଟାଧର କଥାକୁ ସମର୍ଥନ କଲି । ମାତ୍ର ଠିକ୍ ସେଇ ସମୟରେ ସନାତୁଲ୍ଲା କେଉଁଠି ଥିଲା ହଠାତ୍ ଅନ୍ଧାର ଭିତରୁ ବାହାରି ଆସି ଆମ ପାଖେ ପହଞ୍ଚିଗଲା ଏବଂ ଖୁବ୍ ଦୃଢ଼ ଆଉ ରୁକ୍ଷ ସ୍ୱରରେ କହିଲା —

ଆବେ ! ମୁଁ ସତ କହୁଥିଲି କି ନାହିଁ ? ମୋ କଥାରେ ତୁମର ବିଶ୍ୱାସ ହେଉ ନ ଥିଲା ପରା ?

ମାସ୍ଟାଧର ଖୁବ୍ ସାହସୀ । ସେ କହିଲା—ହଅବେ । ସେ କଥା କ'ଣ ଆମେ ଜାଣିନୁ ଭାବୁଚୁ ? ତୁ ଜାଣିଚୁବେ ତୁ କେମିତି ଜନ୍ମହେଲୁ ? ଆବେ, ତୋ' ମାଆର ଜମା ପିଲା ହେଲା ନାଇଁ ଦଶବର୍ଷ ଯାଏ । ତୋ ଆବାଜାନ ଯେତେ ଆଲ୍ଲା ଆଲ୍ଲା ଡାକିଲା—କିଛି ହେଲାନାହିଁ । ସେଇଠୁ ସେ କ'ଣ କଲା ଜାଣିନୁ ? ସେ ଆମ ଜଗନ୍ନାଥଙ୍କୁ ମନଭରି ଡାକିଲା । ଯାଙ୍ଗେ ସାଙ୍ଗେ ତୁ ଜନ୍ମ ହେଲୁ । ଯା' ପଚାରିବୁ ତୋ ମାଆକୁ । କାହିଁକି ସେ ପ୍ରତିବର୍ଷ ରଥଯାତ୍ରାକୁ ଯାଏ ପୁଣି ? ସେଇ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ନା ? ଯା' ପଚାରିବୁ ତୋ ମାଆକୁ । ଯା'ବେ !

ସନାତୁଲ୍ଲା ବି ସହଜରେ ଘୁଞ୍ଚିବା ଟୋକା ନୁହଁ । ସେ କହିଲା ଆରେ ଚଲ୍ ! ଜଗନ୍ନାଥ !! ଭାରି କହିଲାବାଲା ! ମୋ ବାପା ଆଲ୍ଲାଙ୍କୁ ଡାକିବାରୁ ତାଙ୍କ ମେହେରବାନିରୁ ମୁଁ ଜନ୍ମହେଲି ।

ମାସ୍ଟାଧର ସାଙ୍ଗେ ସାଙ୍ଗେ କହିଲା—ଆବେ, ତୋ ମାଆ କଥା ସତ, ନା ତୋ କଥା ସତ ? ତୋ ବାପାଙ୍କୁ ଝିଅ ମିଳୁ ନ ଥିଲା । ସେ ଆଲ୍ଲାଙ୍କୁ ଡାକିବାରୁ ଆଲ୍ଲା ତାଙ୍କୁ ତୋ ମାଆକୁ ଜୁଟାଇ ଦେଲେ । କିନ୍ତୁ ତୋ ମାର ଜମା ପିଲା ହେଲେ ନାହିଁ । ଆଲ୍ଲା ଆଉ କିଛି କରିପାରିଲେ ନାହିଁ—ଦଶବର୍ଷ ବିତିଗଲା । ସେଇଠୁ ତୋ ମାଆ ଜଗନ୍ନାଥଙ୍କୁ ଡାକିବାରୁ ତୁ ଜନ୍ମ ହେଲୁ । ତୋ' ମାଆ କଥା ସତ ନା ତୋ କଥା ସତବେ ?

ଏତକ କହି ମାଯ୍ଯାଧର ମତେ ଉତ୍ତର ନଇ ଖୁବ୍ ଜୋରରେ ଆଗକୁ ଚାଲିଗଲା । ଆମେ ଆଉ ପଛକୁ ନ ଚାହିଁ ଗଛବୃକ୍ଷର ଅନ୍ଧକାର ଭିତରେ ମିଶିଗଲୁ ।

...

ମୁଁ କଲେଜରେ ପଢୁଥିଲା ବେଳେ ହିନ୍ଦୁ-ମୁସଲମାନ ଦୁଇଟି ଜାତି ବୋଲି ସିଦ୍ଧାନ୍ତ କରି ଭାରତକୁ ବଡ଼ ବଡ଼ ନେତାମାନେ ଦୁଇଭାଗ କରି କାଟିଦେଲେ । ହିନ୍ଦୁସ୍ଥାନ ଓ ପାକିସ୍ଥାନ । ପୁଣି କିଛିବର୍ଷ ପରେ ପାକିସ୍ଥାନ ମଧ୍ୟ ଦୁଇ ଭାଗରେ ବିଭକ୍ତ ହୋଇଗଲା । କୋଉ ଭିତ୍ତିରେ କେଜାଣି ମତେ ଜ୍ଞାତବ୍ୟ ନାହିଁ ।

କିନ୍ତୁ ଆଜ ପର୍ଯ୍ୟନ୍ତ ବି ଆମେ ଏକାଠି ଅଛୁ ଏହି ପ୍ରାଚୀନ ସନାତନ ଧର୍ମର ଭାରତବର୍ଷରେ ଗୋଟିଏ ଗାଁରେ ସନାଉଲ୍ଲା ଆଉ ମୁଁ ଓ ମୋର ସାଙ୍ଗ ମାଯ୍ଯାଧର । ଆମ ଗାଁରେ ଶୋଭନେଶ୍ୱର ମନ୍ଦିର ଅଛି—ଆଉ ତା' ପାଖରେ ବି ରହିଛି ମସଜିଦ୍ । ଆମ ମନରେ ଆଲ୍ଲା ଅଛନ୍ତି, ଜଗନ୍ନାଥ ବି ଅଛନ୍ତି । ଆମର କାର୍ତ୍ତିକ ମାସ, ମହରମ, ଇଦ, ଦଶହରା, ଦୋଳ ସବୁ ଏକାଠି ଚାଲିଛି । ବେଳେ ବେଳେ ଆମ ଭିତରେ କଳି ଲାଗୁଛି—ଫଉଜଦାରୀ ବି ହେଉଛି । କିନ୍ତୁ ଆମେ ଏକାଠି ରହିଛୁ । ଆମେ ଗୋଟିଏ ରକ୍ତର—ମିଶିମାଶି ଗୋଟିଏ ରକ୍ତର—ଆଲ୍ଲା ବଡ଼ କି ଜଗନ୍ନାଥ ବଡ଼, ସେ କଥା ଆମର ମୀମାଂସା ହୋଇ ନାହିଁ—କି ନ ହୋଇ ମଧ୍ୟ ପାରେ । କିନ୍ତୁ ଆମେ ଆଲ୍ଲାଙ୍କୁ ଛାଡ଼ିବୁ ନାହିଁ । କି ଜଗନ୍ନାଥଙ୍କୁ ବି ଛାଡ଼ିବୁ ନାହିଁ । ମୁଁ ହିନ୍ଦୁ ବୋଲି ଯେମିତି ଗର୍ବିତ, ସନାଉଲ୍ଲା ମୁସଲମାନ ବୋଲି ସେମିତି ଗର୍ବିତ । ଆମେ କେହି କାହା ଗଳ ଘୁଡ଼ ନାହୁଁ । ସେମିତି ମଧ୍ୟ କେହି କାହାକୁ ଏ ଯାବତ ଛୁଇଁନାହୁଁ । ସନାଉଲ୍ଲା ମିଆଁ ଏବେ ମୋ ଭଳି ଅଧାବୁଢ଼ା ହେଲାଣି । ତା' ମାଆ ମରିଗଲାଣି । ତା' ବାପା ମଧ୍ୟ ମରିଗଲେଣି । କିନ୍ତୁ ସନାଉଲ୍ଲା ମୋତେ ଏବେ ଗାଁରେ ଦେଖିଲେ କୁଣ୍ଢାଇ ଧରେ, ଘରକୁ ଖାଇବାକୁ ଡାକେ । ତା'ର ଗୋଟିଏ ପାଞ୍ଚ ଛଅ ବର୍ଷର ଗୋରା ଚକଚକ ଚାନ୍ଦମୁଖୀ ନାତୁଣୀ ଅଛି । ଶାଳୀ ଭାରି ସୁନ୍ଦରିଆ ହୋଇଛି । ଥରେ ମୁଁ କହିଲି—ସନା !

ତୋର ଏଇ ନାତୁଣୀଟାକୁ ମୋ ସାଙ୍ଗରେ ସାହା କର । ସନା କହିଲା—ଚାଲିବେ ! ଶଳା, ତୋ ଭଳିଆ ବୁଢ଼ାକୁ ଏ ଟୋକୀ ଆଗ ପସନ୍ଦ କରିବ ? ମୁଁ କହିଲି, ତା ହେଲେ ଠିକ୍ ଅଛି । ମୋର ନାତି ସାଙ୍ଗେ ସ୍ବାକୁ ସାହା ଦେ । ସନାଭୁଲ୍ଲା କହିଲା— କିନ୍ତୁ ତୋ ନାତିକୁ ଆଗ ପଠାଣ କରି ସୁନତ କରିବ । ତା'ପରେ ଯାଇ ସାହା ଦେବ ।

ଆମେ ହସି ହସି ଗଡ଼ିଗଲୁ । ଆହା ! ମୋ ସାଙ୍ଗ ମାସ୍ତାଧର ଭଳି ସନାଭୁଲ୍ଲା ମଧ୍ୟ କେତେ ଘନିଷ୍ଠ ସାଙ୍ଗ ! ଏବେ ତ ମୋର ମନେ-ହୁଏ—ଯଦି ଆମ ଗାଁରେ ଏତେ ବଡ଼ ମୁସଲମାନ ବସ୍ତି ନ ଥାନ୍ତା—ଯଦି ଏତେ ସୁନ୍ଦର ମସଜିଦ୍‌ଟାଏ ନ ଥାନ୍ତା—ଯଦି ମସଜିଦ୍‌ର ଗମ୍ବୁଜ ଉପରୁ ସକାଳ ସନ୍ଧ୍ୟାରେ 'ଆଲ୍ଲା ହୋ ଆକବର' ଆଜାନ ଉଚ୍ଚସ୍ବରରେ କେହି ଡାକୁ ନ'ଥାନ୍ତା—ତେବେ ଆମ ଗାଁ ଆଦୌ ଏତେ ସୁନ୍ଦର ଆଉ ମନୋରମ ହୋଇ ନ ଥାନ୍ତା । ଗୋଟିଏ ଆଡ଼ୁ ବଂ ବଂ ହେଳାନଥ ଓ ଗୋଟିଏ ଆଡ଼ୁ ଆଲ୍ଲା ହୋ ଆକବର—ଏ ଦୁଇଟି ସ୍ବର ବର୍ତ୍ତମାନ ଆଉ ଧର୍ମନିରପେକ୍ଷ ଜଣା ପଡ଼ୁ ନାହିଁ । ବର୍ତ୍ତମାନ ମନେ ହେଉଛି—ଗୋଟିଏ ସତ୍ୟର ଦୁଇଟି ମନ୍ତ୍ର—ଗୋଟିଏ ପ୍ରେମର ଦୁଇଟି ସ୍ବର—ଆଉ ଗୋଟିଏ ଭକ୍ତିର ଦୁଇଟି ପ୍ରକାଶ—ନମୋ ନମୋ—ସଲାମ୍ ଆଲେକମ୍ ।



# ପ୍ରଥମ ପ୍ରଣୟ

ପ୍ରେମ, ପ୍ରୀତି, ପ୍ରଣୟ ପ୍ରଭୃତି ଶବ୍ଦଗୁଡ଼ିକ ଶୁଣିବାକୁ ଓ ବୁଝିବାକୁ ଯେତେ ମଧୁର ଲାଗେ—କିମ୍ବା ସେ ସବୁ ସମ୍ବନ୍ଧେ ଗଳ୍ପ କବିତାଦି ପଢ଼ିବାକୁ ବା ସଙ୍ଗୀତ ଶୁଣିବାକୁ ବା ନାଟକ ଦେଖିବାକୁ ଯେତେ ଚମତ୍କାର ଲାଗେ, ଅସଲରେ କିନ୍ତୁ ପ୍ରେମ ଫ୍ରେମ ବ୍ୟାପାରରେ ନିଜେ ଅକସ୍ମାତ୍ ଜଡ଼ିତ ହୋଇଗଲେ ଅନୁଭୂତିଟା ସେତେ ମାଧୁର୍ଯ୍ୟମୟ ହୁଏ-ନାହିଁ— ବରଂ ଦହନ ବୋଲି ମୋର ଧାରଣା । ମୋର ଏ ବୟସରେ ଆଜି ଗୋଟିଏ ଧାରଣା ମଧ୍ୟ ଦୃଢ଼ ହୋଇଯାଇଛି—ଯେ, କୌଣସି ବ୍ୟକ୍ତିର ଚିତ୍ତ ଯଦି ଶାନ୍ତ, ସ୍ଥିର, ଧୀର ଓ ସମାହିତ ନ ହୋଇଛି—ତେବେ ସେ ଏ ଜଗତର କୌଣସି ବ୍ୟାପାରକୁ ଉପଭୋଗ କରି ପାରିବ ନାହିଁ । କିନ୍ତୁ ପ୍ରେମରେ ପଡ଼ିବା ଲୋକର ଚିତ୍ତ କୌଣସି ପ୍ରକାରେ ହେଲେ ଶାନ୍ତ, ସ୍ଥିର, ଧୀର ଓ ସମାହିତ ହୋଇ ପାରିବ ନାହିଁ । କାରଣ ବ୍ୟାକୁଳତା ହିଁ ପ୍ରେମର ମୂଳଧର୍ମ । କୋଉଥିଲାଗି ବ୍ୟାକୁଳତା ? ଏ ପ୍ରଶ୍ନ ପ୍ରେମରେ ପଡ଼ିଥିବା ଲୋକକୁ ପଚାର । ସେ କହି ପାରିବ ନାହିଁ । ପ୍ରେମ ଏକ ପ୍ରଚଣ୍ଡ ଅହେତୁକୀ ଉନ୍ମାଦନା । ପ୍ରାଣବନ୍ତ ଲୋକର ସମସ୍ତ ପ୍ରାଣସତ୍ତା ହଠାତ୍ ଉଦ୍‌ବେଳିତ ହୋଇଯାଏ । ଉଚ୍ଛ୍ୱସିତ ହୋଇଉଠେ । ସେ ନିଜର ଅସ୍ତିତ୍ୱକୁ ଭୁଲିଯାଏ, ସାରାଜଗତକୁ ଭୁଲିଯାଏ । ସେ ଆଜି ଗୋଟିଏ ଜଗତରେ ବାସକରେ । ତାହା ହେଉଛି ଭାବଜଗତ । ଆଜି

ଏହି ସବୁ ଜଗତକୁ ଯେ ଗଲ୍ପ, ସେ ମଲା । ତାକୁ କାଳେଶୀ ଲାଗିଯାଏ । ସେ ଭୂତଗ୍ରସ୍ତ ହୋଇପଡ଼େ । ଶାନ୍ତମତ ଯାହାକୁ କହନ୍ତି ହୃଷ୍ଟିଶଥା । ପ୍ରେମାସ୍ପଦକୁ ସର୍ବତୋଭାବେ ପାଇବାଲାଗି ସେ ଉନ୍ମତ୍ତ ହୋଇଉଠେ । କିନ୍ତୁ ରକ୍ତମାଂସର କୌଣସି ପ୍ରେମାସ୍ପଦକୁ ନେଇ ଏହି ପ୍ରେମୋନ୍ମତ୍ତତା ଆରମ୍ଭ ହୁଏ ସତ—ମାତ୍ର ରକ୍ତମାଂସର ସେହି ପ୍ରେମାସ୍ପଦ ପକ୍ଷରେ ପ୍ରେମିକର ପ୍ରେମକ୍ଷୁଧାକୁ ଉପଶମ କରିବା ଆଦୌ ସମ୍ଭବ ନୁହେଁ । ଆଜି ମଧ୍ୟ ପ୍ରେମରେ ପଡ଼ିବା ଲୋକ ତା ପ୍ରେମାନୁଭୂତିର ଦୌର୍ବଲ୍ୟରୁ ଯାହାସବୁ ଗୃହେଁ—ତାହା ପୂରଣ କରିବା ମଧ୍ୟ କୌଣସି ପ୍ରେମାସ୍ପଦ ପକ୍ଷେ ସହଜ ନୁହେଁ । ପ୍ରେମ ଗୋଟାଏ ଭୂତ । ଏବଂ ଏ ଭୂତ କୋଉଠି ଥାଏ କେଜାଣି, କୋଉ ଖଞ୍ଜରେ ପ୍ରେମିକର ମୁଣ୍ଡ ଭିତରକୁ ଢୁକିଯାଏ ଓ ନାନାଦି ଅନର୍ଥ କରିସାରି ଯେତେବେଳେ ସେ ଘୁଆଁକୁ ଘୁଆଁ ଘୁଡ଼ିଯାଏ ବା କୋଉ ଗୋଟାଏ କଥାକୁ ଆଳ କରି ଘୁଡ଼ିଯାଏ, ସେତେବେଳେ ଯାଇ ପ୍ରେମରେ ପଡ଼ିଥିବା ଲୋକର ଜୀବନ ଅସ୍ଥିର ହୁଏ । ତା' ନ ହେଲେ— ପ୍ରେମଭୂତ ଜୀବନ ନେଇଯିବ—ଏଥିରେ ସଂଶୟ ନାହିଁ ।

ଏ ସମ୍ବନ୍ଧେ ଆଉ ଗୋଟିଏ କଥା କହିଦେଇ ମୁଁ ମୋ କାହାଣୀଟି କହିବି । ତା' ହେଲା—ଏ ଜଗତରେ ସବୁ ମଣିଷ କିଛି ପ୍ରେମରେ ପଡ଼ନ୍ତି ନାହିଁ । ପ୍ରେମରେ ପଡ଼ିବା ଲୋକ କଥାରେ । ସେମାନଙ୍କ ଧାତୁ ଭିନ୍ନ । ସମସ୍ତଙ୍କୁ କ'ଣ ଭୂତ ଲାଗେ ? କାଳେସୀ ଲାଗେ ? ଏକ ନିର୍ଦ୍ଦିଷ୍ଟ ଧରଣର ବିଶେଷ ପ୍ରକାର ଚିତ୍ତ ରହିଛି । ଏବଂ ସେ ସବୁ ଚିତ୍ତର ଏକ ବିଶେଷ ଧରଣର ପ୍ରବଣତା ରହିଛି । ଏବଂ ପ୍ରେମରେ ପଡ଼ିବା ଏଇ ଅଦଭୁତ ଧରଣର ପ୍ରବଣତା ଛଡ଼ା ଆଉ କିଛି ନୁହେ । ଜଗତରେ ଯଦି ସମସ୍ତେ ପ୍ରେମରେ ପଡ଼ୁଥାନ୍ତେ—ତେବେ ଏ ଜଗତ ଗୋଟାଏ ପାଗଳ-ଗାରଦ ହୋଇ ଯାଆନ୍ତାଣି । କିନ୍ତୁ ପ୍ରେମରେ ନ ପଡ଼ିବା ଯୋଗୁଁ, ଏ ଜଗତ ପ୍ରେମରେ ପଡ଼ୁନଥିବା ଲୋକଙ୍କ ଦ୍ୱାରା ଆଉରି ଏକ ପାଗଳ-ଗାରଦରେ ପରିଣତ ହୋଇଛି କି ନାହିଁ—ତାହା ଆମ ଭୁମ ଠାରୁ ଅଧିକ ସୁସ୍ଥ ସଙ୍ଗତ ମସ୍ତିଷ୍କବିଶିଷ୍ଟ ଲୋକେ ବିଚାର କରନ୍ତୁ । କିନ୍ତୁ ଶେଷ କଥା ହେଲା—ପ୍ରେମରେ ପଡ଼ିବା ଗୋଟାଏ ଅଦ୍‌ଭୂତ ଦୁଃସହ

ପାଗଳାମୀ । ଏବଂ ଏକ ପ୍ରଚଣ୍ଡ କର୍ଜର ପ୍ରଗାଢ଼ ଅଭିଜ୍ଞତା—ଯାହା ଭିତରେ ଅକସ୍ମାତ୍ ପଡ଼ିଗଲେ ବର୍ତ୍ତୁଳ ମଣିଷଟି ଛଟପଟ ହୋଇ ମରୁଥାଏ । କିନ୍ତୁ ଏଭଳି ଅଭିଜ୍ଞତା ଯେଉଁମାନଙ୍କର ନ ଆସିଛି, ସେମାନେ ନିଶ୍ଚୟ ହତଭାଗ୍ୟ । ଯଦିଓ ସେମାନଙ୍କ ଜୀବନ ଅଧିକ ଶାନ୍ତ, ସଂଯତ ଓ ନିରୁପଦ୍ରୁତ ।

ବର୍ତ୍ତମାନ କଥାଟି ଶୁଣିବା ହେଉ । ମୋତେ ସେତେବେଳକୁ ମାତ୍ର ନଅବରଷ ବୟସ । ବ୍ରାହ୍ମଣ ଘର ବୋଲି ବ୍ରତଘର ହୋଇଗଲା । ଏବଂ ମୋ କାନରେ ପଇତା ଛଅଖିଏ ପଡ଼ିବା ମାତ୍ରେ ହଠାତ୍ ମୋ ଭିତରେ ଅନେକ ରୁଦ୍ଧଦ୍ୱାର ଖୋଲିଯିବା ଭଳି ମୁଁ ଅନୁଭବ କଲି । ମତେ ଲାଗିଲା ଯେ ମୁଁ ଆଉ ପିଲା ନୁହେଁ । ସତକୁ ସତ ମୋ ପ୍ରକୃତିରୁ ଅନେକ ପିଲାଳିଆ କଥା ଗୁଳିଗଲା । ଏବଂ ବୟସ୍କ ଲୋକେ ଯେମିତି ବଡ଼ ବଡ଼ କଥାରେ ମାତିଥାନ୍ତି, ମୁଁ ସେମିତି ବଡ଼ ବଡ଼ କଥା ଆଡ଼କୁ ଉନ୍ମୁଖ ହୋଇଗଲି । କିନ୍ତୁ ଏହା ମାନେ ନୁହଁ ଯେ, ମୋର ଅଭିଜ୍ଞତାର ବିଷୟବସ୍ତୁ ଗୁଡ଼ିକ ପରିବର୍ତ୍ତିତ ହୋଇଗଲା । କଥା ହେଲା—ସେହିସବୁ କ୍ରୀଡ଼ା ସଙ୍ଗୀ, ସଙ୍ଗିନୀ ଓ କ୍ରୀଡ଼ନକଗୁଡ଼ିକ ପ୍ରତି ମୋର ମନୋଭାବ ଆଉ ଶିଶୁସୁଲଭ ନରହି ବୟସ୍କସୁଲଭ ହୋଇଗଲା । ଏଠାରେ କହି ରଖୁଛି ଯେ ମୋର ଧାତୁ ବା ପ୍ରକୃତି ମୋ ସାଙ୍ଗମାନଙ୍କଠାରୁ ବିଶେଷ ଭାବରେ ସ୍ୱତନ୍ତ୍ର । ମୋର ସାମାନ୍ୟ ଜ୍ଞାନୋଦୟ ହେଲା ଦିନଠାରୁ ମୁଁ ମୋର ପ୍ରକୃତ ବୟସର ସୀମାକୁ ସର୍ବଦା ଅତିକ୍ରମ କରି ଯାଉଥିଲି । ଏବଂ ମୋର ଆଜି ବି ମନେହୁଏ ଯେ ମୁଁ ସବୁବେଳେ ମୋର ପ୍ରକୃତ ବୟସ ଅପେକ୍ଷା ଅନ୍ୟୂନ ପନ୍ଦର ବର୍ଷ ଅଧିକା ଥାଏ । ମୁଁ ଆଗତୁରା ଅନେକ କଥା ବୁଝି ନେଇପାରେ । ତେଣୁ ମୋତେ ନଅବର୍ଷ ବୟସବେଳେ ମୁଁ ଅନ୍ତତଃ କୋଡ଼ିଏ ଏକୋଇଶି ବର୍ଷର ଯୁବକ ଭଳି ଭାବି ପାରୁଥିଲି ଓ ଅନୁଭବ କରି ପାରୁଥିଲି । କିନ୍ତୁ ତା' ମାନେ ନୁହଁ ଯେ ମୁଁ ଅକାଳ ପକ୍ୱ ହୋଇ ଯାଇଥିଲି । ନା । ତା' ଆଦୌ ନୁହେଁ । ବରଂ ମୋର ସମସ୍ତ ବୟସ୍କ ଅନୁଭୂତି ଓ ଚିନ୍ତା ସତ୍ତ୍ୱେ ମୋର ନଅବର୍ଷର ବାଳକ ସ୍ୱଭାବ ଚରିତ୍ର ସବୁ ଅବିକଳ ଯେମିତି ଥିବାର କଥା ଥିଲା । ଉଦାହରଣଟିଏ ଦିଏ ।"

ରାମାୟଣରେ କବି ଶିରୋମଣି ମହାମତି ବାଲ୍ମୀକି ମର୍କଟ ଓ ଭଲ୍ଲୁକମାନଙ୍କ ଚରିତ୍ର କିପରି ଚିତ୍ରଣ କରିଛନ୍ତି ମନେ ପକାନ୍ତୁ ତ ! ରାମାୟଣର ମର୍କଟ ଓ ଭଲ୍ଲୁକମାନେ ମନୁଷ୍ୟ ପରି ବୁଦ୍ଧିମାନ, ବାକ୍ୟମାନ୍ ଓ ଅନୁଭୂତିଶୀଳ । ତା' ହେଲେ ବି ବେଳେ ବେଳେ ସେମାନେ ଯେପରି ଆଚରଣ କରିଛନ୍ତି —ସେଥିରୁ ସେମାନଙ୍କର ସମସ୍ତ ମାନବିକ ବୁଦ୍ଧି ଓ ଅନୁଭବ ସତ୍ତ୍ୱେ ସେମାନେ ଯେ ମୂଳତଃ ମର୍କଟ ଓ ଭଲ୍ଲୁକ ତାହା ସ୍ପଷ୍ଟ ବୁଝା ପଡ଼ିଯାଏ । ପରମ ଭକ୍ତ, ମହାଜ୍ଞାନୀ, ମହାପ୍ରାଜ୍ଞ, ମହା କରିତ୍କର୍ମା, ବାନରକୁଳ-ଶିରୋମଣି ପରମପୂଜ୍ୟ ହନୁମାନଜୀଙ୍କର ଲଙ୍କାକାଣ୍ଡକାରଖାନାର ବର୍ଣ୍ଣନାରୁ ବି ତା'ର ଚମତ୍କାର ଉଦାହରଣ ମିଳି ପାରିବ । ସେହିଭଳି ମୋର ନଅ-ବରଷର ବୟସବେଳେ ମୋର ବହୁ ବୟସ୍କ ଗୁଣଗ୍ରାମ ଜଣା ପଡ଼ିଯାଇ-ଥିଲେ ବି ମୁଁ ଯେ ଗୋଟିଏ କ୍ଷୁଦ୍ର ବାଳକ, ଏହା ମଧ୍ୟ ବହୁ ବେଳାରେ ସ୍ପଷ୍ଟ ପ୍ରମାଣିତ ହୋଇ ଯାଉଥିଲା ।

ଆଗରୁ କହିଛି—ମୋ ପିଲାଦିନେ ମୋର ପରମବନ୍ଧୁ ମାୟାଧର ସଙ୍ଗେ ମିଶି ବହୁ ଯାତ୍ରା ଦେଖୁଥିଲି ରାତି ରାତି ଅନିଦ୍ରା ହୋଇ । ଏଇ ଯାତ୍ରା ଦେଖିବା ଫଳରେ ମୋ ଚିତ୍ତବୃତ୍ତି ଏହି ପୃଥିବୀର ବାସ୍ତବତା ଅପେକ୍ଷା ସ୍ୱପ୍ନ ଓ କଳ୍ପନା ଭିତରେ ଅଧିକାଂଶବେଳେ ବୁଡ଼ି ରହିଥିଲା । ଯାତ୍ରା ଓ ସୁଆଙ୍ଗ ଗୁଡ଼ିକର ବିଷୟବସ୍ତୁ ଏବଂ ଅଭିନୟ ଏବଂ ସଙ୍ଗୀତ ବାଦ୍ୟ ପ୍ରଭୃତି ମୋର ମନକୁ ଅତି ସାନ ଦିନରୁ ଖୁବ୍ ରସମୟ କଳ୍ପନାପ୍ରବଣ ବା ରୋମାଣ୍ଟିକ୍ କରି ଦେଇଥିଲା । ମୁଁ ଏହି ବାସ୍ତବ ଦୁନିଆଟିକୁ ମଧ୍ୟ କ୍ରମଶଃ ସ୍ୱପ୍ନିଳ ଦୃଷ୍ଟିରେ ଦେଖିବାକୁ ଆରମ୍ଭ କଲି । ମୋର ମନେଅଛି—ପ୍ରଥମେ ଯୋଉଦିନ ମୁଁ 'କେଦାର ଗୌରୀ' ନାମକ ଗୀତାଭିନୟ ଆମ ଗାଁରେ ଦେଖିଲି—ସେତେବେଳେ କେଦାର ଗୌରୀଙ୍କର ପ୍ରଣୟରସ ମୋର ହୃଦୟକୁ ଜୁଡ଼ୁବୁଡ଼ୁ କରିଦେଲା । ଏବଂ ସେହି ନାଟକର ଶେଷ କରୁଣ ପରିଣତିଟି ମୋ ମନରେ ଏମିତି ପ୍ରତିକ୍ରିୟା ସୃଷ୍ଟି କଲା ଯେ, ମୁଁ ପ୍ରାୟ ସପ୍ତାହେକାଳ ଏକ ବିଷଣ୍ଣ ଭାବାବେଶରେ ରହି ଯାଇଥିଲି । ମୋ ସାଙ୍ଗ ମାୟାଧର ବହୁତ ଗୀତାଭିନୟ ବହି କୋଉଠୁ ଯୋଗାଡ଼ କରିଆଣି ନିଜେ ପଢ଼େ ଓ ମୋତେ ମଧ୍ୟ ପଢ଼ାଏ ଓ ଶୁଣାଏ । ମତେ ଯୋଉଁକ

ଅପୂର୍ବ ଲାଗୁଥାଏ, ବିଶେଷତଃ କେଦାର-ଗୌରୀ ଗୀତାଭିନୟ ବହିଟିକୁ ମୁଁ ପାଟିକରି ଓ ସୁରଧରି ପ୍ରାୟ ସାତ ଆଠ ଥର ପଢ଼ିଥିବି ଓ କହିଁ କହିଁ ହୋଇ କାନ୍ଦଥିବି । ଏବଂ ଶେଷ ପର୍ଯ୍ୟନ୍ତ ଏଇ କେଦାର-ଗୌରୀ ନାଟକଟି ହିଁ ମୋତେ ସେହି ଅସ୍ୱାଭାବିକ ଓ ଅଭୂତପୂର୍ବ ଅଭିଜ୍ଞତା ଭିତରକୁ ଟାଣିନେଲା । ଦୁର୍ଯ୍ୟୋଗକୁ ପୁଣିଥରେ ଆମ ଗାଁ ପାଖ ଗୋଟିଏ ଗାଁରେ ସେହି କେଦାର-ଗୌରୀ ନାଟକଟିକୁ ମୁଁ ପୁଣିଥରେ ଦେଖିଲି । ମୋର ପରମବନ୍ଧୁ ମାୟାଧର ମୋ ସାଙ୍ଗରେ ଥିଲା । ନାଟକର ଶେଷାଂଶରେ ନାୟିକା ଗୌରୀର ରକ୍ତାକ୍ତ ଛିନ୍ନ ଶାଢ଼ୀ ଦେଖି ନାୟକ କେଦାର ତାର ପ୍ରାଣପ୍ରିୟା ଗୌରୀକୁ ନିଶ୍ଚୟ ଗତ ରାତ୍ରିରେ ବ୍ୟାଘ୍ର ଖାଇ ଯାଇଛି ବୋଲି ଭାବି ଯେପରି କରୁଣ କଣ୍ଠରେ "ଗୌରୀ ! ଗୌରୀ ! ମୋର ପ୍ରାଣପ୍ରିୟା ଗୌରୀ" ବୋଲି ଆର୍ତ୍ତ ଚିତ୍କାର କରି କରି ତା'ର ଛାତିରେ ହାତ ବାଡ଼ାଇ ବାଡ଼ାଇ ଭୂଇଁରେ ପଡ଼ି ଅଚେତ ହୋଇଗଲା— ସେହି ଦୃଶ୍ୟ ମୋର ଛାତିକୁ ଦୁଃଖରେ ବିଦୀର୍ଣ୍ଣ କରି ପକାଇଲା । ଏବଂ ଆଶ୍ଚର୍ଯ୍ୟ କଥା ଯେ ସେତିକବେଳୁ ମୋର ଛାତି ଭିତରେ ଦିନରାତି ସତେକି କିଏ "ଗୌରୀ ଗୌରୀ ! ମୋର ପ୍ରାଣାଧିକା ଗୌରୀ ! ମୋତେ ଛାଡ଼ି କୁଆଡ଼େ ଗଲ"—ଏହି ବାକ୍ୟଟି ଅନବରତ ଆବୃତ୍ତି କରିବାକୁ ଲାଗିଲା ! ସତକଥା ! ସେହି ରାତ୍ରିରୁ ମୋ ଭିତରେ ବିରହୀ ପ୍ରେମିକ-କେଦାରଟିଏ ଜନ୍ମ ହୋଇ ସାଙ୍ଗେ ସାଙ୍ଗେ ପ୍ରତିଷ୍ଠିତ ହୋଇଗଲା । ଏଠି କହିରଖେ ଯେ ସେହି ରାତିରେ ଯେଉଁ ବାଳକଟି ଗୌରୀ ଭୂମିକାରେ ଓହ୍ଲାଇ ଥିଲା ସେ ମୋ ଆଖିକୁ ଅପୂର୍ବ ସୁନ୍ଦରୀଟିଏ ଭଳି ଦେଖା ଯାଉଥିଲା । ଏବଂ କେଦାର ଭୂମିକାରେ ଓହ୍ଲାଇଥିବା ବାଳକଟି ମଧ୍ୟ ରୂପରେ ଯେମିତି କାର୍ତ୍ତିକ ଭଳି ଦିଶୁଥିଲା— ଅଭିନୟ ବି କରୁଥିଲା ସେମିତି ଅପୂର୍ବ ।

ସେହିଦିନ ଠାରୁ ମୋ ଭିତରେ କେଦାରଟିଏ ଅନବରତ ତା'ର ଗୌରୀ ପାଇଁ ଆର୍ତ୍ତକ୍ରନ୍ଦନ କରିବାକୁ ଲାଗିଲା । ମୋ ଚେତନାରେ ଗୌରୀ ଆଉ ମୂର୍ତ୍ତିମନ୍ତ ବାଳକାଟିଏ ମାତ୍ର ହୋଇ ରହିଲା ନାହିଁ । ଚତୁର୍ଦ୍ଦିଗରେ ମୋର ରସ ଜୁଡ଼ୁ ବୁଡ଼ୁ ବିରହୀ କେଦାରର ପ୍ରାଣ ଖୋଜି ବୁଲିଲା ତା'ର ଗୌରୀକୁ । ଚତୁର୍ଦ୍ଦିଗରେ ସତେକି କେବଳ "ଗୌରୀ ! ଗୌରୀ !

ପ୍ରାଣପ୍ରିୟା ଗୌରୀ ମୋର ! ମୋତେ ଛାଡ଼ି ତୁମେ କୁଆଡ଼େ ଗଲ ?"
ଏହିଭଳି ଏକ ବୁକୁଫଟା କାନ୍ଦଣା ମତେ ଶୁଭି ଯାଉଥାଏ । ଅବସ୍ଥା
ଏପରି ହେଲା ଯେ କଣ୍ଠସ୍ୱର ଲାଗି ମୋ ମୁହଁରୁ ହସ ଲିଭିଗଲା । ମୋ
ଆଖି ଦୁଇଟି ସର୍ବଦା କାନ୍ଦୁଣୁ ମାନ୍ଦୁଣୁ ଦିଶିଲା । ଗଛ ବୃକ୍ଷମାନେ ମତେ
କାନ୍ଦୁଣୁ ମାନ୍ଦୁଣୁ ଦେଖାଗଲେ । ଚଢ଼େଇମାନଙ୍କ କାକଳୀ ମତେ
ଶୁଭିଲା "ଗୌରୀ" ଲାଗି କ୍ରନ୍ଦନ ଭଳି । ଆକାଶରେ କଳବଳ ହୋଇ
ଦଉଡ଼ୁଥିବା ଚଇତାଳି ବଉଦମାନେ ମୋର ମନେହେଲେ ଗୌରୀକୁ
ଖୋଜିବାକୁ ଏମିତି ବ୍ୟାକୁଳରେ ଦଉଡ଼ୁଛନ୍ତି ବୋଲି ।...କ୍ରମଶଃ ମୋର
ସ୍ୱାସ୍ଥ୍ୟ ମଧ୍ୟ କ୍ଷୀଣ ହୋଇ ଆସିଲା । ଏବଂ ମତେ ନିଦ ହେଲାନାହିଁ ଭଲ ।
ଶୋଇବା ମଝିରେ ବାଉଳି ଉଠେ —ଗୌରୀ ! ଗୌରୀ ! ଓଃ !!

କେହି ଜାଣି ପାରନ୍ତି ନାହିଁ । ବାପ ନୁହଁ କି ମା' ନୁହଁ—ଭାଇ
ନୁହଁ କି ଭଉଣୀ ନୁହଁ—କକା ନୁହଁ କି ଖୁଡ଼ୀ ନୁହଁ । ମାଷ୍ଟ୍ରମାନେ ନୁହଁ—
କି ସାଙ୍ଗ ପିଲାମାନେ ନୁହଁ । ନଅ ବରଷର ମେଞ୍ଚଡ଼ ଟୋକାଟାଏ ! ସେ
କ'ଣ ଏଡ଼େବଡ଼ ଗୁରୁତର ଭାବରେ ଭାବିତ ହୋଇ ଏମିତି ଛଟପଟ
ହେଉଥିବ !! ଚଢ଼େଇ କଥା ଭାବୁଥିବ—କି ଗୁଡ଼ିଉଡ଼ା କଥା ଭାବୁଥିବ !
ମାଛଧରା କଥା ଭାବୁଥିବ, କି କୋଳି ତୋଳା କଥା ଭାବୁଥିବ !! ଏତେ
ଅନ୍ୟମନସ୍କ ହେଲି ଯେ ପାଠପଢ଼ା ତୁଳାକ ଗଲା । ସବୁଦିନେ ଗଣିତ
କ୍ଲାସରେ ହରଣ ନ ଆସିବାରୁ ମାଡ଼ ଖାଏ । ମାନସାଙ୍କ ନ ଆସିବାରୁ
ମାଡ଼ଖାଏ । ସର୍ବଦା ହୃଦୟ ଭିତରୁ ଅବୋଧ କାନ୍ଦଣାଟିଏ ଗୁମୁରି ଉଠୁ-
ଥାଏ—ଗୌରୀ କାହିଁ ? ମୋର ପ୍ରାଣପ୍ରିୟା ଗୌରୀ କାହିଁ ? ଗୌରୀକୁ
ନ ପାଇଲେ ମୋର ପ୍ରାଣ ରହିବ ନାହିଁ । ମୋର ସ୍ୱାସ୍ଥ୍ୟ କ୍ଷୀଣ ହେବା
ଦେଖି, ମୋର ବାପା ତାଙ୍କର ସଙ୍ଗାତ ଆମ ଜିଲ୍ଲାବୋର୍ଡ଼ ଡାକ୍ତର-
ଖାନାର ଅଭିଜ୍ଞ ଡାକ୍ତର ଦିନେଶବାବୁଙ୍କୁ ମତେ ଦେଖାଇଲେ । ସେ
ମୋର ଆଖି ମେଲା କରି ଦେଖିଲେ । ପେଟ ଚିପି ଦେଖିଲେ । କହିଲେ
—ପେଟରେ ପ୍ଲୀହା ବଢ଼ିଛି । ରକ୍ତ ନାହିଁ । କୃମି ମଧ୍ୟ ହୋଇଛନ୍ତି ।
ଔଷଧ ଚାଲିଲା । ତିନି ଚାରି ପ୍ରକାର ଔଷଧ ଖାଇଲି । କିନ୍ତୁ ସ୍ୱାସ୍ଥ୍ୟର
ପରିବର୍ତ୍ତନ ହେଲାନାହିଁ । ଗୌରୀର ବିଚ୍ଛେଦ ରୋଗ ଯାହାକୁ ଧରିଛି—
ତାକୁ କେଉଁ ଡାକ୍ତର ଭଲ କରି ପାରିବ ?

କେହି ସିନା ବୁଝି ପାରୁ ନ ଥାନ୍ତି କିନ୍ତୁ ମୋର ଅନ୍ତରଙ୍ଗ ମରମୀ ବନ୍ଧୁ ମାୟାଧର ସବୁ ବୁଝି ପାରୁଥାଏ । ସେଦିନ ବାଲିକୁଦ ତଳେ ଏକୁଟିଆ ତାଳଗଛ ମୂଳେ ଦୀର୍ଘଶ୍ୱାସ ପକାଇ ମୁଁ ଯେତେବେଳେ ମାୟାଧରକୁ କହିଲି—ମାୟାଧର ! ଗୌରୀ କାହିଁ ? ମୋର ପ୍ରାଣପ୍ରିୟା ଗୌରୀ କାହିଁ ? ତାକୁ ମତେ ଦେଖା ! ନ ହେଲେ ଏ ପ୍ରାଣ ରହିବ ନାହିଁ —ମାୟାଧର ମୋର ପିଠିକୁ ଆଉଁସି ଆଉଁସି କହିଲା—ଗୌରୀ ଆସିବ ନିଶ୍ଚେ ତା' ବେଳାରେ । ତୁ ଏମିତି ବ୍ୟସ୍ତ ହ'ନା । ସବ୍ରତ କର । କାଲିଠାରୁ ପୂର୍ଣ୍ଣେଶ୍ୱର ମହାଦେବଙ୍କ ପାଖେ ଅଭିଷେକ କରି ବେଲପତୀ ଚଢେଇବା । ଦେଖିବୁ ହପ୍ତାକ ଭିତରେ ତୋ ଗୌରୀ ତୋ ପାଖକୁ ଆସିଯିବ । ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି—ମୋ ଗୌରୀ କ'ଣ ? ମୋର କ'ଣ ଗୌରୀ ଅଛି ? ସେହି ପରମ ବିଦଗ୍ଧ ଜ୍ଞାନୀ ପାଙ୍ଗଟି ହସି ହସି ମତେ କହିଲା—ସମସ୍ତଙ୍କର ଗୋଟିଏ ଲେଖା ଗୌରୀ ଅଛି । ଯେ ଖୋଜିବ, ସେ ପାଇବ । ଏବଂ ମହାଦେବଙ୍କୁ ଆରାଧନା ନ କଲେ କେହି କାହା ଗୌରୀର ଭେଟ ପାଇବେ ନାହିଁ । ଏହି ମହାଦେବ ହିଁ ସବୁ କେଦାରକୁ ତା'ର ଗୌରୀ ଭେଟାଇ ଦିଅନ୍ତି ଓ ସବୁ ଗୌରୀକୁ ଭେଟାଇ ଦିଅନ୍ତି ତା' କେଦାରକୁ ।

ତାହାହିଁ ହେଲା । ପ୍ରତିଦିନ ସକାଳୁ ମୁଁ ଓ ମାୟାଧର ମିଶି ବେଲପତ୍ର ଓ କନିଅର ଫୁଲ ସଂଗ୍ରହ କରି ପୂର୍ଣ୍ଣେଶ୍ୱର ମହାଦେବଙ୍କ ଲିଙ୍ଗ ଉପରେ ଚଢ଼ାଇ ପାଣି ଢାଳିଲୁ । ଏବଂ ମାୟାଧର ଜଣେ ପୋଖତ ପୂଜାରୀ ପରି ଖୁବ୍ ଜୋରରେ ପାଟିକରି ଦେଉଳ ଗର୍ଭଗୃହ ଥରାଇ ଦେଉଥାଏ—ହେ ପୂର୍ଣ୍ଣେଶ୍ୱର ! ବଂ ବଂ ଭୋଳାନାଥ ! ନୀଳମଣିକୁ ତା' ଗୌରୀ ସଙ୍ଗେ ଭେଟ କରାଇ ଦିଅ ।

ସାତ ଦିନ ଧରି ଏମିତି ଅଭିଷେକ କଲୁ । ··· ତା' ପରେ କିଛିଦିନ ବିତିଗଲା ।

ସେଇଟା ଥିଲା କାର୍ତ୍ତିକ ମାସର ଶେଷ ପକ୍ଷ । ଖୁବ୍ ଶୀତ ପଡ଼ି ଯାଇଥାଏ । ଆମେ ପ୍ରାଚୀ କୂଳର ଅନ୍ଧୁଣିଆ ମଠ ବଗିଚାରୁ ପ୍ରଚୁର ଅଁଳା କୋଳ ତୋଳି ପକେଟରେ ରଖି ଗୋଟିଏ ଲେଖାଁ ଖାଉଥାଉ । ଏବଂ କୋଳିଟି ସରିଗଲେ ପାଣି ପିଉଥାଉ । ପାଟି ଭାରି ମିଠା ଲାଗୁଥାଏ ।

ଯେଦିନ ସକାଳେ ମୁଁ ପକେଟରେ ଅଂଳା ଝୋଳି ଭର୍ତ୍ତିକରି ସ୍କୁଲ ବଗିଚାରେ ବୁଲୁଥାଏଁ । ଆକାଶରେ ସାମାନ୍ୟ ମେଘ ଭୁଲାଭଟିଲା ପରି ଛୁଇ ହୋଇଥାଏ । ସୂର୍ଯ୍ୟକିରଣ ମଳିନ ଦିଶୁଥାଏ । ଏବଂ ଶୀତ ଯୋଗୁଁ ସେ ଖରା ଦେହକୁ ବଡ଼ ଆରାମ ଲାଗୁଥାଏ । ବଗିଚାରେ ନୂଆ ହୋଇ ଗେଣ୍ଡୁ ଫୁଲ ଫୁଟିଥାନ୍ତି । ସ୍କୁଲ୍ ଆରମ୍ଭ ହେବାକୁ ଅଳ୍ପ ସମୟ ଆଉ ଥାଏ । ସାନ ମାଷ୍ଟ୍ରେ ଦୁଇଜଣ ଆସି ଯାଇଥାନ୍ତି । ମାତ୍ର ବଡ଼ମାଷ୍ଟ୍ରେ ଆସି ନ ଥାନ୍ତି । ମୁଁ କିନ୍ତୁ ଖୁବ୍ ଭୋରରୁ ଆସି ଯାଇଥିଲି । ମୋ ସାଙ୍ଗ ମାୟାଧର ଆସି ମୋ ପାଖେ ଠିଆ ହେଲା । ମୁଁ ତାକୁ ଦୁଇଟି ଅଁଳା ଝୋଳି ଦେଲି । ସେତେକ ସେ ଏକାବେଳକେ ପାଟିରେ ପକାଇ ଦେଇ ମୋ ହାତ ଧରି ସ୍କୁଲ ଭିତରକୁ ଟାଣିନେଲା । ମୁଁ ତାକୁ କହିଲି—ରହ ! ସେମିତି ଟାଣୁଛୁ କାହିଁକି ? ବଡ଼ ମାଷ୍ଟ୍ରେ ଆସନ୍ତୁ । ସେ କିନ୍ତୁ ଖୁବ୍ ଉଲ୍ଲସିତ ଉଚ୍ଛ୍ୱସିତ କଣ୍ଠରେ ମୋତେ ଭିଡ଼ି ନେଇ ସ୍କୁଲ ବଗିଚାରେ ଉତ୍ତର ଦିଗରେ ଥିବା ଛୋଟିଆ ବରଓସ୍ତ ଗଛ ମୂଳରେ ଠିଆ କଲା । ତା'ପରେ ଅଙ୍ଗୁଳି ନିର୍ଦ୍ଦେଶ କରି ସ୍କୁଲ ବାରଣ୍ଡାର ଶେଷରେ ଗୋଟିଏ ଖୁମ୍ବକୁ ଆଉଜି ଚୁପ୍‌ଚାପ୍ ଠିଆ ହୋଇଥିବା ଝିଅଟିକୁ ଦେଖାଇ କହିଲା—ସେ ଝିଅଟିକୁ ଦେଖୁଛୁ ? ଆମ ଡାକ୍ତରଖାନାର କମ୍ପାଉଣ୍ଡର ଗୋବିନ୍ଦ ବାବୁଙ୍କ ଝିଅ । ଆଜି ନୂଆ ହୋଇ ସ୍କୁଲକୁ ଆସିଛି । ଦେଖିଲୁ କେଡ଼େ ସୁନ୍ଦର ! ଅବିକଳ ଗୌରୀ ଭଳିଆ । ନୁହେଁ ? ଦେଖିଲୁ ?

ମୋର ଗୌରୀଗତ ଚିତ୍ତର ଘବାଚ୍ଛନ୍ନ ଦୃଷ୍ଟି ତେଣିକି ପ୍ରସରିଗଲା । ମୋ ଆଖି ତା' ଉପରେ ପଡ଼ିବା ମାତ୍ରେ ସ୍ଥିର ହୋଇଗଲା । ମୋର ଆଉ ପଲକ ପଡ଼ିଲା ନାହିଁ । ଏମିତି ସୁନ୍ଦର ରୂପ ! ପାତଳୀ ହୋଇ ଡେଙ୍ଗୀ ଝିଅଟିଏ । କୁଞ୍ଚ କରି ଛୋଟ ଶାଢ଼ୀଟିଏ ପିନ୍ଧିଥାଏ । (ଆମ ପିଲାବେଳେ ଫ୍ରକ୍ ପ୍ରଚଳନ ନ ଥିଲା) । ମୁଣ୍ଡରେ କଳା ମିଚିମିଚି ଗହଳ ବାଳ । ଦୁଇଟି ଛୋଟ ଛୋଟ ମୋଟା ବେଣୀ ଦୁଇକାନ୍ଧ ବାଟେ ଓହ୍ଲାଇ ଆସି ଛାତି ଉପରେ ପଡ଼ିଥାଏ । ତା' ପାଦ ଦୁଇଟିରେ ସେ ଅଳତା ପିନ୍ଧିଥାଏ । ତା'ର ମୁହଁଟି ଫଗୁଣ ମାସର ପୁନିଅ ଜହ୍ନ ଭଳି ତୋଫା ଦିଶୁଥାଏ । ବେଣ୍ଟ ପୋଖରୀରେ ଫୁଟିଥିବା ହସୁଆଳୀ ଶ୍ୱେତକଇଁଟିଏ

ଭଳ ବସୁଥାଏ । ସବୁଠାରୁ ଚମତ୍କାର ବସୁଥାଏ ତା'ର ସୁନ୍ଦରିଆ କଅଁଳ ନାକର ଗୋଟିଏ ପଟେ ଜୁକୁଜୁକୁ ହେଉଥିବା ସୁନା ଠିକଣାଟିଏ । ତା' ପାଖରେ ଅଧାବୁଢ଼ା ମଣିଷଟିଏ ଠିଆ ହୋଇଥାନ୍ତି । ବୋଧହୁଏ ତା'ର ବାପା ଗୋବିନ୍ଦ ବାବୁ କମ୍ପାଉଣ୍ଡର । ସେ ଝିଅଟି ବଡ଼ିଗୁ ଆଡ଼କୁ ଗୃହିଁ ପିଲମାନଙ୍କ ଖେଳ କୌତୁକ ଦେଖୁଥାଏ—ଆଉ ମଝିରେ ମଝିରେ ହସି ଦେଉଥାଏ । ବେଳେବେଳେ ସେ ଆମେ ଯୋଉ ହଗରେ ଠିଆହୋଇ ତାକୁ ଦେଖୁଥିଲୁ—ସେଆଡ଼କୁ ମଧ୍ୟ ଗୃହିଁ ଦେଉଥାଏ । ମଝିରେ ମଝିରେ କ'ଣ ବା ଭାବି ହସି ଦେଉଥାଏ । ତା'ର ସୁନ୍ଦର ଧୋବ ଫରଫର ଦାନ୍ତ ଗୁଡ଼ିକ ତା'ର ମନ୍ଦାରଫୁଲିଆ ପାଟି ଭିତରୁ ସାମାନ୍ୟ ବାହାରପଡ଼ି ପୁଣି ଲୁଚ ଯାଉଥାନ୍ତି । ମୁଁ ତନ୍ମୟ ହୋଇ ସେଇ ମନୋହର ମୂର୍ତ୍ତିଟିକୁ ଦେଖୁ-ଥାଏ । ସେଭଳି ସୁନ୍ଦର ଝିଅ ଆମ ଗାଁରେ ମୁଁ ଦେଖି ନ ଥିଲି । ଅବିକଳ ଯାହାରେ ବାହାରି ଥିବା ଜେମା ଦେଈଙ୍କ ଭଳି—ସେମିତି ଚମତ୍କାର ଆଉ ସେମିତି ମୂଲ୍ୟବାନ । କମ୍ବା ଦେଖିଥିବା ସେଇସବୁ ଯାହା ଜେମା ଦେଈମାନଙ୍କ ଠାରୁ ସତରେ ବହୁ ଗୁଣରେ ଅଧିକା । ମୋତେ ଲାଗିଲା—ଏତେଦିନେ ଯୋଉ ଗୌରୀ ଲାଗି ମୁଁ ଝୁରି ମରୁଥିଲି—ଏ ଝିଅଟି ନିଶ୍ଚେ ସେଇ । ଏବଂ ପୂର୍ଣ୍ଣେଶ୍ୱର ମହାଦେବଙ୍କ ଉପରେ ଅଭିଷେକ କଲାରୁ ତାଙ୍କ କୃପାରୁ ଆଜ ସ୍ତ୍ରୀ ସଙ୍ଗେ ମୋର ଭେଟ ହେଲା । କନ୍ତୁ ତା' ତ ହେଲା । ବର୍ତ୍ତମାନ ମୁଁ ସ୍ତ୍ରୀ ସଙ୍ଗେ ମିଶିବ କପରି ? କନ୍ତୁ ଏକଥା ମୁଁ ମାୟାଧରକୁ ମୁହ ଖୋଲି କହି ପାରିଲି ନାହିଁ । କନ୍ତୁ ମାୟାଧର ମୋର ମର୍ମସଖା ଓ ନର୍ମସଖା । ସେ ମୋ ଅନ୍ତର ବୁଝିଗଲା । ତା'ଶ ଆଡ଼ୁ ସେ ମତେ କହିଲା ଯେ ପୂର୍ଣ୍ଣେଶ୍ୱର ତୋତେ ତୋର ଗୌରୀ ସଙ୍ଗେ ଭେଟ କରିଦେଲେ । ଏଣିକ ଆଉ କଛି ଚନ୍ତା ନାହିଁ । ତୁ' ତାକୁ ଚୋରି କରି-ପାରିବୁ । ସେ କଥା ଗୁପ୍ତେ ଗୁପ୍ତେ ହୋଇଯିବ ।

ମୁଁ ବ୍ୟାକୁଳ ଅଥଚ ସାମାନ୍ୟ ଲଜ୍ଜିତ ଗଳାରେ ମାୟାଧରର ହାତ ଧରି କହିଲି—ମାୟାଧର ! ମୁଁ ତାକୁ ନ ପାଇଲେ ପୂର୍ଣ୍ଣେଶ୍ୱରଙ୍କ ବାର୍ଷିକ ଡେଇଁ ପଡ଼ି ମରିବି—ଯେମିତି ଅଲେଖ ହୋତାର ଝିଅ ତାରାମଣି ମରିଥିଲା ।

ମାଧ୍ବାଧର କହିଲା—ସେମିତ ଅଧୀର ହୋ'ନା । ନିଶ୍ଚେ ତୋର ମନୋବାଞ୍ଛା ପୂର୍ଣ୍ଣେଶ୍ୱର ସଫଳ କରିବେ ।

ମୁଁ ମାଧ୍ବାଧରକୁ କହିଲି—ଦେଖ୍ ! ଆଉ ପୂର୍ଣ୍ଣେଶ୍ୱରଙ୍କୁ ଡାକିବି ନାହିଁ । ମୁଁ କୁଚାମଚଣ୍ଡୀଙ୍କୁ ଘରି ମାନେ । ସେ ମୋର ବହୁତ କଥା ପୂରଣ କରିଛନ୍ତି । ମୁଁ କୁଚାମଚଣ୍ଡୀଙ୍କ ପାଖେ ମାଗଣା କରିବି ।

ମାଧ୍ବାଧର ମୋ ପ୍ରସ୍ତାବକୁ ସମର୍ଥନ କଲା । ତା'ପରେ କହିଲା—ଆଜି ଦେଖିବା ସେ କୋଉ ଶ୍ରେଣୀରେ ପଢ଼ିବ ! ସେ ତ ନୂଆ ଆସିଛି ସ୍କୁଲକୁ ! ତୋର କ୍ଳାସରେ (ମାନେ ତୃତୀୟ ଶ୍ରେଣୀରେ) ଯଦି ପଢ଼ନ୍ତା, ତେବେ ସୁବିଧା ହୁଅନ୍ତା ।

ମୁଁ କହିଲି—ଦେଖାଯାଉ ! ମା' କୁଚାମଚଣ୍ଡୀଙ୍କ ମହିମାରୁ କ'ଣ ହେଉଛି !!

ବଡ଼ ମାଷ୍ଟ୍ରେ ଆସିବାରୁ ଆମେ ସବୁ ଶ୍ରେଣୀକୁ ଗଲୁ । ସ୍କୁଲରେ ପଢାପଢ଼ି ଆରମ୍ଭ ହୋଇଗଲା । ଆମ ଶ୍ରେଣୀରେ ସେ ପିରିଅଡ଼ରେ ସାହିତ୍ୟ ପଢ଼ା ହେବ । "ଆଦର୍ଶ ପାଠ" ବୋଲି ସାହିତ୍ୟ ବହିଟିଏ ପଢ଼ା ହେଉଥାଏ । ସେଥିରୁ ଗଲାଥର "ବିଲାତିଆଳୁ" ପ୍ରବନ୍ଧଟିଏ ପଢ଼ା ସରିଥାଏ । ଏବଂ "ଧଳା ଭାଲୁ" ବିଷୟଟିରୁ କିଛି ପଢ଼ା ହୋଇ ଆଉ ଅଧେ ବାକି ଥାଏ । ଏଠି କହିରଖେଁ ଯେ ଆମ ପିଲାଦିନେ—ଅର୍ଥାତ୍ ଗୃଳିଶି ପଇଁଗୃଳିଶି ବର୍ଷ ତଳେ ଆମ ଗ୍ରାମରେ ବିଲାତିଆଳୁ ଗୋଟିଏ ଅତି ଅଭିଜାତ ଓ ମହାର୍ଘ ଖାଦ୍ୟବସ୍ତୁ ରୂପେ ପରିଗଣିତ ହେଉଥିଲା । ସେହିପରି ଫୁଲକୋବି, ବନ୍ଧାକୋବି ଓ ବିଲାତି ବାଇଗଣ ମଧ୍ୟ । ଗରମ ମସଲା ଦିଆ ବିଲାତିଆଳୁର ଦମ୍ ବା ସାମାନ୍ୟ ବିଲାତିଆଳୁ ଚକଟା ବା ଭରତା ଆମ ପକ୍ଷରେ ମାଛ ମାଂସ ଠାରୁ ଅଧିକ ଆକର୍ଷଣୀୟ ଓ ଲୋଭନୀୟ ଖାଦ୍ୟ ଥିଲା । କିନ୍ତୁ ମୋ ମନରେ ବିଲାତିଆଳୁର ଆକର୍ଷଣ ଅନ୍ୟ କାରଣରୁ ହୋଇଥିଲା । ବିଲାତି ଆଳୁର ରୂପ ଏବଂ ତା'ର ଚଭିନ୍ନ ନାମ ସଙ୍ଗେ ବିଲାତି ଶବ୍ଦର ବ୍ୟବହାର—ଏଇ ନବାଗତ ବିଦେଶୀ ପରିବାରଟି ପ୍ରତି ମୋ ମନରେ ଏକ ସ୍ୱପ୍ନଜଗତର ସମ୍ବନ୍ଧ ଯୋଡ଼

ଦେଉଥିଲା । ନୈନିତାଳ, କାଠେଣୀ ଆଦି ବିଲାତି ଆଳୁର ନାମଗୁଡ଼ିକ ମୋ ଚିତ୍ତରେ ତା' ପ୍ରତି ସମ୍ଭ୍ରମଭାବ ମଧ୍ୟ ଜାତ କରୁଥିଲା । ତା'ପରେ "ଧଳା ଭାଲୁ" ବିଷୟଟି ମଧ୍ୟ ମୋର କଳ୍ପନାକୁ ଖୁବ୍ ଉତ୍ତେଜିତ କରୁଥିଲା । ମୁଁ ସେତେବେଳକୁ ଭାଲୁ ଦେଖି ସାରିଥିଲି । ଏବଂ ସେ ଜୀବଟି ମୋତେ ଖୁବ୍ କୌତୁକପ୍ରଦ ମନେ ହୋଇଥିଲା । କିନ୍ତୁ ସେଗୁଡ଼ିକ ଥିଲେ ଘୋର କଳା ଏବଂ ବିରକ୍ତିକର ଧୂସର ମଇଳା ଲୋମାବଳୀରେ କଦର୍ଯ୍ୟ । ଏବେ "ଧଳା ଭାଲୁ" ବିଷୟଟି ଜାଣିବା ପରେ ମୋର କଳ୍ପନାରେ ମୁଁ ସେ ଜନ୍ତୁଟିକୁ ପ୍ରତ୍ୟକ୍ଷ କରି ଖୁବ୍ ଭଲ ପାଇ ବସିଲି । ତା' ଛଡ଼ା, ଏହି ଜନ୍ତୁଟି ମୋର କଳ୍ପନାକୁ ସେହି ସବୁ ଦୂରଦୂରାନ୍ତର ସ୍ଥାନ ଆଡ଼କୁ ଉଡ଼ାଇ ନେଉଥିଲା । ରୁଷ ଦେଶ—ଚିର ଶୀତଋତୁ ଓ ଦିନରାତି ଶ୍ୱେତବର୍ଣ୍ଣର ତୁଷାରଦ୍ୱାରା ଆଚ୍ଛନ୍ନ ସାଇବେରିଆ ନାମକ ସ୍ଥାନରେ ସେଇ-ସବୁ ଦିଗନ୍ତବ୍ୟାପୀ ନିର୍ଜନ ପ୍ରାନ୍ତରମାନ । ଲିଚୁ ନାମକ ଫଳଗଛ ଓ ତା'ର ମିଠାଫଳ—(ଆମ ମହୁଲ ପରି) ସିଲ୍ ମାଛ—ପେଙ୍ଗୁଇନ ପକ୍ଷୀ,—ସେଇ ସବୁ ଦୂରଦୂରାନ୍ତ ସୂର୍ଯ୍ୟ ତେଜହୀନ ଶୀତ ଦେଶର ମହିଷ ମାଂସ ଲୋଲୁପୀ ବିରାଟ ଦେହୀ ବାଘମାନେ, ଏସବୁ ମୋର ମନକୁ ଏକ ଅଜଣା ରହସ୍ୟମୟ ସ୍ୱପ୍ନରେ ଅଭିଭୂତ କରି ରଖିଥାଏ । ପ୍ରକାଶ ଥାଉକି —ଆଦର୍ଶ ପାଠ ବହିର ଏହି "ବିଲାତିଆଳୁ" ଓ "ଧଳା ଭାଲୁ" ପ୍ରବନ୍ଧ ଦୁଇଟି ମୋର ଶୈଶବ ବିଚ୍ଛେଦ ସମ୍ବନ୍ଧୀୟ ଅନୁଭୂତି ସଙ୍ଗେ ମିଶିମାଶି ଏକ ଅଦ୍‌ଭୁତ ସ୍ୱପ୍ନିଳ ପରିବେଶ ଭିତରେ ମୋର ମନକୁ ଆଚ୍ଛନ୍ନ ରଖୁଥାଏ । ତା' ପରେ ଆଜି ସକାଳୁ ପୁଣି ସେଇ ଚେଙ୍ଗୀ, ପାଚେଲୀ, ଚୋରା ଚକ୍ ଚକ୍, ସୁନ୍ଦରୀ ଝିଅଟିର ନାକରେ ଜକଜକ ସୁନାଠିକଣା ଦେଖି ମୋର ମନ ଆବେଗ, ଉଦ୍‌ବେଗ, ଉତ୍କଣ୍ଠା, ଲାଳସା, ଆନନ୍ଦ ଓ ଅସ୍ଥିରତାରେ ଉବୁଟୁବୁ ହୋଇଗଲା । ବଡ଼ମାଷ୍ଟ୍ରେ ନିଜେ ପଢ଼ାଉଥାନ୍ତି ଆଦର୍ଶ ପାଠ । ସେ ବହିଟି ଧରି ଗତ ଥରରୁ ଅଧାଥିବା ଧଳାଭାଲୁ ବିଷୟଟି ପଢ଼ାଇବାକୁ ଉପକ୍ରମ କରୁଛନ୍ତି—ହଠାତ୍ ଆମ ଗ୍ରାମର କମ୍ପାଉଣ୍ଡରବାବୁ ସେହି ସୁନ୍ଦର ଝିଅଟିକୁ ଧରି ଆମଶ୍ରେଣୀକୁ ପଶିଆସିଲେ । ମାଷ୍ଟ୍ରେ ଚଉକିରୁ ଉଠି ତାଙ୍କୁ ନମସ୍କାର ଜଣାଇଲେ । ମୋ ଛାତି ଭୀଷଣ ବେଗରେ ଧଡ଼ଫଡ଼ ହେବାକୁ ଆରମ୍ଭ କଲା । ହଁ—ଏଠି କହିରଖେଁ ଯେ

ଆମ ପିଲା ସମୟରେ ଆମ ଗାଁର ଝିଅମାନେ ନ: ପ୍ରା: ସ୍କୁଲ ସ୍ତରରୁ ଆଉ ଉପରକୁ ପଢ଼ୁନ ଥିଲେ । ବହୁ ଝିଅ ସେତେବେଳକୁ ଖୁବ୍ ବୟସ୍କା ମଧ୍ୟ ଦିଶୁଥାନ୍ତି ଓ ଆମଠାରୁ ବେଶୀ ପରିପକ୍ୱ ମନେ ହେଉଥାନ୍ତି । କେତେକ ଝିଅ ଏଥିଲାଗି ଦ୍ୱିତୀୟ ଶ୍ରେଣୀ ପାଠ ପଢ଼ା ସାରି ଯେ ଘରେ ରହିଯାନ୍ତି—ଆଉ ସ୍କୁଲକୁ ଆସନ୍ତି ନାହିଁ । ବର୍ତ୍ତମାନ ଏଇ ସୁନ୍ଦର ଝିଅଟିକୁ ଏତେ ପାଖରୁ ମୋ ଆଗରେ ଦେଖିବା ମାତ୍ରେ ତା'ର ସୁନ୍ଦର ପରିଚ୍ଛନ୍ନ ଚେହେରା ହସ ଓ ଠାଣୀମାଣି ଦେଖି ମୁଁ ପ୍ରାୟ ମୋହିତ ହୋଇଗଲି । କିନ୍ତୁ ସେ ମୋ ଠାରୁ ଖୁବ୍ ଡେଙ୍ଗା ଥିଲା ଏବଂ କିଛିଟା ଅଧିକ ବୟସ୍କା ମଧ୍ୟ ଥିଲା କି କ'ଣ କେଜାଣି, ସେ ପ୍ରଥମ ଦେଖାରେ ସେ ମୋତେ ଖୁବ୍ ବଡ଼ ମନେ ହେଲା । ମୁଁ ତ ଥିଲି ଆମ କ୍ଲାସର ସବୁଠାରୁ ଗେଡ଼ା ପିଲା । ଏତେ ଗେଡ଼ା ଯେ, କେବଳ ମୋର ଆକୃତି ଦେଖି ଲୋକେ ମତେ ଅତି ସାନ ପିଲା ଓ ନଗିଦା ଭାବୁଥିଲେ । ସେ ଝିଅଟି ମୋର ବଡ଼ ଭଉଣୀ ଭଳି ଦିଶୁଥିଲା । ଆମ ଆଗରେ ଲମ୍ବା ଡେକ୍‌ସଟିଏ ପଡ଼ିଥିଲା ଓ ଆମେ ତା' ଉପରେ ସିଲଟ ବହି ରଖି ତଳେ ବସି ପଢ଼ୁଥିଲୁ । ମୁଁ ପ୍ରଥମ ଧାଡ଼ିରେ ବସିଥିଲି ଓ କାନ୍ଥ କଡ଼କୁ ଲାଗି ବସିଥିଲି । କାରଣ ମୁଁ ଥିଲି ଶ୍ରେଣୀର ସବୁଠାରୁ ଗେଡ଼ା ପିଲା । ହଠାତ୍ ମୋର ପ୍ରଥମ ଅନୁଭୂତିକୁ ଭାଙ୍ଗି ବନ୍ଧୁ ମାଷ୍ଟ୍ରେ ସେ ଝିଅଟିକୁ ମୋ ପାଖରେ ବସିବାକୁ କହିଲେ···ମତେ କାନ୍ଥ କଡ଼ରୁ ଘୁଞ୍ଚିଯାଇ ତାକୁ ସେ ଜାଗାଟି ଛାଡ଼ିଦେବାକୁ କହିଲେ । ସେ ହସି ହସି ଆସି ମୋ ପାଖରେ ବସିଲା । ତା'ର ବାପା ତା'ପରେ ଚାଲିଗଲେ । ଆମେ ବସ୍ତାନି ବାନ୍ଧିଥିଲୁ । ସେ କିନ୍ତୁ ସୁନ୍ଦର ହାତକାମ ବ୍ୟାଗଟିରେ ଖାତା ପେନସିଲ୍ ଓ ସିଲଟ ଆଣିଥାଏ । ତା' ଦେହଟି ପ୍ରାୟ ମୋ ଦେହକୁ ଲାଗି ଯାଇଥାଏ । ତା' ଦେହରୁ ଗୋଟିଏ ମନମତାଣିଆ ବାସ୍ନା ବାହାରୁଥାଏ । ତା' ପାଟିରୁ ଲବଙ୍ଗର ବାସ୍ନା ଆସୁଥାଏ । ତା' ମୁଣ୍ଡରୁ ମଧ୍ୟ ଆଉକି ପ୍ରକାରେ ବିଚିତ୍ର ମଧୁର ବାସ୍ନା ବାହାରୁଥାଏ । କହିବାରେ ଦ୍ୱିଧା ନାହିଁ ଯେ ସେ ମୋଠାରୁ ବହୁମନ୍ତେ ସୁନ୍ଦର, ପରିଚ୍ଛନ୍ନ ଓ ସୌରଭ-ପୂର୍ଣ୍ଣ ଚେହେରାବାଲି ଥିଲା । ତା' ତୁଳନାରେ ମୁଁ ନିଜକୁ ଖୁବ୍ ଗ୍ରେଡିଆ ଆଉ ବିଶେଷତ୍ୱବିହୀନ ପ୍ରାଣୀଟିଏ ମନେକଲି । ମତେ ଟିକିଏ ସଂକୋଚ ଲାଗିଲା । ମୁଁ ତା' ପାଖରୁ ଘୁଞ୍ଚି ଘୁଞ୍ଚି ହୋଇ ବସୁଥାଏ । କିନ୍ତୁ ମୁଁ ପୁରା

ସମ୍ମୋହିତ ହୋଇ ଯାଇଥାଏ । ଶକ୍ତି ସାଧନା କରୁଥିବା ସାଧକ ହଠାତ୍ ଅଷ୍ଟ ପ୍ରହରଣ ଧାରିଣୀ ଦିବ୍ୟଜ୍ୟୋତିର୍ମୟୀ ଅପରୂପ ସୌନ୍ଦର୍ଯ୍ୟାନ୍ୱିତା ଅଲୌକିକା ମୂର୍ତ୍ତିଙ୍କୁ ତା' ଆଗରେ ହଠାତ୍ ଆବିର୍ଭୂତା ହୋଇଯିବାର ଦେଖି, ଯେମିତି ଆନନ୍ଦ, ଭୟ, ଉନ୍ମାଦ ଓ କିଂକର୍ତ୍ତବ୍ୟବିମୂଢ଼ତାରେ ସଙ୍କୁଚିତ ବା ବିଗଳିତ ହୋଇଯାଏ, ମୁଁ ସେହିପରି ନିଜକୁ ଅନୁଭବ କରୁଥିଲି । ମୋର ବୁଦ୍ଧି ବୃତ୍ତି ଓ ସଚେତନତା ଲୋପ ପାଇଗଲା । ମାତ୍ର କିଛି ସମୟ ଚୁପ୍‌ଚାପ୍ କଟିଲା । ବଡ଼ମାଷ୍ଟ୍ରେ ବହିଟି ତାଙ୍କ ଚଉକି ପାଖରେ ଥୋଇଦେଇ କେଜାଣି କାହିଁକି ହଠାତ୍ ବାହାରକୁ ଉଠିଗଲେ । ଏହି ସମୟରେ ସେ ଝିଅଟି ମୋ ଦେହକୁ ଲାଗିଯାଇ ମତେ ପଚାରିଲା— ତୁମ ନାମ କ'ଣ ? ମୁଁ ଲଜ୍ଜାରେ ଉତ୍ତର ଦେଇପାରିଲି ନାହିଁ । ତା'ପରେ ସେ ପୁଣି ମୋତେ ପଚାରିଲା । ତା'ର କଣ୍ଠସ୍ୱରଟି କୋଇଲିର କୁହୁ ଭଳି ମୋ କାନରେ ବାଜି ଉଠିଲା । ମୁଁ ମଧ୍ୟ ଧୀର ସ୍ୱରରେ ମୋ ନାମ କହିଲି । କିନ୍ତୁ ମୁଁ ଏତେ ସଙ୍କୁଚିତ ମନେ କଲି ଯେ ତା' ନାମଟି ପଚାରି ପାରିଲି ନାହିଁ । କିନ୍ତୁ ସେ ତା' ଆଡ଼ୁ ନିଜ ନାଁଟି କହିଲା—'ମୋ ନାଁ ହେଉଛି ବିଦ୍ୟୁଲ୍ଲତା ।' ମୋତେ ଡାକନ୍ତି "ପାଙ୍କା" । "ବିଦ୍ୟୁଲ୍ଲତା" ଶବ୍ଦଟି ଶୁଣିବାମାତ୍ରେ ମୋର ସାରା ଅସ୍ତିତ୍ୱ ଉପରେ ହଠାତ୍ ଗୃଇଁକିନା ବିଜୁଳି ମାରିଦେଲା ଭଳି ମତେ ଲାଗିଲା । ଏତେ ସୁନ୍ଦର ନାଁ ପୁଣି ହୋଇପାରେ ? ବି-ଦ୍ୟୁ-ଲ-ତା । ଆଃ ! ମୁଁ ସାଙ୍ଗେ ସାଙ୍ଗେ ଆକାଶର ବିଜୁଳି ଆଉ ମର୍ତ୍ତ୍ୟର ପୁଷ୍ପିତା ଲତାଟିକୁ ମୋର କଳ୍ପନା ରେ ଯୋଡ଼ିଦେଇ ତା'ର ଚମତ୍କାରିତାକୁ ବୁଝି ନେଇ ପାରିଲି । ଏଇ ବ୍ୟାପାରରେ ଆନ୍ଥର ପିଲା ହିନ୍ଦୁ ମୋର ଅଦ୍‌ଭୁତ କ୍ଷମତା ଥିଲା । ଭଲ ଶବ୍ଦଟିଏ ଶୁଣିଲେ—ମୁଁ ତା'ର ମର୍ମ ବୁଝି ଯାଉଥିଲି ସାଙ୍ଗେ ସାଙ୍ଗେ । ରୂପ,ଧ୍ୱନି ଓ ଧ୍ୱନିନାଦ ବ୍ୟାପାରକୁ ବୁଝିବା ଲାଗି ଏବଂ ସେମାନଙ୍କ ଭିତରେ ଯୋଗ ବିଯୋଗ ବୁଝିବା ଲାଗି ଯେଉଁ ମାନସିକ ପ୍ରବଣତା ଆବଶ୍ୟକ, ତା' ମୋର ପ୍ରଚୁର ଥିଲା । ମୁଁ ତା'ର ବିଦ୍ୟୁଲ୍ଲତା ନାମଟିକୁ ମନ ଭିତରେ ବାରମ୍ବାର ଆଉଡ଼ାଇଲି ଓ ଆସ୍ୱାଦ କଲି । ରୂପ ସଙ୍ଗେ ନାମଟି ମିଳିଗଲେ ଏତେ ଅପୂର୍ବ ଲାଗେ ଯେ କହି ହେବ ନାହିଁ । ବଡ଼ମାଷ୍ଟ୍ରେ କ୍ଲାସକୁ ଆସିବାକୁ ଡେରିକଲେ । ବିଦ୍ୟୁଲ୍ଲତା କହିଲା—ମୁଁ ତ ଏ ସ୍କୁଲକୁ ନୂଆ ଆସିଛି ।

ମୁଁ ଆମ ଗାଁ ସ୍କୁଲରେ ପଢ଼ୁଥିଲି । ବାପା ମତେ ଆଉ ମୋର ଭାଇ-ମାନଙ୍କୁ ଆଉ ବୋଉକୁ ଏଠିକି ନେଇ ଆସିଲେ । କାଲି ଏ ସ୍କୁଲରେ ମୋର ନାମ ଲେଖାହେଲା । ମୁଁ ମୋ ବନ୍ଧୁପଣ ଗାଁରେ ଛାଡ଼ି ଆସିଛି । ତୁମ ଆଦର୍ଶ ପାଠ ବହିଟା ମତେ ଆଜି ଦେଇ ପାରିବ ? ଏକା ନିଃଶ୍ୱାସକେ ସେ ଏତେକ କହି ମୋ ଆଡ଼କୁ ଚାହିଁ ହସହସ ଦେଖାଗଲା । ମୁଁ ତା' ମୁହଁକୁ ଚାହିଁ ଦେଇ ସଙ୍ଗେ ସଙ୍ଗେ ତଳକୁ ମୁହଁ ପୋତିଦେଲି । ଏତେ ସୁନ୍ଦର ମୁହଁ !! ଚାହିଁ ପାରିଲି ନାହିଁ । ସେହିପରି ତଳକୁ ମୁହଁ ପୋତି କହିଲି — ହଁ ନିଅ । ଏହା କହି ବହିଟି ତା' ହାତକୁ ବଢ଼ାଇ ଦେଲି । ସେ ବହିଟିକୁ ଖୋଲି ଦେଖିଲା । ସେଥିରେ ମୁଁ ମୋ ନାଁ ଲେଖିଥିଲି । ସେ ତାକୁ ପଢ଼ି କହିଲା—ତୁମ ହସ୍ତାକ୍ଷର ଭାରି ସୁନ୍ଦର । ତା'ର ଏହି ପ୍ରଶଂସା ଶୁଣି ମୁଁ ଝାଉଁଳି ପଡ଼ିଲି । ମୁଁ ମନେ ମନେ ଭାବୁ-ଥାଏ—ମୋଠାରେ ତୁମର ପ୍ରଶଂସା କଲା ଭଳି କିଛି ଗୁଣ ନାହିଁ । ତୁମେ ହିଁ ସବୁଆଡ଼ୁ ମୋଠାରୁ ପ୍ରଶଂସା ପାଇବାର ଯୋଗ୍ୟ । ତା' ପରେ ସେ ମତେ ନାନାଦି ପ୍ରଶ୍ନ ପଚାରିଲା । ମୋ ଭାଇମାନଙ୍କ କଥା—ମୋ ବୋଉ କଥା—ବାପାଙ୍କ କଥା—ଭଉଣୀ କଥା । ମୁଁ ତଳକୁ ମୁହଁ ପୋତି ସଂକ୍ଷିପ୍ତ ଉତ୍ତରଟିମାନ ଦେଉଥାଏ । ସେଇଠୁ ସେ ତା' ଘର କଥା ମତେ ସବୁ କହିଲା । ଏବଂ ତା'ର ସବୁଠାରୁ ଦୁଃଖର କଥାଟି ମଧ୍ୟ କହିଲା । ସେ କହିଲା ଯେ ସେ ତା'ର ପୋଷା ଶଙ୍ଖୀ ବିଲେଇଟିକୁ ଗାଁରେ ଛାଡ଼ି ଆସି ଏଠି ବଡ଼ ଦୁଃଖ ପାଉଛି । ଶଙ୍ଖୀ ବିଲେଇଟିକୁ ସେ ଅତି ପିଲାକାଳରୁ ପାଳିଥିଲା । ମାତ୍ର ବାପା ତାକୁ ଏଠିକି ଆଣିବାକୁ ମନା କଲେ । ସେ ବର୍ତ୍ତମାନ ସେଠି ନ ଖାଇ ନ ପିଇ ମରୁଥିବ—ଆଉ ତାକୁ ଝୁରୁଥିବ । ବିଦ୍ୟୁଲ୍ଲତା ମତେ ପୁଣି ତା' ନିଜ ବିଷୟରେ ବହୁତ କଥା ଶୁଣାଇଲା । ସେଥିରୁ ଜାଣିଲି ଯେ ସେ ତା' ବାପା ମାଆଙ୍କର ଗୋଟିଏ ବୋଲି ଝିଅ । ଏବଂ ତା'ର ଉପର ତଳ ହୋଇ ଚାରୋଟି ଭାଇ । ଗୋଟିଏ ଝିଅ ହୋଇଥିବାରୁ ସେ ବଡ଼ ଗେଲବସରରେ ବଢ଼ିଛି । ବାପା ମାଆ ଆଜି ବଡ଼ ଭାଇ ତା' କଥାକୁ ତଳେ ପକେଇ ଦିଅନ୍ତି ନାହିଁ । ସେ ଯୋଉ କଥା ପାଇଁ ଜିଦ୍ ଧରିବ—ସେ କଥା ନିଶ୍ଚୟ ତା' ପାଇଁ ଆସିବ ।

ମୁଁ ତା'ର ତୁଣ୍ଡରୁ କଥାଗୁଡ଼ିକୁ ପଣାପରି କାନବାଟେ ପିଇ ଯାଉଥିଲି । ଏବଂ ସେ ଯଦି ଏମିତି ଦିନସାରା ମୋ ଆଗରେ ଗପୁଥାନ୍ତା—ତା' ହେଲେ ମୁଁ ଭୋକଶୋଷ ଭୁଲି ତା'ରି କଥା ହିଁ ଶୁଣୁଥାନ୍ତି । କହିବା ବାହୁଲ୍ୟ ଯେ ସେ ଯୋଉ ଢଙ୍ଗରେ କଥା କହୁଥିଲା—ଯୋଉ ସୁର୍‌ରେ କଥା କହୁଥିଲା—ଏବଂ କହିଲାବେଳେ ତା'ର ଆଖି, ଓଠ ଗାଲରେ ଯୋଉ ସବୁ ବିଚିତ୍ର ଭଙ୍ଗୀମାନ ଫୁଟୁଥିଲା—ତାହା କେବଳ ମୁଁ ଯାତ୍ରାରେ ଜେମା ଦେଈମାନଙ୍କ ଠାରେ ଦେଖିଥିଲି—ଆମ ଗାଁ'ର କୋଉ ସିଂଗାଣି ନାକ ସିହାବାଳୀ ଝିଅ ଏତେ ସୁନ୍ଦର ଭଙ୍ଗୀରେ ଏମିତି ମଧୁର ସ୍ୱରରେ କଥା କହିବାର ମୁଁ କେବେ ଶୁଣି ନ ଥିଲି ।

ତା'ପରେ ବିଦ୍ୟୁଲ୍ଲତା ତା' ବ୍ୟାଗ୍‌ରୁ ଗୋଟିଏ ସୁନ୍ଦର ଡବା ବାହାର କଲା । ତା' ଭିତରୁ ଗୋଟିଏ ଗୁଜୁରାତି ଓ ଗୋଟିଏ ଲବଙ୍ଗ ମତେ ଖାଇବାକୁ ଦେଲା । ମୁଁ ଅତ୍ୟନ୍ତ କୃତାର୍ଥ ହୋଇ ତାକୁ ଖାଇଲି । ମୁହୂର୍ତ୍ତ ପରେ ମୁହୂର୍ତ୍ତ କଟୁଥାଏ । ବଡ଼ମାଷ୍ଟ୍ରେ କୁଆଡ଼େ ଗଲେ—ଆଉ ଫେରିଲେ ନାହିଁ ଚଞ୍ଚଳ । ମୁଁ ଆଉ ବିଦ୍ୟୁଲ୍ଲତା ପାଖକୁ ପାଖ ଲାଗି ବସି କଥାରେ ମାତିଥାଉଁ । ଆମକୁ ଆଉ କୋଉ ପିଲା ନିନ୍ଦା କରୁଛି କି ନାହିଁ ମୁଁ ଲକ୍ଷ୍ୟ କରୁ ନ ଥିଲି । କିନ୍ତୁ ମାୟାଧର ଆମକୁ ବରାବର ଲକ୍ଷ୍ୟ କରୁଥିଲା । ଏବଂ ମଝିରେ ଦୁଇ ତିନିଥର ମୋ ଠାରୁ ସିଲେଟ ଖଡ଼ି ଓ ଗଣିତ ବହି ନେବା ବାହାନାରେ ଆମ ପାଖକୁ ଆସି ହସି ଦେଇ ଚାଲି ଯାଉଥିଲା । ଏମିତି ଏମିତି ସେ ଦିନଟି କଟିଗଲା । ବଡ଼ ମାଷ୍ଟ୍ରେ ବଡ଼ ଡେରିରେ ଆସିଲେ । ଏବଂ ଏଗାରଟା ବେଳକୁ ସ୍କୁଲ ଛୁଟି ହୋଇଗଲା । ବିଦ୍ୟୁଲ୍ଲତା ମୋ 'ଆଦର୍ଶ ପାଠ' ବହିଟି ତା' ବ୍ୟାଗ୍‌ରେ ପୂରାଇଲା । ମୋ ସାନ ନନେଇ ମତେ ଗୋଟିଏ ପେନ୍‌ସିଲ୍ କଟା କଳ ଦେଇଥିଲେ । ମୁଁ ସେଇଟି ତାକୁ ଉପହାର ଦେଇ କହିଲି—ତୁମେ ଏ ପେନସିଲ୍ କଟା କଳଟି ନିଅ । ସେ ହସି ହସି ମୋ ହାତରୁ ସେଇଟି ନେଇ ତା' ମସଲା ଡବାରେ ରଖିଲା । ମତେ ପଚାରିଲା—ତୁମେ କେମିତି ପେନ୍‌ସିଲ୍ କାଟିବ ? ତା' ପ୍ରଶ୍ନର ଉତ୍ତର ଦେଇ ନ ପାରି ମୁଁ କେବଳ ତଳକୁ ମୁହଁ ପୋତି ଟିକିଏ ହସିଦେଲି । ଛୁଟିପରେ ପିଲାମାନେ ମହା-

ଆନନ୍ଦରେ କୋଳାହଳ କରି ସେଝା ଘରକୁ ଚାଲିଗଲେ । ମାତ୍ର ମୋର ବନ୍ଧୁଙ୍କଠାରୁ ଛାଡ଼ି ଘରକୁ ଯିବାକୁ ଆଦୌ ମନ ହେଉ ନ ଥାଏ । ମୋର ଭାଗ୍ୟ ଭଲ । ସେ କହିଲା—ମୋ ସାଙ୍ଗରେ ଡାକ୍ତରଖାନା ପର୍ଯ୍ୟନ୍ତ ଚାଲ । ମୁଁ ନୂଆ ଆସିଛି । ଏକୁଟିଆ ମତେ ଡର ଲାଗୁଛି । ମୋ ଛାତି ଆନନ୍ଦରେ କୁରୁଳି ଉଠିଲା । ମୁଁ କହିଲି, ହଉ ଚାଲ । ଆମେ ଦୁହେଁ ଡାକ୍ତରଖାନା ଆଡ଼େ ଚାଲିଲୁ । ମାୟାଧର କୋଉଠି ଥିଲା ଆମ ପାଖେ ଆସି ପହଞ୍ଚିଲା । ମୁଁ ତାକୁ ବନ୍ଧୁ ସାଙ୍ଗେ ପରିଚୟ କରିଦେଇ କହିଲି—ଏ ମୋର ସବୁଠୁଁ ଭଲ ସାଙ୍ଗ—ମାୟାଧର । ବନ୍ଧୁ ଫୁଲ ଫୁଟିଗଲା ଭଳି ଦିଶୁଥାଏ । କିନ୍ତୁ ସେ ମାୟାଧର ସାଙ୍ଗେ ଜମା କଥାବାର୍ତ୍ତା କଲା ନାହିଁ । ମାୟାଧର ଖୁବ୍ ସମଜଦାର ସାଙ୍ଗ । ସେ ଆମ ଦୁହିଁଙ୍କୁ ଏକାଠି ଛାଡ଼ି ଚାଲିଗଲା । ସ୍କୁଲ ଠାରୁ ଡାକ୍ତରଖାନା ଖୁବ୍ କମ୍ ବାଟ । ଗୋଟାଏ ଖୁବ୍ ଉଞ୍ଚା ବାଲିକୁଦ ଉପରେ ଡାକ୍ତରଖାନା ଓ ତାଙ୍କ କ୍ୱାଟର୍ସ । ଗୋଟାଏ ପାଖରେ ଖୁବ୍ ଗୋଟାଏ ଘଞ୍ଚ ଆମ୍ବତୋଟା । ପନ୍ଦର କୋଡ଼ିଏ ଏକର ମାଡ଼ି ବସିଛି । କିନ୍ତୁ ସେ ତୋଟାରେ ପଣସ, ଜାମୁ, କେନ୍ଦୁ, କୋଚିଲା, କେଉଟ, ବରକୋଳି, ସତ୍ୟାମ୍ବା, ପୋଲଙ୍ଗ ଆଦି ବହୁ ଗଛ ରହି ସେ ଗୋଟାଏ ଭୀଷଣ ଅରଣ୍ୟ ଭଳି ଦିଶୁଥାଏ । ତା' ଭିତରେ ପୁଣି ବହୁ ଲଟା ଓ ବୁଦା ଥାଏ । ମସ୍ତ ମସ୍ତ ଗୁରୁଗମ୍ଭୀର ଉଇହୁଙ୍କାମାନ ଥାଏ । ଏବଂ ସେ ତୋଟାଟାର ନଈକୂଳ ଜଙ୍ଗଲ ସାଙ୍ଗେ ମଧ୍ୟ କିଛି ସମ୍ପର୍କ ଥାଏ । ସେ ତୋଟାରେ ସାତବାୟା ମାଙ୍କଡ଼ ଦଳ ଘର କରିଥାନ୍ତି । ସବୁବେଳେ ହୁଁ ହାଁ ହୋଇ ଏ ଡାଳରୁ ସେ ଡାଳକୁ ଡେଇଁ ଆପଣା ଭିତରେ ଯୁଦ୍ଧ ବିଗ୍ରହାଦିରେ ମାତିଥାନ୍ତି । ତା'ଛଡ଼ା, ସେ ତୋଟାରେ କୋକି, ବିଲୁଆ ଗୋଧୀ ଓ ବହୁ ସାପ ମଧ୍ୟ ଥାନ୍ତି । ଏବଂ ନିର୍ଭୟରେ ସଦାକୁ ବାହାରି ଚାଲିବୁଲି କରୁଥାନ୍ତି । ସେଇ ତୋଟା ପାଖରେ ଗୋଟାଏ ବାଲି ପଡ଼ିଆରେ ଗାଁ ଯାକର ମଡ଼ା ପକାଯାଏ । ଅଧିକାଂଶ ଦିନ ଗୋଟାଏ ଗୋରୁ, କୁକୁର କି ମଇଁଷିର ମଡ଼ା ସେଠାରେ ପଡ଼ିଥିବାର ଦେଖାଯାଏ । ଏବଂ ତାକୁ ଘେରି ଶାଗୁଣା, କୁଆ, ବିଲୁଆ ଆଉ କୁକୁରଙ୍କର କାମୁଡ଼ା କାମୁଡ଼ି ଗୋଡ଼ାଗୋଡ଼ି ଚାଲିଥାଏ । ତା'ର କିଛି ତଳକୁ ଗୋଟିଏ ପୋଖରୀ । ଏବଂ ସେ ପୋଖରୀ ପାଖରେ ଖଜୁରି

ଗଛ କେତୋଟି । ଚନ୍ଦର ନାମକ ଶିଅଳ ସେଠାରେ ତାଡ଼ି ତିଆରି କରି ବିକୁଥାଏ । ଏବଂ ତିନି ଚାରିଜଣ ପଠାଣ ଓ ଜଣେ ଦି'ଜଣ ହିନ୍ଦୁ ଚନ୍ଦର ଶିଅଳକୁ ଘେରି ସେଠି ତାଡ଼ି ପିଉଥାନ୍ତି ଓ ମାତଲାମି କରି କଥାବାର୍ତ୍ତା କରୁଥା'ନ୍ତି । ବେଳେ ବେଳେ ସନ୍ଧ୍ୟା ପୂର୍ବରୁ ପୋଡ଼ିଏ ଗଧିଆ ସେ ତୋଟା ଭିତରୁ ବାହାରି ମଡ଼କୁ ଟେକୁଟୁ ଥିବାର ବା ଘ୍ଲେଟେଇ ଘ୍ଲେଟେଇ ରାସ୍ତା ପାରି ହୋଇ ଜଙ୍ଗଲ ଆଡ଼କୁ ଧପାଳି ଥିବାର କେତେଥର ଆମେ ଦେଖିଛୁ । ତେଣୁ ସେ ବାଟେ ଡାକ୍ତରଖାନା ଆଡ଼କୁ ଯିବା ଟିକିଏ ଭୀତିପ୍ରଦ ନିଶ୍ଚୟ । ବିନ୍ଦୁ ଓ ମୁଁ ସେ ବାଟେ ଗଲାବେଳେ ମୁଁ ତାକୁ ସେହି ସ୍ଥାନର ଭୟଙ୍କରତା ବିଷୟରେ କହି କହି ଚାଲିଥାଏ । ବିନ୍ଦୁ ମୋ ତୁଣ୍ଡରୁ ପ୍ରଥମ କରି ଏତେ ଗୁଡ଼ାଏ କଥା ସେଇଠି ଶୁଣିଲା । ମତେ ଲାଗିଲା—ସେ ମୋ କଥା ଶୁଣି ଟିକିଏ ଡରି ଯାଉଛି । ମୋ କଥା ତା' ଉପରେ ଖୁବ୍ ପ୍ରଭାବ ପକେଇଲା । ସେ ମୋ ହାତ ଧରି ପକାଇଲା—ଏବଂ ହଠାତ୍ ଠିଆ ହୋଇ ଯାଇ ଆର୍ତ୍ତ ଦୃଷ୍ଟିରେ ମୋ ମୁହଁକୁ ଚାହିଁ କହିଲା—ଯଦି ଏଇନେ ଗୋଟେ ଗଧିଆ ଆସିଯିବ ଆମେ କ'ଣ କରିବା ? ତା'ର ଏଇ ଭୟାର୍ତ୍ତ ପ୍ରଶ୍ନ ଶୁଣିବାମାତ୍ରେ ମୋ ଭିତରୁ ସେହି ଖାଲି ସଲ୍ଲଜ କମ୍ପିତ୍ ମାଇଚିଆ ଓ ନ୍ୟୂନଭାବାଗ୍ରସ୍ତ ପୁରୁଷ ପିଲାଟି ସଙ୍ଗେ ସଙ୍ଗେ ଉଭେଇ ଗଲା ଓ ମୁଁ ଯାହାରେ ଦେଖିଥିବା କେଦାରକୁ ସାଙ୍ଗେ ସାଙ୍ଗେ ମୋ ଭିତରେ ଆବିର୍ଭୂତ ହୋଇଯିବାର ଜାଣିପାରିଲି । ମୁଁ ଖୁବ୍ ବୀର ଦର୍ପରେ ତା'ର ସୁନ୍ଦର କୋମଳ ବାସ୍ନା ଦେହଟିକୁ ମୋ ହାତରେ ଜଡ଼ାଇ ଧରି କହିଲି—ଭୟ ନାହିଁ । ମୁଁ ଅଛି । ବିନ୍ଦୁ କହିଲା—ତୁମେ କ'ଣ କରି ପାରିବ ? ଗଧିଆ କୁଆଡ଼େ ବାଘଠାରୁ ବଳୁଆ । ବାଘ ମାଉଁସ ଖାଏ । ଗଧିଆ ହାଡ଼ ଖାଇ ହଜମ କରିଦିଏ । ମୁଁ ଆହୁରି ଦର୍ପ ଦେଖାଇ କହିଲି—କି ବଳ ଗଧିଆ ମୋ ଆଗରେ ଦେଖେଇବ ? ଏବେ ଥରେ ମୁଁ ଆଉ ମାସ୍ଟାଧର ମିଶି ଗୋଟାଏ ଗଧିଆକୁ ଗୋଡ଼େଇ ଗୋଡ଼େଇ ଆମ ପୋଖରୀରେ ବୁଡ଼ାଇ ମାରିଦେଲୁ । ଗଧିଆକୁ ମାରିବାର ଗୋଟାଏ କାଇଦା ଅଛି । କୌଣସି ପ୍ରକାରେ ଗଧିଆର ପଛ ଗୋଡ଼ରୁ ଗୋଟେ ଧରି ପକାଇଲେ ସେ ସେଇଠି ଆକ୍ତା ମାକ୍ତା ହୋଇ ପଡ଼ିଯିବ । ପଛ ଗୋଡ଼ରେ ତା'ର ଜୀବନ ନାଟିକା

ଅଛି । ସେଥିପାଇଁ ଗଧିଆର ପଛ ଗୋଡ଼ ଗ୍ଲେଟ ଓ ସେ ଗ୍ଲେଟଲେଇ ଗ୍ଲେଟେଇ ଗ୍ଲେଟେଇ ଗୃଲେ ।

ମୁଁ ଏସବୁ କଥା ମୋର ୱାରନ୍ତ୍ତ ଦେଖାଇବାର ଆଗ୍ରହରେ କହି ପକାଇଲି । କିନ୍ତୁ ଏସବୁ ନିତାନ୍ତ ମିଛ କଥା ବୋଲି ସେଦିନ ବିନ୍ଦୁ ବିଶ୍ୱାସ କରି ପାରିଲା ନାହିଁ । ସେଦିନ ବିନ୍ଦୁ ମୋତେ ତା'ର ଏକାନ୍ତ ବିଶ୍ୱସ୍ତ ରକ୍ଷକ ବୋଲି ଗ୍ରହଣ କରିନେଲା । ଏବଂ କହିଲା—ଏଇ କେତେଦିନ ମତେ ତୁମେ ସକାଳେ ଓ ସନ୍ଧ୍ୟାରେ ଆମ ଘର ପାଖେ ଆଣି ଛାଡ଼ିଦେଇ ଯିବ । ସନ୍ଧ୍ୟାବେଳେ ଏବାଟେ ମୁଁ ଏକା ଆସି ପାରିବି ନାହିଁ । ଡାକ୍ତରଖାନା ପାଖେ ତାକୁ ଛାଡ଼ି ଦେଇ ମୁଁ ତା' ଅନୁରୋଧ ନିଶ୍ଚୟ ରଖିବ ବୋଲି ପ୍ରତିଶ୍ରୁତି ଦେଇ ସେ ଦିନ ଘରକୁ ଫେରି ଆସିଲି । ଏବଂ ବାଟଯାକ ତା' ଦେହ ଓ ମୁଣ୍ଡର ବାସ୍ନା ମୋ ଦେହରେ ଲାଗି ରହି ମୋ ନାକରେ ବାଜୁଥିବାର ଅନୁଭବ କଲି । ସେଇ ଦିନଟି ଥିଲା—ମୋ ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ଦିନ । ମୁଁ ନିଜକୁ ପୁରୁଷ ବୋଲି ବୁଝି ପାରିଥିଲି । ଏବଂ ମୋ ଭିତରର ପ୍ରେମିକଟିକୁ ମଧ୍ୟ ବୁଝି ପାରିଥିଲି । ସେଇ ଦିନ ମୁଁ ମୋର ଯୌବନର ଭେଟ ପାଇଥିଲି । ମୋ ଯୌବନର ଅଙ୍ଗ ସ୍ପର୍ଶ କରିଥିଲି । ଏବଂ ଚିରଦିନ ଲାଗି ମୋ ଯୌବନକୁ ମୋ ଜୀବନର ସର୍ବଶ୍ରେଷ୍ଠ ଆନନ୍ଦର ଉତ୍ସ ବୋଲି ମନେ କରିଥିଲି । ସେଦିନ ଓପରଓଳି ସେ କିନ୍ତୁ ସ୍କୁଲକୁ ଆସି ନ ଥିଲା ।

ତା'ପର ଦିନ ସେ ସ୍କୁଲକୁ ଆସିଲା । ଏବଂ ଠିକ୍ ସେଇ ଜାଗାରେ ମୋ ପାଖରେ ବସିଲା । ସେଦିନ ସକାଳଟା କୁହୁଡ଼ିଆ ହୋଇଥାଏ । ବଡ଼ମାଷ୍ଟ୍ରେ ବିଲାତିଆଳୁ ବିଷୟରୁ କେତୋଟି ପ୍ରଶ୍ନ ପଚାରି ସାରି ଧଳା ଭାଲୁ ବିଷୟ ପଢ଼ାଇଲେ । ସେ ଦିନ ବିନ୍ଦୁ୍ୟଲ୍ଲତା ଗୋଟାଏ ପ୍ରିବୃତ ଧଳାରଙ୍ଗର କୁଞ୍ଚ ଦିଆ ଉଲ୍ ବ୍ଲାଉଜ ପିନ୍ଧି ଅପୂର୍ବ ଦିଶୁଥାଏ । ଆମେ ଲଗାଲଗି ହୋଇ କରି ବସିଥାଉ । ମତେ ଲାଗୁଥାଏ ଧଳା ଭାଲୁଟିଏ ମୋ ପାଖରେ ବସିଛି । ଏବଂ ଆମେ ଦୁହେଁ କୋଉ ସ୍ୱପ୍ନ ରାଜ୍ୟରେ ରହିଛୁ, ନୈମିତାଲ୍ କି ସାଇବେରିଆରେ । ବିନ୍ଦୁ୍ୟଲ୍ଲତାର କୋମଳ ଓ ଉଷୁମ ଜଙ୍ଘ ବେଳେବେଳେ ମୋ ଜଙ୍ଘ ଉପରେ ଏବଂ ମୋର ସ୍ଥୁଳକର୍କଶ

ଜଙ୍ଘଟି ବେଳେବେଳେ ତା’ ଜଙ୍ଘ ଉପରେ ରହି ଯାଉଥାଏ । ଅପୂର୍ବ ଆନନ୍ଦ ଆଉ ପୁଲକ ଲାଗୁଥାଏ । ମତେ ସବୁ କଥା ଭଲ ଲାଗୁଥାଏ । ବଡ଼ ମାଷ୍ଟ୍ରେ, ଆଦର୍ଶ ପାଠ, ବ୍ଲାକବୋର୍ଡ଼, ଉଇଖିଆ ଡେକ୍ସ, ମାଷ୍ଟ୍ରଙ୍କ ବେତ, ସ୍କୁଲର ବଗିଚା, ଚଢ଼େଇମାନେ, କୁହୁଡ଼ିଢଙ୍କା ବଣବୁଦା, ଏଣ୍ଡୁଅ, କର୍କି, ପ୍ରଜାପତି ସବୁକିଛି ଭଲ ଲାଗୁଥାଏ । ମୋର ହୃଦୟ ପୂର୍ଣ୍ଣହୋଇ ଯାଇଥାଏ । କିନ୍ତୁ ହୃଦୟ ସ୍ଥିର ରହୁ ନ ଥାଏ । ତା’ ଭିତରେ ଖାଲି ଆଉଟୁ ପାଉଟୁ ହେଉଥାଏ । ଲହଡ଼ି ପରେ ଲହଡ଼ି ଉଠୁଥାଏ । ସେଦିନ ବିନ୍ଦୁ ମତେ କହିଲା—ମୁଁ ତୁମକୁ “ମାଲୁ” ଡାକିବି—ତୁମେ ମତେ ମୋର ଡାକ ନାମରେ ଡାକିବ “ପାକା” । ମୁଁ ଯାଙ୍ଗେ ସାଙ୍ଗେ ରାଜି ହୋଇଗଲି । ସେଦିନ ଓପରଓଳି ଚଞ୍ଚଳ ସ୍କୁଲ ଛୁଟି ହୋଇଗଲା । ଶୀତ ଦିନର ସଞ୍ଜୁଆ ହଲଦିଆ ଖରା ଗଛଆଡ଼େ ବିସ୍ତୃତ ହୋଇ ପଡ଼ୁଥାଏ । ମୁଁ ପାକା (ବିଦ୍ୟୁଲ୍ଲତା)କୁ ଛାଡ଼ିବାକୁ ଗଲି ଡାକ୍ତରଖାନା ପର୍ଯ୍ୟନ୍ତ । ମିଶ୍ର ତୋଟା ପାଖ ବାଲି ପଡ଼ିଆରେ ଆମେ ଚାଲୁଥାଉଁ । ହଠାତ୍ ପାକା କ’ଣ ଦେଖି ଚିଚ୍ଚେଇ ଉଠିଲା । ଇଲେ ବୋଉଲୋ !! ମୁଁ ଚମକି ଉଠି କହିଲି—କ’ଣ ହେଲା ପାକା ? ସେ ସନ୍ତ୍ରସ୍ତ ଭାବରେ ଅଳ୍ପ ଦୂରକୁ ଆଗକୁ ଆଙ୍ଗୁଳି ଦେଖାଇ କହିଲା—ଦେଖିଲ ସେଠି ସେଇଟା କ’ଣ ? ମୁଁ ସେଣିକି ଚାହିଁ ଦେଖିଲି—ମସ୍ତ ଗୋଟାଏ ବୁଢ଼ା ସୋଟିଆ ଗୋଧି କୁମ୍ଭୀର ଛୁଆ ଭଳି ବାଲିରେ ଲେପେଟି ପଡ଼ି ଖରା ପୋଉଁଛି । ଠିକ୍ ଆମ ଆଗ ରାସ୍ତା ଉପରେ ଥିବାରୁ ଆମେ ସେ ବାଟେ କେମିତି ଯିବୁ—ଏଇ ହେଲା ସଙ୍କଟ । ପାକା ମୋଠାରୁ ଦୁଇ ଇଞ୍ଚ ଡେଙ୍ଗା ଥିଲା । ସେ କିନ୍ତୁ ଖୁବ୍ ଭୟରେ ମୋତେ ଜାବୁଡ଼ି ଧରିଥାଏ । ମତେ ବଡ଼ ଚମତ୍କାର ଲାଗୁଥାଏ । ସେହି ଅବସ୍ଥାରେ ବିରାଟ ମହାବଳ ବାଘ ମୋ ପାଖରେ ଆସି ଠିଆ ହୋଇଥିଲେ ବି ମୁଁ ତାକୁ ଖାତିର କରି ନଥାନ୍ତି । ତଥାପି ବୀରତ୍ୱ ଦେଖାଇବାକୁ ଗଛଆଡ଼କୁ ଚାହିଁ ମୁଁ ଟିକିଏ ମୋଟା ଧଳାଅଙ୍କୁ ଗଛର ଡାଳ ପାଇଲି । ଏବଂ ବିନ୍ଦୁକୁ ସେଠି ଠିଆ କରି ସେଇ ଡାଳ ଧରି ଗୋଧି ପାଖକୁ ପଛ ପଟେ ଚୁପ୍‌ଚୁପ୍ ଯାଇ କଷିକରି ଗୋଟାଏ ପାହାର ପକାଇଲି । ଗୋଧିଟା ଛଟପଟ ହୋଇ ଘୂଷୁରି ଘୂଷୁରି ବାଲି ଉପରେ ପଳାଉଥାଏ । ମୁଁ ତା’ ଉପରେ ଚାରିଛଅ ପାହାର କଷି ପିଟିବା ଫଳରେ ସେ ମରିଗଲା । ତା’ପରେ ସେଇ ମଲା

ଗୋଧିଟାକୁ ଘୋଷାରି ଆଣି ବନ୍ଧୁ ଆଗରେ ଶୁଆଇ ଦେଇ ବୀର ଦର୍ପରେ ଠିଆ ହୋଇଗଲି । ସତେକି ଗୋଟାଏ ମହାବଳ ବାଘ ମାରି ଆଣି ମୋର ପ୍ରାଣପ୍ରିୟାଙ୍କ ଆଗରେ ଶୁଆଇ ଦେଇ ନିଜର ପୌରୁଷ, ସାହସ ଓ ବୀରତ୍ୱର ପରିଚୟ ଦେଉଛି ! କିନ୍ତୁ କଥାଟା ଥିଲା ସେହିପରି । ପାକୀ ମୋତେ କୁଣ୍ଢାଇ ପକାଇଲା । ମୋର ମନେ ହେଉଛି ସେ ବୋଧେ ମତେ ଗୋଟାଏ ଚୁମା ଦେଲା ନା କ'ଣ ? ଅବଶ୍ୟ ଆମ ପିଲାଦିନେ ପ୍ରଣୟ-ବ୍ୟାପାରରେ ଚୁମ୍ବନ ଶବ୍ଦଟିର ଗୁରୁତ୍ୱ ଆମେ ବୁଝି ନଥିଲୁ । ତା'ପରେ ଆମେ ଦୁହେଁ ଡାକ୍ତରଖାନା ଆଡ଼େ ଚାଲିଲୁ । ପାକୀ କଥାରୁ ବୁଝିଲି ଯେ ସେ ଏଇ ଗୋଧୀ ଜନ୍ତୁଟାକୁ ଖୁବ ଡରେ । ତା'ର ଧାରଣା—ଗୋଧୀ ମଣିଷକୁ ଗୋଡ଼ାଇ ଗୋଡ଼ାଇ କାମୁଡ଼େ । ଏବଂ ତା' କାମୁଡ଼ାର ବିଷ ଏତେ ଭୟଙ୍କର ଯେ ସାତଟା ଘଡ଼ଘଡ଼ି ଏକାଠି ନ ମାରିଲେ ସେ ବିଷ ଛାଡ଼ିବ ନାହିଁ । ଏବଂ ଏହି ଭୟଙ୍କର ଗୋଧୀଟାକୁ ମାରି ପାରିଥିବାରୁ ସେ ମୋତେ ଯଥାର୍ଥରେ ଜଣେ ଦୁଃସାହସୀ ବୀର ପୁରୁଷ ବୋଲି ଗ୍ରହଣ କଲା । ସେଦିନ ସେ ମତେ ତା ଘରକୁ ନେଲା । ଏବଂ ତା' ମାଆ ପାଖରେ ମୋର ଏହି ବୀରତ୍ୱ ଏବଂ ନାନାଦି ସଦ୍‌ଗୁଣ ଗପିଲା । ତା' ମାଆ ମତେ ଖୁବ୍ ପସନ୍ଦ କଲେ ଏବଂ ମତେ ପିଠା ଓ ଦୁଧ ଖାଇବାକୁ ଦେଲେ । ଫେରିଲାବେଳେ ମୁଁ ପାକୀକୁ ପୁରୁଷୋଚିତ ଢଙ୍ଗରେ କହିଲି—ପାକୀ ! ମୁଁ କାଲିଠାରୁ ଦୁଇଦିନ ସ୍କୁଲକୁ ଆସିବି ନାହିଁ । ମାତ୍ର ପାକୀ ଏହା ଶୁଣି ମୁହଁ ଶୁଖାଇ କହିଲା—ଏ ମା ! ମୁଁ ତା'ହେଲେ ସ୍କୁଲକୁ ଯିବିନି । ମତେ ତା'ର ଏକଥା ଖୁବ୍ ଭଲ ଲାଗିଲା । ଅସଲ କଥା—ବୋଧେ ଏଇ କଥା ଶୁଣିବି ବୋଲି ମୁଁ ପାକୀକୁ ଏହି ମିଛ କଥାଟା କହି ଦେଇଥିଲି । ତେଣୁ ମୁଁ କହିଲି—ହଉ ! ତା' ହେଲେ ମୁଁ କାଲି ସ୍କୁଲକୁ ଆସିବି । ଏହା ଶୁଣି ପାକୀ ଖୁସି ହେଲା ଏବଂ ମତେ ଖଣ୍ଡେ ବାଟ ବଳେଇ ଦେବାକୁ ଆସିଲା ।

ବାସ୍ ଏମିତି ବଢ଼ି ଚାଲିଲା ଏଣିକି ଆମର ପ୍ରଣୟାପ୍ଳୁତ ଜୀବନ । ଆମ ସ୍କୁଲ ବଗିଚାଟି ଖୁବ୍ ସୁନ୍ଦର ଥିଲା । ମାତ୍ର ତା' ଚାରିପଟେ ଭଲ ବାଡ଼ ନ ଥିବାରୁ ଗୋରୁ, ଛେଳି, ମେଣ୍ଢା ପଶି ଖାଇ ଯାଉଥିଲେ । ସେଥିଲାଗି ଦୁଇ ପ୍ରହରେ ଆମ ସ୍କୁଲ ପିଲାଙ୍କୁ ପାଳିକରି ଜଗିବାକୁ

ପଢ଼ୁଥିଲା । ମୋର ସପ୍ତାହକୁ ଦୁଇଥର ପାଳି ପଡ଼ୁଥିଲା । ସେଦିନ ମୁଁ ପାଣ୍ଟାକୁ ଆସିବାକୁ କହିଥାଏ । ପାଣ୍ଟା ତା' ମା' ବାପାଙ୍କୁ ପାଠପଢ଼ିବା ବାହାନା ଦେଇ ସ୍କୁଲକୁ ଚାଲିଆସେ । ଅନ୍ୟ ପିଲାଙ୍କୁ ଖାତିର ନ କରି ଆମେ ଦୁହେଁ ଖୁବ୍ ପାଖାପାଖି ହୋଇ ବଗିଚାରେ ବୁଲୁ ଓ ଗପ କରୁ । ମୁଁ ଯେତେ ଯାତ୍ରା ଦେଖିଥିଲି ଓ ଯାହାକିଛି ପଢ଼ିଥିଲି ଏବଂ ରାଣାପ୍ରତାପ, ପଦ୍ମିନୀ, ଶିବାଜୀ ଇତ୍ୟାଦିଙ୍କ କଥା ପଢ଼ିଥିଲି ଓ ଏକିଭଳି ଯେତେ ଗପ ଜାଣିଥିଲି ପାଣ୍ଟାକୁ ସବୁ କହେ । ମୁଁ ଖୁବ୍ ସୁନ୍ଦର ଭାବେ ହୃଦୟ ଦେଇ ଗପଗୁଡ଼ିକ କହି ପାରୁଥିଲି । ପାଣ୍ଟା ମୋ ଗପ ଗୁଡ଼ାକୁ ଖୁବ୍ ତନ୍ମୟ ହୋଇ ଶୁଣୁଥିଲା । ମଝିରେ ମଝିରେ ହସି ପକାଉଥିଲା—କାନ୍ଦି ପକାଉ ଥିଲା । ଏବଂ ଆଉ ଗୋଟିଏ ଗପ କୁହ ବୋଲି ଅଳି କରୁଥିଲା । ଦିନେ ମୁଁ ତାକୁ କେଦାର ଗୌରୀ ଗପଟି ଖୁବ୍ ବଢ଼ାଇ ଚଢ଼ାଇ କହିଲି । ପାଣ୍ଟା ଖୁବ୍ ମନ ଦେଇ ଗପଟି ଶୁଣିଲା । ସେଇ ଗୀତାଭିନୟଟିରୁ କେତୋଟି ଗୀତ ମଧ୍ୟ ମୁଁ ମନେ ରଖିଥିଲି । ଗଳ୍ପ କହିଲା ବେଳେ ସେ ଗୀତ କେତୋଟି ମଧ୍ୟ ମୁଁ ବୋଲିଲି । ମୋର କଣ୍ଠସ୍ୱର ଭଲଥିଲା—ଏବଂ ବେଶ୍ ତାଳ ଲୟରେ ଅବିକଳ ଯାତ୍ରାବାଲାଙ୍କ ଭଳିଆ ଗାଇପାରୁଥିଲି । ପାଣ୍ଟା ସେ ସବୁ ଶୁଣିଲା ବେଳେ କହିଁ କହିଁ ହୋଇ କାନ୍ଦିଲା । ମୋତେ ଖୁବ୍ ଚମତ୍କାର ଲାଗୁଥାଏ । ମୋ ଆଖି ମଧ୍ୟ ଥରେ ଦି'ଥର ଜକେଇ ଗଲା । ଏବଂ କେଦାରର ପ୍ରସିଦ୍ଧ ଗୀତ ବୋଲିଲା ବେଳେ ମୁଁ ଭାବ ବିଭୋର ହୋଇ ଥରେ ଦି'ଥର ପାଣ୍ଟାର ଚିବୁକ ମଧ୍ୟ ଧରି ପକାଇଥିଲି । ସେଦିନ ବିମର୍ଷ ମନରେ ପାଣ୍ଟା ମୋ' ଠାରୁ ବିଦାୟ ନେଇଗଲା । କିନ୍ତୁ କିଛିଦିନ ପରେ ପାଣ୍ଟା ଫେର୍ ଥରେ ଦିନେ ସେଇ ଦୁଇପ୍ରହର ବେଳାରେ ସ୍କୁଲ ପାଖ ଗଳା ବର ଓସ୍ତ ଗଛ ମୂଳରେ ବସି ମତେ କେଦାର ଗୌରୀ ଗଳ୍ପଟି ଆଉଥରେ କହିବାକୁ ଅନୁରୋଧ କଲା । ମୁଁ ପରମ ଉତ୍ସାହରେ ଗଳ୍ପଟିକୁ ସଗୀତ କହିବାକୁ ଲାଗିଲି । ସେଦିନ ପାଣ୍ଟା ମୂଳରୁ ହିଁ କାନ୍ଦି ଲାଗିଲା । ଏପରିକି କେଦାର ଓ ଗୌରୀ ଗ୍ରେଟ ପିଲାଦିନେ ବିଦ୍ୟାଳୟରେ ଏକାଠି ପଢ଼ୁଥିବା ବେଳର କଥା ଶୁଣୁଶୁଣୁ ପାଣ୍ଟା କାନ୍ଦିବାକୁ ଆରମ୍ଭ କଲା । ଏବଂ ସେଦିନ ପାଣ୍ଟା ଆଖିର ଲୁହ ଦେଖି ମୋ ଛାତି ଫାଟି ଯିବାଭଳି ଲାଗିଲା । ଗଳ୍ପ ମଝିରେ ମୁଁ କାନ୍ଦ କାନ୍ଦ ହୋଇ କହିଲି—

ପାଖି ! ଥାଉ, ଆଉ ଏ ଗପ କହିବି ନାହିଁ । ତୁ ଯେମିତି କାନ୍ଦୁଛୁ ମୋ ଛାତି ଫାଟି ଯାଉଛି । (ପ୍ରକାଶ ଥାଉକ, ପାଖି ମୋତେ ତୁମେ କହୁଥାଏ —ମାତ୍ର ମୁଁ ତାକୁ ତୁ ତା' ସମ୍ବୋଧନ କରୁଥାଏ ।) ମୋ କଥା ଶୁଣି ପାଖି କହିଲା —ଜାଣିଛ ମାଲୁ ? କାଲି ଡାକ୍ତରଖାନା ହତାରେ ମାଙ୍କାଳ ଯାତ୍ରାବାଲା ଏଇ କେଦାର ଗୌରୀ ସମାଜ କରିଥିଲେ । ମୋର ତୁମକଥା ବହୁତ ମନେ ପଡ଼ିଲା । ସେ ଯାତ୍ରା ଦେଖୁ ଦେଖୁ ମୁଁ ଯେତେ କାନ୍ଦିଛି ! ତୁମେ ଅବିକଳ ସେଇ ଯାତ୍ରାବାଲାଙ୍କ ଭଳି କହୁଛ । ଆହା ! ଗୌରୀ ପାଇଁ କେଦାରର ଅକାରଣେ ପ୍ରାଣ ଗଲା ସିନା ! କେଦାର କଥା ଭାବିଲେ ମୋର ବି ଛାତି ଫାଟି ଯାଉଛି ।

ତା' ତୁଣ୍ଡରୁ ଏକଥା ଶୁଣୁ ଶୁଣୁ ମୁଁ ତା' ପିଠିରେ ହାତପକାଇ ତାକୁ ମୋ ଆଡ଼କୁ ଭିଡ଼ି ଆଣିଲି । ଏବଂ କି ଆଶ୍ଚର୍ଯ୍ୟ ଦୁଃସାହସ ମୋର ! ତାକୁ କହିଲି—ପାଖି ! ମୁଁ କେଦାର । ତୁ ମୋର ଗୌରୀ ହେବୁ ? ପାଖି ମୋ କଥା ଶୁଣୁଶୁଣୁ ମୋର ପାଦ ଦୁଇଟି ଧରି ଛଳ ଛଳ ଆଖିରେ କହିଲା—ମୋର କେଦାର ସତ୍ୟ । ମୁଁ ତୁମଛଡ଼ା ଆଉ କାହାକୁ ବାହା ହେବି ନାହିଁ । ପାଖି ତୁଣ୍ଡରୁ ଏକଥା ଶୁଣିବି ବୋଲି ମୁଁ ଆଶା କରି ନ ଥିଲି । ବାହାଘର ବ୍ୟାପାର-ଉପରେ ମଧ୍ୟ ମୋର କିଛି ଧାରଣା ନ ଥିଲା । ପ୍ରେମ ଓ ପ୍ରଣୟର ଆଦି ଅନୁଭୂତି ପାଇଁ ବାହାଘର କ'ଣ ନିତାନ୍ତ ଆବଶ୍ୟକ ? ଏସବୁ ନ ଜାଣିଲେ ବି ପାଖି ତୁଣ୍ଡରୁ ଏକଥା ଶୁଣି ଆନନ୍ଦରେ ମୁଁ କୁରୁଳି ଉଠିଲି । ମୋ ହାତରେ ସ୍ୱର୍ଗ ମିଳିଗଲା ବୋଲି ମନେ ଲାଗିଲା । ସେତେବେଳେ ସତକୁ ସତ ମୁଁ ପାଖିର ସେଇ ସୁନ୍ଦର ନରମ ଫୁଲଭଳି ଗାଲରେ ଗୋଟିଏ ଚୁମା ଦେଲି । ପାଖି କ'ଣ ଭାବିଲା କେଜାଣି, ହଠାତ୍ ମୋ ଗୋଡ଼ତଳେ ପଡ଼ିଗଲା । ଏବଂ ଠିକ୍ ଯାତ୍ରା ଢଙ୍ଗରେ କହିଲା—ଆଜିଠାରୁ ତୁମେ ମୋର ପ୍ରାଣେଶ୍ୱର ହେଲ । ମତେ ଥରେ ପ୍ରାଣେଶ୍ୱରୀ ବୋଲି ଡାକ । ନ ହେଲେ ମୁଁ ଜୀବନ ହରେଇ ଦେବି ।

ପାଖିର ଏ କଥା ଓ କାର୍ଯ୍ୟ ଦେଖି ମୋର ମୁଣ୍ଡ ଗୋଳମାଳ ହୋଇଗଲା । ମୋତେ କ'ଣ ଗୋଟେ ନିଶା ଧରିଲା ଭଳି ମୁଁ ଅନୁଭବ

କଲି । ମୁଁ ଠିଆ ହୋଇପଡ଼ି ଯାତ୍ରା ଢଙ୍ଗରେ ପାର୍ବତୀକୁ ସମ୍ବୋଧନ କରି କହିଲି—ପ୍ରାଣେଶ୍ୱରୀ ! ଆଜ ଏ ବୃକ୍ଷମୂଳେ ଦଶଦିଗପାଳଙ୍କୁ ସାକ୍ଷୀ-ରଖି କହୁଛି—ତୁମକୁ ମୁଁ ନିଶ୍ଚୟ ବିବାହ କରି ମୋର ଜୀବନସଙ୍ଗିନୀ କରିବି ।

ପାର୍ବତୀ ମଧ୍ୟ ଠିଆ ହୋଇ ପଡ଼ିଲା । ତାକୁ ବି କ'ଣ ଗୋଟେ ନିଶା ଲାଗି ଯାଇଥାଏ । ତା' ମୁଣ୍ଡକୁ ମଧ୍ୟ ପ୍ରଣୟ ବା ପ୍ରୀତିଭୂତ ଚଢ଼ିଯାଇ-ଥାଏ । ସେ ଯାତ୍ରା ଢଙ୍ଗରେ ମୋର କାନ୍ଧରେ ହାତରଖି କହିଲା—କିନ୍ତୁ ଯଦି ତୁମର ପିତା ମାତା ରାଜି ନ ହୁଅନ୍ତି ?

ମୁଁ କହିଲି—ତୁମ ପାଇଁ ମୁଁ ସମସ୍ତଙ୍କୁ ତ୍ୟାଗ କରିପାରେ । ଶୁଣ ଗୌରୀ ! ଆଜ ରାତି ଅଧରେ ମୁଁ ଏହି ଗଛ ମୂଳକୁ ଆସିବି । ତୁମେ ମଧ୍ୟ ଘରୁ ଲୁଚିକରି ବାହାରି ଆସି ଏଇ ଗଛ ମୂଳରେ ଠିଆ ହୋଇଥିବ । ଆମେ ଦୁହେଁ ଆଜ ରାତିରେ ଘୋର ଅରଣ୍ୟ ଭିତରକୁ ପଳାଇବା ।

ପାର୍ବତୀ ମଧ୍ୟ ସେଇ ଯାତ୍ରା ଢଙ୍ଗରେ କହିଲା—ନିଶ୍ଚୟ ପ୍ରାଣେଶ୍ୱର ! ମୁଁ ମଧ୍ୟ ଦଶଦିଗପାଳଙ୍କୁ ସାକ୍ଷୀ ରଖି କହୁଛି ଯେ ଆଜ ଅର୍ଦ୍ଧ ରାତିରେ ମୁଁ ଏ ଗଛ ମୂଳକୁ ଆସି ତୁମକୁ ଅପେକ୍ଷା କରିବି । କିନ୍ତୁ ପ୍ରାଣେଶ୍ୱର ! ଆଗ କୁହ, ଆମେ କୋଉ ଅରଣ୍ୟକୁ ଯିବା ?

ମୁଁ ବୀର ପ୍ରେମିକ ପୁରୁଷ ଭଳି ଖୁବ୍ ଗର୍ବରେ ମତ୍ତ ହୋଇ ମିଶ୍ର ତୋଟାଆଡ଼େ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲି—ଏଇ ଯୋଉ ଭୀଷଣ ଅରଣ୍ୟ ସମ୍ମୁଖରେ ଦେଖୁଛ ଗୌରୀ ! ଆମେ ସେହି ଅରଣ୍ୟକୁ ଯାଇ ଫଳମୂଳ ଖାଇ ଓ ଝରଣାର ପାଣି ପିଇ ଆନନ୍ଦରେ ରହିବା । କିନ୍ତୁ ତମେ ନିଶ୍ଚୟ ଆସିବ ତ ? ମୋର ଦେହ ଛୁଇଁ ଶପଥ କର ।

ପାର୍ବତୀ ମୋର ଦେହ ଛୁଇଁ ଶପଥ କଲା । …ଉପର ଓଳିର ସ୍କୁଲ ଆରମ୍ଭ ହେଲା । ଯଥାରୀତି ପାଠପଢ଼ା ଚାଲିଲା । ମାତ୍ର ମୋର ମନ ଥିଲା ପ୍ରଣୟ ନିଶାରେ ଅଭିଭୂତ—ଉଚାଟିତ । ମୁଁ ପ୍ରକୃତରେ ଭୂତଗ୍ରସ୍ତ

ହୋଇ ଯାଇଥିଲି । କ୍ଲାସରେ ଆମେ କେହି କାହାକୁ ଆଉ କିଛି କଥାବାର୍ତ୍ତା କଲୁ ନାହିଁ । ଦୃଢ଼ ସିଦ୍ଧାନ୍ତରେ ମନ ସ୍ଥିର ହୋଇ ଯାଇଥିଲା । ସ୍କୁଲ ଛୁଟି ହେଲା । ଯେଝା ଘରକୁ ସେ ଗଲୁ ଚାଲି । ସେତେବେଳେ ମଧ୍ୟ ମୁଁ ବା ପାଖ କେହି କାହାକୁ କିଛି କଥା କହିଲୁ ନାହିଁ । ଏତେଦୂର ଦୃଢ଼ ସିଦ୍ଧାନ୍ତରେ ମନ ସ୍ଥିର ଓ ଗମ୍ଭୀର ହୋଇ ଯାଇଥିଲା ଯେ, ତାକୁ ଆଉ ଥରେ ମୁଖରେ ପ୍ରକାଶ କରିବାକୁ ଦୁହେଁଯାକ ଇଚ୍ଛା କଲୁ ନାହିଁ ।

......ଘରେ ଯାଇ ଚାହି ଗଣ୍ଡେ ଖାଇଦେଲି । ଯୋଉ ପ୍ୟାଣ୍ଟ ଜାମା ପିନ୍ଧିଥିଲି ତାକୁ ଆଉ ନ ଓହ୍ଲେଇ ତା' ଉପରେ ଖଣ୍ଡିଏ ଚଦର କେବଳ ଘୋଡ଼ି ହେଲି । ଶୀତ ଦିନର ରାତି । ଖୁବ୍ ଶୀତ ହେଉଥାଏ । ସାନ କକେଇଙ୍କର ଗୋଟାଏ ସୌଖୀନ ହଣ୍ଟର ବାଡ଼ି ଥାଏ । ତା'ଭିତରେ ଗୋଟେ ଛୁରି ଥାଏ । ସେଇ ହଣ୍ଟର ବାଡ଼ିଟିକୁ ଧରି କାହାକୁ କିଛି ନ କହି ଚୁପ୍‌ଚାପ୍ ଘରୁ ବାହାରି ପଡ଼ିଲି । ମତେ ଜଣାନାହିଁ—ସେଇଟା ଥିଲା ଅନ୍ଧାର ପକ୍ଷ । ରାତି ସେତେବେଳକୁ ଦୁଇ ପ୍ରହର ହୋଇ ଗଲାଣି । କିଛି ବାଟ ଗଲାପରେ ବୁଝିଲି ଭୀଷଣ ଅନ୍ଧାର । ଆମ ସାଇ ପାରି ହୋଇ ଗଲା ପରେ ରାସ୍ତାର ଦୁଇପଟେ ଆଉ ଘର ନ ଥାଏ । ବଣ ବୁଦା ଥାଏ । ଏକୁଟିଆ ଘୋର ପ୍ରଚଣ୍ଡ ଉଦ୍‌ବେଗ ନିଶାରେ ଚାଲିଥାଏ । ବାଡ଼ କଡ଼ରୁ ହଠାତ୍ କାଲୁଆ ଭଳିଆ କ'ଣ ଗୋଟାଏ ବାହାରି ଆରପଟକୁ ଚାଲିଗଲା । ମୋ ଛାତି ଟିକିଏ ଧଡ଼୍‌କିନା ହେଲା । କିନ୍ତୁ ସେ କିଛି ନୁହେଁ । ମୋ ମନ ଭିତରେ ଥାଏ—ମୋର ପ୍ରାଣପ୍ରିୟା ଗୌରୀ କେତେବେଳୁ ଆସି ଏଇ ଅନ୍ଧାର ରାତିରେ ଏକୁଟିଆ ଗଛ ମୂଳେ ଠିଆ ହୋଇଥିବ । ତାକୁ ଖୁବ୍ ଡର ଲାଗୁଥିବ । ସେ ଭାବୁଥିବ—ମୁଁ ବୋଧେ ଘରଛାଡ଼ି ମୋର ପ୍ରତିଜ୍ଞା ରଖି ପାରିଲି ନାହିଁ । ଆହା ! ପ୍ରାଣପ୍ରିୟା କ କଷ୍ଟ ହେଉଥିବ !! ଏତିକି ଭାବିଲା ମାତ୍ରେ ମୋର ଡରଭୟ ହଠାତ୍ ଛାଡ଼ିଗଲା । ଏବଂ ଦ୍ରୁତପଦରେ ଚାଲିବାକୁ ଆରମ୍ଭ କଲି । କିଛି ମୁହୂର୍ତ୍ତ ପରେ ହଠାତ୍ ମୋ ମୁହଁରେ ଟର୍ଚ୍ଚ ଆଲୁଅ ପଡ଼ିବା ଦେଖି ମୁଁ ଚମକି ଠିଆ ହୋଇ ପଡ଼ିଲି । ଏବଂ ଅଳ୍ପ କେତୋଟି ମୁହୂର୍ତ୍ତ ପରେ ମୋ ଆଗରେ ଯାହାଙ୍କୁ ଦେଖିଲି — ମୋର ପିଳେହି ପାଣି ହୋଇଗଲା । ସାନ କକେଇ ମୋର କାନ ଧରି ଖୁବ୍ କ୍ରୁଦ୍ଧ ଗଳାରେ ପଚାରିଲେ—ବଦମାସ ଟୋକା ! ଏତେ ରାତିରେ

ଅନ୍ଧାରରେ ଘରେ ନ ଶୋଇ କୁଆଡ଼େ ଯାଉଛୁ ? ନଶ୍ଚେ ସେ ଛଡଖ ଟୋକା ମାସ୍ଟ୍ରାଧର ସାଙ୍ଗେ କୋଉଠିକି ଯାତ୍ରା ଦେଖି ଯାଉଛୁ—ନାଇଁ ? ଏ ବଦମାସ—ଫାଙ୍ଗା—ମୂର୍ଖ କାହିଁକା !! ଏତିକି କହି ସେ ମୋ ଗାଲରେ ଗୋଟାଏ କଷି କରି ଚ୍ଛହ୍ନଚ୍ଛୁପୁଡ଼ା ପକାଇଲେ । ମୋର ମୁଣ୍ଡ ସେ ଚଟୋଟାଘାତରେ ଘାଉଁ ଘାଉଁ ଡାକିଲା । ଏବଂ ତା' ସାଥିରେ ପ୍ରଳୟ-ଭୂତ ଓହ୍ଲାଇଗଲା । ତା'ପରେ କକେଇ ତାଙ୍କର ତିନିଶେଳିଆ ପ୍ରକାଣ୍ଡ ଜାପାନୀ ଟର୍ଚ୍ଚ ଲାଇଟ ଦୂରକୁ ପକାଇ ଗୃହଆଡ଼ ଖୋଜି ମନେ ପଚାରିଲେ—କାହିଁ ? କୁଆଡ଼େ ଗଲା ସେ ଛଡଖ ଟୋକା ମାସ୍ଟ୍ରାଧର ? ମୁଁ କାନ୍ଦ କାନ୍ଦ କହିଲି—ନାଇଁ ମାସ୍ଟ୍ରାଧର ମୋ ସାଙ୍ଗେ ଆସିନି । ମୁଁ ଏକା ଆସିଛି । କକେଇ ମୋର ଆର ଗାଲରେ ଅପେକ୍ଷାକୃତ ଲଘୁ ଚଟକଣାଟିଏ ମାରି ଧମକେଇଲେ—ଏକା ଆସିଛୁ—ନାଇଁ ? ତୁ ଯ୍ଚାପ.! ଏଇ ଯାତ୍ରା ଦେଖି ମୂର୍ଖ ହେବୁ । ଚାଲ୍ ବେ ।

ଅଗତ୍ୟା ଚୁପ୍ ଚାପ୍ ମନମାରି ତଳକୁ ମୁହଁ ପୋତି କକେଇଙ୍କ ସାଙ୍ଗରେ ଫେରିଲି ଘରକୁ । ଘରେ ପହଞ୍ଚିବା ମାତ୍ରେ କକେଇ ପ୍ରଥମେ ସମସ୍ତଙ୍କୁ ମୋର ଏଇ କୁକର୍ମ ବିଷୟରେ କହି ଗାଳି ଦେଲେ । ଏବଂ ମୋର ନାଗିଡ଼ା ବୋଉ ମଧ୍ୟ ଏଥିଲାଗି ବହୁ ଭର୍ତ୍ସନା ଶୁଣିଲା । ଏବଂ ବାପାଙ୍କ ସମ୍ମତ ସମକ୍ଷେ ମୋତେ ଖୁବ୍ ଗାଳି ଦେଲେ ଏବଂ ଏଇ ଯାତ୍ରା କେମିତି ଆଜିକାଲି ପିଲାଙ୍କୁ ଖରାପ କରୁଛି ସେ ସମ୍ବନ୍ଧେ ମଧ୍ୟ ଘରବଇଁଶପାକ ବହୁତ ଚର୍ଚ୍ଚା କଲେ ।

ମୁଁ ଚୁପ୍‌ଚାପ୍ ଯାଇ ଖଟ ଉପରେ ଶେଯଟି ଘୋଡ଼ା ହୋଇ ଶୋଇ ପଡ଼ିଲି । କିଛି ସମୟ ପରେ ବାପା ଖାଇ ସାରି ଆସି ମୋ ପାଖରେ ଶୋଇଲେ ଏବଂ ଅଳ୍ପକ୍ଷଣ ଭିତରେ ଘୁଙ୍ଗୁଡ଼ି ମାରିଲେ । ମାତ୍ର ମୋତେ ଆଦୌ ନିଦ ହେଲା ନାହିଁ । ମୋ ମୁଣ୍ଡକୁ ପୁଣି ପ୍ରଳୟ-ଭୂତ ପଶିଗଲା । ମୋତେ ପୁଣିଥରେ ବହୁ ଗୁଣରେ ପ୍ରୀତିନିଶା ଘାରିଲା । ମୁଁ ଛଟପଟ ହେଲି । ପାଙ୍ଗାର ଦୂରବସ୍ଥା କଥା ଭାବି ମୋର ଛାତି ଗୁରୁଣ୍ଡି ହେଲା । ମୁଁ ଆଶଙ୍କା କଲି ଯେ ପାଙ୍ଗା ନିଶ୍ଚୟ ଆସି ରାତିଟା ସାରା ଏକୁଟିଆ ସେଇ ବରଗଛ ମୂଳେ ଠିଆ ହୋଇଥିବ ମୋତେ ଅପେକ୍ଷା କରି । ଏବଂ ମୋତେ

ଧିକ୍ । ତାକୁ ସେଠାରେ ଏକୁଟିଆ ଏତେ ରାତିରେ ହିଂସ୍ର ଜନ୍ତୁଙ୍କ ମେଳରେ ଛାଡ଼ିଦେଇ ମୁଁ ଘରେ ଶେଯ ଘୋଡ଼ିହୋଇ ଶୋଇଛି ! ଛି-ଛି—ସେ ମନେ କ'ଣ ଭାବୁଥିବ ! ଆହା ! ପ୍ରାଣପ୍ରିୟା ମୋ ଲାଗି କେତେ କଷ୍ଟ ପାଉ ନ ଥିବନ୍ତି ! ଏମିତି ଭାବି ଭାବି ମୁଁ କାନ୍ଦିବାକୁ ଲାଗିଲି । ଏବଂ ମୁଁ ଜାଣିନି—ମୋର ଧୀର କାନ୍ଦଣାର ସୁକୁସୁକୁ କୋହ ତଳେ ଶୋଇଥିବା ମୋର ବୋଉ କାନରେ କେମିତି ବାଜିଲା । ତାକୁ ମଧ୍ୟ ନିଦ ହୋଇ ନ ଥିଲା । ସେ ମତେ ଡାକିଲା । ମୁଁ ଜବାବ ଦେଲି । ସେ କହିଲା—କକେଇ ସେତେବେଳେ ଗୋଟାଏ ଚଟକଣି ପକାଇଥିଲେ ଯେ ତୁ ସେତିକିବେଳୁ ରାତିସାରା କାନ୍ଦୁଛୁ ? ଆ—ଏଠିକି ଆ—ମୋ ପାଖେ ଶୋଇବୁ । ବାରମ୍ବାର ଡାକିବାରୁ ମୁଁ ଖଟରୁ ଓହ୍ଲାଇ ବୋଉପାଖେ ଯାଇ ତଳେ ଶୋଇଲି । ବାପାଙ୍କ ଘୁଙ୍ଗୁଡ଼ି ବଢ଼ି ଚାଲିଥାଏ । ବୋଉ ମୋତେ ତା'ଶେଯ ଭିତରେ ପୂରାଇ କୋଳରେ ଜାକି ଧରିଲା ଓ କହିଲା, ତୁରେ ପୁଅ ସେଇମିତିକା । ଏତେ ମାଡ଼ ଗାଳି ଖାଉଛୁ—ତଥାପି ସେଇ ମାୟାଧର ସାଙ୍ଗେ ପଡ଼ି ରାତି ଅନିଦ୍ରା ହୋଇ ତିନି ଗାଁ ବୁଲି ଯାତ୍ରା ନାଚ ଦେଖୁଛୁ । କକେଇ ମାଡ଼ ଦେଇ କ'ଣ ଭୁଲ କଲେ ?

ମାତ୍ର ମୁଁ କିଛି ଉତ୍ତର ନ ଦେଇ କେବଳ କାନ୍ଦି ଲାଗିଥାଏ । ବୋଉ ମତେ ବୁଝଉଥାଏ । କିଛିକ୍ଷଣ ପରେ ମୋର କୋହ ବନ୍ଦ ହୋଇଗଲା । ବୋଉକୁ ନିଦ ହୋଇ ଯାଇଥାଏ । ମାତ୍ର ମୋ ଆଖିକି ନିଦ କୁଆଡ଼ୁ ଆସିବ ? ପ୍ରାଣପ୍ରିୟା ଗୌରୀ ଯେ ତେଣେ ଏତେ ରାତିରେ ଏକୁଟିଆ ବରଗଛ ମୂଳେ ଠିଆ ହୋଇ ତାକୁ ଅପେକ୍ଷା କରି ଛଟପଟ ହେଉଥିବ । ଏବଂ ନିକଟସ୍ଥ ଅରଣ୍ୟରୁ ହିଂସ୍ର ଜନ୍ତୁମାନେ ଆସି ଯଦି ତାକୁ ଘେରି ଯାଇଥିବେ ? ଓଃ ! ମୋ ଲାଗି ପ୍ରାଣପ୍ରିୟା କି କଷ୍ଟ ଭୋଗୁଛି ରେ । ଓଃ ଧିକ୍ ମତେ ! ଧିକ୍ ମୋର ପୁରୁଷ ପଣିଆ ! କେଦାର କିଏ ? ଆଉ ମୁଁ ଗ୍ରେଟ ଲୋକ କିଏ ? ଆଃ ! ଯଦି ଗୋଟାଏ ବାଘ କି ଭାଲୁ ମୋର ପ୍ରାଣପ୍ରିୟାକୁ ଆକ୍ରମଣ କରେ ? ଆଃ ! ଗୌରୀ ! ଗୌରୀ ! ମୋର ପ୍ରାଣପ୍ରିୟା ଗୌରୀ ' ମୋତେ ଛାଡ଼ି ତୁମେ କୁଆଡ଼େ ଗଲ ? ଓଃ ! ନିଶ୍ଚୟ ପ୍ରାଣପ୍ରିୟା ଗୌରୀକୁ ବାଘଟାଏ ମାରି ଖଣ୍ଡ ଖଣ୍ଡ କରି ସାରିବଣି ! ଏମିତି

ଭାବ ମୁଁ ଭୟଙ୍କର ଛଟପଟ ହେଲି ରାତିସାରା । ଏତେ ଶୀତରେ ବି ମୋ ଦେହ ଗରମ ହୋଇ ଯାଉଥାଏ ଓ ମୋ ଦେହରୁ ଗମ୍‌ଗମ୍ ଝାଳ ବୋହୁଥାଏ । ଏମିତି ଏମିତି ହୋଇ କାଳ ରାତିଟା ପାହି ପାହି ଆସିଲା । କୁଆଡୁ ଗୋଟାଏ ସାଥୀହରା କୁଆ କଲକଲିଆ ହୋଇ କା-କା ଡାକ ଅଡର୍ଗରେ ଆମ ଘର ଉପରେ କୁଆଡ଼େ ଉଡ଼ିଗଲା । ମୁଁ କବାଟ ଫିଟାଇ ପଦାକୁ ଆସିଲି । ରାତି ପୂରା ପାହି ନ ଥାଏ । ପୂର୍ବଦିଗ ଫର୍ଚା ହୋଇ ଆସୁଥାଏ । ମୁଁ ଆଉ ସମ୍ଭାଳି ନ ପାରି ଦାଣ୍ଡ କବାଟ ଫିଟାଇ ଦାଣ୍ଡକୁ ବାହାରି ପଡ଼ିଲି । ଏବଂ ପ୍ରାୟ ଦଉଡ଼ିଲା ଭଳି ଗଲିଲି ସ୍କୁଲ ପାଖ ମିଶ୍ର-ଟୋଟା କଡ଼ର ବରଗଛ ମୂଳକୁ । ସେତେବେଳେ ମୋର ହୋସ୍ ନଥିଲା । ନଦରେ ଦଉଡ଼ୁଥିବା ଲୋକ ପରି ମୁଁ ପ୍ରାୟ ଅଚେତନ ଭାବେ ଦଉଡ଼ୁଥିଲି । କେତେବେଳେ ଯାଇ ସେ ଗଛ ମୂଳେ ପହଞ୍ଚିଗଲି ମୋର ଖିଆଲ ନାହିଁ । ସେତେବେଳକୁ ପୂରା ସକାଳ ହୋଇ ନ ଥାଏ । ଚଳବଧି କେହି ମଧ୍ୟ ରାସ୍ତାକୁ ବାହାରି ନ ଥାନ୍ତି । ମାତ୍ର କାହିଁ କିଏ ? ବରଗଛ ମୂଳେ ତ କେହି ନାହାନ୍ତି ! କୁଆଡ଼େ ଗଲା ପାଙ୍କ ? ମୋର ପ୍ରାଣେଶ୍ୱରୀ ବନ୍ଦୁଂଲତା ? ମୋର ପ୍ରାଣପ୍ରିୟା ଗୌରୀ ? ମୁଁ ବ୍ୟାକୁଳରେ ଚାରିଆଡ଼େ ଖୋଜି ବୁଲିଲି । ସ୍କୁଲ ଘର—ସ୍କୁଲ ବଗିଚା—କଣିଆ ବାଡ଼—ନାଇଁଚ—କେହି ନାହିଁ । ଚାରିଆଡ଼େ ଶୂନ୍‌ଶାନ୍ । ମୋ ମୁଣ୍ଡକୁ ପାପ ଛୁଇଁଲା । ମୁଁ ବରଗଛ ମୂଳକୁ ଫେରି ଆସି ଭୂଇଁ ଉପରକୁ ନଇଁ ଚାହିଁଲି । ଏ କ'ଣ ? ବାଲି ଉପରେ କେହି ଧସ୍ତା ଧସ୍ତି ହେଲାପରି ଲାଗୁଛି । ଏଇତ ବାଲି ଉପରେ ଗୋଟାଏ ଭୟଙ୍କର ବାଘର ପାଦୁଲି ଚିହ୍ନ ପଡ଼ିଲା ଭଳି ଦିଶୁଛି । ଓଃ ! ଓଃ ! ଗୌରୀ ? ଶେଷକୁ ମୋ ଲାଗି ତୁମର ବାଘ ମୁହଁରେ ପ୍ରାଣ ଗଲା ? ଓଃ ! ଓଃ ! ଗୌରୀ ଗୌରୀ—ଗୌରୀ···

ମୁଁ ମିଶ୍ରଟୋଟାକୁ ଘେରିଥିବା ବୁଦା ଆଡ଼କୁ ଚାହିଁକି ଗଲି । ଏ କ'ଣ ? ଏ କ'ଣ ? ଏଇ ରକ୍ତବୋଳା ଚିରା ଶାଢ଼ୀଟି କାହାର ? ଯୋଡ଼ାଏ ସପ୍ତଫେଣୀ ବୁଦା ସନ୍ଧିରୁ ମୁଁ ଗୋଟାଏ ଛିଣ୍ଡା ଶାଢ଼ୀର ଅଂଶ ଦେଖି ତାକୁ ଉଡ଼ ଆଣି ଦେଖିଲି ସେଥିରେ ରକ୍ତ ଅବଶ୍ୟ ଲାଗି ନ ଥିଲା । କିନ୍ତୁ ଏ ଶାଢ଼ୀଟି ଯେ ବନ୍ଦୁଂଲତାର ଏଥିରେ ମୋର ଆଦୌ ସନ୍ଦେହ

ନ ଥିଲା । ନିଶ୍ଚୟ ବାଘ କମ୍ବା ଗଧିଆ ତାଙ୍କୁ ଏକୁଟିଆ ଦେଖି ଏହି ଅରଣ୍ୟକୁ ଘୋଷାରି ନେଇଛି ଏବଂ କଣ୍ଟା ଲାଗି ତା'ର ଶାଢ଼ୀରୁ ଫାଳେ ଚିରି ଯାଇ ଏଠି ଏମିତି ପଡ଼ିଛି । ମୁଁ ସେହି ଶାଢ଼ୀ କନାଟିକୁ ଛାତିରେ ଜାକିଧରି କାନ୍ଦି ଉଠିଲି ଅବିକଳ ଯାହାରେ କେଦାର ଯେମିତି ଉଚ୍ଚକିତ ସ୍ୱରରେ ଚିତ୍କାର କରୁଥିଲା—ମୋର ସେ କରୁଣ ମର୍ମଭେଦୀ ବଚନକା ମନେ ଥିଲା । ଓଃ ! ଗୌରୀ ! ଗୌରୀ ! ମୋର ପ୍ରାଣପିୟା ଗୌରୀ ! ମୋତେ ଛାଡ଼ି ତୁମେ କୁଆଡ଼େ ଗଲ ? ଆରେ ହିଂସ୍ର ନୃଶଂସ ବ୍ୟାଘ୍ର ! ତୁ ମୋର ଗୌରୀକୁ ଖାଇଛୁ—ଏବେ ତୁ କୋଉଠି ଅଛୁ—ଶୀଘ୍ର ଆସି ମୋତେ ଖାଇ ତୋହର ମନସ୍କାମନା ପୂର୍ଣ୍ଣ କର ! ଓଃ ! ଗୌରୀ ! ଗୌରୀ ! ଗୌରୀ !

ସେଇ ବାଲି ଉପରେ ମୁଁ ବସି ପଡ଼ିଲି । ମାତ୍ର ମୋର ଚେତା ବୁଡ଼ିଲା ନାହିଁ । ମୋର ସେତେବେଳେ ଆଉ କୋଉ ଚେତା ଥିଲା ଯେ ବୁଡ଼ିଥାନ୍ତା ? ଘନ ଘନ ନିଃଶ୍ୱାସ ଛାଡ଼ି ଲୁହ ଜୁଡ଼ୁବୁଡ଼ୁ ହୋଇ ମୁଁ ସେଇ ବାଲି ଉପରେ ବସି ଢେର୍ ବେଳଯାଏ ବିଳାପ କରି ଲାଗିଲି । ......

ପାଠକେ ! ତା' ପରର ଘଟଣା ବିସ୍ତୃତ ଭାବରେ ବର୍ଣ୍ଣନା କରି ଆଉ ଲାଭ ନାହିଁ । ଗୋଟାଏ ନଅବର୍ଷର ଆଡ଼ିବାଇଆ ଟୋକାର ପ୍ରଣୟ ନାଟକ ସମ୍ବନ୍ଧେ ଆଉ ବେଶୀ କଥା କହିବାକୁ ମୋର ଏ ବୟସରେ ଆଉ ହାତ ଚଳୁ ନାହିଁ । ମୁଁ ଜାଣେ ବହୁ ଲୋକ ଏ କଥାକୁ ବିଶ୍ୱାସ କରିବେ ନାହିଁ । ନ କରନ୍ତୁ । ନ କଲେ ଭଲ । କିନ୍ତୁ ଏହା ପରର ଘଟଣା ମୁଁ ସଂକ୍ଷେପରେ କହି ଦେଉଛି । ପ୍ରକୃତରେ ସେଦିନ ରାତିରେ ବିଦ୍ୟୁଲ୍ଲତା ସେ ବରଗଛ ମୂଳକୁ ଆସି ନ ଥିଲା । ସେହି ରାତିରେ ସେ ପ୍ରଥମ କରି ଋତୁମତୀ ହେଲାରୁ ତାଙ୍କୁ ଘରେ ଅଟକ ରଖା ହୋଇଥିଲା । ତା' ପରେ ତାଙ୍କୁ ଆଉ ସ୍କୁଲକୁ ପଠାଗଲା ନାହିଁ । ତା'ର ପାଠପଢ଼ାର ଇତିଶ୍ରୀ ଘଟିଥିଲା । ତାଙ୍କୁ ମଧ୍ୟ ଆଉ ପଦାକୁ ବାହାରିବା ଲାଗି ଅନୁମତି ମିଳିଲା ନାହିଁ । ମୁଁ ମଧ୍ୟ ସେଦିନର ସେହି ନିଦାରୁଣ ଅଭିଜ୍ଞତା ପରେ ଖୁବ୍ ପ୍ରକୃତିସ୍ଥ ହୋଇଗଲି । ନୀରବ ହୋଇଗଲି । ମୋର ସେହି ଦୁଃଖ ସମ୍ବନ୍ଧେ ମଧ୍ୟ କାହାକୁ କିଛି ଜଣାଇଲି ନାହିଁ । ଏପରିକି ମାଷ୍ଟ୍ରାଧରଙ୍କୁ

ମଧ୍ୟ ମୋର ସେଦିନର ଅଭିଜ୍ଞତା ସମ୍ବନ୍ଧେ କିଛି କହିପାରିବି ନାହିଁ । ମୋ ମୁଣ୍ଡରୁ ବିଦ୍ୟୁଲ୍ଲତାର ପ୍ରଣୟ-ଭୂତ ଓହ୍ଲାଇଗଲା । ମୋର ପ୍ରଣୟ-ନିଶା ଛାଡ଼ିଗଲା । ସେହି ଘଟଣା ପରେ—ସତ କହୁଛି—ଆଜି ପର୍ଯ୍ୟନ୍ତ ଏବେ ଉନ୍ମାଦନାପୂର୍ଣ୍ଣ ସରଳ ନିର୍ମଳ ଜର୍ଜରିତ ପ୍ରେମାନୁଭୂତି ମୁଁ କୌଣସି ନାରୀ ପ୍ରତି ଅନୁଭବ କରିନାହିଁ । ମୋର ପରିଣତ ଜୀବନରେ ଯୋଉ ସବୁ ପ୍ରଣୟ-ଜନିତ ଘଟଣା ଘଟିଛି—ସେଗୁଡ଼ିକ ନିଶ୍ଚିତ ଭାବେ ଅଧିକ ଗମ୍ଭୀର, ଅଧିକ ଜଟିଳ, ଅଧିକ ସଚେତନ ଓ ଅଧିକ ସାର୍ଥକ । ମାତ୍ର ବିଦ୍ୟୁଲ୍ଲତା ସଙ୍ଗେ ସେଇ ନଅବର୍ଷ ବୟସରେ ଯୋଉ କେଦାର-ଗୌରୀ ପ୍ରୀତି-ସୂଆଙ୍ଗ ସତକୁ ସତ କରିଥିଲି—ତା'ର ଅନୁଭୂତି ଆଉ ସ୍ୱାଦ ସମ୍ପୂର୍ଣ୍ଣ ଭିନ୍ନ ପ୍ରକାର । ଆଜି ବେଳେବେଳେ ଭାବେ—ଆଃ ! ସେଦିନ ରାତିରେ ଯଦି ସତକୁ ସତ ବିଦ୍ୟୁଲ୍ଲତା ଆଉ ମୁଁ ଏକାଠି ହୋଇଥାନ୍ତୁ ସେଇ ବରଗଛ ମୂଳେ ! ତା' ହେଲେ ମୋ ଜୀବନରେ ଆଉ କି ପ୍ରକାର ଅଭିଜ୍ଞତା ମୁଁ ପାଇଥାନ୍ତି ? ··· ··

ଏବେ ମୋର ଏଇ ବୟସରେ ତାକୁ ପୁଣିଥରେ ଦେଖିବାକୁ ମନ ବଡ଼ ବ୍ୟାକୁଳ ହେଉଛି । ଏବେ ତ କାହିଁକି ତା' କଥା ବହୁ ସମୟରେ ବଡ଼ ପ୍ରଗାଢ଼ ଭାବେ ମନେପଡ଼ି ଭାରି ଛଟପଟ ଲାଗୁଛି । ସେଇ ସୁନାପାଣିଆ ଭଳି ପାତେଳୀ ହୋଇ ଡେଙ୍ଗୀ ଝିଅଟି ! ତା'ର ଫୁଲପରି ସୁନ୍ଦର ନାକରେ ଜକ୍‌ଜକ୍ ସୁନାର ଠିକଣାଟିଏ । ତାର ମାଳକଇଁ ପରି ଛଳଛଳ ଆଖି । ଡାଳିମ୍ବ ଫୁଲପରି ନାଲି ଟୁକ୍‌ଟୁକ୍ ଓଠ । ତା'ର ଚନ୍ଦ୍ରଉଦଆ ପରି ହସ । ଆଉ ତା'ର ମୋ ଭଳି ଗୋଟାଏ ଗେଡ଼ା ଅସୁନ୍ଦର ପୁରୁଷପିଲା—ଯେ ତା'ର ପାଦର କାଣିଆଙ୍ଗୁଠି ମଧ୍ୟ ସରି ନ ଥିଲା—ତା' ପ୍ରତି ଏତେ ଗହନ ଅକୁଣ୍ଠ ଜଡ଼ବୁଡ଼ ପ୍ରୀତି !! ······

ମୁଁ ଶୁଣିଛି—ସେ ଏଇ ସହରରେ ଅଛି । ମୋ ଘରଠାରୁ ତା' ଘର ସାତ କିଲୋମିଟର ମାତ୍ର ଦୂର । ମୋର ଗାଡ଼ିରେ ସାତ ମିନିଟ୍ ବି ଲାଗିବ ନାହିଁ ତା' ପାଖେ ପହଞ୍ଚି ଯିବାକୁ । ମୁଁ ଶୁଣିଛି—ସେ ବେଶ୍ ବୁଢ଼ୀଭଳି ଦିଶିଲାଣି । ସେ ଖୁବ୍ ମୋଟୀ ହୋଇ ଗଲାଣି । ତା ମୁଣ୍ଡର ବାଳ ସବୁ ଉପୁଡ଼ି ଆସିଲାଣି । ଯେତିକି ବାଳ ଆଉ ଅଛି—ସେ ସବୁ

ଧଳା ହୋଇ ଗଲଣି । ତା'ର ସ୍ୱାମୀ ଖୁବ୍ କଉତ୍‌କର୍ମା ଆଉ ଖାନ୍‌ଦାନ ମଣିଷ । ତା'ର ଦୁଇ ପୁଅ ଓ ଦୁଇ ବୋହୂ । ତା'ର ଦୁଇ ଝିଅ ଆଉ ଦୁଇ ଜୋଇଁ । ସମସ୍ତେ ସମାଜରେ ସୁପ୍ରତିଷ୍ଠିତ । ତା'ର ପୁଅ ଝିଅଙ୍କ ଆଉ ପାଞ୍ଚଟି ନାତି ନାତୁଣୀ ହେଲେଣି । ଆଉ ଗୋଟିଏ କଥା ମଧ୍ୟ ପାଠକେ ଜାଣିରଖନ୍ତୁ—ତା'ର ବଡ଼ ବୋହୂ ସାନ ଘରର ଜଣେ ଅନ୍ତରଙ୍ଗ ବନ୍ଧୁ । ଏବଂ ଜଣେ ନାମଜାଦା ପଣ୍ଡିତ ଅଧ୍ୟାପକ । ମାତ୍ର ସେ କ'ଣ ଆମ ସମ୍ବନ୍ଧେ ଏତେ କଥା ଜାଣନ୍ତି ? ଅବଶ୍ୟ ତାଙ୍କର ପାଖ ଗାଁରେ ଓ ମୁଁ ୧୯୩୪ ମସିହାରେ ଏକାଠି ନ. ପ୍ରା. ସ୍କୁଲରେ ପଢ଼ୁଥିଲୁ—ଏତିକି ତାଙ୍କୁ ଜଣାଅଛି । ଥରେ କୁଆଡ଼େ ସେ ତାଙ୍କ ଶାଶୁଙ୍କୁ ମୋ କଥା ପଚାରୁଥିଲେ । ସେ ମତେ ମନେ ରଖିଛି—ଏବଂ ମୋତେ ତାଙ୍କ ଘରକୁ ଥରେ ନେଇ ଯିବାକୁ ତାଙ୍କ ବୋହୂରକୁ କହିଥିଲା । ମୁଁ ସେ କଥା ଶୁଣିଲି । ମୋର ହୃଦୟ ଉଲ୍ଲସି ଉଠିଲା—ପୁଲକ ଉଠିଲା । ମାତ୍ର ତାଙ୍କ ଘରକୁ ଗଲିନାହିଁ । ମୋର ପରମ ବ୍ୟାକୁଳତା ସତ୍ତ୍ୱେ ଗଲି ନାହିଁ । ଆପଣମାନେ ବିଶ୍ୱାସ କରନ୍ତୁ—ମୋର ମଧ୍ୟ ନାତି ନାତୁଣୀ ହେଲେଣି—ତଥାପି ମୋର ସେହି ବାଲ୍ୟପ୍ରଣୟିନୀ କୁମାରୀ ବିଦ୍ୟୁଲ୍ଲତା ଦେଈଙ୍କୁ ଦେଖିବାର ପ୍ରବଳ ପ୍ରଚଣ୍ଡ ଆଗ୍ରହ ରହିଛି । ତାହା ପୁଣି ଏହି ଶେଷ ବୟସରେ ଆହୁରି ଅଧିକ ଗଭୀର, ଜଟିଳ, ସଚେତନ ଓ ସାର୍ଥକ ଭାବେ ରହିଛି । ଏବଂ ତା' ହାତରୁ ଗୋଟିଏ କୁହୁଡ଼ିଆ ଶୀତ ସକାଳରେ ପରୋଟା ସଙ୍ଗେ ନୈନିତାଲ୍ ବିଲାତି ଆଳୁର ଦମ୍ ଖାଇବାକୁ ଲୋଭ ରହିଛି—ଏବଂ ସାରା ଦିନଟା ତା' ସଙ୍ଗେ ଧଳା ବାଳ ଓ ଯାଇବେଣିଆ ପ୍ରଭୃତି ସହିତ ମୋ ଲିଖିତ ବହୁ ଗଳ୍ପ ପଢ଼ି ତାକୁ ଶୁଣାଇ ନିଜକୁ କୃତାର୍ଥ ହେବାକୁ ବ୍ୟାକୁଳତା ରହିଛି । ଆଉ ସତକୁ ସତ ସମସ୍ତଙ୍କ ଅଜାଣତରେ ଦିନେ ରାତି ଅଧରେ ତାକୁ ମୋର ସ୍କୁଟର ପଛପଟେ ବସାଇ ସବୁ ଓ ସମସ୍ତଙ୍କୁ ଛାଡ଼ିଛୁଡ଼ି ଦେଇ ତେଣେ କୁଆଡ଼େ ଗନ୍ତରକେଲା କ ନୈନିତାଲ୍ ପଳେଇ ଯିବାକୁ ପ୍ରବଳ ବାସନା ଜାତ ହୋଇଛି । ମୁଁ ନିଶ୍ଚିତ ଜାଣେ ଏଥର ତାକୁ ଦେଖିଲେ ମୁଁ ଆଉ ଛାଡ଼ିବି ନାହିଁ । ମୋ କବଳରୁ ତାକୁ କେହି ଅଟକାଇ ପାରିବେ ନାହିଁ । ମୁଁ ତାକୁ ଯେମିତି ହେଲେ ଖସାଇ ଆଣି କୁଆଡ଼େ ନାଇଁ କୁଆଡ଼େ ଚମ୍ପଟ ମାରିବି । ଏଥର

ଆଉ ତାକୁ ଋତୁମତୀ ହୋଇଛୁ ବୋଲି କହି ଘରେ କେହି ଲୁଚେଇ ଅଟକେଇ ରଖି ପାରିବେ ନାହିଁ । ମୁଁ ଜାଣେ—ତା'ର ସବୁ ଋତୁ ସରି ଯିବଣି । ସବୁ ପ୍ରିୟବନ୍ଧୀ ଭବମୀ ନାରୀଙ୍କର ଋତୁପୂର୍ବ ଓ ଋତୁପର ଅବସ୍ଥା ଏକାଭଳିଆ ନୁହେଁ କି ? କେଜାଣି ? ମୁଁ ଜାଣିନି ! ତେବେ ବର୍ଦ୍ଧ୍ୟାଳିତାର ସେଇଆ ହୋଇଥିବ ବୋଲି ମୁଁ ଭାବୁଛି । କେଜାଣି ? ମୁଁ ଠିକ୍ କହି-ପାରୁନାହିଁ । ତେବେ ମୁଁ ନିଜେ ଆଉ କୋଉ ଋତୁଫୁଲରେ ନାହିଁ । ମୋର କାହା ଋତୁଚକ୍ର ସଙ୍ଗେ ମଧ୍ୟ ଆଉ ସମ୍ପର୍କ ନାହିଁ । ମୋତେ ନଅବର୍ଷ ବେଳେ ବି ନ ଥିଲି ! ମୁଁ ନିଜେ ବର୍ତ୍ତମାନ ମୋର ଋତୁ ।

କିନ୍ତୁ ମୁଁ ଜାଣେ—ମୁଁ ତା' ପାଖକୁ ଆଉ ଯିବି ନାହିଁ । କାହିଁକି ଯିବି ? ମୁଁ କ'ଣ ଦେଖିବି ? କାହାକୁ ଦେଖିବି ? ସେ ମଧ୍ୟ କ'ଣ ଦେଖିବ ? କାହାକୁ ଦେଖିବ ? ସେ ମତେ ଚା' ଜଳଖିଆ ଦେଇ ହସି ହସି ଅଭ୍ୟର୍ଥନା କରିବ । ତା'ର ନକଲି ଦାନ୍ତ ହ' ପାଟି ଲଗାଇବାକୁ ଭୁଲି ଯିବାରୁ ତା'ର ମୁହଁ ପଚ୍ଚେଇଲା ଭଳି ଦିଶୁଥିବ । ମୋର ଦନ୍ତହୀନ ପାଟିରେ ନକଲି ଦାନ୍ତ ନ ଦେଖି ତାକୁ ଅବୁଝିଆ ଲାଗୁଥିବ । ସେଇଠୁ ମତେ ପଚାରିବ —ଆପଣଙ୍କର କେତୋଟି ନାତି ନାତୁଣୀ ହେଲେଣି ? ଏବଂ ଉତ୍ତର ଦେଇସାରି ମୁଁ ମଧ୍ୟ ତା' ପ୍ରଶ୍ନର ସଙ୍ଗତି ରକ୍ଷାକରି ତାକୁ ପଚାରିବି— ତୁମର କେତୋଟି ନାତି ? କେତୋଟି ନାତୁଣୀ ? ତା'ପରେ ଆମେ ଦୁହେଁ ହୃଏତ—ରକ୍ତଚାପ ଓ ଉଦରରେ ବାୟୁ ବୃଦ୍ଧି ସମ୍ପର୍କରେ କିଛି ସମୟ କଥାବାର୍ତ୍ତା ହେବୁ । ତା'ପରେ ସେ ହୃଏତ ଶେଷ କଥାଟି ମତେ ପଚାରି ଦେବ—ଆପଣ ପଣ୍ଡିଚେରୀ କେତେଥର ଯାଇଛନ୍ତି ? ଶ୍ରୀମାଙ୍କୁ ନିକଟରୁ କେତେଥର ଦର୍ଶନ କରିଛନ୍ତି .....

ଇସ୍ । ଥାଉ—ଥାଉ । ତା ଅପେକ୍ଷା ଆମର ଭେଟ ନହେବା ଶତେଗୁଣ ଭଲ । ମୁଁ ଆଉ ବର୍ଦ୍ଧ୍ୟାଳିତାକୁ ନେଇ ଦ୍ୱିତୀୟ ବାର ଯନ୍ତ୍ରଣା ଭୋଗ କରିବାକୁ ଚାହେଁ ନାହିଁ । ଗୋଟିଏ କାଳର ଅଭିଜ୍ଞତା ତା' ନିଜ ଗୁଣ ଓ ସାଧନାରେ ମୂଲ୍ୟବାନ ପରିପୂର୍ଣ୍ଣ ଓ ସ୍ୱୟଂସିଦ୍ଧ । ତାକୁ ତା'ର ନିଜ ସ୍ଥିତିରୁ ଓଟାରିନେଇ ଯେଉଁମାନେ ତାକୁ ଅନ୍ୟ ଏକ କାଳର ଅଭିଜ୍ଞତା ସଙ୍ଗେ ଯୋଡ଼ି ଦେବାକୁ ଚାହାନ୍ତି, ସେମାନେ ମୂର୍ଖ ବେରସିକ

ଓ ବେହୁସିଆର ଆଦ୍‌ମୀ । ମୋତେ ଲାଗୁଛି—ସବୁ ଠିକ୍ ଅଛି । ମୁଁ ଭଲ—ଆଜି ମୋର ସ୍ୱାସ୍ଥ୍ୟ ଭଲ । ସବୁ କଥା ସ୍ୱପ୍ନ । ଏବଂ ସ୍ୱପ୍ନ ମାତ୍ରେଇ ଯେତିକ ମଧୁର—ସେତିକ ବିଷାଦପୂର୍ଣ୍ଣ । ମୁଁ ଆଜି ମଧ୍ୟ ଜାଣେ ଯେ ମୋ ପ୍ରଥମ ପ୍ରଣୟିନୀ କୁମାରୀ ବିଦ୍ୟୁଲ୍ଲତା ମୋ ଠାରୁ ସାତ କଲୋମିଟର ଦୂରରେ ନାହିଁ । ସେ ମୋର ସ୍ତ୍ରୀ ସାଙ୍ଗେ ମଧ୍ୟ ମିଶିମାଣି ରହିଛି । ଆମେ ଏକାଠି ଅଛୁ । ସେପରି ନିରୋଳା ବେଳାରେ ଆମର ସମସ୍ତଙ୍କ ଅଗୋଚରରେ କେଦାର-ଗୌରୀ ସୁଆଙ୍ଗ ଚାଲିଛି । ନିତ୍ୟ ନିତ୍ୟ । ଦେଖିଲି ସେ ମୋ ଆଗରେ ଠିଆ ହୋଇଛି—ସୁନା ପାତିଆ ପରି ଡେଙ୍ଗୀ ପାତଳୀ ଝିଅଟିଏ । ପୁନଅଁ ଜହ୍ନପରି ମୁହଁଟିଏ—ମାଳକଇଁ ପରି ଛଳଛଳ ଆଖି ଦୁଇଟି—ନାଲି ଗୁଲୁଗୁଲୁ ଡାଳିମ୍ବ ଫୁଲପରି ପାଟିଟିଏ—ଚନ୍ଦ୍ର ଉଦୟା ପରି ହସ । ଆଉ—ଆଉ—ଫୁଲପରି ସୁନ୍ଦରିଆ ନାକଟିରେ ତାର ଜୁକୁଜୁକୁ ସୁନାର ଠିକଣାଟିଏ !! ଆଃ !! ଗୌରୀ, ଗୌରୀ ! ମୋ ପ୍ରାଣ-ପ୍ରିୟା ଗୌରୀ ! କେମିତି କେଉଁ ଭାଷାରେ ମୁଁ ତୁମ ପାଦପଦ୍ମରେ ମୋର ପରିପୂର୍ଣ୍ଣ ହୃଦୟର ସମସ୍ତ ପ୍ରେମ ଓ ଭକ୍ତିର ଅର୍ଘ୍ୟ ନିବେଦନ କରିବି ? ହେ ମୋର ପରମ ପୂଜନୀୟା ପ୍ରଥମ ପ୍ରଣୟର ପ୍ରଥମ ପ୍ରେମିକା ! ତୁମେ କୃପାକରି ସେହିଦିନୁଁ ମୋ ହୃଦୟରେ ନିତ୍ୟ ନିରବଚ୍ଛିନ୍ନ ଭାବେ ଅବସ୍ଥାନ କରୁଛ ବୋଲି ସିନା, ମୋର ଏ ସଂସାର ଏମିତି ଆଜଯାଏ ମଧୁମୟ ହୋଇ ରହିପାରିଛି ? ମୋ ସଂସାରର ସମସ୍ତେ ସେଥିପାଇଁ ତୁମ ପାଖରେ କୃତଜ୍ଞ ରହିବେ ବିଦ୍ୟୁଲ୍ଲତା ! ମୋର ପ୍ରାଣାଧିକା ପତ୍ନୀ—ମୋର ଦୁଇ ପୁଅ—ଦୁଇ କନ୍ୟା—ମୋର ନାତି ନାତୁଣୀମାନେ, ମୋର ବାପା, ମାଆ, ଭାଇ, ଭଉଣୀ, ବନ୍ଧୁ, କୁଟୁମ୍ବ ପରିଜନ ସମସ୍ତେ—ସମସ୍ତେ । ସେଥିପାଇଁ ଉଦାର ମନରେ ମୁଁ ଆସନ୍ତା ନବବର୍ଷଟି (୧୯୮୧) ତୁମ ଉଦ୍ଦେଶ୍ୟରେ ଉତ୍ସର୍ଗ କରି ମୋର ଲେଖନୀକୁ ଏଥରକ ଲାଗି ବିଶ୍ରାମ ଦେଉଛି ।



# ଅଭିଶପ୍ତ ଗନ୍ଧର୍ବ

ସତକଥା କହିବାକୁ ଗଲେ, ସଂଗୀତର ମଧୁର ଆକର୍ଷଣ ମୁଁ ପ୍ରଥମକରି ଅନୁଭବ କଲି, ଯେଉଁଦିନ ମୁଁ ଆମ ଗାଁର ବୈକୁଣ୍ଠ ମଉସା (ବୈକୁଣ୍ଠ ମିଶ୍ର)ଙ୍କ ଘରେ ଅଭିଶପ୍ତ ଗନ୍ଧର୍ବ ଅଭିରାମ ପରିଡ଼ାଙ୍କ କଣ୍ଠସ୍ୱର ଶୁଣିଲି । ସେତେବେଳେ ମୋର ବୟସ ନଅ ଦଶ ବର୍ଷ ହେବ । ମୁଁ ଚତୁର୍ଥ ଶ୍ରେଣୀରେ ପଢ଼ୁଥାଏ । କୌଣସି ସଙ୍ଗୀତର ଅର୍ଥ ବୁଝିବା ଥିଲା ମୋ ପକ୍ଷରେ ଅସମ୍ଭବ । କିନ୍ତୁ ମୋର ଧାରଣା, ସଙ୍ଗୀତ ସଙ୍ଗେ ଯାଦୁବିଦ୍ୟାର ଘନିଷ୍ଠ ସମ୍ପର୍କ ରହିଛି । ଅବଶ୍ୟ ଜଣେ ଯାଦୁକରଙ୍କୁ କଳାକାର ପର୍ଯ୍ୟାୟରେ ନିଆଯିବ କି ନାହିଁ ? କିନ୍ତୁ ସଙ୍ଗୀତ ନିଶ୍ଚୟ ଗୋଟିଏ ଯାଦୁବିଦ୍ୟା । ଏହାକୁ ନ ବୁଝି ବି ଏହା ହୃଦ ମନକୁ ଆକର୍ଷି ନିଏ ଏବଂ ଆହୁରି ଆଶ୍ଚର୍ଯ୍ୟ କଥା ହେଲା, ଏହାକୁ ସମ୍ପୂର୍ଣ୍ଣ ସ୍ପଷ୍ଟଭାବେ ନ ବୁଝିଲେ ବି ଏହାର ନିଶା ପ୍ରଗାଢ଼ ହୋଇଯାଏ ଏବଂ ସ୍ପଷ୍ଟଭାବେ ବୁଝିବାକୁ ଚେଷ୍ଟାକଲେ ଏହାର ନିଶା ଛୁଡ଼ିଯାଏ । ଅଭିରାମ ପରିଡ଼ାଙ୍କ କଣ୍ଠରୁ ସଙ୍ଗୀତଟିଏ ଶୁଣିବା ମାତ୍ରେ ହିଁ ମୋତେ ସେଦିନ ପ୍ରଥମ କରି ସଙ୍ଗୀତର ନିଶା ଲାଗି ଯାଇଥିଲା ଏବଂ ଆଜିପର୍ଯ୍ୟନ୍ତ, (ମୋର ବୟସ ଏବେ ଚଉବନ) ମୁଁ ସେହି ବିଚିତ୍ର ନିଶାରେ ବିଭୋର ଅଛି । ଭଲ ସଙ୍ଗୀତ ଶୁଣିବାକୁ ପାଇଲେ ମୁଁ ଯୋଗୀଭଳି ଧ୍ୟାନସ୍ଥ ହୋଇ ଏକାଦିକ୍ରମେ ତିନି ଚାରିଘଣ୍ଟା ବସିଯିବି । କିନ୍ତୁ ଏହା ମଧ୍ୟ ମୋର ଧାରଣା ଯେ ଯଦିଓ ଆମମାନଙ୍କ ଭିତରୁ ଅନେକ

ମଧ୍ୟେ ମଧ୍ୟେ ସଙ୍ଗୀତ ଶୁଣନ୍ତି ବା ଶୁଣିବାକୁ ଭଲପାନ୍ତି—କିନ୍ତୁ ସଙ୍ଗୀତର ନିଶା ସମସ୍ତଙ୍କୁ ଲାଗେ ନାହିଁ । ଅନେକ ଲୋକ ପୂଜାର୍ଚ୍ଚନା କରନ୍ତି । କିନ୍ତୁ ଧର୍ମର ନିଶା କେତେଜଣଙ୍କୁ ଲାଗେ ? ଅନେକ ଲୋକ ସ୍ତ୍ରୀ ଲୋକଟିଏ ବାହାହୋଇ ଘର ସଂସାର କରନ୍ତି । ମାତ୍ର ସ୍ତ୍ରୀଲୋକର ନିଶା କେତେ-ଜଣଙ୍କୁ ଜୀବନସାରା ଲାଗିଥାଏ ! କିନ୍ତୁ ଏହାଲାଗି ମୁଁ କାହାକୁ ଦୋଷ ଦେଉନାହିଁ । କାରଣ ଅଲୌକିକ କୌଣସି ମାହେନ୍ଦ୍ର ମୁହୂର୍ତ୍ତରେ ଜଣେ ମନୋମତ ଧର୍ମଗୁରୁଙ୍କର ଦର୍ଶନ ନ ପାଇବାଯାଏ, ଧର୍ମନିଶା କଅଣ ତାହା ଜଣେ ଜାଣିପାରିବ ନାହିଁ । ସେମିତି, କୌଣସି ପ୍ରେମଘନ ମାହେନ୍ଦ୍ର ମୁହୂର୍ତ୍ତରେ ଜଣେ ମନୋହାରିଣୀ ମଧୁମୟୀ ନାରୀର ପ୍ରୀତିସ୍ନିଗ୍ଧ ସମର୍ପଣମୟ ଦୃଷ୍ଟି ସଙ୍ଗେ ଦୃଷ୍ଟି ବିନିମୟ ହୋଇ ନ ଥିଲେ ସ୍ତ୍ରୀ ଲୋକର ନିଶା କ'ଣ ତାହା ଜଣେ ଜାଣି ପାରିବ ନାହିଁ । କବିଙ୍କ ଭାଷାରେ "ନୁହଇଁ ବଡ଼ଶୀ—ବଳେ ମନମୀନ ନିଏ ଆକର୍ଷି" କିମ୍ବା "ନୁହଇ ମାଦକ କରେ ବିହ୍ୱଳ—ନୁହଇଁ ତ ଜଳ ବୁଡ଼ାଏ କୂଳ ।" ଏମିତି ଏମିତି ସବୁ ନିଶାର ମୂଳରେ ଜଣେ ନିଶାଧରାଳି ଥିବେ । ସେ ନିଶାରେ ସେହି ଗୁରୁ, ସେହି ଋଷି ଏବଂ ସେହି ମଧ୍ୟ ଦେବତା । ଅଭିରାମ ପରିଡ଼ା ଥିଲେ ମୋ ପକ୍ଷରେ ଜୀବନସାରା ସଙ୍ଗୀତ ନିଶା ପାଇଁ ସେହିଭଳି । ମୋ ଲାଗି ସେ କଳ୍ପଲୋକରୁ, ଏ ମର୍ତ୍ତ୍ୟଧାମକୁ ଓହ୍ଲାଇ ଆସିଥିଲେ । ମୋର ଧାରଣା, ସେ ଥିଲେ ଆମର ଏଇ ବୃଥା କୋଳାହଳମୟ ସମ୍ବେଦନହୀନ ପୃଥିବୀର ଜଣେ ଅଭିଶପ୍ତ ଗନ୍ଧର୍ବ ।

ତେବେ, ଅଭିରାମ ପରିଡ଼ାଙ୍କ କଣ୍ଠରୁ ସଙ୍ଗୀତ ଶୁଣିବା ପୂର୍ବରୁ ମୁଁ ଯେ ଆମ ଗାଁରେ ଆଉ କାହା କାହାଙ୍କ ଠାରୁ ଗୀତ ଫିତ ଶୁଣି ନ ଥିଲି ତା' ନୁହେଁ । ମୋ ପିଲାଦିନେ ଆମ ଗାଁ ତ ବର୍ଷକ ବାରମାସୀ ଗୀତ ନାଟରେ ଉଠୁଥିଲା ପଡ଼ୁଥିଲା । ଏବେ ସିନା ଆମ ଗାଁ ଏତେ ଶ୍ରୀହୀନକଣ୍ଟ ହୋଇ ପଡ଼ିଲାଣି ! ସେତେବେଳେ କିନ୍ତୁ ତା' ନ ଥିଲା । ଗୃହଆଡ଼େ ତ ଗଛ ବୃକ୍ଷରେ ଉପବନ ଭଳିଆ ହୋଇଥାଏ । ତାରି ଭିତରୁ କୋଇଲି-ମାନେ କୁହୁଚୁ ଥିବେ ବନରାଜି—ହଳଦୀବସନ୍ତମାନେ ସାହାଡ଼ାଗଛ ମାନଙ୍କରୁ କୂଜନ କରୁଥିବେ । କପୋତ କପୋତୀମାନେ ଘୁମୁରୁଥିବେ ତେନ୍ତୁଳି ଗଛରେ ବସି । ପୋଖରୀ ପାଖ ବାଉଁଶ ବଣ ଭିତରୁ ଡାହୁକ

ଆଉ କୁମ୍ଭାଟୁଆମାନେ ବୋବାଉଥିବେ । କୋଉଠି ଗୋଟେ ଅଧା ଥୁଣ୍ଟା ଗଛ ଡାଳରେ ବସି ଶଙ୍ଖଚିଲଟା ଚିଲଉଥିବ ଦମ୍ ନେଇ ନେଇ । ସେମିତି ମଧ୍ୟ ଗଛ ବୁଦା ସନ୍ଧିରୁ ଚୂଳଆ ଗୋବରା ପ୍ରଭୃତି ଚଢ଼େଇମାନେ କୁହୁରୁକୁରୁ ହୋଇ କହରଉଥିବେ ।

କିନ୍ତୁ ଏ ସବୁ ପ୍ରାକୃତିକ ସଙ୍ଗୀତ ବ୍ୟତୀତ ମଧ୍ୟ ଆମ ଗାଁରେ ବହୁ କଳାବନ୍ତ ସଙ୍ଗୀତ ପରିବେଷଣ କରୁଥିଲେ । ଆମ ଗାଁର ପାଟୁଆ ଓ ଚଇତିଘୋଡ଼ା ନାଚ ଥିଲା ସେଇ ଖଣ୍ଡମଣ୍ଡଳରେ ଖୁବ୍ ବିଖ୍ୟାତ । ଚଇତି-ଘୋଡ଼ା ନାଚ ଦଳର ଓସ୍ତାଦ୍ ଥିଲେ ବନା ବେହେରା । ଧିର୍ଘ ପାଞ୍ଚହତା ମର୍ଦ୍ଦ । ମୁଗୁନିପଥରର କୁନ୍ଦା ମୂର୍ତ୍ତିଭଳି ସୁନ୍ଦର କମନୀୟ । ମୁଣ୍ଡରେ ଝାମ୍ପୁରି ବାଳ । ମଥାରେ ସିନ୍ଦୂର କଳି । ଆଖିରେ କଜଳ । ବାହୁରେ ମାଲେ ତମ୍ବା ତେନ୍ଦ୍ରିଆ ଏବଂ କାନର ବଉଳୀରେ ଦୁଇହଳ ସୁନା କୁଣ୍ଡଳ । ଦିନବେଳା ତାଙ୍କୁ ଦେଖିଛି—ତାଙ୍କର ବଳିଷ୍ଠ ଲମ୍ବ ବାହୁଁ ବିସ୍ତାର କରି ନଈନାଳ ପୋଖରୀରେ କ୍ଷେପାଜାଲପକାଇ କୁଣ୍ଡେ କୁଣ୍ଡେ ମୋଟ ଆଉ ଚକେ ଚକେ ଲମ୍ବା ହିଁଆ ହିଁଆ ରୋହୀ, ଭାକୁର, ଶେଉଳ ଆଉ ଆଳି, ଚିତଳ, ବାଳିଆଦି ମାଛ ମାରି ଆଣି ହାଟରେ ନଭୁବା ସାଇ ଭିତରେ ବୁଲି ବୁଲି ବିକ୍ରି କରିବାର । ବେଳା ବେଳା ଚୂଡ଼ା ଆଉ ହୁଡ଼ୁମ୍ବ ମୁଣ୍ଡେଇ ଗାଁ ଦାଣ୍ଡରେ ଲମ୍ବା ଲମ୍ବା ପାହୁଲ ପକାଇ କୋଉ ମଠ କି ମନ୍ଦିର ଆଡ଼କୁ ଚାଲିସି ଥିବାର । କେବେ ବା ବୈଶାଖ ଜ୍ୟେଷ୍ଠ ଖରାରେ ମୁଣ୍ଡରେ ଠେକା ଗୁଡ଼େଇ ଆମ ଘରପାଖ ପାଞ୍ଚମାଣିଆ ଚକରେ ହଳ ବୁଲଉ ବୁଲଉ ସାରା ଗହୀରକୁ ସ୍ପନ୍ଦନମୟ କରି ବଜ୍ରଗମ୍ଭୀର ଗଳାରେ ହଳିଆଗୀତ ଗାଇ ଚାଷ କରୁଥିବାର—

ଆରେ···ହଳ ମୁଁ ଫାନ୍ଦିଲି ମନ ପବନକୁ
ପଥର ବୋହିଲି ହୋ ବଡ଼ ଦେଉଳକୁ ।
ବଡ଼ଦେଉଳରେ ଝିଞ୍ଜିରି କବାଟ
ମାଛିକୁ ଶିକୁଳି ହୋ ଯମକୁ ନାହିଁ ବାଟ ।
ଆହା, ମୋ କେଉଁ ପଥେ ଗ୍ରହର ହୋ ପଶିଲେ···
ଭାଙ୍ଗିଲେ ରତ୍ନଖଟ ହୋ—ଡ଼ଃ ଡ଼ଃ ଡ଼ଃ ।

ଚଇତ୍ରମାସର ଶେଷଅଧରେ, ଯେତେବେଳେ ଆମ ଉପକୂଳ ଅଞ୍ଚଳର ଗାଁମାନଙ୍କ ଉପରେ ସମୁଦ୍ରଆଡ଼ୁ ଉତଲା ପବନ ହୁ ହୁ ହୋଇ ବହି ଯାଉଥିବ—ଏବଂ ଆମ ଗାଁ ବ୍ରହ୍ମାଙ୍କ ମନ୍ଦିର ସମ୍ମୁଖସ୍ଥ ବିଶାଳ ବର-ଓସ୍ତ ଯାଉଁଳ ବୃକ୍ଷଟିର ନବୀନ ପଲ୍ଲବଗୁଡ଼ିକୁ ଥର ଥରେଇ ଦେଉଥିବ, ନଡ଼ିଆ ଗଛମାନେ ନିଶା ଖାଇଲା ଭଳି ଦୋହଲୁଥିବେ, ତାଳଗଛମାନେ ଫଡ଼ ଫଡ଼େଇ ହୋଇ ଉଠୁଥିବେ, ଆକାଶରେ, ସମୁଦ୍ର ଆଡ଼ୁ ଖଣ୍ଡ ଖଣ୍ଡ ବଉଦ ଚଗଲା ପିଲାଙ୍କ ଭଳି ବାଇବନ୍ଧ ହୋଇ ପରସ୍ପର ଧକ୍କା ଖାଇ ଖାଇକା କଲବଲ ହଉଥିବେ ଅତର୍କରେ ଉତ୍ତରମୁହାଁ-ଜହ୍ନ କ୍ଷଣକେ ଦେଖାଦେଇ କ୍ଷଣକେ ଲୁଚି ଯାଉଥିବ, ସେଇ ଧାଁ ଧପଡ଼ିଆ ମେଘମାନଙ୍କ ଭିତରେ ସେତିକବେଳେ ଗାଁ ବାଳଙ୍କୁ ଘେଚ ନିଦରୁ ଉଠାଇ ଦେଇ ଗାଁ ଦାଣ୍ଡରେ ଢୋଲ ମହୁରୀ ବାଜିଉଠିବ ଅଗୃନକ । ଢୋଲ ମହୁରୀ ନାଦରେ ଗାଁ ଦାଣ୍ଡ ଉଚ୍ଛୁଳ ପଡ଼ିବ । ଆମେ ସବୁ ନିଦୁଆ ଆଖି ଆଉ ମନ ନେଇ ବିଛଣା ଛାଡ଼ି ଉଠି ଆସି ଦେଖିବୁ—ବନା ବେହେରା ତାଙ୍କ ଘୋଡ଼ାନାଟ ଦଳ ସହ ଆସି ପହଁଞ୍ଚି ଗଲେଣି । ସେତେବେଳେ ସେ ଦିଶୁଥାନ୍ତି ଆଉ ପ୍ରକାରେ । ମୁଣ୍ଡରେ ପଗଡ଼ି । ଦେହରେ ଛିଟ କୁରୁତା । ବାହୁରେ କଡ଼ା । ତା'ପରେ ଢୋଲ ମହୁରୀର ତାଳେ ତାଳେ ନାଚୁନାଚୁ ତାଙ୍କର ଉଦାର ସରଳ ଉଚ୍ଚକିତ ଗ୍ରାମ୍ୟ କଣ୍ଠରୁ ଗୀତ ପଦଟିଏ ବାହାରି ଗାଁର ସମବେତ ଆବାଳବୃଦ୍ଧବନିତାଙ୍କ ହୃଦୟକୁ କୁତୁକୁତୁଇ ଦିଏ । ଆମେ ଥିଲୁ ସେତେବେଳେ ଗାଁ ଜମିଦାର ମକଦମ ଘର । ତେଣୁ ବନା-ବେହେରା ପ୍ରଥମେ ଆମର ଦାଣ୍ଡରେ ହିଁ ଘୋଡ଼ାନାଚ ଆରମ୍ଭ କରି ତା' ପରେ ଅନ୍ୟାନ୍ୟ ସାଇମାନଙ୍କୁ ଯାନ୍ତି । ଆମ ଘରୁ ତାଙ୍କର ପ୍ରାପ୍ୟହେଲା —ପାଞ୍ଚସୁକା ପଇସା—ଘୋଡ଼ାପାଇଁ ନୂଆ ଧୋତିଟିଏ, ରାଉତାଣୀ ପାଇଁ ନୂଆ ଶାଢ଼ୀଟିଏ ଓ କିଛି ପାନ ଗୁଆ ଖଇର ଚୂଣ । ବନା ବେହେରା ନାନାଦି ଗୀତ ଗାଇବା ପରେ ଗାଆନ୍ତି—

ବାଟରେ ମାଇଲ ବୋଡ଼ା
(ଆରେ ଯାହା ବାପ ଚଢ଼ିଥାଏ ଘୋଡ଼ା
ତାର ପୁଅ ଚଢ଼େ ଥୋଡ଼ା ଥୋଡ଼ା)
ଆରେ—ବାଟରେ ମାଇଲ ବୋଡ଼ା
ବାଡରେ ନଗୃଏ ଚଇତ ଘୋଡ଼ା,

ସାଆନ୍ତେ ହୋ !
ବନରେ କୂଟଇ ଚୂଡ଼ା······
ବଣିଗଲା ଡେଇଁ ଡେଇଁ
(ଆରେ ଝାଞ୍ଜିବାଜେ ଝାଇଁ ଝାଇଁ
ଆରେ ବଅଁଙ୍କ ପୋଖରୀ କଇଁ
ଆରେ ଖିର ଗଲା ସାଇଁ ସାଇଁ—ଢୋଲ ବାଜେ ଢାଇଁ ଢାଇଁ)
ଘୋଡ଼ା ଉଭାହେଲା ଦାଣ୍ଡ ଦୁଆରେ
ମୋର ରଜା ପଡ଼ିଛନ୍ତି ଶୋଇ ।···

ଏଇ ପଦଟିମାନ ବୋଲିବା ପରେ ପରେ ମହୁରିଆ ତାଙ୍କୁ ଅନୁସରଣ କରି ଲହରେଇ ଲହରେଇ ମହୁରୀରେ ତା'ର ଭାଷାହୀନ ସ୍ୱରବୃତ୍ତି କରିଚାଲେ ଖୁବ୍ ଉଚ୍ଚକିତ ଧ୍ୱନିରେ । ଢୋଲ ତାଳେ ତାଳେ ବାଜୁଥାଏ । ଏବଂ ବନା ବେହେରା ତାଙ୍କ ରାଉତାଣୀଙ୍କି ଧରି ନାଚି ଯାଉଥାନ୍ତି । ପବନ ସେମିତି ବହୁଥାଏ ମଉଆଲି ହୋଇ । ଗଛଲତା-ମାନେ ସେଇ ତାଳରେ ହଲୁଥାନ୍ତି, ନାଚୁଥାନ୍ତି । ସେଇ ନୃତ୍ୟ, ଗୀତ, ଢୋଲ ଓ ମହୁରୀ ନାଦରେ ଗାଁର ଖ୍ୟାତପ୍ରଦ କୌଣ ନସ୍ତବ୍ଧତା ଧ୍ୱନିମୟ ହୋଇ ଉଠେ ଏବଂ ଆମ ଗାଁର ସାହାଡ଼ାଗଛ, ତେନ୍ତୁଳିଗଛ, ପୋଲଙ୍ଗ-ବଣ ଓ ଉଦୁମ୍ବର ଗଛମାନଙ୍କରେ ଯେଉଁ ସବୁ ଡାହାଣୀ, ଖପିସ, ପିଶାଚୁଣି, ଆଉ ବ୍ରହ୍ମଦୈତ୍ୟ ପ୍ରଭୃତି ଭୂତପ୍ରେତମାନେ ଥାନ୍ତି, ସେମାନେ ସେଇ ନାଦ ସମ୍ଭାଳି ନ ପାରି ଘଡକ ଲାଗି କୁଆଡ଼େ ବୋଲି କୁଆଡ଼େ ଜଳବଳ ହୋଇ ପଳେଇଯାନ୍ତି ।

ସେହିପରି ଆମ ଗାଁରେ ପାଟୁଆନାଟର ଓସ୍ତାଦ ଶୋବନ ନାଭଇ । ସେ ତ ଅନୁସ୍ୱାର ଚନ୍ଦ୍ରବିନ୍ଦୁ ମନଇଚ୍ଛା ମିଶାଇ ଆନୁନାସିକ କଣ୍ଠରେ ସଂସ୍କୃତ ଶ୍ଳୋକମାନ ମଧ୍ୟ ପାଲାଗାୟକଙ୍କ ପରି ହାଙ୍କି ଯାଉଥିଲେ ଗୋଟାକୁ ଗୋଟା । ତାଙ୍କର କଣ୍ଠରୁ ପ୍ରଥମେ ଅଶୁଦ୍ଧ ଢଙ୍ଗରେ ସରସ୍ୱତୀ ବନ୍ଦନା ଶୁଣିଥିଲି ଓ ତାହା ମୋ ମନକୁ ଖୁବ୍ ପ୍ରଭାବିତ କରିଥିଲା—

କ୍ୱଜ୍ୱଲଂ ପୋରିତଂ କ୍ଳେତନଂ ଧାରେଁ ଏଁ ଏଁ ଏଁ
ଥନଯୁଗଂ ସୌହିତଂ ମୁକୁତାଂ ହାରେଁ ଏଁ ଏଁ ଏଁ

ଖାଣାଂ ପୋସ୍ତକଂ ରଂଜତଂ ହାସ୍ତେ ଏଁ ଏଁ ଏଁ
ସୋରସତୀଂ ଭଗବତୀଂ ଦେବୀଂ ନମସ୍ତେଁ ଏଁ ଏଁ ଏଁ ।

ଶୋବନୀ ହେଉଛି ଖୁବ୍ ପଣ୍ଡିତ ଲୋକ ଥିଲେ । ସେ ଅହଂକାର ମଧ୍ୟ ତାଙ୍କର ଥିଲା ଖୁବ୍ । ହରିଜନ କୁଳରେ ଜନ୍ମ ହୋଇଥିଲେ ବି, ସେ ସବୁଦିନେ ଆମ ଭାଗବତ ଘରେ ଆସି ଅନ୍ୟମାନଙ୍କ ସହ ଭାଗବତ ଶୁଣୁଥିଲେ ଏବଂ ବ୍ରାହ୍ମଣମାନଙ୍କ ସହିତ ଅଧିକାଂଶ ସମୟ ବସଉଠ ହେବାକୁ ସୁଖ ପାଉଥିଲେ । ସେ ମଧ୍ୟ ଓଡ଼ିଆରେ ଲିଖିତ ସ୍ତୁତିଗୁଡ଼ିକୁ ମନଇଚ୍ଛା ଅନୁସାର ବିସର୍ଗମୟ କରି ସଂସ୍କୃତ ଭଳି ଗାଉଥିଲେ—

ଜୟଂତୁ ସାରଳାଂ ମାଂଗୋ ଝଙ୍କଡ଼ବାସିନୀଂ
ଖାଣା ବଜାୟନୀ ଦେବୀଂ ଶ୍ୱେତପଦ୍ମାସିନୀଂ ।

ଶୋବନୀ ହେଉଛି ପାଟୁଆ ଗାୟକ ଥିଲେ ବି ନିଜକୁ ଜଣେ ପାଲା ଗାୟକ ବୋଲି ମନେ କରୁଥିଲେ ।

ସେମିତି ମଧ୍ୟ ଆମ ଗାଁର ପିଣ୍ଡବ୍ରହ୍ମାଣ୍ଡତତ୍ତ୍ୱ ଓ ଆଗତ ଭବିଷ୍ୟ ମାଳିକା ବିଶାରଦ ଷାଠିଏ ବର୍ଷ ବୟସ୍କ ମଧୁ ନାୟକ ବେକରେ ସାତସରି ତୁଳସୀମାଳି, କପାଳରେ ରାମାନନ୍ଦୀ ତିଳକ, ମୁଣ୍ଡ ପଛରେ ଗୋଟିଏ ଚୁଟି—କାନ୍ଧରେ ବଟୁଆ—ତା ଭିତରେ ପାନ ସରଞ୍ଜାମ ସହିତ ଗଞ୍ଜେଇ ଓ ଚିଲମ । ପ୍ରାଚୀକୂଳ ଅମଣିଆ ମଠରେ ଥରେ ଥରେ ରାତିରେ ଭକ୍ତ-ମାନେ ନାମ ଭଜନ କରନ୍ତି । ମଧୁ ନାୟକ ବୁଢ଼ା ସେ ଗୋଷ୍ଠୀରେ ଭଜନ ବୋଲନ୍ତି ଶରୀର ଭେଦ ତତ୍ତ୍ୱ ସମ୍ପର୍କୀୟ । ଗଞ୍ଜେଇ ନିଶାରେ ଢୁଳୁଢୁଳୁ କୁମ୍ଭାଟୁଆ ଆଖି ଦୁଇଟି ଅର୍ଦ୍ଧନିମୀଳିତ କରି ଉପରକୁ ହାତ ଟେକି ଭାବ ବିଭୋର ହୋଇ ପାକୁଆ ପାଟିରେ ଆନୁନାସିକ ସ୍ୱରରେ ଅନୁସ୍ୱାରମୟ କରି ଭଜନ ଗାଉଥିବାର ମୁଁ ଶୁଣିଛି—

ଆରେଂ ମୋହଂ ମନଂ
ମତେଂ ମୋହିଂଲୁଁ ଆଁ ଆଁ ଆଁ ଙ୍ଗରେଁ ।
ଆଂରେ, ବିଷୟାଂ ବିଷରେଂ ମୋତେଂ ଦହିଲୁଂଙ୍ଗ୍ରେ ।

ଆରେ‌ଂ ମୋମନଂ ମତେଂ ଭଗାସ୍ୱଂଙ୍ଗ୍
ନଭଜଲ୍ଲଂ ସୁମଂଦ୍ଧହେଂଙ୍ଗ୍
ଚତୁର୍ଥଂ ବପୁସଂ ଆସି, ହୋଲଲ୍ଲଂଙ୍ଗ୍‌ରେ ।

ସେହ୍ୱପର ମଧ୍ଯ ସୁଲଳିତ ସ୍ୱରରେ ପବନ କଣ୍ଠରେ "କାର୍ତ୍ତିକ ମାହାତ୍ମ୍ୟ" ଗାଉଥିଲେ କାଳନ୍ଦୀ ମିଶ୍ର । କାର୍ତ୍ତିକ ମାସ ସକାଳେ ପବିତ୍ର ପ୍ରାଚୀ ନଦୀରେ ସ୍ନାନସାରି ହବିଷାଳି ବିଧବା ବ୍ରାହ୍ମଣୀମାନେ ନଦୀକୂଳରେ ଏକ ଅଁଳା ଗଛମୂଳେ ତୁଳସୀ ବଣିଆରେ ଧୀର ସ୍ଥିର ଏକାଗ୍ର ମନରେ ମାଳା ତିଳକ ପିନ୍ଧି ବସୁଥିଲେ । ଏବଂ କାଳନ୍ଦୀ ମିଶ୍ରେ ଗାଉଥିଲେ ବିଷ୍ଣୁଙ୍କ ଦ୍ୱାରା ଛଳିତା ହୋଇ ଓ ନଷ୍ଟ ସତୀତ୍ୱ ହୋଇ ଅସୁର ଜଳନ୍ଧରର ପରମ ପତିବ୍ରତା ରମଣୀ କୋପାନ୍ୱିତା ବୃନ୍ଦାବତୀର ତୁଣ୍ଡରେ ବିଷ୍ଣୁଙ୍କୁ ଅଭିଶାପ—

ଏମନ୍ତ ରୂପେ ବ୍ରହ୍ମଚାରୀ—ବୃନ୍ଦାଙ୍କୁ ଚୁମ୍ବି ଅଳ୍ପ ହସି
ତା ଦେଖି ବୃନ୍ଦା କଲା କୋପ—ବୋଲଇ ଧିକ ତୋର ରୂପ
ଧିକ ତୋହର ପ୍ରଭୁପଣ—ତୁ ଯେ ସଂସାରେ ବଡ଼ ଜନ ।
···ମୁଁ ସ୍ତ୍ରିଣ୍ଣ ଅବଳା ଯୁଗତେ—ଏଡ଼େ କପଟ କମ୍ପା ମୋତେ
କପଟେ ହରିଲୁ ମୋ ତପ—ଏବେ ତୁ ଘେନ ମୋର ଶାପ
ତୋର ଭାରିଯା ନାମ ଶିଶ୍ୱ—ତାକୁ ଅସୁର ନେବ ହରି
ମୋତେ ଭଣ୍ଡିଲୁ ଯେଉଁ ବାଗେ—ସେହ୍ୱ ପ୍ରକାରେ ତୋର ଆଗେ

ମୋର ସାନ ବୁଢ଼ୀମା ସାଙ୍ଗେ ବହୁବାର ସକାଳେ ପ୍ରାଚୀକୁ ଗାଧୋଇ ଯାଇ ସେଇଠି ବସି ଶୁଣେ କାଳନ୍ଦୀ ମିଶ୍ରଙ୍କ ସୁଲଳିତ କଣ୍ଠରୁ ବୃନ୍ଦାବତୀଙ୍କର ଏଇ ଦୁରବସ୍ଥା ଏବଂ ଅଭିସମ୍ପାତ । କାର୍ତ୍ତିକ ମାସର ପ୍ରାଚୀକୂଳରେ ସେଇ ସବୁ ଶୀତୁଆଣୀ କୁହୁଡ଼ିଆ ଓଦାଳିଆ ସକାଳମାନ ଗୁଆଘିଅ ଗୁଡ଼ା ଜଳନ୍ତା ବଳିତାର ସୁଗନ୍ଧରେ ସୁବାସିତ—ତୁଳସୀ ମରୁଆ କନଅର, ଚମ୍ପାଫୁଲର ସୌରଭରେ ସୁରଭିତ—ଶୁଚିବନ୍ତ ବ୍ରାହ୍ମଣ କାଳନ୍ଦୀ ମିଶ୍ରଙ୍କ କଣ୍ଠସ୍ୱରରେ ବିଗଳିତହୃଦୟା ସେହ୍ୱ ସବୁ ଶୁଭ୍ରବସନା ମାଳତିଳକ ଧାରଣୀ ଢଳଢଳମୁଖଶ୍ରୀ ଧର୍ମପ୍ରାଣା କୁଚ୍ଛ୍ରବ୍ରତ-ପାଳନୀ ସ୍ନେହମୟୀ ବିଧବା ବ୍ରାହ୍ମଣୀଗଣ—ମୋର ମନକୁ ଅଦ୍ଭୁତ ଏକ

ପୌରାଣିକ ପରମ୍ପରାର ପରିବେଶ ଭିତରେ ଆପ୍ଲୁତ କରି ରଖିଥିଲେ । ମୋ ଭିତରେ ପୁରାଣର ସତ୍ୟବୋଧକୁ ଜାଗ୍ରତ କରିଦେଇଥିଲେ ।

ଆଜି ମଧ୍ୟ ସେଇ କାର୍ତ୍ତିକମାସର ଶେଷ ପାଞ୍ଚଦିନ ପବିତ୍ର ପଞ୍ଚକରେ ଆମ ଗାଁରେ ଯୋଡ଼ି ରାସ ଉତ୍ସବ ହୁଏ, ସେଥିରେ ଆମର ପୁରୋହିତ ଆପଣେ ନରହରି ଷଡ଼ଙ୍ଗୀ ଯେତେବେଳେ ଶରଦ୍‌ରାସ ଗାଉଥିଲେ, ଏବଂ ଗାଁ ବାଳିଙ୍କ ସାଙ୍ଗେ ମିଶି ମୁଁ ମଧ୍ୟ ପାଳି ଧରୁଥିଲି ସେଇସବୁ ସରସ ପଦମାନଙ୍କର ଅର୍ଥ ବୁଝେଁ କି ନ ବୁଝେଁ—ସୋଲ ଫୁଲର ଝାଡ଼ ତଳେ ଗୋଟିଏ କାଠଚକ ଉପରେ ଆମ ଗାଁ କାରିଗରଙ୍କ ଦ୍ଵାରା ମାଟିରେ ତିଆରି ଷୋଳଟି କୃଷ୍ଣ ଓ ଷୋଳଟି ଗୋପୀ ପ୍ରତିମାକୁ ଦେଖି ଏବଂ ସେହି ପଦଗୁଡ଼ିକ ଶୁଣି ମନ ମୋର କୋଉ ସ୍ଵପ୍ନପୁରକୁ ଉଡ଼ି ଯାଉଥିଲା । ନରହରି ଷଡ଼ଙ୍ଗୀ ଯେତେବେଳେ କୃଷ୍ଣ ପରିତ୍ୟକ୍ତା ଗୋପୀ-ମାନଙ୍କ ଦୁରବସ୍ଥା ଗାନ କରନ୍ତି—

ଗୋପୀଏ ବସି ବାଲିକୁଦେ—କାନ୍ଦନ୍ତି ଶୋକ ଗଦଗଦେ
...ପତି ତନୟ ବନ୍ଧୁ ଭାଇ—ଆମ୍ଭେ ଏଡ଼ିଲୁ ତୋହ ପାଇଁ
ସୁସ୍ଵରେ ଗାଇ ବେଣୁଗୀତ—ଆମ୍ଭେ ହୋଇଲୁ ମୂରୁଚ୍ଛିତ ।
ରାତ୍ରେ ଆଣିଲ ଘୋରବନେ—ଆମ୍ଭଙ୍କୁ ତେଜିଲୁ କେସନେ
ଏଡ଼େ ନିର୍ଦ୍ଦୟ ତୋର ଚିତ୍ତ—ବିଶ୍ଵାସ ନାଶିଲୁ ଆମ୍ଭନ୍ତ ।

ସେତେବେଳେ ଆଖିରୁ ମୋର ଲୁହ ଆଁକୁ ଲୁହ ଆଁ ଲୁହ ବହିଯାଏ । ସତକୁସତ ମୋ କଣ୍ଠ ମଧ୍ୟ କି ଏକ ଅବୋଧ ଶୋକୋଚ୍ଛ୍ଵାସରେ ଗଦଗଦ ହୋଇଯାଏ । ମୁଁ କ'ଣ ସେତେବେଳେ ଗୋପୀମାନଙ୍କର ବିରହ ଅବସ୍ଥାକୁ ହୃଦୟଙ୍ଗମ କରି ପାରୁଥିଲି ? ତା ନ ହେଲେ କାହିଁକି କାନ୍ଦି ମାଡ଼ୁଥିଲି ? ବୁଝି ନ ଥିଲି ବୋଲି କହି ହେଉନାହିଁ । ମୋ ଭିତରେ କୋଉ ଗୋଟାଏ ଅଜଣା ସ୍ତରରେ ସତ୍ତାର କୋଉ ଅଂଶ ହୁଏତ ମୋର ଅଜାଣତରେ କିଛି ଗୋଟାଏ ବୁଝି ନେଉଥିଲା । ସେତେବେଳେ ମୋର ଜାଗ୍ରତ କିଶୋର ମନଟି ନରହରି ଷଡ଼ଙ୍ଗୀଙ୍କ କଣ୍ଠସ୍ଵରରେ ଅନୁପ୍ରାଣିତ

ହୋଇ ଉପସ୍ଥିତ ସ୍ଥାନ କାଳ ଭୁଲି ଅନ୍ୟ ଏକ ଭାବ ଜଗତ ବା ରସ-ଲୋକକୁ ଉଠି ଯାଉଥିଲି ।

ଏହାଛଡ଼ା ମଧ୍ୟ ଫଗୁଣ ମାସର ଅଧ ରାତିରେ ବେଣୁ ସିଙ୍ଗା କାହାଳୀ ଇତ୍ୟାଦି ବଜାଇ ଅଣ୍ଟାରେ ଘାଗୁଡ଼ି ବାନ୍ଧି ଦଳବଦ୍ଧ ଭାବେ ହାତ ଧରାଧରି ହୋଇ ମୋଟା, ଘାଗଡ଼ା, ସରୁ କଣ୍ଠର କୋରସ୍ ଭିତରେ ଆମ ଗାଁର ଗୋପାଳମାନେ ପେଲି ଆସୁଥିଲେ ଗାଁ ଦାଣ୍ଡରେ ଗୀତ ଗାଇ ଗାଇ ଦାଣ୍ଡିଆ ବୃତ୍ତରେ—

> କଳା କଳେବର କହ୍ନାଇ ସଙ୍ଗେ ରୋହିଣୀ ସୁତ
> କରନ୍ତି ମଥୁରା ବ୍ରଜପୁରେ ଦାଣ୍ଡେ ଦେଖ ସଙ୍ଗାତ
> ...ଗହନ କାନନ ବନରେ ଘୋର ବରଷା କାଳ
> ଗିରି ବାମେ ଟେକି ଧଇଲେ ନନ୍ଦ ଯଶୋଦା ବାଳ ।
> ଘରେ ନ ରହନ୍ତି ଗଉଡ଼େ ବଡ଼ ଅଧମ ଜାତି
> ଧେନୁ ବାଳବତ୍ସା ସଙ୍ଗତେ ବନେ ଭ୍ରମନ୍ତି ନିତି ।

...ଏମିତି ଏମିତି ସେତେବେଳେ କେତେ ଗୀତ ମୁଁ କେତେ କଣ୍ଠରୁ ଶୁଣିଛି ମୋ ଗାଁରେ । ମୋର କାନ ସଚେତ ସବୁ ଶବ୍ଦ, ସବୁ ଧ୍ୱନି, ସବୁ ସ୍ୱନ, ଆଉ ସବୁ ସ୍ୱରକୁ ଦିନରାତି ଶୁଣିବାକୁ ପ୍ରସ୍ତୁତ ହୋଇ ରହୁଥାଏ ! କେତେ ଗୀତ, କେତେ ଢଙ୍ଗରେ, କେତେ କଏ ବୋଲିବାର ଶୁଣିଛି ମୁଁ ଅତ୍ୟନ୍ତ ଆଗ୍ରହରେ ଯୋଗୀଙ୍କ ଠାରୁ, କେଳା କେଳୁଣୀଙ୍କ ଠାରୁ, ସଙ୍କୀର୍ତ୍ତନିଆଙ୍କ ଠାରୁ, ଯାତ୍ରାବାଲାଙ୍କ ଠାରୁ—ଏମିତି ଏମିତି କେତେ ଲୋକଙ୍କ ଠାରୁ । ଶୁଣି ମୁଗ୍ଧ ହୋଇଛି । ପୁଣି ଶୁଣିବାକୁ କାନ ଡେରିଛି ।

କିନ୍ତୁ ଅଭିରାମ ପରିଡ଼ାଙ୍କ ପରି କେହି ମୋ ଭିତରେ ସଙ୍ଗୀତର ଯାଦୁକାଠି ଛୁଆଁଇ ଦେଇ ନ ଥିଲେ । କେହି ମଧ୍ୟ ମତେ ସଙ୍ଗୀତର ନିଶା ଧରାଇ ଦେଇ ନ ଥିଲେ । କେହି ମଧ୍ୟ ମତେ ସୁର ଲୋକରେ ନେଇ ପହଞ୍ଚାଇ ଦେଇ ନ ଥିଲେ । ସେଦିନ ରାତିରେ ବୈକୁଣ୍ଠ ମଉସାଙ୍କ ଘରେ ସେ ମୋ ଭିତରେ ଗୋଟାଏ ନୂଆ ଅନୁଭୂତି ସଞ୍ଚାରିଦେଲେ । ମୋ ହୃଦ-

ତଡ଼ାଗର ଅସଂଖ୍ୟ ସ୍ଫୁଟୋନ୍ମୁଖ ପଦ୍ମକଳିକାର କୋମଳ ପାଖୁଡ଼ାଗୁଡ଼ିକୁ ଅପୂର୍ବ ଭାବ ପୁଲକରେ ଫୁଟାଇ ଦେଲେ । ସେହି ମୁହୂର୍ତ୍ତରୁ ଜାଣ, ମୁଁ ମୋ ହୃଦ-ସରସୀର ପଦ୍ମବନର ସନ୍ଧାନ ପାଇଲି ।

ଅଭିରାମ ପରିଡ଼ାଙ୍କ ବୃତ୍ତାନ୍ତ କହିବାକୁ ବସିଛି । କହିବି ତ ନିଶ୍ଚୟ । କିନ୍ତୁ ଆଗ ଶୁଣନ୍ତୁ, ପ୍ରଥମ କରି ମୁଁ ଯାହାଙ୍କ ଘରେ ଅଭିରାମଙ୍କୁ ଦେଖିଲି ଓ ତାଙ୍କ କଣ୍ଠସ୍ୱର ଶୁଣିଲି, ସେହି ବୈକୁଣ୍ଠ ମିଶ୍ର ବା ବୈକୁଣ୍ଠ ମଉସାଙ୍କ ଚରିତ । ବୈକୁଣ୍ଠ ମଉସାଙ୍କୁ ସେତେବେଳେ ଚେପନ ଚଉବନ ବର୍ଷ ବୟସ । ଖୁବ୍ ଗେଡ଼ା ମଣିଷ । ଦେହର ବର୍ଣ୍ଣ ଚମ୍ପାଭଳି । ଗୋଟେ ଓ ପ୍ରାୟବାଳହୀନ ମୁଣ୍ଡଟିଏ ଓ ତା ଭିତରେ ବିଶେଷକିଛି ବସ୍ତୁ ନ ଥିବା ସାମାନ୍ୟ ମୁହଁଟିଏ । ମୁଣ୍ଡ ପଛପଟେ ପାଚିଲା ଦରପାଚିଲା ଚୁଟିଟିଏ । ହାତରେ କଡ଼ା—କାନରେ ଫାସିଆ । ଖୁବ୍ ଗୋଟେ, ସ୍ତିମିତ ଆଖି ଦୁଇଟିରେ ବିଷର୍ଣ୍ଣ ଓ ସଙ୍କୁଚିତ ଚାହାଣୀ । ଆମ ଗାଁରେ ସେ ଥିଲେ ଅପେକ୍ଷାକୃତ ଧନୀ । ସେମାନେ ଦୁଇ ଭାଇ—ସାନ ଭାଇଟି ହୁଣ୍ଡାଳିଆ, ନିବୁଦ୍ଧିଆ ଆଉ ମୂର୍ଖ । କିନ୍ତୁ ପରମ ଭ୍ରାତୃଭକ୍ତ, ଅତ୍ୟନ୍ତ ଆଜ୍ଞାଧୀନ । କିନ୍ତୁ ଚେହେରାଟି ଅନାକର୍ଷଣୀୟ ହେଲେ ବି ବୈକୁଣ୍ଠ ମିଶ୍ରେ ମୂର୍ଖ ଓ ନିବୁଦ୍ଧିଆ ନ ଥିଲେ । ତାଙ୍କ ଭିତରେ ଧର୍ମଭାବ ଥିଲା । ଏବଂ ଖୁବ୍ ରସିକତା ମଧ୍ୟ ଥିଲା । ସେ ଥିଲେ ଭାରି ସ୍ନେହୀ ଆଉ ଅତିମାତ୍ରାରେ ବନ୍ଧୁବତ୍ସଳ । କୀର୍ତ୍ତନ, ଭଜନ, ସଙ୍ଗୀତ ଓ ଘରେ ବା ମନ୍ଦିରରେ ବନ୍ଧୁମାନଙ୍କ ସହ ସଙ୍ଗୀତ ଓ ସଙ୍ଗତରେ ତାଙ୍କର ଅଧିକାଂଶ ଦିନ କଟୁଥିଲା । ଗାଁର ଯାମଯାତ୍ରାରେ ମଧ୍ୟ ବୈକୁଣ୍ଠ ମଉସା ଅଗ୍ରଗଣ୍ୟ ଅଂଶ ଗ୍ରହଣ କରୁଥିଲେ । ପିଲାମାନଙ୍କ ପ୍ରତି ତାଙ୍କର ଗଭୀର ଅନୁରାଗ ଥିଲା । ଆମ ଗ୍ରାମରେ ଜନ୍ମାଷ୍ଟମୀ ପରଦିନ ନନ୍ଦଉତ୍ସବ ଖୁବ ଜାକଜମକରେ ପାଳିତ ହେଉଥିଲା । ଆମ ଗାଁର ହୁଣ୍ଡାରାମ ସରଳ ହୃଦୟ, ସବୁଠାରୁ ଡେଙ୍ଗା କମଳ ମହାପାତ୍ର ନନ୍ଦ ସାଜନ୍ତି । ଖୋଟରେ ବାଳ ଆଉ ଦାଢ଼ୀ ତିଆରି କରି, ହାତରେ ଗୋଟିଏ କେନ୍ଦୁବାଡ଼ି ଧରି କମଳ ମହାପାତ୍ର ଯେମିତି ଢଙ୍ଗରେ ନୃତ୍ୟକଲା ଭଳି ବୁଲନ୍ତି, ତାହା ବଡ଼ ଉପଭୋଗ୍ୟ ହୁଏ । ତାଙ୍କ ସହିତ ଯଶୋଦା ସାଜନ୍ତି ବୈକୁଣ୍ଠ ମଉସା । ଶାଢ଼ୀ ପିନ୍ଧି, ଖଡ଼ୁ ପାହୁଲି ଲଗାଇ, ନାକରେ

ନୋଥ ଫୁଲଗୁଣା ଲଗାଇ ସେ ଦଶନ୍ତି ବଡ଼ ବିଚିତ୍ର ଆଉ ଅଦ୍‌ଭୁତ ଭାବେ ଆକର୍ଷଣୀୟ । ମୁଁ କୃଷ୍ଣ ସାଜେ ଓ ମୋ ସାଙ୍ଗ ମାଗୁଣିଧର ସାଜେ ବଳରାମ । ମୋ ମୁହଁରେ ନେଳୀ ବୋଳା ହୋଇଥାଏ । ମୁଁ ହଳଦିଆ ପାଟ ଲୁଗା ପାଇକଚ୍ଛା ମାରି ପିନ୍ଧିଥାଏ । ମୁଣ୍ଡରେ ମୁକୁଟ ଆଉ ମୟୂର ଚନ୍ଦ୍ରିକା ଲଗାଇଥାଏ । ଫୁଲ ଓ ପତ୍ରର ମାଳ ମୋ ଗଳାରେ ଲମ୍ବିଥାଏ । ମୋ ପଛପଟେ ଗୋଟିଏ ଉତ୍ତରୀ ଝୁଲୁଥାଏ । ମୁଁ ହାତରେ ବଂଶୀଟିଏ ଧରି ଚାଲିଥାଏ ବଳରାମ ରୂପୀ ମାଗୁଣିଧର ସାଙ୍ଗେ । କାହା ସାଙ୍ଗେ କଥାବାର୍ତ୍ତା କରୁ ନ ଥାଏ—ଯଦିଓ ମୋର ଅନ୍ୟ ସାଙ୍ଗମାନେ ମୋ ସାଙ୍ଗରେ ମିଶି ମିଶି ଚାଲୁଥାନ୍ତି ଓ ମୋ ସାଙ୍ଗେ କଥାବାର୍ତ୍ତା ହେବାକୁ ବହୁ ଚେଷ୍ଟା ଚେରେଷ୍ଟା ଚଳାଇଥାନ୍ତି । ମେଘୁଆ ପାଗ । ବର୍ଷା ନ ଥାଏ । ଗାଁ ଦାଣ୍ଡରେ ଝାଞ୍ଜ ମୃଦଙ୍ଗ ବଜାଇ ସଂକୀର୍ତ୍ତନଦଳ ଆମକୁ ଘେରି ଚାଲିଥାନ୍ତି— ବାଉପାଇ ପରିକ୍ରମା କରିବେ । ଗୋଟିଏ ପେଟ୍ରୋମାକ୍ସ ଆଲୁଅ ଆଗରେ ଓ ଆଉ ଗୋଟିଏ ପଛରେ ଚାଲିଥାଏ । ତଥାପି ଆମ ଦୁଇପଟେ ଦୁଇଜଣ ମଶାଲ ଧରି ଚାଲିଥାନ୍ତି । ହରିବୋଲରେ ଦାଣ୍ଡ କମ୍ପୁଥାଏ । ଘରମାନଙ୍କରୁ ସ୍ତ୍ରୀ ଲୋକମାନେ ହୁଳହୁଳି ଦେଇ ଆମ ଉପରେ ଫୁଲ, ଅରୁଆଚାଉଳ, ଲିଆ ଓ କଉଡ଼ିମାନ ପକାଉଥାନ୍ତି । ମଝେ ମଝେ କୀର୍ତ୍ତନିଆମାନେ ଠିଆ ହୋଇଯାଇ ବାଜା ବନ୍ଦକରି କୀର୍ତ୍ତନ ଗାଉଥାନ୍ତି—

ଆହା ମୋ ନନ୍ଦ, କୋଳେ ଗୋବିନ୍ଦ
ବାଜେ ଶଙ୍ଖ ଭେରୀ ତୁରୀ, ପରମାଆ ନନ୍ଦ,
ମୋ ନନ୍ଦ,
କୋଳେ ଗୋବିନ୍ଦ !

ତା'ପରେ କୀର୍ତ୍ତନମଣ୍ଡଳ ପୁଣି କିଛି ବାଟ ଆଗେଇଯାନ୍ତି । ଏମିତି ଗୋଟିଏ ବର୍ଷ ହଠାତ୍ ଯଶୋଦା ରୂପୀ ବୈକୁଣ୍ଠ ମଉସା ଭାବବିଭୋର ହୋଇ ମୋତେ ଟେକି ଉଠାଇ ନେଇ ତାଙ୍କ କାଖରେ ବସାଇ ଦେଲେ ଓ କାନ୍ଦ କାନ୍ଦ ହୋଇ ତାଙ୍କର ସରୁକଣ୍ଠରେ ଗାଇଉଠିଲେ—

···ଯାଦ ବଥାଇବଣି,
ଆସ ମୋ କୋଳକୁ ମାଳମଣି,
ଯାଦ ବଥାଇବଣି ।
ଭୁଞ୍ଜାଇବ ତୋତେ ସରଲବଣୀ,
ବଥାଇବଣି ।
ବୃଦ୍ଧକାଳେ ତୁ ମୋ ମଥାରମଣି
ବଥାଇବଣି ।
ବସ ମୋ କୋଳରେ ମାଳମଣି ।

ତାଙ୍କର ଆଖିରୁ ଧାର ଧାର ହୋଇ ଲୁହ ବହି ଯାଉଥାଏ ଏବଂ ତାଙ୍କ ଗୀତକୁ ଅନୁସରଣ କରି ଅନ୍ୟ କୀର୍ତ୍ତନୀୟାମାନେ ଆମ ଦୁହିଁଙ୍କୁ ଘେରି ଭାବାବେଗରେ ଘୋଷା ଧରିଥାନ୍ତି । ନାଚୁଥାନ୍ତି । ସେ ଦିନର ସେଇ ମେଘଢୋଉ ଅନ୍ଧାରରାତି, ପେଟ୍ରୋମାକ୍ସ ଓ ମଶାଲ ଆଲୁଅ । ଜଳନ୍ତା ମଶାଲରୁ ପ୍ରସରି ଯାଉଥିବା ପୋଡ଼ା ପୋଲଙ୍ଗତେଲର ଗନ୍ଧ—ଗଛବୃଛଭରା ଗାଁ ଦାଣ୍ଡ । ଦାଣ୍ଡରେ ଗାଁଯାକର ନାରୀ, ପୁରୁଷ, ବୃଦ୍ଧ, ବୃଦ୍ଧା, ପିଲାଙ୍କ କଣ୍ଠରୁ ଉଚ୍ଚକିତ ହରିବୋଲ ଆଉ, ହୁଳହୁଳିର ତୁହାକୁ-ତୁହା ଝଙ୍କାର—ଝାଞ୍ଜ ମୃଦଙ୍ଗର ଝଙ୍କାର—ସିଙ୍ଗା ଓ କାହାଳୀର ଆକାଶଅଗ୍ର ସ୍ୱନ—ମୋ ମନ ଏକ ଅଲୌକିକ ଭାବାବେଶରେ ଆବିଷ୍ଟ ହୋଇ ଯାଉଥାଏ । ସେତେବେଳେ ନିଜକୁ ସ୍ତ୍ରୀଗୋଟିଆ କୃଷ୍ଣଟିଏ ବୋଲି ଖୁବ୍ ସହଜରେ ଭାବିନେଇ କାହିଁକି କେଜାଣି ମୋ ଆଖି ମଧ୍ୟ ଲୁହରେ ଜକେଇ ଆସୁଥାଏ । ମୋ ଗୃହପଟେ ମୋର ସାଙ୍ଗମାନେ ଠିଆ ହୋଇ-ଥାନ୍ତି ଓ ମୋତେ ଖୁବ୍ ସମୀହ କରି ଚାହିଁ ରହିଥାନ୍ତି । ମୁଁ ମଧ୍ୟ ଦିନ-ବେଳାର ସେହି ଅନ୍ତରଙ୍ଗ ସାଙ୍ଗମାନଙ୍କୁ ସେହି ବିଶିଷ୍ଟ ରାତିଟିର ଏଇ ବିଶେଷ ପରିବେଶରେ ଦେଖି ମଧ୍ୟ ଦୋ ଦୋ ଚିନ୍ତା ହେଉଥାଏ । ସେଥିରକ ସେ ରାତି ଥିଲା ପ୍ରକୃତରେ ମୋ ଜୀବନରେ ଏକ ଅଦ୍‌ଭୁତ ରାତି । ସେଇ ରାତିରେ ହିଁ ବୈକୁଣ୍ଠ ମଉସାଙ୍କ ସଙ୍ଗେ ମୋର ହୃଦୟ ମଧ୍ୟ ଖୁବ୍ ଗଭୀରଭାବେ ଯୋଡ଼ିହୋଇ ଯାଇଥିଲା ।

ଆମ ଗାଁରେ ସବୁ ପିଲାଙ୍କଠାରୁ ସେ ମତେ ଖୁବ ଭଲ ପାଉଥିଲେ । ତାଙ୍କ ଘରେ କେବେ ଖିଆପିଆ ହେଲେ ସେ ମୋତେ

ସ୍ୱତନ୍ତ୍ର ଭାବେ ତାଙ୍କ ଖୁଆଉଥିଲେ । ମନେ ମଧ୍ୟ ସେ ସେହିଦିନୁ ମନେ ହେଉଥିଲେ ଅନ୍ୟପ୍ରକାରେ—ଆଉ ଗୋଟିଏ ଜଗତର ଲୋକ ହେବେ କି ! ତାଙ୍କର ତ ପିଲାପିଲି ନ ଥିଲେ । କୋଉକାଳୁ ସ୍ତ୍ରୀ ମରି ଯାଇଥିଲେ । କେହି କେହି କହନ୍ତି ଯେ ତାଙ୍କ ସ୍ତ୍ରୀ ଗୁଡ଼ ଆଉ କନିଅର କଠି ମଞ୍ଜି ବାଟି ଖାଇ ଆତ୍ମହତ୍ୟା କରିଥିଲା । କାରଣ ବୈକୁଣ୍ଠ ମଉସା କୁଆଡ଼େ ଥିଲେ ଅଣପୁରୁଷ । ଆଜି କିନ୍ତୁ ତାଙ୍କ କଥା ମନେ ପଡ଼ିଲେ ମୁଁ ଭାବେ, ବୈକୁଣ୍ଠ ମଉସା ଯଦି ସତକୁ ସତ ଅଣପୁରୁଷ ଥିଲେ, ତାହେଲେ ତଦ୍ୱାରା ତାଙ୍କ ବ୍ୟକ୍ତିତ୍ୱର କ'ଣ ଏମିତି ହାନି ହୋଇ ଯାଇଥିଲା ? ତାଙ୍କ ବ୍ୟତୀତ ଆମ ଗାଁରେ ଆଉ ଯୋଉ ପୁରୁଷ ଷଣ୍ଢମାନେ ଥିଲେ, ସେମାନଙ୍କ ଭିତରୁ ଅଧିକାଂଶ ଥିଲେ ପାଷାଣ୍ଡ ଓ ବର୍ବର—ସ୍ଥୂଳ-ହୃଦୟ—ନିର୍ମମ । ବୈକୁଣ୍ଠ ମଉସା ଆଜି ପର୍ଯ୍ୟନ୍ତ ମୋ ହୃଦୟରେ ଏକ ସ୍ୱତନ୍ତ୍ର ସମ୍ମାନୀୟ ଆସନ ଅଧିକାର କରି ରହିଛନ୍ତି । ଆଜି ଭାବେ, ଏ ପୃଥିବୀର ଅଧିକାଂଶ ପୁରୁଷ ଯଦି ଅଣପୁରୁଷ ହୋଇଯାନ୍ତେ, ତାହେଲେ ଏ ପୃଥିବୀ ବୋଧେ ଆହୁରି ସ୍ନେହମୟ ଆଉ କୋମଳ ହୋଇ ଉଠନ୍ତା । ଏ ପୃଥିବୀରେ ଗୋଟିଏ ରାତି ନୁହେଁ—ଅଧିକାଂଶ ରାତି ପୂର୍ବଭଳି ଜନ୍ମାଷ୍ଟମୀ ଅଥବା ନନ୍ଦ ଉତ୍ସବରେ ରସୋତ୍ତୀର୍ଣ୍ଣ ହୋଇ ଉଠନ୍ତା । ପର ପିଲାକୁ କାଖେଇ କୋଳେଇ ସମସ୍ତଙ୍କ ଆଖିରୁ ବାତ୍ସଲ୍ୟ ମମତାର ଲୋତକ ଝରନ୍ତା ।

କିନ୍ତୁ ଆଶ୍ଚର୍ଯ୍ୟ ଏହି ଜୀବନ । ସେହି ରାତି ଘଟଣାର ବର୍ଷକ ଭିତରେ ଦିନେ ଦେଖାଗଲା ଯେ, ବୈକୁଣ୍ଠ ମଉସା ତାଙ୍କର ସେହି ପୁରୁଷତ୍ୱ ବିହୀନ ପଞ୍ଚଶୋର୍ଦ୍ଧ ବୟସରେ ଆଉଥରେ ଗୋଟିଏ ଚବିଶି ପଚିଶି ବର୍ଷର ସୁନ୍ଦରୀ ଯୁବତୀକୁ ବିବାହ କରି ଘରକୁ ଆଣିଛନ୍ତି । ଆମ ଗାଁ ବାଲାଏ ଏକଥା ନେଇ ବହୁତ ହାସ ପରିହାସ କଲେ । ମୁଁ ଅବଶ୍ୟ ସେତେବେଳେ ସବୁ କଥା ବୁଝି ନ ଥିଲି । ମାତ୍ର ପରେ ପରେ କଥାଟା ବୁଝିଗଲି । ବୈକୁଣ୍ଠ ମଉସା ନିଜେ ନିଜ ଆଡ଼ୁ ପୁନର୍ବିବାହ ଲାଗି କୌଣସି ଆଗ୍ରହ ଦେଖାଇ ନ ଥିଲେ । କିନ୍ତୁ ତାଙ୍କର ବନ୍ଧୁମାନେ ଗୋଟିଏ ଷଡ଼ଯନ୍ତ୍ର କରି ତାଙ୍କୁ ଏଇ ଫାଶ ଭିତରେ ପକାଇ ଦେଲେ । ତାଙ୍କର ବନ୍ଧୁମାନଙ୍କ ଭିତରେ ରତ୍ନାକର ପାଢ଼ୀ ଥିଲେ ତାଙ୍କର ଅତି

ନିକଟତମ । ସେ କଲିକତା ବଙ୍ଗାଳୀ ବାଡ଼ିରେ ବହୁବର୍ଷ ରୋଷେଇ କାମ କରି ପେଟ ପୋଷୁଥିଲେ । ଏବେ ଦୁଇବର୍ଷ ହେଲା ଗାଁକୁ ଫେରି ଆସିଛନ୍ତି । ସେ ଖୁବ୍ ଫେସନରେ ଲୁଗାପଟା ପିନ୍ଧୁଥିଲେ । ଡେଙ୍ଗା ଏବଂ ଖୁବ୍ ଗୋରା । ଆକର୍ଷଣୀୟ ଚେହେରା । କଅଁଳ ଦାନ୍ତିଆ କଥା । ମୁରୁକି ମୁରୁକି ହସ । ଆଖିରେ କିନ୍ତୁ ସବୁବେଳେ ପର ଝିଅ ବୋହୂଙ୍କ ସଙ୍ଗେ ମିଶିବା ଲାଗି ଝଲେଇଲା ଲୋଭିଲା ଚାହାଣୀ । ହାରମୋନିଅମ ବଜାଇ ସଙ୍ଗୀତ ଗାଇବାରେ ତାଙ୍କର କିଛି ନିପୁଣତା ଥିଲା । ବୈକୁଣ୍ଠ ମଉସା ତାଙ୍କୁ କଅଣ ପାଇଁ ଏତେ ଭଲ ପାଉଥିଲେ କେଜାଣି, ତାଙ୍କର କିନ୍ତୁ ଅଖଣ୍ଡ ପ୍ରଭାବ ଥିଲା ସ୍ୱାଙ୍କ ଉପରେ । ସେମିତି ଆମର ଗୁମାସ୍ତା ବିଶୁ ମହାନ୍ତି ମଧ୍ୟ ବୈକୁଣ୍ଠ ମଉସାଙ୍କର ଅତି ନିକଟତର ଓ ପ୍ରଭାବଶାଳୀ ବନ୍ଧୁ ଥିଲେ । ବିଶୁ ମହାନ୍ତି ଜଣେ ଅତି ଚତୁର ଧୂର୍ତ୍ତ ଆଉ କଟିତ୍କର୍ମା ବ୍ୟକ୍ତି । ଗାଁର ଜମି ଜମା ଓ ଗ୍ରାମ୍ୟ ରାଜନୀତିରେ ସେ ପୋକ ଭଳି ଜଡ଼ିତ ଥିଲେ । ଏବଂ ଗାଁର ସାଧାରଣ ଲୋକେ ତାଙ୍କୁ କିଛି ଭୟ ମିଶ୍ରିତ ଶ୍ରଦ୍ଧା ଦେଖାଉଥିଲେ । ବିଶୁ ମହାନ୍ତି ମଧ୍ୟ ତାଙ୍କର ସେହି ପରିଣତ ବୟସରେ ଖୁବ୍ ନାରୀସଙ୍ଗଲିପ୍ସୁ ଥିଲେ । ସେଥିପାଇଁ ତାଙ୍କର ବୟସ ବା ଜାତିରେ ବାରଣ ନ ଥିଲା । ଝିଅଟିଏ ନଅବରଷ ବୟସରେ ପଦାର୍ପଣ କରୁ କରୁ ବିଶୁ ମହାନ୍ତିଙ୍କର କାମଲାଳସାର ଉଦାର ଚକ୍ରବ୍ୟୂହର ଅନ୍ତର୍ଭୁକ୍ତ ହୋଇ ଯାଉଥିଲା ।

ମୁଁ ପରେ ଶୁଣିଲି ଯେ ଏହି ରତ୍ନାକର ପାଢ଼ୀ ଓ ବିଶୁ ମହାନ୍ତି ଦୁହେଁଯାକ ମିଶି ଆମ ଗାଁ ଠାରୁ ମାଇଲଏ ଦୂରବର୍ତ୍ତୀ ଗୋଟିଏ ଗାଁରେ ଏକ ଦରିଦ୍ର ବ୍ରାହ୍ମଣ ପରିବାର ଘରକୁ ଯାତାୟତ କରୁଥିଲେ; ସେହି ଭିକାରୀ ବ୍ରାହ୍ମଣର ଚାରୋଟି ଝିଅ ବିବାହଯୋଗ୍ୟା ହୋଇ ମଧ୍ୟ ବିବାହ କରି ପାରୁ ନ ଥିଲେ । ଗୋଟିଏ ଝିଅକୁ ଅତି ବାଲ୍ୟକାଳରେ ଜଣେ ଷାଠିଏ ବରଷର ଶ୍ୱାସ ରୋଗୀ କିଣିନେଇ ବାହା ହୋଇଥିଲା । ସେ ବୁଢ଼ା ବର୍ଷକରେ ମରିଗଲା । ଶୋଭନାମ୍ନୀ ସେହି ସୁନ୍ଦରୀ ସ୍ୱାସ୍ଥ୍ୟବତୀ ଝିଅଟି ବିଧବା ହୋଇ ଆସି ବାପ ଘରେ ରହିଲା । ରତ୍ନାକର ଓ ବିଶୁ ତାଙ୍କ ଘରକୁ ଯିବା ଆସିବା କରୁ କରୁ ବାଲ୍ୟ ବିଧବା ଶୋଭାର ପାପଗର୍ଭ

ହୋଇଗଲା । ତେଣୁ ସେ ଦୁହେଁ ଗୋପନ ମସୁଧା କରି ସେବ୍ଧ ବିଧବାକୁ ଆଣି ବୈକୁଣ୍ଠ ମଉସାଙ୍କ ବେକରେ ଛନ୍ଦି ଦେଲେ । କିଛି ମାସ ଅନ୍ତେ ହୁଏତ ସେ ଗୋଟାଏ ଝିଅକ ପୁଅ ଜନ୍ମ କରିଥାନ୍ତା । ମାତ୍ର କ'ଣ ହେଲା କେଜାଣି, ଶୁଣାଗଲା ଯେ ଶୋଭା ମାଉସୀ ଦିନେ ଗାଡ଼ୁଆ ବନ୍ଧରୁ ତଳକୁ ଖସୁଖସୁ ଗୋଡ଼ ଖସିଗଲା । ସେ ପଡ଼ିଗଲେ ଓ ତାଙ୍କର ଗର୍ଭପାତ ଘଟିଲା ।

କିନ୍ତୁ ତା ହେଲେ ବି, ଇନ୍ଦ୍ରାଙ୍କର ପାର୍ଟୀ ଓ ବିଶୁ ମହାନ୍ତିଙ୍କର ଭିତରି ଉଦ୍ଦେଶ୍ୟ ଥିଲା—ସେମାନେ ଏଣିକି ଶୋଭା ସାଙ୍ଗେ ନିର୍ବିଘ୍ନରେ କାମଚର୍ଯ୍ୟା କରି ପାରିବେ । ବୈକୁଣ୍ଠ ମଉସାଙ୍କର ବନ୍ଧୁମାନଙ୍କ ଭିତରେ ଆଉଜଣେ ପାଷଣ୍ଡ ଥିଲେ । ସେ ହେଉଛନ୍ତି ଆମଗାଁ ଜିଲା-ବୋର୍ଡ଼ ଡାକ୍ତରଖାନାର ସ୍ୱନାମଧନ୍ୟ ମହାପ୍ରତାପୀ ବେହେରା ପହିଲି ଖଉରି । ସେ ନିଜକୁ ଡାକ୍ତରଙ୍କଠାରୁ ବଡ଼ ବିଜ୍ଞ ବୋଲି ଜାହିର କରୁଥିଲେ । ବଥ ଫୋଡ଼ିବା, ଘା ବ୍ୟାଣ୍ଡେଜ କରିବା, କାନରେ ପିଚକାରି ମାରିବା ଠାରୁ ଆରମ୍ଭ କରି, ଆଇଓଡ଼ିନ୍, କୁଇନାଇନ, କାରମିନେଟିଭ, ବାଇସୋଡ଼ା ଆଦି ଔଷଧ ପ୍ରୟୋଗରେ ସେ ଗାଁର ଗରିବଗୁରୁବା ଓ ସ୍ତ୍ରୀ ଲୋକଙ୍କ ଭିତରେ ଖୁବ୍ ବିଶ୍ୱାସଭାଜନ ହୋଇ ପାରିଥିଲେ । ଏପରିକି ବହୁ ଲୋକ ଡାକ୍ତର କମ୍ପାଉଣ୍ଡରଙ୍କ ଅପେକ୍ଷା ପହିଲି ଖଉରିଙ୍କୁ ରୋଗ ନିର୍ଣ୍ଣୟ ଓ ଆରୋଗ୍ୟକରଣରେ ଅଧିକ ଦକ୍ଷ ଓ ପ୍ରବୀଣ ବୋଲି ମନେ କରୁଥିଲେ । ପ୍ରକାଶଥାଉକି, ଏହି ପହିଲି ଅନେକ ବର୍ଷ ପରେ ଡାକ୍ତରଖାନାରୁ ଅବସର ନେଇ ଆମ ଗାଁ ପାଖ ଗୋଟିଏ ଗାଁ ବଜାରରେ କ୍ଲିନିକ୍‌ଟିଏ ଖୋଲି ନିଜ ନାମ ପୂର୍ବରୁ ଡାକ୍ତର ଲଗାଇ ସାଇନ୍‌ବୋର୍ଡ଼ ମାରିଥିଲେ । ଦିନେ ତାଙ୍କ ଭୁଲ ଇଞ୍ଜେକ୍‌ସନରେ ଦୁଇଟି ରୋଗୀ ଏଠାରୁ ମାରି ପଡ଼ିବାରୁ (ସଲଫା ବଟିକାକୁ ଖଲରେ ବାଟି କପଡ଼ାଛଣା ପାଣିରେ ଗୋଳାଇ ଇଞ୍ଜେକ୍‌ସନ ଦେଇଥିଲେ) ଏନ୍‌କ୍ୱାରି ହେଲା ଏବଂ କ୍ରମେ ତାଙ୍କ ସମ୍ବନ୍ଧେ ବହୁ ପାପକର୍ମ ମଧ୍ୟ ଆବିଷ୍କୃତ ହେଲା, ସେ ବହୁ ବର୍ଷ ଜେଲରେ ରହିଲେ ।

ବୈକୁଣ୍ଠ ମଉସାଙ୍କର ଆଉଜଣେ ବନ୍ଧୁ ହେଲେ ମଧୁ ନାହାକ ବୁଢ଼ା । ତାଙ୍କୁ ଗାଁରେ ଡାକୁଥିଲେ ମଧୁ ଦଫାଦାର । ସେ ଜୀବନରେ

ତିନୋଟି ସ୍ତ୍ରୀ ବିବାହ କରିଥିଲେ ଏବଂ ପାଞ୍ଚବର୍ଷ ହେଲା ପୁଣି ବିପତ୍ନୀକ ହୋଇଛନ୍ତି । ଡେଙ୍ଗାହୋଇ ସରୁଆ ହାଡ଼ୁଆ ବୁଢ଼ାଟିଏ । ଷାଠିଏ ବର୍ଷ ବୟସ ହେବ ବୁଢ଼ାଙ୍କୁ । ମୁଣ୍ଡରେ ରାମାନନ୍ଦ ତିଳକ, ବେକରେ ସାତସରି ତୁଳସୀମାଳୀ । କାଖରେ ବିରାଟ ବନ୍ଧୁଆ । ପାଟିରୁ ସବୁ ଦାନ୍ତ ଗଲାଣି । ମାତ୍ର ମୁଖ ଗହ୍ୱରରେ ଅଦ୍ୟାପି ଦୁଇଟି ବିରାଟ ପାନକଷା ଦାନ୍ତ ଗୀତ ଗାଇଲାବେଳେ ବା ହସିଲାବେଳେ ସଦାକୁ ଦେଖାଯାଏ । ମଧୁ ଦଫାଦାର ଶରୀରଭେଦ ଭଜନରେ ଓସ୍ତାଦ । ଖଞ୍ଜଣୀ ବଜାଇବାରେ ବୁଢ଼ାର କିନ୍ତୁ ଖ୍ୟାତି ମଧ୍ୟ ଥିଲା । ହାଡ଼ି ଦାସ, ଅଚ୍ୟୁତାନନ୍ଦ ଦାସ ପ୍ରଭୃତିଙ୍କର ଆଗତ ଭବିଷ୍ୟ ମାଳିକା ବୁଢ଼ାର ମୁହେଁ ମୁହେଁ । ବୁଢ଼ା ସବୁବେଳେ କୁହେ ଯେ ଏଇ ସନ ତେରଶ ଅମୁକ ସାଲ ତମୁକ ମାସରେ ତମୁକ ଦିନ ମହାପ୍ରଳୟ ହେବ—କେହି ରହିବେ ନାହିଁ—ସମସ୍ତେ ଯୋଗିନୀମାନଙ୍କ ଖର୍ପରରେ ନାଶ ଯିବେ—ହନୁମନ୍ତ ଚତୁର୍ଦ୍ଦିଗରେ କିଳିକିଳା ନାଦ ହେବ—ଘୋର ଭୈରବୀ ରଡ଼ିରେ ପୃଥ୍ୱୀର ନାଭିକମଳ ଥରିବ—ଲିଙ୍ଗରାଜଙ୍କ ବୃଷଭ ମନ୍ଦିରରୁ ବାହାରି ଚତୁର୍ଦ୍ଦିଗ ଦେଖିବ । ଦେବୀନଦୀ ଗର୍ଭରୁ ବଉଳା କୁମ୍ଭୀର ବାହାରିବ । ମୋହନାମୁଗଲ ପ୍ରତାପରେ ମେଦିନୀ ଥରହର ହୋଇ ନବ-ଖଣ୍ଡ ହେବ । ମୁଁ ପଚାରେ—ଅଜା ! କେହି ଜଣେହେଲେ ସୁଦ୍ଧା ବଞ୍ଚିବେ ନାହିଁ ? ମଧୁଅଜା ମୁହଁରେ ରହସ୍ୟମୟ ପତିଆରା ଫୁଟାଇ କହନ୍ତି—ହଁ, ବଞ୍ଚିବେ ନାହିଁ ତ ପୁଣି ଲୀଳା ହେବ କେମିତି ? ତେବେ ଯେଉଁମାନେ ଗୁରୁସେବା କରିଥିବେ, ଅଜପା ଜପିଥିବେ, ଷଡ଼ଚକ୍ର ଭେଦିଥିବେ, ଶୂନ୍ୟ ମଣ୍ଡଳରେ ଜ୍ୟୋତି ଦର୍ଶନ କରିଥିବେ, ନିରାକାରଙ୍କୁ ଭଜିଥିବେ, ସେହିମାନେ ଅସୁଧରି ରହିବେ । ତାଙ୍କରି ସାଙ୍ଗେ ପୁଣି ଲୀଳା କରିବେ ନିରାକାର । ସତ୍ୟଯୁଗ ଆସିଯିବ ।

ମଧୁ ଦଫାଦାରଙ୍କ ତୁଣ୍ଡରୁ ଏ କଥା ଶୁଣି ଅନ୍ୟମାନେ ଆତଙ୍କିତ ହୁଅନ୍ତି । ମୁଁ କିନ୍ତୁ ମନେ ମନେ ବଡ଼ ବିରକ୍ତ ହୋଇଯାଏ । ମୋ ସାଙ୍ଗ-ମାନଙ୍କୁ ମୁଁ ଆଶ୍ୱାସନା ଦିଏ—ଯା ବେ ! ମଧୁ ଦଫାଦାର ଗୋଟେ କ'ଣ ଭବିଷ୍ୟ କହିବ ? ସେଇଟା ପାଷଣ୍ଡଟାଏ । ମୋ ସାଙ୍ଗ ମାୟାଧର ଦିନେ ସେ ବୁଢ଼ା ବିଷୟରେ ମୋତେ ବହୁତ ଗୁପ୍ତ ତଥ୍ୟ କହିଲା । ବୁଢ଼ା ତା'ର

ଦୁଇ ପୁଅଙ୍କ ଠାରୁ ଭିନ୍ନ ହୋଇ ରହୁଛି । କାରଣ ଏ ଶଳା ବୁଢ଼ା ଏତେ ଅଲକ୍ଷଣା ଯେ ଦିନେ କାମଜ୍ୱାଳାରେ ଅସାଷ୍ଟମ ହୋଇ ତା' ବଡ଼ବୋହୂକୁ ଧରିପକାଇଲା । ବଡ଼ବୋହୂ ତା' ଖଣ୍ଡୁରେ ବୁଢ଼ା ମୁହଁକୁ ମାରିଲା ଏମିତି ଭୂଷା ଯେ ବୁଢ଼ାର ଗୁଡ଼ାଏ ଦାନ୍ତ ଭାଙ୍ଗିଗଲା । ଖାଲି ସେତିକି ନୁହଁ — ଆମ ଗାଁର ଚଗଗୁଡ଼ଆଣୀକି ବି ଏ ବୁଢ଼ା ଥରେ ସଞ୍ଜବୁଡ଼େ ବ୍ରହ୍ମାଙ୍କ ବେଢ଼ା ଭିତରେ ମାଡ଼ି ବସିଲା । ଏ ଶଳା ବେହେଲ ପାଷାଣ୍ଡ ବୁଢ଼ା ପୁଣି ଶରୀରଭେଦ ଭଜନ ଗାଉଛି ! ଆମେ ଆଶ୍ଚର୍ଯ୍ୟ ହେଉ—ଏଭଳି ବୁଢ଼ାକୁ ବୈକୁଣ୍ଠ ମଉସାଙ୍କ ଭଳିଆ ଭଲ ମଣିଷ କେମିତି ଏତେ ପାଖରେ ପୂରାଉଛନ୍ତି ! ଖାଲି ଏଇ ବୁଢ଼ା ନୁହଁ—ବୈକୁଣ୍ଠ ମଉସାଙ୍କର ସବୁ ସାଙ୍ଗମାନେ—ଆମେ ଧ୍ରୁବ ଜାଣିଥିଲୁ —ସମସ୍ତେ ଥିଲେ ଅତି ଖଳ ପ୍ରକୃତିର ଓ ମହା କାମୁକ ବ୍ୟକ୍ତି । ସ୍ତ୍ରୀଲୋକ, ଧନ ଓ ଖାଇବା ଲାଳସାରେ ଏମାନେ ବୁଡ଼ିକରି ଥିଲେ । ଭଜିକରି ଥିଲେ ! ମୁଁ ସେମାନଙ୍କୁ ଭୟଙ୍କର ଘୃଣା କରୁଥିଲି । କିନ୍ତୁ ଏହିଭଳି ଲୋକେ ହିଁ ଥିଲେ ବେଶ୍ ପ୍ରଭାବଶାଳୀ ।

ଶୋଭା ମାଉସୀଙ୍କି ବିଷୟ ବାର ବାହାହେଲା ପରେ ବୈକୁଣ୍ଠ ମଉସାଙ୍କ ଘରେ ଏଇ ଦୁର୍ବୃତ୍ତମାନଙ୍କର ମେଳା ଖୁବ୍ ବଢ଼ିଗଲା । ଦୁଇଦିନେ ଗୁରୁଦିନେ ତାଙ୍କ ଘରେ ଭଜନ ମେଳା ନ ହେଲେ ସଙ୍ଗୀତ ଆଡ୍ଡା ବସେ । ହାରମନିଅମ, ତୁବଲତାବଲା, ପଖାଉଜ ଓ ଗିନି ସହଯୋଗରେ ଚାଲେ ଓଡ଼ିଶୀ ସଙ୍ଗୀତ ଚର୍ଚ୍ଚାପର୍ବର ଆସର । କ୍ଷୀରି, ଖେଚେଡ଼ି, ପୁରି, ମାଛକାଳିଆ ରନ୍ଧାଯାଏ । ସବୁ ଖର୍ଚ୍ଚ କରନ୍ତି ବୈକୁଣ୍ଠ ମଉସା । ରାତି ଅଧରୁ ଦିନେ ଦିନେ ବଳିଯାଏ । ଭାଙ୍ଗ, ଗଞ୍ଜେଇ ମଧ ସେବା ହୁଏ ।

ହଁ, ଶୋଭା ମାଉସୀଙ୍କ କଥା କହେ । ସେ ଥିଲେ ପ୍ରକୃତରେ ଶୋଭାବତୀ । ସ୍ୱାସ୍ଥ୍ୟ, ଯୌବନ, ରସ, ପ୍ରଫୁଲ୍ଲତା ଓ ମାଧୁର୍ଯ୍ୟରେ ଆମ ଗ୍ରାମରେ ତାଙ୍କର ସମକକ୍ଷ ନାରୀ ନ ଥିଲେ । ତାଙ୍କର ଠାଣିମାଣି, ବେଶ-ଭୂଷା, କେଶସଜ୍ଜା, ଉକ୍ତି ପ୍ରତ୍ୟୁକ୍ତି ସବୁ ଥିଲା ଭଞ୍ଜଯୁଗର ମାଲୁଣୀମାନଙ୍କ ପରି । ତାଙ୍କର ବିଶାଳ ନିତମ୍ବ ଉପରେ ଗୋଟିଏ ରୂପାର ଚଉଡ଼ା

ଗୋଠ ଶୋଭା ପାଉଥିଲା । ସେ କାନରେ ଦୁଲ୍ ଓ ନାକରେ ସୁନା ଫୁଲଟିଏ ଲଗାଇଥାନ୍ତି । ପୁରୁଷମାନଙ୍କୁ ବଶୀଭୂତ କରିବାର ସମସ୍ତ ମୋହିନୀମନ୍ତ୍ର ତାଙ୍କୁ ଜଣାଥିଲା । ସେ କାହାକୁ ଲୁଚୁ ନ ଥିଲେ ଏବଂ ସତେକି ସେ ଆମ ଗାଁର ଝିଅ – ବା ଆମ ଗାଁରେ ବହୁ ଦିନର ପୋଷିତ ବୋହୂ, ଏହିଭଳି ବ୍ୟବହାର କରୁଥିଲେ । ତାଙ୍କୁ ବହୁ ଆଦରପାତ୍ମକ ଢଗ, ବଚନିକା ଓ ଚଉପଦୀ ଜଣାଥିଲା । କଥା କହିଲାବେଳେ ତାଙ୍କ ଆଖିର ଗୃହାଣୀ ଓ ଅଧରର ହସ କାମୁକ ପୁରୁଷମାନଙ୍କ ପକ୍ଷରେ ଅତି ମାରାତ୍ମକ ଥିଲା । ତାଙ୍କୁ ଦେଖିଲେ ମନେହେଉଥିଲା ଯେ ସେହି ଚର୍ଚ୍ଚିଣୀ ରମଣୀ ବହୁ ପୁରୁଷଙ୍କ ନାକରେ ଦଉଡ଼ି ଲଗାଇ ଆପଣା ଖୁଣ୍ଟରେ ବାନ୍ଧି ରଖି ପାରିବେ । ପୁରୁଷମାନଙ୍କର ନାଡ଼ୀତତ୍ତ୍ୱ ତାଙ୍କୁ ଖୁବ୍ ଜଣାଥିଲା । ତାଙ୍କର ଆଉ ଗୋଟିଏ ଗୁଣ ହେଲା – ଟିକିଏ କଥାରେ ହସି ପକାଇବା କମ୍ବା କାନ୍ଦି ପକାଇବା । ତାଙ୍କର ସମସ୍ତ ଇତିବୃତ୍ତି ମୁଁ ଆଉ ଗୋଟିଏ ପ୍ରସଙ୍ଗରେ କହିବି । କିନ୍ତୁ ସେତେବେଳେ କ୍ରମଶଃ ତାଙ୍କ ଢଙ୍ଗ ଢାଙ୍ଗରୁ ମନେହେଲା ଯେ ସେ ଆମ ଗାଁର ଆଯୁବାବୃଦ୍ଧପୁରୁଷମାନଙ୍କୁ ହି' କଡ଼ାର ମନେ କରୁଥିଲେ । ଏଣିକି ଆମ ଗାଁର ରସିକ ପୁରୁଷମାନଙ୍କର ଏକମାତ୍ର କାମହେଲା ଶୋଭାମାଉସୀଙ୍କ ଠାରୁ, ଯଥାର୍ଥ ପୁରୁଷ ବୋଲି ପ୍ରଶଂସା ସାର୍ଟିଫିକେଟ ପାଇବା ପାଇଁ ଅକ୍ଳାନ୍ତ ଓ ନିରବଚ୍ଛିନ୍ନ ଭାବେ ଅଧ୍ୟବସାୟ ଓ ସାଧ୍ୟ ସାଧନା କରିବା । ମୋ ଜାଣିବାରେ ଆମ ଗାଁର କେତେ ସୁନ୍ଦର ଯୁବକ ଶୋଭାମାଉସୀର ପ୍ରୀତି-ଫାନ୍ଦରେ ପଡ଼ି ଆଉ ଉଠିପାରୁ ନ ଥିଲେ । କିନ୍ତୁ ମୁଁ ଓ ମୋର ଅନ୍ତରଙ୍ଗ ବନ୍ଧୁ ମାୟାଧର ମନେ ମନେ ଖୁବ୍ ଅଭିଜ୍ଞ ଯୁବକ ହୋଇ ଯାଇଥିଲେ ବି ବୟସ ଓ ଚେହେରାରେ ଥିଲୁ କୋମଳମନା ନବୀନ କିଶୋର ମାତ୍ର । ଆମେ ସବୁ ମନେ ମନେ ବୁଝି ପାରୁଥିଲୁ । କିନ୍ତୁ କାର୍ଯ୍ୟତଃ ଆମେ ଥିଲୁ ନା' ବାଳକ । ତେଣୁ କହିବାରେ ଦ୍ୱିଧା ନାହିଁ ଯେ, ଆମର କିଛି ଅନୁଶୋଚନା ମଧ୍ୟ ହେଉଥିଲା ।

ବୈକୁଣ୍ଠ ମଉସାଙ୍କ ସଙ୍ଗୀତ ଆସରରେ ଦିନେ ଦିନେ ମୁଁ ଓ ମାୟାଧର ଯାଇ ବସୁ । ସେଦିନ ବୈକୁଣ୍ଠ ମଉସା ସ୍ୱୟଂ ହାରମନିଅମ ଧରି ପ୍ରାଣପଣେ ଖୁବ୍ ଚଲେଇ କରି ଗୋଟିଏ ଯୌନମିଳନାତ୍ମକ

ବିପରୀତରତି ବର୍ଣ୍ଣିତ ଚଉପଦୀ ଗାଉଥିଲେ । ହାରମନିଅମ୍‌ର ଶେଷ-ରିଡ଼୍‌ଗୁଡ଼ିକୁ ତାଙ୍କର ଛୋଟ ଛୋଟ ମୋଟା ଆଙ୍ଗୁଳିରେ ଚିପିଚାପି ଫଟ୍‌ଫାଟ୍ କରି ଯେ ଗାଉଥିଲେ ଦ୍ରୁତ ତାଳରେ—

ହାସ୍ତିଗମନାରେ ସ୍ତନପରେ ମଣ୍ଡି
ଧାତକାରେ ରତି··
ନିତମ୍ବ ଧୀରେ ଧୀରେ, ଚଳା ଅତି ମଞ୍ଜୁଳେ
ବାଜୁ ରତ୍ନ ନିର୍ମିତ କିଂକଣୀ ନିପଟାରେ
ନାଚିବ ତିଳପୁଷ୍ପଜିତ ନାସାପୁଟରେ··

ଉପରକୁ ମୁହଁଟେକି ବୈକୁଣ୍ଠ ମଉସା ଏ ଗୀତ ତାଙ୍କର ପ୍ରାଣପଣେ ଗାଇଲାବେଳେ ତାଙ୍କ ଛୋଟ ମୁହଁଟି ଅତି ଆର୍ତ୍ତ, ବିକଳ ଓ ବିବ୍ରତ ହୋଇ ଉଠୁଥାଏ । ତାଙ୍କର ନିଃଶ୍ୱାସ ପାଉ ନ ଥାଏ । ଏବଂ ତାଙ୍କର ସେଇ ସିଙ୍ଗଲ ହାରମନିଅମ୍‌ଟି ମଧ୍ୟ ଅଣନିଶ୍ୱାସୀ ହୋଇ ଯାଉଥାଏ । ବୈକୁଣ୍ଠ ମଉସା ଅତି ଦ୍ରୁତଗତିରେ ବିଚରା ହାରମନିଅମଟିର ହାଉଡା ଚଳାଇ ତାକୁ ପବନ ଯୋଗାଉଥାନ୍ତି । ମାତ୍ର ହାରମନିଅମଟି ରୁଦ୍ଧଶ୍ୱାସ ହୋଇ ଅତି ବିକଟ ଚିତ୍କାର ବେତାଳିଆ କରୁଥାଏ । ବୈକୁଣ୍ଠ ମଉସାଙ୍କ ଦେହ ମୁହଁରୁ ଗମଗମ ଝାଳ ବହୁଥାଏ । ତାଙ୍କ ମୁଣ୍ଡର ଚୁଟି ଫିଟି ପଡ଼ି ବ୍ୟସ୍ତ ହେଉଥାଏ । ଏବଂ ଏହାଦେଖି କବାଟ କଣରୁ ବାରଣ୍ଡାରେ ବସି ଶୋଭାମାଉସୀ ହସି ହସି ଗଡ଼ ଯାଉଥାଏ । ଏବଂ ଆସରରେ ସମାବିଷ୍ଟ ସେହି ସବୁ ଅଫିମିଆ ଗଞ୍ଜେଇ, ଭାଙ୍ଗୁଆ ଏବଂ ନାରୀ, ଅର୍ଥ ଓ ଖାଦ୍ୟ ଲୋଲୁପୀ ବୁଢ଼ା ଅଧାବୁଢ଼ା ଛୋକରାମାନେ ଗିନିବଜାଇ ବା ତାଳମାରି, ମୁଣ୍ଡହଲାଇ, ନିଶାଜୋରରେ ଓ ଶୋଭା ମାଉସୀର ରୂପ ଯୌବନ ଭୋଗ କରିବାର ଗୁପ୍ତ ବାସନାରେ ବିଭୋର ହୋଇ, ଅତି ଉଚ୍ଚାଟରେ ଦେହମୁଣ୍ଡ ହଲାଇ, ଅଣନିଃଶ୍ୱାସୀ ଆର୍ତ୍ତକଣ୍ଠରେ ସେଇ ଚଉପଦଟିର ସେହି ବିଶେଷ ଅଂଶଟିକୁ ବାରମ୍ବାର ପାଳିଧରି ଚିତ୍କାରି ଉଠିଲା ଭଳି ପୁନରାବୃତ୍ତି କରି ଚାଲିଥାନ୍ତି ।

ଆରେ, ନିତମ୍ବ ଧୀରେ ଧୀରେ—ଚଳା ଅତି ମଞ୍ଜୁଳେ···
ଆରେ, ନିତମ୍ବ ଧୀରେ ଧୀରେ—ଚଳା ଅତି ମଞ୍ଜୁଳେ···

ସତେକ ଏମାନଙ୍କର ସମସ୍ତଙ୍କ ଉପରେ ଶୋଭାମାଉସୀ ସବାର ହୋଇ ବଡ଼ସାଡ଼ ଶୃଙ୍ଗାରରେ ମାତି ଯାଇଛି ! ! ସେ ଦୃଶ୍ୟ ଦେଖି ତରୁଣୀ-ସୁନ୍ଦରୀ-ରମଣୀ ଶୋଭା ମାଉସୀ ଆଉରି ଜୋରରେ ହସି ହସି ଗଡ଼ିଯାଉଥାଏ । ମତେ ପ୍ରଥମେ ସେହି ବେହିଆ ପ୍ରକୃତିଛଡ଼ାମାନଙ୍କର ଢଙ୍ଗ ଦେଖି ହସ ଲାଗୁଥିଲା । ମାତ୍ର ମୁଁ ଖୁବ୍ ଚିଡ଼ିଗଲି । ଶୋଭା ମାଉସୀ ଆଡ଼କୁ ଗୃହିଁ ଦେଖିଲି—ସେ ରୂପଯୌବନ ମଦବିହ୍ୱଳା ପ୍ରମଦାଟିଏ ଭଳି ହସି ହସି ଉଚ୍ଛୁଳି ପଡ଼ୁଛି । ମୋ ମନ ଆଉରି ତିକ୍ତ ହୋଇଗଲା । ଶୋଭା ମାଉସୀ ରୂପଲାବଣ୍ୟମୟୀ ରସବତୀ ରମଣୀ ଏବଂ କହିବାରେ ଦ୍ୱିଧାନାହିଁ ଯେ ଏଭଳି ସ୍ତ୍ରୀଲୋକଙ୍କ ଅଳକ୍ତରଞ୍ଜିତ ପାଦପଦ୍ମରେ ମୁଁ ମୋର ସମସ୍ତ କୀର୍ତ୍ତି, ଐଶ୍ୱର୍ଯ୍ୟ ଓ ପୁଣ୍ୟଫଳ ମଧ ଉଜାଡ଼ି ଦେଇପାରେ ଗୋଟିଏ ନିମିଷରେ ସେଇ ପିଲାଦିନୁ । କିନ୍ତୁ ସେଦିନ ସେ ବେଳାରେ ଶୋଭା ମାଉସୀର ସେହି ହେଁଜେଡ଼ୀ ପଣିଆ ଦେଖି ତା'ଉପରେ ମୋର ମନ ପିତା ହୋଇଗଲେ । ମୋର ଆଜିପର୍ଯ୍ୟନ୍ତ ଧାରଣାଟି ହେଲା—ଯେତେବେଳେ ଜରା, ମୃତ୍ୟୁ, କୁଷ୍ଠ, କାନ୍‌ସର, ହିଂସା କପଟତା ଷଡ଼ଯନ୍ତ୍ର ପୂର୍ଣ୍ଣ ଏହି ପୃଥିବୀରେ ରାମ, କୃଷ୍ଣ, ବୁଦ୍ଧ, ଚୈତନ୍ୟ, ବିବେକାନନ୍ଦ, ଗାନ୍ଧୀ ପ୍ରଭୃତିଙ୍କ ଭଳି ମହାପୁରୁଷମାନଙ୍କର ଆବିର୍ଭାବ ବିଳମ୍ବିତ ହୋଇଯାଏ—ସେତେବେଳ ପର୍ଯ୍ୟନ୍ତ ଏହି କୁତ୍ସିତ ଅଭିଶପ୍ତ ଦୁଃସହ ପୃଥିବୀକୁ କେବଳ ରୂପଲାବଣ୍ୟମୟୀ ରସବତୀ ରମଣୀ-ମାନେ ହିଁ ଚନ୍ଦ୍ର, ମଳୟ, କୋକିଳ, ପଦ୍ମ, ଗୋଲାପ, ଚନ୍ଦନ, କର୍ପୂର, ଉଶୀରାଦିର ସମାବେଷ୍ଟି ଉଦ୍ଦୀପନାରେ ସହନୀୟ ଓ ରମଣୀୟ କରି ରଖିଥାନ୍ତି । ମାତ୍ର ରୂପବତୀ ରମଣୀଟିଏ ମହାରାଣୀ ବା ପାଟଦେଈ-ଦେଈଙ୍କ ଭଳି ବ୍ୟବହାର ନ ଦେଖାଇ ହେଁଜେଡ଼ୀଟିଏ ହେବାର ଦେଖିଲେ ମୋ ମନ ହତାଶରେ ଭରିଯାଏ । ମୁଁ ଭାବେ ଆଉ ଏ ପୃଥିବୀର ଉଦ୍ଧାର ନାହିଁ । ଅବଶ୍ୟ ସୁନ୍ଦରୀମାନେ ଛଳନାମୟୀ ହେଲେ ବରଂ କେତେକ ପରିମାଣରେ ସହ୍ୟ କରିହେବ କିନ୍ତୁ ହେଁଜେଡ଼ୀ ହେଲେ କଥା ସରିଗଲା । ସେ ରାତିରେ ମୋ ମନ ଏକଦମ୍ ବିଗିଡ଼ିଗଲା ।

ମୋ ପିଲାଦିନୁ ମୁଁ ହେଁଜେଡ଼ାମୀ କାହାକୁ କହନ୍ତି ଭଲଭାବେ ବୁଝି ପାରିଥିଲି । ସେମିତି ମଧ ବୁଝିଥିଲି ସ୍ତ୍ରେଟଲେକି ବା ମାଚିତା

କାହାକୁ କୁହାଯାଏ । ତେଣୁ ସେହିଦିନଠୁଁ ମୁଁ କିମ୍ବା ମୋର ପ୍ରିୟ ସାଙ୍ଗ ମାୟାଧର ଆଉ କେବେ ହେଲେ ବି ବୈକୁଣ୍ଠ ମଉସାଙ୍କ ଘରକୁ ଯାଇ-ନାହୁଁ । କିଛିଦିନ ପରେ । ଦୋଳପୂର୍ଣ୍ଣିମା ସରିଥାଏ । କିନ୍ତୁ ପଞ୍ଚୁଦୋଳ ଚାଲିଥାଏ । ମୋର ସାଙ୍ଗ ମାୟାଧର ଆସି ଦିନେ ମତେ କହିଲା— ଆଜି ରାତିରେ ଯିବା ବୈକୁଣ୍ଠ ମିଶ୍ରଙ୍କ ସଙ୍ଗୀତ ଆସରକୁ । ତାଙ୍କ ଘରେ ଏ ବର୍ଷ ଜଣେ ନୂଆ ହଳିଆ ଗୁଜର ରହିଛି । ତା ନାଁ ଅଭିରାମ ପରିଡ଼ା । ସେ ମାହାଲି ସାହି ପାର୍ଟିରେ ରଜାହୁଏ । ଭାରି ଚମତ୍କାର ମଣିଷ । ଦେଖିବାକୁ ଯେମିତି ସୁନ୍ଦର, ତା ଗଳା ବି ସେମିତି ମିଠା । କାଲି ରାତିରେ ମୁଁ ତା ଗୀତ ଶୁଣିଲି । ଆଜି ଆସରରେ ସେ ଏକା ଗାଇବ । ବହୁତ ନୂଆ ସୁରରେ ନୂଆ ଗୀତ ସବୁ ବୋଲିବ ସେ । ଇସ୍—କି ବଢ଼ିଆ ଗଳା !

ସେଦିନ ସନ୍ଧ୍ୟା ପରେ ପାଠ ପଢ଼ା ବନ୍ଦକରି ମୁଁ ଓ ମାୟାଧର ବୈକୁଣ୍ଠ ମଉସାଙ୍କ ଘରକୁ ଗଲୁ । ବହୁ ବେଳୁ ଆସର ଆରମ୍ଭ ହୋଇ ଯାଇଥିଲା । ବୁଢ଼ା ଓ ଅଧବୁଢ଼ା ଶ୍ରୋତାମାନଙ୍କର ବେହେଲ ଘଣିଆ ସରିଯାଇ ଥିଲା । କାନ୍ଥକୁ ଲାଗି ହାରମୋନିଅମ୍ ଧରି ଯେ ଗମ୍ଭୀର ଠାଣିରେ ବସିଥିଲେ ସେଇ ହେଉଛନ୍ତି ଅଭିରାମ ପରିଡ଼ା । ସେ ହାରମୋନିୟମ୍ ଉପରେ କ'ଣ ସବୁ ଠକ୍ ଠାକ୍ କରି ସଜାଡ଼ୁଥିଲେ । ସୁର ମିଳାଉଥିଲେ । ତାଙ୍କ ପାଖେ ରଥୀ ଜେନା ଗୋଟିଏ ଡୁବି ତାବଲା ଧରି ଭଡ଼ାଭଡ଼ି କରି ଟୁଂଟାଁ କରୁଥିଲେ । ସମସ୍ତ ପରିବେଶ ନୀରବ ରହିଥିଲା । ଅଭିରାମଙ୍କୁ ଦେଖିବା ମାତ୍ରେ ମୁଁ ମୁଗ୍‌ଧ ହୋଇଗଲି । ସେ ଖଣ୍ଡିଏ ପୂରା ଗେଞ୍ଜି ପିନ୍ଧିଥିଲେ ଓ ଗୋଟିଏ ଗାମୁଛା କାନ୍ଧଉପରୁ ତଳକୁ ଲମ୍ବାଇ ରଖିଥିଲେ । ଖୁବ୍ ଚମତ୍କାର ଠାଣିରେ ସେ ହାରମୋନିଅମ୍‌ଟି ଧରି କାରବାର କରୁଥିଲେ ! ତାଙ୍କର ସୁନ୍ଦର ବଳିଷ୍ଠ ବର୍ତ୍ତୁଳ ଲମ୍ବ ବାମ ହାତଟି ହାରମୋନିଅମ୍ ଉପରେ ଖୁବ୍ ସୁକୁମାର ଆଉ ମୃଦୁ ଭାବରେ ଆଶ୍ରା ନେଇ ହାଉଦାଟିକୁ ଚିପୁଥାଏ ଓ ଛାଡ଼ୁଥାଏ । ସେହିଭଳି ସୁନ୍ଦର ଡାହାଣ ହାତଟିର ସରୁ ସରୁ ଅଙ୍ଗୁଳି ଦ୍ୱାରା ସେ ହାରମୋନିଅମ୍‌ଟିର ରିଡ୍ ଗୁଡ଼ିକୁ ଖୁବ୍ ମୃଦୁ ଭାବରେ ଚାଳନା କରୁଥାନ୍ତି । ମୁଁ ଓ ମାୟାଧର ଖୁବ୍ ଖୁସି ହୋଇ ତାଙ୍କୁ ଚାହିଁ

ରହିଲୁ । ମୋର ତ ମନେ ହେଉଛି ଯେ ସେଦିନ ଓ ସେହି ମୁହୂର୍ତ୍ତରେ ହିଁ ମୁଁ ହାରମନିୟମ୍ ନାମକ ସଙ୍ଗୀତ ଯନ୍ତ୍ରଟିକୁ ପ୍ରଥମ କରି ପ୍ରତ୍ୟକ୍ଷ କଲି । ଏବଂ ତା'ର ସ୍ୱର ମୋର କର୍ଣ୍ଣକୁ ନନ୍ଦିତ କଲା । ଅଭିରାମଙ୍କ ରଙ୍ଗ ସାମାନ୍ୟ ଶ୍ୟାମଳ—କିନ୍ତୁ ବେଶ୍ ଚିକ୍କଣ ଓ ଜୀବନ୍ତ । ମଧ୍ୟମ ଭାବେ ଉଚ୍ଚ ଏବଂ ବଳିଷ୍ଠ ଦେହ । ମଥାରେ ସରୁ ଓ ଲମ୍ବ ସିନ୍ଦୂର କଳା । ମୁଣ୍ଡରେ ବାବୁରି ବାଳ ଖୁବ୍ ଘନ ଓ ଉଜ୍ଜ୍ୱଳ । ସୁନ୍ଦର ପରିଚ୍ଛନ୍ନ ଭାବେ ସେ ମୁଣ୍ଡ କୁଣ୍ଡାଇ ଥାନ୍ତି । ବେକରେ ସରୁ ସରୁ କେତେଏ କାଠମାଳି । ବାହୁରେ ବନ୍ଧା ରୂପା ତେଣ୍ଡଉଁରିଆ । ମୁହଁଟି ତାଙ୍କର ଯେମିତି ସତେଜ, ସେମିତି ଆକର୍ଷଣୀୟ । ସେ ଘାଟିରେ ଖିଲେ ପାନ ଜାକିଥିଲେ । ତାଙ୍କର ଆଖି ଦୁଇଟି କିନ୍ତୁ ଥିଲା ଅପୂର୍ବ । ଗୃହାଣୀରେ ତାଙ୍କର ସ୍ୱପ୍ନ ଓ କମିସ୍ତା ଭରି ରହିଲା ଭଳି ଲାଗୁଥାଏ । ସେହି ଗୃହାଣୀ ସଙ୍ଗେ ଯାହା ଗୃହାଣୀ ମୁହୂର୍ତ୍ତକ ଲାଗି ମିଶିଯିବ, ସାଙ୍ଗେ ସାଙ୍ଗେ ସେ ତାଙ୍କର ବଶ୍ୟ ହୋଇ-ଯିବ । ସେ ହାରମନିୟମର ଗୋଟିଏ ରିଡ୍ ଉପରେ ଟିପ ରଖି ଚତୁର୍ଦ୍ଦିଗକୁ ଥରେ ଚାହିଁ ଦେଉଥାନ୍ତି । ମତେ ଲାଗୁଥାଏ ତାଙ୍କ ଆଖି ଭିତରେ କ'ଣ ସବୁ ରହସ୍ୟ ଲୁଚି ରହିଛି । ସେ ବୋଧେ ଆମମାନଙ୍କୁ ଦେଖୁନାହାନ୍ତି—ଆମ ବାହାରେ ଆମ ଅଲକ୍ଷ୍ୟରେ ଆଉ କ'ଣ ସବୁ ରହିଛି, ସେ ସବୁ ତାଙ୍କର ସେ ଆଖିକୁ ଦେଖାଯାଉଛି । ହଠାତ୍ ସେ ଗୋଟିକିଆ ରିଡ୍ ଉପରୁ ଅଙ୍ଗୁଳିଟି ଉଠାଇ ଏକାବେଳକେ ତଳଉପର କରି ଚାରି ପାଞ୍ଚଟି ରିଡ୍ ଉପରେ ଆଙ୍ଗୁଳି ଚଳାଇଦେଇ ଗୋଟିଏ ସ୍ୱର ଝଙ୍କାର ସୃଷ୍ଟି କଲେ ଓ ସେଇ ଅବସରରେ ହଠାତ୍ ମୋ ଆଖି ସଙ୍ଗେ ତାଙ୍କର ଆଖି ମିଶିଗଲା । ସେ ହସି ପକାଇଲେ । କାହିଁକି ହସିଦେଲେ କେଜାଣି ! ମୋତେ ଭାରି ଆହ୍ଲାଦ ଲାଗିଲା । ଟିକିଏ ଟିକିଏ ଲାଜ ବି ଲାଗିଲା । ଏବଂ ମତେ ଲାଗିଲା ଯେ ସେ ମତେ ସେତିକିରେ ବଶ୍ୟ କରି-ଦେଲେ; ଏଣିକି ସେ ମତେ ଯାହା ଦେଖେଇବେ ମୁଁ ତା ଦେଖିବି । ଯାହା ଶୁଣେଇବେ, ତାହା ଶୁଣିବି ।

ଇତି ମଧ୍ୟରେ ମୁଁ ଅଗଣାପଟ ଦୁଆର ବନ୍ଧ ପାଖେ ପାନଡାଲା ଧରି ପାନ ଭାଙ୍ଗୁଥିବା ଓ ବାରମ୍ବାର ଅଭିରାମଙ୍କ ଆଡ଼କୁ ଚାହୁଁଥିବା ଶୋଭା ମାଉସୀ ଆଡ଼କୁ ମଧ୍ୟ ଚାହିଁଲି । ଶୋଭା ମାଉସୀର ମୁହଁ ମଧ୍ୟ

ନୀରବ ନିସ୍ତବ୍ଧ ହୋଇ ଯାଇଥାଏ । ତା' ଗୃହାଣୀରେ ଢେଁକେଢ଼ାମୀର ଆଭାସ ମଧ୍ୟ ନ ଥାଏ । ମତେ ଲାଗିଲା—ଅଭିରାମ ଶୋଭା ମାଉସୀଙ୍କ ମଧ୍ୟ ବହୁ ଆଗରୁ ବଶ୍ୟ କରି ସାରିଲେଣି । ଏମିତି ଘଟୁଛି—ହଠାତ୍ ମୋତେ ଚକିତ କରି ଦେଇ ଓ ମୋର ହୃଦ-ସରସୀର ପଦ୍ମବଣକୁ ମୁହୂର୍ତ୍ତକେ ଥରାଇ ଦେଇ ଓ ମୋର ସମଗ୍ର ସତ୍ତାକୁ ଗୋଟିଏ ମୃଦୁ ଧକ୍କାରେ କୋଉ ଅଦୃଷ୍ଟପୂର୍ବ ଓ ଅନନୁଭୂତ କଳ୍ପଲୋକ ଭିତରକୁ ଉଠାଇ ଦେଇ ଗମ୍ଭୀର ମୃଦୁଳ ମଧୁର ଗଳାରେ ଅଭିରାମ ଗାଇ ଉଠିଲେ ମୋର ଅଶୁଣା ସଙ୍ଗୀତଟିଏ—

ଦେଖ ଗୋ ଦେଖ ଗୋ ସଖୀ
ନିକୁଞ୍ଜ କାନନ
ଯହିଁ ବିଜେ କରିଛନ୍ତି
ମଦନ ମୋହନ
ମଦନ ମୋହନ
ସଖୀ ! ସେ ରାଧାରମଣ
ଏହି ଟେକି ଧରିଥିଲେ ଗିରି ଗୋବର୍ଦ୍ଧନ !

ବର୍ତ୍ତମାନ ଏ ଗୀତ ମୋର ଏତିକି ମନେ ପଡ଼ୁଛି । କାହିଁ କ'ଣ ଅଛି ଏ ଗୀତର ଶବ୍ଦ ବାକ୍ୟ ଆଉ ତା'ର ଅର୍ଥ ଭିତରେ ? ଏମିତି କିଛି ମହାନ୍ ସଙ୍ଗୀତର ଭାବ ତ ନାହିଁ ଏହି ପଦମାନଙ୍କରେ ! ଏହାର ଭାଷା ବା ସ୍ୱରରେ ମଧ୍ୟ ଏମିତି କିଛି ଗୀତିମୟୀ ଉଚ୍ଛ୍ୱାସ ତ ନାହିଁ । କିନ୍ତୁ ମୋ ପାଇଁ ସେ ମୁହୂର୍ତ୍ତଟି ଥିଲା ଅପୂର୍ବ । ଏବଂ ସେହି ଲୋକଟି ଥିଲେ ମଧ୍ୟ ଅପୂର୍ବ । ସେ ତାଙ୍କର ଐନ୍ଦ୍ରଜାଲିକ ବ୍ୟକ୍ତିତ୍ୱର ସ୍ପର୍ଶ ଦେଇ ମୋର କଇଶୋର ଅନ୍ତରର ବୀଣା ତାର ଗୁଡ଼ିକୁ ଏକାବେଳକେ ବଜାଇ ଦେଲେ —ତାହା ଆଜି ମଧ୍ୟ ଭାବିଲେ ମୋତେ ଆଶ୍ଚର୍ଯ୍ୟ ଲାଗୁଛି । ସେଦିନ ଜାଣ, ମୁଁ ମୋ ଭିତରର ରସମୟ ସତ୍ତାଟି ସଙ୍ଗେ ପରିଚିତ ହେଲି । ମୋ ଭିତରେ ସୁରଲୋକ ଉଦ୍‌ଘାଟିତ ହୋଇଗଲା । "କିନ୍ନର" ଶବ୍ଦ ସହ "ଗନ୍ଧର୍ବ" ବୋଲି ଶବ୍ଦଟିଏ ମୁଁ ସେତେବେଳକୁ ଶୁଣି ସାରିଥିଲି । ସେହି ରାତିରେ ସେତିକବେଳେ ମୁଁ ଶବ୍ଦଟିର ଅର୍ଥ ବୁଝିଗଲି ଗୁହାଁକୁ ଗୁହାଁ ।

ମୁଁ ମୋର ସାଙ୍ଗ ମାୟାଧରକୁ ପଚାରିଲି—ଏ ଅଭିରାମ ପରିଡ଼ା କ'ଣ ଜଣେ ଗନ୍ଧର୍ବ କରେ ? ମାୟାଧର ମୋର ସମବୟସ୍କ ହେଲେ ହେଁ ମୋ-ଠାରୁ ବହୁ ବିଷୟରେ ସୁଜାଣ ଥିଲା । ଏବଂ ଆମ ଗାଁ ପାରହୋଇ ବହୁ-ଦୂର ସ୍ଥାନ ସେ ତା' ବାପାଙ୍କ ସଙ୍ଗେ ବୁଲି ଆସିଥିଲା । ତା' ବାପାଙ୍କର ଥିଲା ପାଣ୍ଡୀ ବ୍ୟବସାୟ । ମାୟାଧର ନିର୍ଦ୍ଵନ୍ଦ୍ଵରେ ଉତ୍ତର ଦେଲା—ଠିକ୍ କହିଛୁ । ସେ ଜଣେ ଅଭିଶପ୍ତ ଗନ୍ଧର୍ବ ହୋଇପାରେ । ଗନ୍ଧର୍ବମାନେ ଦେବତାମାନଙ୍କ ପାଖରେ କ'ଣ ଟିକିଏ ଭୁଲ କରିଦେଲେ, ଅଭିଶାପ ପାଇ ମର୍ତ୍ତ୍ୟରେ ମଣିଷ ହୋଇ ଜନ୍ମ ହୁଅନ୍ତି ଏବଂ ଏଇ ଅଭିରାମ ପରି ବନରେ ବନ ବୁଲାଇ ରାତିରେ ଗାନବାଜଣା କରନ୍ତି । ମାୟାଧରର ସିଦ୍ଧାନ୍ତ ମୋତେ ବେଶ୍ ଭଲ ଲାଗିଲା ।

ସେ ଗୀତ ବୋଲିସାରି ଅଭିରାମ ଆଉ କେତୋଟି ଗୀତ ଚଉପଦୀ ଗାଇଲେ । ସେ ସବୁ ଆଜି ମଧ୍ୟ (୪୫ ବର୍ଷ ପରେ) ମୋର ମନେଅଛି । ସେ ସବୁ ଗୀତ ମୋତେ ସେଇଦିନୁ ସଙ୍ଗୀତର ନିଶା ଧରାଇ ଦେଇଛି । ସେ ଗାଇଥିଲେ—ମହାଭାବମୟୀ ଶ୍ରୀ ରାଧାରାଣୀଙ୍କ କୃଷ୍ଣଙ୍କ ପ୍ରତି ଅଭିମାନ ପ୍ରସଙ୍ଗକୁ ନେଇ ।

କୃଷ୍ଣନାମ ଆଜଠାରୁ ମୋ ଶ୍ରବଣେ
ନ ଶୁଣାଇବଟି କେହି ଗୋ

ଆଉ ଗୋଟିଏ ଗୀତ ମଧ୍ୟ ସେ ଗାଇଥିଲେ । ସେ ଗୀତର ଧ୍ୱନି-ବୈଭବ ଅପୂର୍ବ । ସେଥିରେ ବର୍ଷାକାଳ ସଙ୍ଗେ ଶୃଙ୍ଗାର ରସ ମିଶି ତାଙ୍କ କଣ୍ଠରୁ ଝରି ଝରି ହୋଇ ଝରି ପଡ଼ୁଥିଲା ଅନୁପ୍ରାସମୟ ଶବ୍ଦ ଝଙ୍କାରରେ—

ଦମ୍ଭୋଳୀ ବାଦ୍ୟ ବାଜିଲା
କେକୀ ନର୍ତ୍ତନେ ନାଚିଲା
କାମରାଜା ବିଜେକଲା, ଧରାମାରେ
ଘନ ଘନ ସ୍ୱନ ଶୁଣି, ଛନ ଛନ ହେବ ମନ
ମୀନ କେତନ ଶରେ ଅପଘନ କମ୍ପନ
ଭବନ, କାନନ, ସମାନ, ମଣୁଥିବ ମୋ ଧନ···

ତା'ପରେ ଅଭିରାମ ଗୋଟିଏ ରହସ୍ୟମୟୀ ଭାବକୁ ନେଇ ନମ୍ବୁତ ଗୀତଟିଏ ଗାଇଲେ—

ସେ କ ସହଜେ ମିଳିବା ଧନରେ
ତାକୁ ଅଳପେ ପାରିବୁ ଧରି
କୋଟି କୋଟି ଛୋଡ଼ପଣ ହେଲେ ତୁଣ୍ଡ
ବୁଢ଼ୀଆଣୀ ସୂତା ସରିରେ ;
ତାକୁ ଅଳପେ ପାରିବୁ ଧରି ?

ତା'ପରେ ଆସର ଭିତରୁ କେହିଜଣେ ଅନୁରୋଧ କଲେ କମିକ୍ ଗୀତଟିଏ ଗାଇବାକୁ । ଅଭିରାମ ସାମାନ୍ୟ ହସି ସମାନ ଗାମ୍ଭୀର୍ଯ୍ୟରେ ଗାଇଲେ ହାସ୍ୟକର ଗୀତଟିଏ । ତା'ର କଥାବସ୍ତୁ ହେଲା – ଚମ୍ପୀନାମ୍ନୀ ଗୋଟିଏ ଛଇଛଟକନୀ ଗ୍ରାମ୍ୟନାରୀ ତା'ର ଗ୍ରାମବାସୀଙ୍କ ଉପରେ କପଟ ବିରକ୍ତି ଦେଖାଇ ନିଜର ଗୁ ଗୁଣ ନିଜ ତୁଣ୍ଡରେ ଗାଉଛି—

ଖାଲି ଚମ୍ପୀ ଚମ୍ପୀ, ଚମ୍ପୀ ଚମ୍ପୀ
ଚମ୍ପୀ କ'ଣ କାହା ବୋପାର ଖାଇଛି କ ?
କାହା ମାଆର ଖାଇଛି କ ?
କାହା କକାର ଖାଇଛି କ ?
କାହା ଖୁଡ଼ୀର ଖାଇଛି କ ?
(ତେବେ) ଖାଲି ଚମ୍ପୀ ଚମ୍ପୀ ଚମ୍ପୀ କଅଁ ଡାକପଡ଼ୁଛି ?
ଆଲୋ, ମୋ ଘରେ ମୁଁ ରହୁଛି,
ଯାହା ପାଉଛି ତା' ଖାଉଛି, ପିଉଛି
ଲୁଣ ଶାମୁକାଏ କାହାଠାରୁ କେବେ
ଉଧାର ମାଗିଛି କ ?
(ତେବେ) ଚମ୍ପୀ ଚମ୍ପୀ ଚମ୍ପୀ କଅଁ ଡାକପଡ଼ୁଛି ?

ସେହିଭଳି ଆଉ ଗୋଟିଏ କମିକ୍ ଗୀତ ମଧ୍ୟ ସେ ଗାଇଲେ । ସେଥିରେ ମଧ୍ୟ ଜଣେ ଗ୍ରାମ୍ୟ ବାରବିଳାସିନୀ ରସିକା ନିଜ ସମ୍ବନ୍ଧେ ଅହମିକା ଦେଖାଇ ଗାଉଛି—

ମୋତେ ଏମିତି ସେମିତି ପାଇଲ କି ?
ମୁଁ ତ ଭୁବନେଶ୍ୱରର ରସକୋଷ
ବଡ଼ଦାଣ୍ଡ ନଚମାଇଲ କି !

ଏହ୍ୱାପରେ ସେଦିନ ଗୀତ ଆସରଟି ସମାପ୍ତ ହେଲା । ଶେଷରେ ଚୂଡ଼ାଘଷା, ସୁଜିଖିରି ଓ ଡାଲେମା ଖାଇସାରି ସମସ୍ତେ ଯେଝା ଘରକୁ ଫେରିଲୁ । କିନ୍ତୁ ସେଦିନ ରାତିରେ ମତେ ଆଦୌ ନିଦ ହେଲାନାହିଁ । ମୋତେ ବଡ଼ ଉଚାଟ ଲାଗିଲା । ମୋ ମନ ଇହଲୋକରୁ କୋଉ ଏକ ଗନ୍ଧର୍ବ ଲୋକକୁ ଉଡ଼ି ଯାଇଥିଲା ଏବଂ ସେହି ଲୋକର ବହୁ ବିଚିତ୍ର ଅପରୂପ ଦୃଶ୍ୟ ମୋ ଭିତରର ଆଖିଆଗରେ ଖୋଲି ଯାଉଥିଲା । ବହୁ ସୂକ୍ଷ୍ମ ରାଗରାଗିଣୀ ଓ ସ୍ୱର ମୂର୍ଚ୍ଛନା ସବୁ ମୋ ଭିତରେ ସ୍ପନ୍ଦିତ ହୋଇ ଉଠିଥିଲେ ଏବଂ ସେହି ରାତି ପରେ ପୃଥିବୀ ମୋ ଲାଗି ଆଉ ଗୋଟିଏ ଦିଗରୁ ଅନୁଭବମୟ ହୋଇଗଲା । କିଛିଦିନଯାଏ ମତେ ଲାଗିଲା—ଯେପରିକି ମୋ ଚାରିପଟେ ସବୁଠାରେ ଖାଲି ସଙ୍ଗୀତର ମୂର୍ଚ୍ଛନା ଗୁଞ୍ଜରୁଛି । ଏ ପର୍ଯ୍ୟନ୍ତ ମୋର ରୂପବୋଧ ଆସିଥିଲା । ସେଇ ଦିନଠାରୁ ସ୍ୱରବୋଧ ଆସିଗଲା ଏବଂ ବିଚିତ୍ର କଥା ଯେ, ମୁଁ ନିଜେ ମଧ୍ୟ ସେଇ ଦିନଠାରୁ ଗୀତ ଗାଇ-ପାରିଲି । ଶୁଣାଗୀତମାନଙ୍କର ସୁର୍ ମୋ ଭିତରେ ଗୁଆଁ କୁଗୁଆଁ ରହିଗଲା । ସେହି ଦିନଠାରୁ ମୋ ନିଜ ହୃଦୟର ବହୁ ଅବୋଧ ଅପ୍ରକାଶ୍ୟ ଆବେଗ ଓ ଅନୁଭବମାନ କୌଣସି ଶୁଣା ଗୀତର ସୁର୍ ସଙ୍ଗେ ମୁଁ ମିଶାଇ ଦେଇପାରିଲି । ପୁଣି ନିଜକ ନିଜର ହୋଇ ବହୁ ଗୋପନ ବେଦନା, ଯାହା କସ୍ମିନକାଳେ ଭାଷା ମାଧ୍ୟମରେ ମୁଁ ପ୍ରକାଶ କରିପାରନ୍ତି ନାହିଁ, ସେଗୁଡ଼ିକୁ ବିଭିନ୍ନ ସୁର୍ ଭିତର ଦେଇ ଗାଇ ଦେଇପାରିଲି । ଅଥବା ଅନ୍ୟର ଗାନ-ସ୍ରୋତରେ ମିଶାଇଦେଇ ନିଜେ ତାକୁ ବାହାରର ବିଷୟ ରୂପେ ଆଉଥରେ ସଚେତନ ଭାବେ ଅନୁଭବ କରିପାରିଲି । ପ୍ରକୃତରେ ସଙ୍ଗୀତ ଠାରୁ ବଳି କଳାଜଗତରେ ଆଉ ସୂକ୍ଷ୍ମ କଳା ନାହିଁ । ସଙ୍ଗୀତ ହିଁ ଜାଣ କଳା-ସାମ୍ରାଜ୍ୟରେ ମହାରାଣୀ ଏବଂ ଏହି ଅଭିରାମଙ୍କ ଭଳି ଅଭିଶପ୍ତ ଗନ୍ଧର୍ବମାନଙ୍କ କୃପାରୁ ସେହି ମହାରାଣୀଙ୍କ ସଙ୍ଗେ ସାକ୍ଷାତ ହୁଏ ।

ଘୁଡ଼ନ୍ତୁ ମୋ କଥା । ଅଭିରାମ ପରଡ଼ା ସେଶ୍ବ ଜାତିର ମଣିଷ, ଯୋଉ ଜାତିରେ ଉତ୍କଳ ବ୍ୟାସ ଶୂଦ୍ରମୁନି ମହାକବି ସାରଳା ଦାସ ଜନ୍ମ ହୋଇ ମହାଭାରତ ଲେଖିଥିଲେ । ହଳଯାକ ବଳରେ ହଳବୁଲାଇବା ହାତ କେମିତି ଗାତରେ ଲେଖନୀ ଧରି ଏତେବଡ଼ ମହାକାବ୍ୟ ଲେଖି ପାରିଲା ଓ ଓଡ଼ିଶାର ଆଦିକବିର ଆସନକୁ ଅଳଂକୃତ କଲା ? 'ଓଡ୍ର' ଶବ୍ଦରୁ ଓଡ଼ିଶା ହୋଇଛି ନା ? ଓଡ୍ର ଶବ୍ଦର ମାନେ ତ ଚଷା । ଓଡ଼ିଶା ପ୍ରକୃତରେ ଚଷାଙ୍କ ରାଜ୍ୟ । ଏଠି ରଜା ବି ଚଷା, କବି ମଧ୍ୟ ଚଷା ଓ ଏହାର ସଂସ୍କୃତି ମଧ୍ୟ ଚଷାଙ୍କ ସଂସ୍କୃତି । ଓଡ଼ିଶାର ଧରିତ୍ରୀ ମା ସାରଳା ମଧ୍ୟ କିଷ୍ଟପୁ ଗୃହିଣୀ । ଆଜ ଏଠାରେ ଆଦି ବ୍ରାହ୍ମଣ ପୁରୋହିତମାନେ ତ ହଳୁଆ ବ୍ରାହ୍ମଣ ବା ମାସ୍ତାନ ବ୍ରାହ୍ମଣ । ଏଠିକି ଶାସନୀ-ବ୍ରାହ୍ମଣମାନେ ସିନା କାନ୍ୟକୁବ୍‌ଜରୁ ଆସିଥିଲେ ! ଖଣ୍ଡାୟତମାନେ, କରଣମାନେ କୋଉଠୁ ଆସିଥିଲେ ? ଜଗନ୍ନାଥ ଦାସଙ୍କୁ ଛାଡ଼ିଦେଲେ ଅନ୍ୟ ଚାରି ସଖାମାନେ କୋଉ ଦେଶରୁ ଏଠିକି ଆସିଥିଲେ ? ରାୟ ରାମାନନ୍ଦ, ମାଧବୀ ଦାସୀ କୋଉ ଦେଶରୁ ଆସିଥିଲେ ? ଭକ୍ତ ଚରଣ ଓ ଖାମବୋଇ କୋଉ ଦେଶରୁ ଆସିଥିଲେ ?

କିନ୍ତୁ ଅଭିରାମ ପରଡ଼ା ତାଙ୍କ ସଙ୍ଗୀତ ପାଇଁ ବିଖ୍ୟାତ ହୋଇ ନ ଥିଲେ । ସେ ଥିଲେ ଜଣେ କୁଶଳୀ ଅଭିନେତା । ପିଲାଦିନୁଁ ସେ ଗୋଟିଏ ନାମକରା ଯାତ୍ରା ପାର୍ଟିରେ ସଖୀ ପିଲା ହୋଇ ଗାଉଥିଲେ ଓ ନାଚୁଥିଲେ । କିଶୋର ବୟସରେ ସେ ନାୟିକା ଭୂମିକାରେ ଚମତ୍କାର କୃତିତ୍ୱ ଦେଖାଇଥିଲେ । ତା' ପରେ ସେ ବାହାହେଲେ । ତାଙ୍କର ଦୁଇଟି ପିଲା ହେଲେ । ଘରେ ମାତ୍ର ସାମାନ୍ୟ ଜମିଜମା ଥିଲା । ସାନ-ଭାଇଟି ମଧ୍ୟ ବାହାହେଲା । ତା'ର ମଧ୍ୟ ପିଲା ହେଲେ । ବୁଢ଼ାବାପା, ବୁଢ଼ୀ ମା, ସଂସାର ବଢ଼ିବାରୁ ଘର ଚଳିଲା ନାହିଁ । ଧୋଇଆ ମୂଲକ । ସବୁବର୍ଷ ଧୋଇଯାଏ ଫସଲ । ଅଭିରାମ ବାଧହୋଇ ସେ ପାର୍ଟିଛାଡ଼ି ଫେରି ଆସିଲେ ଗ୍ରାମକୁ । ଏବଂ କଷ୍ଟେଙ୍କିନ ଅନ୍ୟ ଜମିରେ ମୂଲଲାଗି ସଂସାର ଚଳାଇଲେ । ସେତେବେଳେ ତାଙ୍କ ଗାଁ ପାଖ ପଦନପୁରରେ ଗୋଟିଏ ନୂଆ ଯାତ୍ରାପାର୍ଟି ହୋଇଥାଏ, ଗରିବ ଚାଷୀମାନଙ୍କ ଗାଁ । ପାର୍ଟିଟି ମଧ୍ୟ ଖୁବ୍

ଅଭାବ ଅସୁବିଧାରେ ଚାଲୁଥାଏ । ସେଇ ପାର୍ଟିରେ ଓସ୍ତାଦ ରୂପେ ଯୋଗ ଦେଲେ ଅଭିରାମ । ପିଲାମାନଙ୍କୁ ନୃତ୍ୟ, ଗୀତ ଓ ଅଭିନୟ ଶିଖାଇଲେ । ଏବଂ ନିଜେ ସବୁବେଳେ ରାଜା ଭୂମିକାରେ ଓହ୍ଲାଇଲେ । ଗରିବ ଦଳ । ଭଲ ପୋଷାକପତ୍ର ନ ଥାଏ—କି ଭଲ ବାଦ୍ୟ ବାଦକ ନ ଥାନ୍ତି । ତଥାପି ଅଭିରାମଙ୍କ ଯୋଗୁଁ ଦୁଇ ତିନିବର୍ଷ ଭିତରେ ପଦନପୁର ଯାତ୍ରାଦଳ ଆମ ସେଠା ଅଞ୍ଚଳରେ କିଛି ନାମ ଯଶ ଅର୍ଜନ କଲେ । ଚୁଡ଼ା ଢୁଡ଼ୁମ ନଡ଼ିଆ ଜଳଖିଆ ଓ ରାତିକେ ମାତ୍ର ପାଞ୍ଚୋଟି ଟଙ୍କା । ତେଣୁ ପାଖାପାଖି ପର୍ବପର୍ବାଣୀରେ ବିଭିନ୍ନ ମେଳା ମେଳଣରେ ଛୋଟ ଛୋଟ ଗ୍ରାମର ଅଧିବାସୀମାନେ ପଦନପୁର ଯାତ୍ରାବାଲାଙ୍କୁ ରାତିଏ ଦିରାତି ଯାତ୍ରା କରିବାକୁ ଡାକନ୍ତି ।

କିନ୍ତୁ କ୍ରମଶଃ ଘରେ ଅଭାବ ବଢ଼ି ଚାଲିଲା । ନିଜଗାଁରେ ମୂଲପାତି ମିଳିଲା ନାହିଁ । ଅଭିରାମ ଆମ ଗାଁରେ ଆସି ବୈକୁଣ୍ଠ ମିଶ୍ରଙ୍କ ଘରେ ହଳିଆ ଚାକିରି କଲେ । ବୈକୁଣ୍ଠ ମିଶ୍ରଙ୍କ ସଙ୍ଗେ ଏତିକି ସର୍ତ୍ତ ଥିଲା ଯେ ଯାତ୍ରା କରିବାଲାଗି କୋଉଠୁ ବଇନା ବା ନିମନ୍ତ୍ରଣ ଆସିଲେ, ସେ ସେଇ କେଇଦିନ ଛୁଟିରେ ଯିବେ । ବୈକୁଣ୍ଠ ମଉସା ଖୁବ୍ ଆନନ୍ଦରେ ଅଭିରାମଙ୍କୁ ଘରେ ରଖିଲେ ! ଦିନଯାକ ହଳବାଡ଼ରେ କାମ ଓ ରାତିରେ ଦିନେ ଦିନେ ସଙ୍ଗୀତ ଆସର । ଅଭିରାମ ଆମ ଗାଁରେ ବେଶ୍ ଜନପ୍ରିୟ ହୋଇ ଉଠିଲେ । ରହୁ ରହୁ ଦୁଇବର୍ଷ ରହିଗଲେ ଅଭିରାମ ବୈକୁଣ୍ଠ ମଉସାଙ୍କ ଘରେ । ମୁଁ ଓ ମାୟାଧର ବହୁବେଳେ ତାଙ୍କ ପାଖେ ଯାଇ ବସୁ । ମାୟାଧର ତାଙ୍କଠାରୁ ଗୀତ ଶିଖେ । ସେ ବହୁତ ପୌରାଣିକ କାହାଣୀ ସମ୍ବଳିତ ଯାତ୍ରାବହି ମୁଖସ୍ଥ କରିଥାନ୍ତି । ଦିନେ ଦିନେ ବର୍ଷାରାତିରେ ସେ ଗୋଟା ଗୋଟା ବହି ଆମ ଆଗରେ ଗାଇଯାନ୍ତି । ଏବଂ ନିଜ ଭଙ୍ଗୀରେ ରାଜା ରାଣୀ, ଜେମା, ସେନାପତି, ଦୁଆରୀ, ବିଦୁଷକ, ସମସ୍ତଙ୍କର ବଚନିକା ଓ ଗୀତଗୁଡ଼ିକ ଯଥାର୍ଥ ଭାବେ କହନ୍ତି ଓ ବୋଲନ୍ତି । କ୍ରମଶଃ ସେ ଆମ ଗାଁର ଅଧିକାଂଶ ପିଲାଙ୍କର ଅତି ପ୍ରିୟ ହୋଇ ଉଠିଲେ । ମୋର ଧ୍ରୁବ ବିଶ୍ୱାସ ଥାଏ ଯେ ସେ ଜଣେ ଅଭିଶପ୍ତ ଗନ୍ଧର୍ବ, ଶାପପାଇ ସେ ବର୍ତ୍ତମାନ ଆମ ଗାଁରେ ହଳିଆ ଚାକିରି କରିଛନ୍ତି । ତାଙ୍କୁ ଦେଖିଲା ମାତ୍ରେ ହିଁ ମୋ ଚିତ୍ତରେ ଆନନ୍ଦ ଉନ୍ମାଦନା ଉଚାଟ ଭରିଯାଏ ।

ଆମ ସମସ୍ତଙ୍କର ଖୁବ୍ ଇଚ୍ଛା ଥାଏ—ଆମେ କେମିତି କୌଣସି ଯାତ୍ରାରେ ଅଭିରାମଙ୍କୁ ରଜା ଭୂମିକାରେ ଓହ୍ଲାଇବାର ଦେଖିବୁ । ଆମେ ତାଙ୍କୁ ସେ କଥା କହିଲେ—ସେ ସାମାନ୍ୟ ହସି ଦିଅନ୍ତି । କହନ୍ତି—ହଉ୍ରାତକର । ଦିନେ ଦେଖିବ । ବହୁଦିନ ଗତ ହୋଇଗଲା । ଅଭିରାମଙ୍କର ରଜା ଅଭିନୟ ଦେଖିବାର ସୁଯୋଗ ଘଟୁ ନ ଥାଏ ।

ଦିନେ କିନ୍ତୁ ଆସିଲା ସେ ସୁଯୋଗ । ସୁଯୋଗ ନା ଦୁର୍ଯୋଗ ? ମୋ ଜୀବନରେ ଯୋଗ ମାନେଇ ଦୁର୍ଯୋଗ । କିନ୍ତୁ ସେଇ ଦୁର୍ଯୋଗ ମୋର ଶୂନ୍ୟଥାଳକୁ ପୂର୍ଣ୍ଣକରି ଯାଏ ।

ଆମ ଗାଁର ଇଷ୍ଟଦେବତା ବ୍ରହ୍ମାଙ୍କ ପାଖରେ ପ୍ରତିବର୍ଷ ବୈଶାଖ ମାସରେ ଗୋଟିଏ ଭାଗବତ ମେଳନ ହୁଏ । ସେତେବେଳେ ଖୁବ ଜାକ ଜମକରେ ହେଉଥିଲା । ଦୁଇରାତି ମେଳନରେ ଦୁଇରାତି ଯାତ୍ରା ମଧ୍ୟ ହୁଏ । ଭଲ ଭଲ ନାମଜାଦା ଯାତ୍ରାବାଲା ଆସନ୍ତି । ହଜାର ସଂଖ୍ୟାରେ ଦେଖଣାହାରୀ ମଧ୍ୟ ଆସି ରୁଣ୍ଡ ହୁଅନ୍ତି । ଆମ ଗ୍ରାମବାସୀମାନେ ନିଜ ଭିତରେ ଚାନ୍ଦାଚେନ୍ଦା କରି ଏ ଯାତ୍ରାର ଖର୍ଚ୍ଚ ତୁଲାନ୍ତି । କିନ୍ତୁ ଆମେ ସେ ଗ୍ରାମର ଜମିଦାର ମକଦ୍ଦମ ଥିବାରୁ ଆମ ଉପରେ ଅଧିକା ଚାନ୍ଦା ସହ ଅଧିକା ଦାୟିତ୍ୱ ମଧ୍ୟ ଥାଏ । ଗ୍ରାମର ପ୍ରତ୍ୟେକ ଧନୀ ଲୋକ ଘରେ ଜଣେ ଯାତ୍ରାବାଲା ଦିନରେ ବେଳେ ଓ ରାତିରେ ବେଳେ ଖା'ନ୍ତି । କିନ୍ତୁ ଆମଘରେ ଏ ଓଳି ସେ ଓଳି ପ୍ରାୟ ଚାରିଜଣ ଯାତ୍ରାବାଲା ଖା'ନ୍ତି—ଯେ ରଜା ପାର୍ଟ କରନ୍ତି ଯେ ରାଣୀ ପାର୍ଟ କରନ୍ତି—ବିଦୂଷକ ମହାଶୟ ଓ ସ୍ୱୟଂ ଯାତ୍ରା ପାର୍ଟିର ସଞ୍ଚାଳକ ନିର୍ଦ୍ଦେଶକ ବା ଓସ୍ତାଦ ମହୋଦୟ । ସେମାନଙ୍କ ଲାଗି ସ୍ୱତନ୍ତ୍ର ଭାବେ ଡାଲି ତରକାରି ହୁଏ । ମାଛ କାଳିଆ ରନ୍ଧାଯାଏ । ମୋର ସବା ସାନ କକେଇ ଥିଲେ ସେତେବେଳେ ପଚିଶି ଛବିଶି ବର୍ଷର ଯୁବକ । ଆମର ବିରାଟ ଏକାନ୍ନବର୍ତ୍ତୀ ପରିବାରର ନେତୃତ୍ୱ କ୍ରମଶଃ ତାଙ୍କ ହାତକୁ ଆସି ଯାଇଥିଲା । କାରଣ ମୋର ବାପା, ବଡ଼େଇ ଓ ଅନ୍ୟ କକେଇ ଦୁଇଜଣ ବୁଢ଼ା ହୋଇ ଆସିଥିଲେ । ତା'ଛଡ଼ା ଗ୍ରାମକୁ କ୍ରମଶଃ ଆଧୁନିକ ସଭ୍ୟତା ପଶି ଆସୁଥିଲା । ସାନ କକେଇ ଥିଲେ ଆମ ସାଇରେ ସବୁଠାରୁ ଆଧୁନିକତମ ଶିକ୍ଷିତ ଓ ମାର୍ଜିତ

ବ୍ୟକ୍ତି । ଗାଁ ଲୋକେ ତାଙ୍କୁ ଭୟ କରୁଥିଲେ—ଶ୍ରଦ୍ଧା ମଧ୍ୟ ଦେଖାଉଥିଲେ । ତାଙ୍କର ଚେହେରା ମଧ୍ୟ ଥିଲା ପ୍ରକୃତରେ ରାଜପୁତ୍ର ସଦୃଶ୍ୟ । ସେ ମାଛମାର ପାଣ୍ କରିଥିଲେ ଓ ଗୋଟିଏ ଗ୍ୟାଲେ ସାଇକେଲ ଚଢ଼ି ଚଳପ୍ରଚଳ ହେଉଥିଲେ । ସାପ୍ତାହିକ ସମାଜ, ଲୋକମତ, ନବଭାରତ, ପ୍ରଜାତନ୍ତ୍ର ଇତ୍ୟାଦି ପଢ଼ୁଥିଲେ । ସେ ସାମାନ୍ୟ ଇଂରେଜୀ ସହ ବଙ୍ଗଳା ଭାଷା ଖୁବ୍ ଭଲଭାବେ ଜାଣିଥିଲେ । ସେ ସେତେବେଳେ ବର୍ଷକୁ ପାଞ୍ଚ ଛଅଥର କଟକ, ପୁରୀ, ଭଦ୍ରଖ ଏବଂ ଅନ୍ତତଃ ଥରେ କଲିକତା ଯାଇ ବୁଲି ଆସୁଥିଲେ । ଭଦ୍ରଖ ଦେଇ କଲିକତା ସହିତ ତାଙ୍କର ଧାନ ଓ ନଡ଼ିଆ ବ୍ୟବସାୟ ମଧ୍ୟ ଥିଲା ଜଣେ ମୁସଲମାନ ଭଦ୍ରଲୋକଙ୍କ ସାଙ୍ଗେ ମୁଖ୍ୟ ପାର୍ଟନର ହିସାବରେ । ସେ ମଧ୍ୟ ତତ୍କାଳୀନ ଇଂରେଜ ସରକାରଙ୍କ ଦ୍ୱାରା ଗ୍ରାମର ପ୍ରେସିଡେଣ୍ଟ ହିସାବରେ ମନୋନୀତ ହୋଇଥିଲେ । ତାଙ୍କ ଚେହେରା ସଦୃଶ ତାଙ୍କର ପୋଷାକ ମଧ୍ୟ ଥିଲା ଖୁବ୍ ଫେସନଭରା । ଭାରି ସୁନ୍ଦର ସରୁ ସଫା ଧୋତି ସାଙ୍ଗକୁ ସେ ମଠା ବା ସିଲ୍କ ପଞ୍ଜାବୀ ପିନ୍ଧୁଥିଲେ । କେବେ ବା ଅଧାଗଞ୍ଜି ପିନ୍ଧି, ପାଟଲା ଗୋଲାପି ଚାମୁଚ୍ଚ କାନ୍ଧରେ ପକାଇ, ସିଙ୍ଗଚୁଳିଆ କଠାଉ ବା ଚମଡ଼ା ଚଟି ମାଡ଼ି ସେ ଗାଁ ଦାଣ୍ଡରେ ଯିବା ଆସିବା କରୁଥିଲେ । କଲିକତା ଥରେ ଗଲେ ସେ ନିଜପାଇଁ ଓ ଆମ ପିଲାମାନଙ୍କ ପାଇଁ ବହୁ ପ୍ରକାର କୁର୍ତ୍ତା ଓ କୋଟ୍ ପ୍ରଭୃତି କିଣି ଆଣୁଥିଲେ । ଆମେ ତାଙ୍କୁ ବହୁତ ଡରୁ । କାରଣ, ସେ ଆମକୁ ଯେତିକି ସ୍ନେହ କରୁଥିଲେ, ସେତିକି ମଧ୍ୟ କଡ଼ା ଶାସନ କରୁଥିଲେ । ସେ ଗୋଟାଏ ପାଟି କରିଦେଲେ, କିମ୍ବା ସାମାନ୍ୟ ଭ୍ରୂକୁଞ୍ଚନ କରିଦେଲେ ଆମର ପିଳେହି ପାଣି ହୋଇ ଯାଉଥିଲା । ଗାଁ ବାଲା ମଧ୍ୟ ତାଙ୍କୁ ବେଶ୍ ଡରୁଥିଲେ । ଆମ ଗାଁର ଯାମାଯାତ୍ରା ଓ ମେଳନାଦି ବ୍ୟାପାରରେ ତାଙ୍କର ସିଦ୍ଧାନ୍ତ ଓ ଆଦେଶଥିଲା ସେତେବେଳେ ଚୂଡ଼ାନ୍ତ । ଯାତ୍ରା ଭିତରେ ପାଟିତୁଣ୍ଡ ହେଲେ ସେ ଠିଆହୋଇ ଯିବାମାତ୍ରେ ସବୁ ନିସ୍ତବ୍ଧ ହୋଇ ଯାଉଥିଲା ।

କେମିତି କେଜାଣି, ସେବର୍ଷ ଆମ ବ୍ରହ୍ମାଙ୍କ ମେଳନକୁ ସଦନପୁରିଆ ଯାତ୍ରାବାଲାଙ୍କୁ ଯାତ୍ରା କରିବାକୁ ନିମନ୍ତ୍ରଣ କରାଗଲା । ସେହି ଦଳର ଓସ୍ତାଦ୍ ଓ ରାଜା ଥିଲେ ଆମର ପରମଶ୍ରଦ୍ଧେୟ ଅଭିଶପ୍ତ ଗନ୍ଧର୍ବ ଅଭିରାମ

ପରିଡ଼ା । ସେ ତ ସେତେବେଳକୁ ଆମ ଗ୍ରାମରେ ହଳିଆ ଚୂକର କରିଥାନ୍ତି । ତନିଗିର ଯାହା ହେବ—ଆମର ପ୍ରିୟତମ ଅଭିରାମ ତନି-ତନିଟା ରଜା ଭୂମିକାରେ ଓହ୍ଲାଇବେ—ଆଉ ତାଠାରୁ ଆନନ୍ଦର କଥା କ'ଣ ଥାଇପାରେ ? ଅବଶ୍ୟ ସେତେବେଳେ ଆମ ଗାଁରେ ପଦନପୁରିଆ ଯାହାଦଳ ଖଡ଼ାଖିଆ ପାର୍ଟି ବୋଲି ନାଁଥିଲେ । ଅଭିରାମ ପରିଡ଼ାଙ୍କୁ ଶୁଣାଇ ଶୁଣାଇ କଲିକତା ଫେରନ୍ତ ଶୋଭା ମାଉସୀଙ୍କ ପ୍ରେମିକ ରହି କରି ପାର୍ଟୀ କହୁଥିଲେ—ଆରେ ପଦନପୁର ଗାଁରେ ଗୋଟାଏ ପଇତାପକା ଲୋକ ନାହାଁନ୍ତି—କି ଗୋଟେ ଲକ୍ଷଣଧରି ଲୋକ ନାହାଁନ୍ତି । ସେଗୁଡ଼ାକ ହେଲେ ସକାଳୁ ଲଙ୍ଗଳେଂ ଯାନ୍ତି, ଚୋରିଣିଃ ହେମ କାକଇଃ । ସେମାନେ କି ଯାହା କରିବେ ? ଅଭିରାମ ତା' ଶୁଣି କିଛି ପ୍ରତିବାଦ ନ କରି ଅତ୍ୟନ୍ତ ଭଦ୍ର ଗମ୍ଭୀର ହୋଇ ସାମାନ୍ୟ ହସିଦିଅନ୍ତି । ମୋ ମନ କ୍ଷୋଧ ଓ ଅନୁ-ଶୋଚନାରେ କୁତୁକୁତା ହୋଇଯାଏ । ଅଭିରାମ ପରିଡ଼ାଙ୍କୁ ମୁଁ ମୋ ମୁଣ୍ଡ ଉପରେ ବସାଇଥାଏ । ତାଙ୍କର ସାମାନ୍ୟ ଅବମାନନା ମୋ ପକ୍ଷରେ ଅତ୍ୟନ୍ତ ଅସହ୍ୟ ।

ଯାହା ହେଉ, ପ୍ରଥମ ରାତିରେ ହେଲା "ମହାଦାନୀ ହରିଶ୍ଚନ୍ଦ୍ର ।" ଅଭିରାମ ହରିଶ୍ଚନ୍ଦ୍ର ସାଜିଥିଲେ । ଓଃ ! କି ସୁନ୍ଦର ଆଉ ଚମତ୍କାର ଅଭିନୟ କଲେ ସେ ! ସେ ରାତିରେ ପେଟ୍ରୋମାକ୍ସ ଆଲୁଅରେ ରାଜାବେଶ ଧରି ଅଭିରାମଙ୍କୁ ଦେଖି କିଏ ବିଶ୍ୱାସ କରିବ ଯେ ଏଇ ଲୋକ ଆଜି ଦିନବେଳା ସକାଳୁ କଂସାଏ ପଖାଳ ଓ କଞ୍ଚାଲଙ୍କା ସଙ୍ଗେ ତିନୁଳି ଚକଟା ଖାଇ ଲଙ୍ଗଳ ଧରି ମୁଣ୍ଡରେ ଠେକାଟାଏ ବାନ୍ଧି ଗହୀରକୁ ଯାଇ ହଳ ବୁଲାଉ ଥିଲା ? ସମାଜ ଉପରକୁ ସେ ବାହାରିବା ମାତ୍ରେ, ଆମେ ଆନନ୍ଦ ଉନ୍ମାଦନାରେ ତାଳି ମାଡ଼ି କଲୁ ଓ ତା'ଶୁଣି ଶହଶହ ହାତରେ ସ୍ୱତଃ ତାଳିବାଜି ଆମର ପ୍ରିୟ ଅଭିନେତାଙ୍କୁ ସମ୍ବର୍ଦ୍ଧନା ଜଣାଇ ଦିଆଗଲା । କିଛି ସମୟ ଗଲା—ହଠାତ୍ ମୋର ଆଖିରେ ପଡ଼ିଲା ଯେ ରଜା ହରିଶ୍ଚନ୍ଦ୍ରଙ୍କ ପୋଷାକ ପତ୍ର ଯେମିତି ହେବା ଉଚିତ, ତା' ହୋଇ ନାହିଁ । ତା' ଛଡ଼ା ସବୁଠାରୁ ଶୋଚନୀୟ କଥା ହେଲା ରଜାଙ୍କ ପାଦରେ ଯୋତା ନାହିଁ । ମୋ ମନଟା ଅଭିରାମଙ୍କ ଲାଗି ଭାରି ଉଦାସ ହୋଇଗଲା ।

ଏବଂ ମୋର କାଳ ଭୁଣ୍ଡରେ ସେ କଥାଟା ପ୍ରଘଟ ହୋଇଗଲା, ଯେ, ରାଜାଙ୍କ ପାଦରେ ହଲେ ଯୋତା ପିନ୍ଧିବା ନ ଚାଲେ ନିଶ୍ଚୟ ।

ତା' ପରଦିନ । ଆମ ଗାଁରେ ଲୋକେଇଙ୍କ ମୁଣ୍ଡକୁ ଜୁଟିଲା ଯେ ବାଘନାଚ ହେବ । ଆଉ ରାତିଏ ଅଧିକା ଯାତ୍ରା ହେବ ବିଜୟୀ ଦଳ ଦ୍ୱାରା । ବିଜୟୀ ଦଳକୁ ପଚିଶ ଟଙ୍କା ସହ ଗୋଟିଏ ଶାଢ଼ୀ ଓ ଗୋଟିଏ ପାଟଲୁଗା ପୁରସ୍କାର ଦିଆଯିବ । ଆମ ଗାଁ ଠାରୁ ଦଶ ମାଇଲ ଦୂରରେ ଆଉ ଗୋଟିଏ ବିଖ୍ୟାତ ଯାତ୍ରାଦଳ ଥିଲେ । ଜଣେ ଲୋକ ସାଇକେଲରେ ମାଧପୁର ଯାଇ ସେମାନଙ୍କୁ ଆଣି ରାତି ଘଡ଼ିକ ସୁଦ୍ଧା ଆମ ଗାଁରେ ହାଜର କରାଇଲା । ସେ ରାତିରେ ପ୍ରଥମେ ଅଭିରାମଙ୍କ ଦଳ ଯାତ୍ରା କଲେ । ସମାଜ ଥିଲା 'ନଳ ଦମୟନ୍ତୀ' । ଅଭିରାମ ନିଜେ ରାଜା ନଳଙ୍କ ଭୂମିକାରେ ଓହ୍ଲାଇଥିଲେ । ରାତି ଅଧବେଳକୁ ସୁଆଙ୍ଗ ସରିଗଲା । ମାତ୍ର ସେ ରାତିରେ ମଧ୍ୟ ନଳଭୂମିକାରେ ଅଭିରାମ ଯେତେ ସୁନ୍ଦର ଅଭିନୟ କଲେ ମଧ୍ୟ ଲୋକମାନଙ୍କର ମନଃପୂତ ହେଲା ନାହିଁ । ସମସ୍ତେ କହିଲେ — ନଳ ଭଳି ରାଜାର ମୁଣ୍ଡରେ ମୁକୁଟ ନାହିଁ କି ପାଦରେ ଯୋତା ନାହିଁ— ପୋଷାକ ପତ୍ର ତଥୈବଚ । ଦେଖଣାହାରୀଙ୍କ ମନକୁ ଛୁଇଁବ କିପରି ? ତା' ଛଡ଼ା, ବିଖ୍ୟାତ ମାଧପୁରିଆ ଯାତ୍ରାପାର୍ଟି ପହଞ୍ଚି ଯିବାରୁ ଲୋକମାନେ ସେ ଦଳର ନାଚ ଦେଖିବାକୁ ଉତ୍କଣ୍ଠିତ ହୋଇ ଉଠିଲେ । ଅଭିରାମ ପରଡ଼ା, ଯେତେହେଲେ ଗାଁ କନ୍ୟା ସିଙ୍ଘାଣିନାକୀ । ତା'ଛଡ଼ା ସବାକୁ ଲଙ୍ଗଳେଂ ଯାନ୍ତୁ, ତୋରାଣିଃ ହେମ କାକରଃ ।

ମାଧପୁର ଯାତ୍ରାଦଳ ଖୁବ୍ ସ୍ୱଚ୍ଛଳ ଓ ସେଥିରେ ଖାନଦାନୀ ଘରର ଅଭିନେତାମାନେ ଥିଲେ । ସେମାନେ ଅଧିକାଂଶ ଉପବୀତଧାରୀ ଓ ଲଙ୍ଗନଧାରୀ ଶ୍ରେଣୀର ଲୋକ । ସେମାନେ ରାତିକେ ପଚିଶି ଟଙ୍କା ନେଉଥିଲେ । ହୁଡ଼୍ମ୍ ଓ କଡ଼ିଆ ପରିବର୍ତ୍ତେ ପୁରୀ ତରକାରୀ ଜଳଖିଆ ଖାଉଥିଲେ । ସେମାନଙ୍କର ପୋଷାକ ପତ୍ର ଖୁବ୍ ଦାମିକା ଆଉ ଝଲମଲ ଦିଶୁଥିଲା । ସେମାନଙ୍କର ରାଜାମାନେ ପଗଡ଼ୀ ଉପରେ ଗୋଟାଏ ଝକମକ ମୁକୁଟ ମଧ୍ୟ ପିନ୍ଧୁଥିଲେ । ଏବଂ ସେନାପତିଙ୍କ ପୋଷାକ ଥିଲା ବେଣ୍ଟିକ୍ ବା ହେଷ୍ଟିଙ୍ଗ୍ସଙ୍କ ପୋଷାକ ପରି । ସେମାନଙ୍କର ରାଜା, ମନ୍ତ୍ରୀ

ରାଜକୁମାର ଓ ସେନାପତିମାନେ ଖୁବ୍ ଗୋରା ଦିଶୁଥିଲେ । ରାଣୀ ଓ ଜେମାମାନେ ଖୁବ୍ ସୁନ୍ଦରୀ ଥିଲେ । ସେମାନଙ୍କର ବାଦ୍ୟ ସରଞ୍ଜାମ ମଧ୍ୟ ବହୁତ ଅଧିକ ଥିଲା । ସେମାନେ ଢୋଲକ ସାଙ୍ଗେ ଗୋଟାଏ ଡ୍ରମବାଜା ମଧ୍ୟ ବଜାଉଥିଲେ । ଏବଂ କ୍ଲାରିଓନେଟ୍ ବୋଲି ଗୋଟାଏ ବଂଶୀ ଅଦ୍ଭୁତ ମଧୁର ବାଜା ମଧ୍ୟ ବଜାଉଥିଲେ । ପ୍ରକୃତିରେ ସେମାନଙ୍କୁ ଦେଖିଲେ ମନେ ହେଉଥିଲା ଯେ ସେମାନେ ସମସ୍ତେ କେହି ଯାତ୍ରାବାଲା ନୁହନ୍ତି । ସତିକୁ ସତ ରାଜା, ମନ୍ତ୍ରୀ ଓ ସେନାପତି । ତା'ଛଡ଼ା ତାଙ୍କ ଓସ୍ତାଦ୍ ମଧ୍ୟେ ମଧ୍ୟେ ପାସିଂ ଶୋ ସିଗ୍ରେଟ ମଧ୍ୟ ଖାଉଥିଲେ । ସେତେବେଳେ ମଫସଲକୁ ସିଗ୍ରେଟ୍ ପ୍ରାୟ ଆସି ନଥାଏ । ଧଳା ପିକାର ମହିମା ଥିଲା ଗୋରାସାହାବଙ୍କ ପରି ।

ସେଦିନ ରାତିରେ ମୋର ସାନ କକେଇଙ୍କର ବରାଦରେ ଆଉ ଗୋଟାଏ ଡେଲାଇଟ୍ ମଧ୍ୟ ଘୁମୁଣ୍ଡିଆରେ ଟଙ୍ଗାଗଲା । ଉଜ୍ଜ୍ୱଳ ଆଲୋକରେ ମାଧପୁରିଆଙ୍କ ରଜା ଯେତେବେଳେ ଝଲମଲ ପୋଷାକ ଦାଉ ଦାଉ ମୁକୁଟ ପିନ୍ଧି, ମଚମଚ ଯୋତା ପିନ୍ଧି ଗର୍ବିତ ପାହୁଲମାନ ପକାଇ ତାଙ୍କର ମନ୍ତ୍ରୀ ଓ ସେନାପତି ପ୍ରଭୃତିଙ୍କ ସଙ୍ଗେ ବଚନିକା ଆରମ୍ଭ କଲେ—ଦେଖଣାହାରୀଙ୍କ ଭିତରେ ହାତତାଳି ଆରମ୍ଭ ହୋଇଗଲା । ମୋର ମନ କିନ୍ତୁ କ୍ରମଶଃ ମରି ମରି ଯାଉଥାଏ । ସେମାନଙ୍କ ରାଜାଙ୍କୁ ଦେଖି ମୋର ଗୁରୁପଟେ ମୋ ସାଙ୍ଗମାନେ ଏବଂ କେତେକ ଦେଖଣାହାରୀ ମନ୍ତବ୍ୟ ଦେଲେ ଅତ୍ୟନ୍ତ ଉତ୍ଫୁଲ୍ଲ ଆଉ ଉତ୍ସାହିତ ହୋଇ—

ଯାଃକୁ ଯେ କହିବ ରାଜା ! ଠାଣି ଦେଖ, ମାଣି ଦେଖ, ପୋଷାକ ଦେଖ, ମୁକୁଟ ଦେଖ, ଖଣ୍ଡା ଦେଖ, ନଶ ଦେଖ, କଲି ଦେଖ, ଗଳା ଦେଖ, ବଚନିକା କେମିତି ଝାଡ଼ୁଛି ଦେଖ, କେମିତି ସିଂହଠାଣୀରେ ଠିଆ ହୋଇଛି ଦେଖ—କେମିତି ବେଖାତିର ଢଙ୍ଗରେ ଚାଲୁଛି ଦେଖ—କେମିତି କଥାକଥାକେ ଧଡ଼୍‌କିନା ଖଣ୍ଡାଉପରେ ହାତ ପକେଇ ଦେଉଛି ଦେଖ—କେମିତି ଗର୍ଜନ ଦେଖ—କେମିତି ତର୍ଜନ ଦେଖ । ଆଉ ପଦନ-ପୁରିଆଙ୍କର ଅଭିମରଡ଼ା ଚଷା ଗୋଟାଏ ରଜା ହେବ—ତାକୁ ଭଲା କେମିତି ମାନିବ ? ବୈକୁଣ୍ଠ ମିଶ୍ର ଘରେ ଗୁହାଳ କରି ନିତିପ୍ରତି ହଳ ବୁଲଉଛି—ତାର ରାଜତେଜ କୁଆଡ଼ୁ ଆସିବ ? ହାଃହାଃହାଃ ଡ଼ୁଃଡ଼ୁଃଡ଼ୁଃ—

ସ୍ବାଃପ ପାଞ୍ଚଣଧର ହାତରେ ଖଣ୍ଡା ଭଲ କେମିତି ଖାପିବ ? ଯେତେ-ବେଳେ ହାଃପ ଚଷାଭୁଷା ସକାକୁଃ ଲଙ୍ଗଳେଃ ଯାନ୍ତି···

ଏସବୁ କଷ୍ଟୁର ମନ୍ତବ୍ୟମାନ ଶୁଣି ମୋର ହୃଦୟ ମନ୍ଥି ହୋଇ ଯାଉଥାଏ । ମୋର ନୈରାଶ୍ୟ ଆହୁରି ବଢ଼ି ଗଲା—ଯେତେବେଳେ ମୋର ଅତି ଅନ୍ତରଙ୍ଗ ବନ୍ଧୁବନ୍ଧୁ ମାୟାଧର ମଧ୍ୟ ଶେଷରେ ସେଇ କଥା କହିଲା । ମୋ ମନ ତା' ଉପରେ ଚଟିଗଲା । ମୁଁ ତାକୁ ଭର୍ତ୍ସନାତ୍ମକ ସ୍ବରରେ କହିଲି—ମାୟାଧର ! ଖାଲି କ'ଣ ଜାକଜମକ ପୋଷାକ, ଆଉ ଏତେ ପାଟିରେ ଗର୍ଜନ ତର୍ଜନ କଲେ, ମଦୁଆଙ୍କ ଭଳିଆ ତଳି ତଳି କୁଦି କୁଦି ଗୃଳିଲେ ଜଣେ ସତକୁସତ ରାଜା ହୋଇଯିବ ? ମାଧପୁରଆଙ୍କ ଏ ରାଜାଟା ସବୁବେଳେ ଏମିତି ତମ ଚମ ଢଙ୍ଗରେ ସମସ୍ତଙ୍କୁ ଧମକାଉଛି ଭଳି କଥା କହୁଛି କାହିଁକି ? ଏମିତିକି ରାଜକେମା ଆଉ ରାଣୀଙ୍କ ମାନଙ୍କ ମଧ୍ୟ ସେ ରାଜାଟା ଏମିତି ଧମକେଇଲା ଭଳି ଗର୍ଜନ କରି କଥା କହୁଚ ଯେ, ଯେ ନକେହି ଭାବିବ ଏଇଟା ରାଜା ନା ଗୋଟିଏ ଦସ୍ୟୁମାୟା ନାସ୍ତି ନୃଶଂସ ଗୁଣ୍ଡା ? ଆମ ଅଭିରାମ ପରିଡ଼ାଙ୍କର କୋଉ ଗୁଣରେ ଏ ରାଜାଟା ମରି କହିଲୁ ? ମତେ ତ ଲାଗୁଛି—ଅଭିରାମ ପରିଡ଼ା ହିଁ ସତକୁସତ ରାଜା ହେବାକୁ ଯୋଗ୍ୟ । ଆଉ ଏ ମାଧପୁରଆ ରାଜାଟା ନକଲି ରାଜା ।

ଅବଶ୍ୟ ସେତେବେଳକୁ ଆମେ ଯାତ୍ରାପାର୍ଟିର ରାଜାଙ୍କ ବ୍ୟକ୍ତିଗତ ଅସଲ ଭିଜାଟିଏ ତଦବଧି ଦେଖିନାହୁଁ । କିନ୍ତୁ ମାୟାଧର ଯୁକ୍ତିକଲା ସେ କୁଆଡ଼େ ସତକୁସତ ପୁରୀ ରଥଯାତ୍ରାରେ ଗଜପତି ମହାରାଜା ରାମଚନ୍ଦ୍ର ଦେବଙ୍କୁ ସୁନା ପାଲିଙ୍କିରେ ବସି ଆସି ରଥଉପରେ ଛେରାପହଁରା କରିବାର ଦୁଇଥର ଦେଖିଛି । ସେ କହିଲା—ଅଭିରାମଙ୍କର ଅବଶ୍ୟ ରାଜକଳା ରହିଛି । କିନ୍ତୁ ତାଙ୍କର ସେହି ମଇଳା ଦରିଦ୍ର ପୋଷାକ ଯୋଗୁଁ ସବୁ ମାଟି ହୋଇ ଯାଉଛି । ଦେଖୁନୁ ! ସେ ହ'ଲେ ହେଲା ରାଜା ହେଲେଣି —ତାଙ୍କ ପାଦରେ ହଲେ ଯୋତା ମଧ୍ୟ ନାହିଁ ? ଏକଥା ନିଧାର୍ଯ୍ୟ ଜାଣିଥା — ରାଜା ପକ୍ଷେ ମୁଣ୍ଡରେ ପଗଡ଼ି ନ ପିନ୍ଧି ଖେରାଏ କୁଆଡ଼େ ବୁଲି ଆସିବେ —ଏମିତିକି ଛଦ୍ମବେଶରେ ବି ଭିଜାମାନେ ମଇଳା ଲୁଗା ଗାମୁଛା ପିନ୍ଧି ସବୁଆଡ଼େ ବୁଲିବେ ରାଜ୍ୟର ହାଲ ହଇକତ ନିଜ ଆଖିରେ ଦେଖିଶୁଣି ପ୍ରତିକାର କରିବା ପାଇଁ—କିନ୍ତୁ ଖାଲି ପାଦରେ କୌଣସି

ରଜା କସ୍ମିନ୍‌କାଳେ କେବେ କୁଆଡ଼େ ବାହାରିବେ ନାହିଁ । ଘରଭିତରେ ବି ରଜାଙ୍କ ପାଦରୁ ଯୋତା ବାହାରିବ ନାହିଁ । ରଜାଙ୍କ ପାଦ କେବେ ବି ଭୂଇଁରେ ଲାଗିବ ନାହିଁ । ତା' ହେଲେ ସେ ଆଉ କି ରଜା ? ତେଣୁ ବର୍ତ୍ତମାନ ଯଦି ଅଭିରାମଙ୍କୁ ହଳେ ଯୋତା କିଏ ଯୋଗାଇ ଦେଇ ପାରନ୍ତା, ତେବେ ତାଙ୍କର ଇଜ୍ଜତ ରହିଯାନ୍ତା ଆଉ ଦୁଇରାତି ଲାଗି । ତା' ନ ହେଲେ ଏ ମାଧପୁରିଆ ରଜା ତାଙ୍କୁ ହ' କଡ଼ାର କରି ଛାଡ଼ିବ ।

ମୁଁ ବିସ୍ମିତ ହୋଇ ପଚାରିଲି—ହକଡ଼ାର କରିବ ମାନେ କ'ଣ ? ମାୟାଧର କହିଲା—ତା' ମାନେ, ଯାହା ଭିତରେ ତା' ଗାଲରେ ଯୋତା ମାରିବ । କିନ୍ତୁ ଏ ହତଭାଗା ଏବେ ହଳେ ଯୋତା ପାଇବ କୋଉଠୁ ? ରଜା ହେଲେ ମହୀପତି ! ତାଙ୍କ ପାଦ ଭୂଇଁରେ ଲାଗିବ କେମିତି ? ସେ କଣ ଚଷା ହୋଇଛନ୍ତି ?

ମୁଁ ଚୁପ୍ ରହିଲି । ମୋ ମନକୁ ବି କଥାଟା ପାଇଗଲା । ସାଙ୍ଗେ ସାଙ୍ଗେ ମୋତେ ଗୋଟାଏ ରାହା ଦିଶିଗଲା । ମୋର ପରମ ଶ୍ରଦ୍ଧାସ୍ପଦ ଅଭିଶପ୍ତ ଗନ୍ଧର୍ବ ଅଭିରାମ ପରିଡ଼ାଙ୍କୁ ସର୍ବଶ୍ରେଷ୍ଠ ରାଜାସନରେ ବସାଇବା ଲାଗି ମୋ ମନ ଭିତରେ ଯୋଉ ଦୁରାକାଂକ୍ଷାର ସମ୍ବେଗ ଜାଗି ଉଠିଥିଲା, ତାହା ଏତିକି ମାତ୍ର ସମ୍ବଳରେ ସଫଳତା ଲାଭ କରିବ ଭାବି ମୁଁ ସେତେ-ବେଳେ ନିଶ୍ଚିନ୍ତ ହୋଇଗଲି ।

ମାୟାଧର ମୋର ନୀରବତା ଦେଖି ପୁଣିଥରେ ପଚାରିଲା—କିନ୍ତୁ ଯୋତା ହଳେ ସେ ଏବେ ପାଇବ କୋଉଠୁ ? ଏ କ'ଣ କଟକ ନା ପୁରୀ ହୋଇଛି ?

ମୋ ମୁହଁ ଉଜ୍ଜ୍ୱଳ ଓ ପ୍ରସନ୍ନ ହୋଇଗଲା । ମୁଁ ଜାଣିଛି—ଯୋତା ହଳେ କୋଉଠୁ ଆସିବ ! କିନ୍ତୁ ମୁଁ ବର୍ତ୍ତମାନ ସେକଥା କାହାକୁ କହିବି ନାହିଁ । ପରେ ସବୁକଥା ବଳେ ଜଣାପଡ଼ିବ । କିନ୍ତୁ ଅଭିରାମ ଯଦି ସତକୁସତ ରଜା, ତେବେ ତାଙ୍କୁ ଖଜା ଅପୂର୍ବ ହେବନାହିଁ । ମୁଁ ବୁଝିବି ସେ କଥା । ମତେ ଏଇ ସାମାନ୍ୟ ସମସ୍ୟା ବଳେଇ ଯିବ ନାହିଁ । ହଳେ ଯୋତା ! ଏ କିବା କଥା ! ହାଃହାଃହାଃ । ମନେ ମନେ ଅଟ୍ଟହାସ୍ୟ କରି ଉଠିଲି ।

ତା’ ପରଦିନ । ମୋର ଆଉ କୋଉ କଥାରେ ମନ ଲାଗୁ ନ ଥାଏ । ମୋତେ ହେଲେ ଯୋତା ଯୋଗାଡ଼ କରି ଅଭିରାମଙ୍କୁ ଯୋଗାଇ ଦେବାକୁ ପଡ଼ିବ । ମୋର ସାନ କକେଇଙ୍କର ହଲେ ବାଘ ଚମଡ଼ା-ନିର୍ମିତ ଜୋତା ଥାଏ । ସେ ତାକୁ କଲିକତାରୁ କିଣିଆଣି ରଖିଥାନ୍ତି । କ୍ୱଚିତ୍ କେବେ ମୁଁ ତାଙ୍କୁ ତାହା ପିନ୍ଧିବାର ଦେଖିଛି । ସେଇ ଯୋତା ହଳକ ଘରୁ ଲୁଚାଇ ନେଇ ଅଭିରାମଙ୍କୁ ଦେଲି । କହିଲି, ତୁମେ ଏହାକୁ ପିନ୍ଧି ଆଜି ଯାତ୍ରାରେ ରାଜା ହୋଇ ବାହାରିବ । ଯୋତା ନ ପିନ୍ଧିବାରୁ ମାଧପୁରିଆ ରାଜାଙ୍କ ତୁଳନାରେ ତୁମର ରାଜପଣ କମି ଯାଉଛି ବୋଲି ସମସ୍ତେ କହୁଛନ୍ତି । ଅଭିରାମ ବାଘଚମଡ଼ା ନିର୍ମିତ ସେ ଯୋତା ହଳକ ହାତରେ ଧରି ଖୁବ୍ ପସନ୍ଦ କଲା ଭଳି ତାକୁ ଏପଟ ସେପଟ ଦେଖିଲେ । ତା’ପରେ ସାମାନ୍ୟ ସ୍ମିତହାସ୍ୟ କରି କହିଲେ—ଏ ଯୋତା ତୁମ କକେଇଙ୍କର । ତୁମେ ବ୍ରାହ୍ମଣ । ମୁଁ ଶୂଦ୍ର ହୋଇ ଏଥିରେ ପାଦ ରଖିବା ଠିକ୍ ହେବ ନାହିଁ । ତା’ଛଡ଼ା ତୁମେ କ’ଣ କକେଇଙ୍କୁ କହିକରି ଏ ଯୋତା ମୋ ପାଇଁ ଆଣିଛ ? ମୁଁ ମିଛରେ କହିଦେଲି, ହଁ । କକେଇ କହିଲେ ହଉ ନେ । ଏ ଗାଁ ମାଟିରେ ମୋର ସେ ଯୋତା କ’ଣ ହବ ? ଯାହାର ହେଲେ କାମରେ ଲାଗୁ ।

ଅଭିରାମ ତା’ପରେ ଗମ୍ଭୀର ହୋଇ କିଛିକ୍ଷଣ ମୋ ମୁହଁକୁ ଚାହିଁ ରହିଲେ । ତା’ପରେ କୁଣ୍ଠିତ ଗଳାରେ କହିଲେ, ତା ହେଲେ ଏ ବ୍ରାହ୍ମଣଙ୍କ ପାଦର ପାଦୁକା ଏ । ମୋର ମସ୍ତକରେ ଲଗାଇବା ଉଚିତ୍ । ମୁଁ ଏଥିରେ ପାଦ ଦେଲେ ଅପରାଧ ହେବନି ?

ମୁଁ କହିଲି, ତୁମେ କ’ଣ ଏ ଯୋତା ପିନ୍ଧି ବୈକୁଣ୍ଠ ମଉସାଙ୍କ ବଳରେ ହଳ ବୁଲାଇବ ? ଏ ଯୋତା ପିନ୍ଧିବେ ହରିଶ୍ଚନ୍ଦ୍ର, ନଳ, ମାନଧାତା, ଯୁଧିଷ୍ଠିର ପ୍ରଭୃତି ରାଜା ମାହାରଥୀମାନେ ।

ଅଭିରାମ ମୋ ମୁହଁକୁ ଚାହିଁ ସାମାନ୍ୟ ହସିଲେ ଓ ମୋତେ ବୋଧ-ହେଲା ଯେ ସେ ମୋ ଉପରେ ସ୍ନେହ କଲ୍ୟାଣ ଅଜାଡ଼ି ଦେଉଛନ୍ତି । ସେଇଠୁ ସେ ଯୋତା ହଳକ ପ୍ରଥମେ ନିଜ ମୁଣ୍ଡରେ ଲଗାଇ ସାରି ଭୂଇଁରେ ରଖି ତା ଭିତରେ ଖୁବ୍ ଧୀର ଭଦ୍ର ଭାବେ ନିଜ ପାଦ

ଫୁଟାଇଲେ । ସେଇଠୁ ନିଜ ପାଦକୁ ଗୁହିଁ ଓ ମୋର ମୁହଁକୁ ଗୁହିଁ କହିଲେ—ବାଃ ! ମୋ ପାଦକୁ ଏକଦମ୍ ଖାପି ଯାଉଛି । ରାଜା ମାହାରାଜା-ମାନେ ପ୍ରକୃତରେ ଖାଲି ପାଦରେ ଚାଲନ୍ତି ନାହିଁ । ସେମାନେ ହେଲେ ମହାପତି । କିନ୍ତୁ ଆମ ଦଳ ତ ଗରିବ ଦଳ । ପୋଷାକପତ୍ର ଚିରିଗଲଣି । ନୂଆ ପୋଷାକଟିଏ କିଣି ହେଉନି । ସେଇ ରଙ୍ଗଛଡ଼ା ଚିରିଣ୍ଡା ପୋଷାକକୁ ସାତପ୍ରସ୍ତ ସିଆଁ ସେଇଁ କରି ଚଳାଇବାକୁ ପଡ଼ୁଛି । ଏ ଗାଁରେ ଏ ଲୋକେ ଏତେ ପାଦତଳକୁ ନିଘା କରୁଛନ୍ତି ବୋଲି ମତେ ଜଣା ନ ଥିଲା । ହଉ ବାବୁ ! ରଖିଲି । ଆଜି ରାତିରେ ସମାଜବେଳେ ଦେଖିବ ।

ସେଦିନ ରାତିରେ "ପଦ୍ମାବତୀ ପରିଣୟ" ନାଟକରେ ଅଭିରାମ ପରିଡ଼ା ସ୍ୱୟଂ ନବକୋଟି କର୍ଣ୍ଣାଟକଳବର୍ଗେଶ୍ୱର ଗଜପତି ପୁରୁଷୋତ୍ତମଦେବଙ୍କ ଭୂମିକାରେ ସେଇ ବାଘ ଚମଡ଼ାର ଯୋତା ପରିଧାନ କରି କାଞ୍ଚି ରାଜ୍ୟ ଜୟକଲେ—ଓ ଶ୍ରୀ ଜଗନ୍ନାଥଙ୍କ ରଥ ଉପରେ ସୁନା ଖଡ଼ିକାରେ ଛେରା ପହଁରା କରିସାରି, କାଞ୍ଚିଜେମା ପଦ୍ମାବତୀଙ୍କ ପାଣିଗ୍ରହଣ କଲେ । ସେଦିନ ନାଟକଟି ବଡ଼ ହୃଦୟସ୍ପର୍ଶୀ ହେଲା । ସେଥିରେ ଜଗନ୍ନାଥ ବଳଭଦ୍ର ଓ ମାଣିକ ଗଉଡୁଣୀଙ୍କୁ ଦେଖି ଓ ପୁରୁଷୋତ୍ତମଦେବ ଓ ପଦ୍ମାବତୀଙ୍କ ବିବାହ ଦେଖି ଦେଖଣାହାରି-ମାନେ ଏତେ ଖୁସି ହୋଇଗଲେ ଯେ ଘନ ଘନ କରତାଳୀ ମାଡ଼ ହେଲା । ଘନଘନ ହରିବୋଲ ନାଦରେ ଆକାଶ କମ୍ପିଲା । ସ୍ତ୍ରୀଲୋକ-ମାନେ ଘନ ଘନ ହୁଳହୁଳି ଦେଇ ସଭାସ୍ଥଳକୁ କମ୍ପାଇ ଦେଲେ । ମୋର ହୃଦୟ ଅପୂର୍ବ ଉଲ୍ଲାସରେ ନାଚି ଉଠୁଥାଏ । ମୁଁ ମନେ ମନେ ଅଭିରାମଙ୍କର ସେହି ବାଘ ଚମଡ଼ା ପିନ୍ଧା ପାଦ ଯୋଡ଼ିକୁ କୁଣ୍ଢାଇ ଧରି ହସୁ ହସୁ କାନ୍ଦି ପକାଇଲି ।

ସେତିକିବେଳେ ମୁଁ ମୋର ସାଙ୍ଗମାନଙ୍କୁ ଓ ମାମୁଁଘରକୁ ବାରମ୍ବାର ଅଙ୍ଗୁଳି ନିର୍ଦ୍ଦେଶ କରି ଅଭିରାମଙ୍କ ପାଦରେ ଯୋତା ହଳକୁ ଦେଖାଇ ଦେଉଥାଏ । ଏବଂ ସମବେତ ଲୋକମାନଙ୍କ ଆଗରେ ଅଭିରାମଙ୍କ ଆଜିର ରାଜ ପୋଷାକର ପୂର୍ଣ୍ଣାଙ୍ଗତା ଓ ଅଭିନୟ ସିଦ୍ଧି ଉପରେ ପ୍ରଶଂସାବାଦର ଦୃଢ଼ ସିଦ୍ଧାନ୍ତ ଲଦି ଦେଉଥାଏ । ମୁଁ ଗୋଟିଏ

ବଡ଼ ଯୁକ୍ତି ଦେଖାଇ ଥାଏ ଯେ, ରାଜାମାନେ ଯୋଉ ଯୋଡା ପିନ୍ଧନ୍ତି ତାହା କଦାପି ସାଧାରଣ ଚମଡ଼ା ଯୋଡା ହୋଇ ନ ପାରେ । ଏହା ବାଘ ହରିଣ ପ୍ରଭୃତିଙ୍କ ଚମଡ଼ାରେ ତିଆରି ହେବା ଉଚିତ । ମୋ ଯୁକ୍ତିରେ ମୋର ସାଙ୍ଗମାନେ ପ୍ରାୟ ରାଜି ହୋଇଗଲେ । ଏବଂ ପାଖ ଆଖରେ ବସିଥିବା ବଡ଼ମଣିଷମାନେ ମଧ୍ୟ ସମର୍ଥନ ଜଣାଇ କହିଲେ—ହଁ । ଆଉ ଆଜ ଖୁଣିବାର କିଛି ନାହିଁ ।

କିନ୍ତୁ ନିଜକୁ ମୋଠାରୁ ସର୍ବଦା ବଡ଼ ମନେ କରୁଥିବା ମୋର ଅନ୍ତରଙ୍ଗ ବନ୍ଧୁ ମାୟାଧରର ମୁଣ୍ଡକୁ କି ଦୁର୍ବୁଦ୍ଧି ସେତେବେଳେ ଜୁଟିଲା କେଜାଣି, ସେ ଖୁବ୍ ଗମ୍ଭୀର ହୋଇ ନିଷ୍ଠୁର ଗଳାରେ ମତେ ପଚାରିଲା—

ଏ ଯୋଡା ସେ ଆଜ କୋଉଠୁ ପାଇଲା ?

ସେତେବେଳେ ମୁଁ ତାକୁ ଘଟଣାଟି କହିଦେଲି । ମାତ୍ର ମୁଁ ଯାହା ଦେଖିଲି, ସେ ସେଥିରେ ଆଦୌ ଖୁସି ହେଲାନାହିଁ । ଓଲଟ ମତେ ସାମାନ୍ୟ ତିରସ୍କାର କରି କହିଲା—ତୁ ଯୋଉ ଅଧର୍ମ କଲୁ, ତା'ର ଫଳ ଭଲ ହେବନାହିଁ ଜାଣିଥା । ମାୟାଧରକୁ ମୁଁ ବହୁତ ସମ୍ମାନକରେ । ସେ ମୋଠାରୁ ବହୁ ପରିମାଣରେ କେବଳ ବୁଦ୍ଧିମାନ ନୁହଁ ନୀତିବାନ୍ ମଧ୍ୟ । ଫଳତଃ ସମୟରେ ମୁଁ ବରାବର ତା'ର ପରାମର୍ଶ ଲୋଡ଼ିଥାଏ । ଏବଂ ସେ ମଧ୍ୟ ମତେ ବହୁ ବିପଦରେ ସାହାଯ୍ୟ କରେ ନିଜ ଉପରକୁ ବିପଦ ଟାଣି ଆଣି । କିନ୍ତୁ ମୁଁ ଏହା ମଧ୍ୟ ନିଧାର୍ଯ ଜାଣେ ଯେ ତୁମର ସର୍ବୋତ୍ତମ ଶୁଭେଚ୍ଛୁ ବନ୍ଧୁ ମଧ୍ୟ, ତୁମର ଗୋଟିଏ ଗୋଟିଏ ଚରମ ମୂହୂର୍ତ୍ତରେ ତୁମକୁ ସାହାଯ୍ୟ କରି ପାରିବ ନାହିଁ । ବରଂ ସେତେବେଳେ ସେ ତୁମକୁ ଧୋକ୍କା ଦେବ । କାରଣ ସେହି ଚରମ ସଙ୍କଟ ମୂହୂର୍ତ୍ତଟି ଯଦି ତୁମର ଏକାନ୍ତ ବ୍ୟକ୍ତିଗତ ହୋଇଥାଏ—ତେବେ ସେହି ସଙ୍କଟର ମର୍ମ ବୁଝିପାରିବା ଅନ୍ୟ ଲୋକଟିର ସାଧ୍ୟାତୀତ ହୋଇପଡ଼େ । ବ୍ୟକ୍ତିଗତ ସଙ୍କଟଟି ତୁମର ବ୍ୟକ୍ତିଗତ ଧର୍ମବୋଧ ବା ନୀତିବୋଧରୁ ଜାତ ହୋଇଥାଏ । ଏହାର ସାର୍ବଜନୀନ ଆବେଦନ ନାହିଁ । ତେଣୁ ସାର୍ବଜନୀନ ବିଚାରବୋଧର ଦଉଡ଼ି ସେ ଗଣ୍ଠିରିତାକୁ ପାଏ ନାହିଁ —କିମ୍ବା ତୁମର ବ୍ୟକ୍ତିଗତ ବେଦନା-ବୋଧର ଉଚ୍ଚତାକୁ ଆରୋହଣ କରିବା ପାଇଁ

କୌଣସି ସାର୍ବଜନୀନ ସିଦ୍ଧି ନାହିଁ । ସେଥିପାଇଁ, ଆଜ ଏ ବୟସରେ ମଧ୍ୟ ମୋର ସିଦ୍ଧାନ୍ତ ହେଲା—ତୁମର ଚରମ ସଙ୍କଟ ମୁହୂର୍ତ୍ତରେ ତୁମେ ବସ୍ତୁତଃ ଏକା । ଏକୁଟିଆ । ତୁମ ଧର୍ମ ତୁମର ଏବଂ ତୁମ ଅଧର୍ମ ତୁମର—ସମ୍ପୂର୍ଣ୍ଣ ଭାବେ ତୁମର ।

ତେଣୁ ସେତେବେଳେ ମାୟାଧରର ସେହି ଧର୍ମାଧର୍ମ ବିଚାର ସିଦ୍ଧାନ୍ତ ପ୍ରତି ମୁଁ ଖୁବ୍ ଅସନ୍ତୁଷ୍ଟ ହୋଇ କହିଲି—ଯାବେ ! ଅଧର୍ମ କଲେ କଲି । ଯାହା ହେବାର ହେବ । ମୁଁ ଦେଖିବି । କହି ଦେଉଛି—ଆଜିଠାରୁ ମୁଁ ତୋ ସାଙ୍ଗ ଛାଡ଼ିଲି ।

ସେ ରାତିରେ ଅବଶ୍ୟ ମାଧପୁରିଆ 'ଦ୍ରୌପଦୀ ବସ୍ତ୍ର ହରଣ' ନମାଜ କରି ବାହାଦୁରୀ ପାଇଲେ । କିନ୍ତୁ ଅଭିରାମଙ୍କ 'ପଦ୍ମାବତୀ ପରିଣୟ' ସମାଜଟି ସମସ୍ତଙ୍କ ମନକୁ ବେଶ୍ ପାଇଥିଲା ।

ରାତି ପାହି ସକାଳ ହେଲା । ମୁଁ ଖୁସି ମନରେ ସ୍କୁଲକୁ ଚାଲିଗଲି । ସେଦିନ ଥାଏ ବାହାନାଟର ଶେଷରାତି । ଆଜି ଯୋଡ଼ି ଦଳ ଜିତିବାର କଥା ଜିତିବେ । ଦେଖାଯାଉ—ଜନମତ କୁଆଡ଼େ ଯାଉଛି ! ତେବେ ମୁଁ ଯାହା ଗାଁରେ ଓ ସ୍କୁଲରେ ଲକ୍ଷ୍ୟକଲି, ମାଧପୁର ଦଳର ଜାକଜମକ ପ୍ରଥମ ରାତିରେ ଯେତେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା, ତାହା ଆଜି ଆଉ ସେତେ ପ୍ରଭାବଶାଳୀ ନାହିଁ । ବରଂ 'ପଦ୍ମାବତୀ ପରିଣୟ' ପରେ ଅଭିରାମ ଦଳ ପ୍ରତି ଲୋକଙ୍କର ସମର୍ଥନ ବଢ଼ୁଥିବାର ଦେଖାଯାଉଛି । ସ୍କୁଲରେ ଓ ବଜାର ଉପରେ ଲୋକେ ମଧ୍ୟ ଏହି ମର୍ମରେ କଥାବାର୍ତ୍ତା ହେଉଥିବାର ମୁଁ ଶୁଣିଆସିଲି । ତେଣୁ କିଛି ଆଶା ଓ କିଛି ଆଶଙ୍କା ଭିତରେ ମୁଁ ଥାଏ । ସ୍କୁଲ ଛୁଟି ପରେ ତରବର ହୋଇ ମୁଁ ଘରକୁ ଫେରି ଆସିଲି । ସେତେବେଳକୁ ପ୍ରାୟ ଦିନ ଏଗାରଟା ହେବ । ଖୁବ୍ ଖରା ହେଉଥାଏ । ଆଜି ଦିନବେଳା ମଧ୍ୟ ଘରେ ଭଲ ଖାନା ଖାଇବାକୁ ମିଳିବ । କାରଣ ମାଧପୁରର ଯାତ୍ରା ଓସ୍ତାଦ୍, ରାଜା, ମନ୍ତ୍ରୀ, ସେନାପତି ପ୍ରଭୃତି ଆମ ଘରେ ଦିବାଭୋଜନ କରିବେ । ମୁଁ ଆମର ଉଚ୍ଚ ବାରଣ୍ଡାକୁ ଉଠିଯିବା ମାତ୍ରେ, ଭିତର ଅଗଣା ଆଡ଼ୁ ଗୋଟାଏ ବଡ଼ କୋଳାହଳ ମୋର କାନରେ ପଡ଼ିଲା ଏବଂ ସାନ

କକେଇଙ୍କର ଖାଷଣ କଣ୍ଠ ବଜ୍ରଭଳି ସ୍ୱର ମୁଁ ଶୁଣିବାକୁ ପାଇଲି । ମୋର ଛାତି ଧଡ଼ପଡ଼ ହେଲା । ଧୀରେ ଧୀରେ ଅଗଣା ଭିତରକୁ ପଶିଲି । ଆମ ଅଗଣାରେ ସାଇପାଖର ଲୋକ ରୁଣ୍ଡ ହୋଇଛନ୍ତି । ମୁଁ ଆଉର ଟିକିଏ ଭିଡ଼ ଠେଲି ଆଗକୁ ଗଲି । ସବୁଆଡ଼କୁ ଚାହିଁଲି । କିନ୍ତୁ ଏ କଣ ? ଏ କ'ଣ ? ଏ କ'ଣ ମୋ ଆଖି ଦେଖିଲା ? ଏ କିଏ ? ଓଃ ! ଭଗବାନ ଏ କି କାଣ୍ଡ ? ଏ କି ଦୃଶ୍ୟ ? ଓଃ ! ହେ ଭଗବାନ ! ! ମୋର ଛାତି ଫାଟିଗଲା—ମୋର ଛାତି ଫାଟିଗଲା । ଗୋଟିଏ ପଥର ଖୁଣ୍ଟି ଦେହକୁ ଆଉଜି ଅଭିରାମ ଠିଆ ହୋଇଛନ୍ତି ଏବଂ ତାଙ୍କ ଆଗରେ ସାନ କକେଇଙ୍କର ସେଇ ବାଘ ଚମଡ଼ାର ଯୋତା ହଳକ ଥୁଆ ହୋଇଛି । ସାନ କକେଇ ରୁଦ୍ରମୂର୍ତ୍ତି ଧରିଛନ୍ତି ଏବଂ ଅଭିରାମଙ୍କ ଗାଲରେ ଠାଇ ଠାଇ ଚଟକଣା ମାରି ପଚାରୁଛନ୍ତି, କହରେ ଶଳା ! ସତକହ । ତୁ ଏ ଯୋତା ଚୋରି କରିନୁ ? ଅଭିରା ! କିନ୍ତୁ ଗମ୍ଭୀର ହୋଇ ସେଇ ଗୋଟିଏ ଉତ୍ତର ଏକ ସ୍ୱରରେ ପୁନରାବୃତ୍ତି କରୁଛନ୍ତି—ନାହିଁ ଆଜ୍ଞା ! ମୁଁ ଚୋରି କରିନାହିଁ । କକେଇ ପୁଣି ଗୋଟାଏ ଚାପୁଡ଼ା ତାଙ୍କ ଆର ଗାଲରେ ମାରି କହୁଥାନ୍ତି—କହରେ ଶାଳା ଡାକାତ ! (କକେଇ ରାଗିଲେ ତାଙ୍କ ବାକ୍ୟରେ ବଙ୍ଗଳା ଶବ୍ଦ ମିଶିଯାଏ) ଚୋରି କରିନୁ ତ ଏ ଯୋତା ତୋ ପାଖକୁ ଗଲା କେମିତି ? କହରେ ଶଳା ଓଡ଼ ! ତୋ ଚଉଦ ପୁରୁଷରେ ଏ ଯୋତା କିଏ ଦେଖିଥିଲେ ? ଶଳା ରଜା ହବୁ ରଜା, ନାଇଁ ? ଶଳା ଓଡ଼ ଭଡ଼ୁଆ ! ମାନଯା'ବେ ଶଳା !···ପୁଣି ଗୋଟିଏ ଚଟକଣା ଅଭିରାମଙ୍କ ଗାଲରେ ଠାଇ କିନା ବସିଲା । ସତ କହୁଛି, ମତେ ଲାଗୁଥାଏ ସେ ଚଟକଣା ଗୁଡ଼ିକ ମୋରି ଗାଲରେ ବସୁଛି । ମୋର ହୃଦକମଳ ଛିଣ୍ଡି ଛିନଛତର ହୋଇ ଯାଉଥାଏ । ମୁଁ ଦେଖିବାକୁ ପାଇଲି ଯେ ମାଧପୁର ଯାତ୍ରାଦଳର ବରିଷ୍ଠ ଅଭିନେତାମାନେ ମଧ୍ୟ ଆସି ଆମ ବାରଣ୍ଡାରେ ଗୋଟିଏ ମଶିଣା ଉପରେ ବସି ଅଭିରାମଙ୍କୁ ନେଇ ଏଇ କାଣ୍ଡ କାରଖାନା ପ୍ରତ୍ୟକ୍ଷ କରି ଉପଭୋଗ କରୁଥାନ୍ତି । ଦେଖଣାହାରୀ ଗ୍ରାମବାସୀମାନେ ପରସ୍ପର ଭିତରେ ହସାହସି ହୋଇ ନିଷ୍ଠୁର ମନ୍ତବ୍ୟମାନ ଦେଇ ଚାଲିଥାନ୍ତି । କେହି କେହି ବୈକୁଣ୍ଠ ମଉସାଙ୍କ ଦ୍ୱିତୀୟ ପକ୍ଷ ସ୍ତ୍ରୀ ଶୋଭା ମାଉସୀଙ୍କ ସାଙ୍ଗେ ଅଭିରାମଙ୍କୁ ପାପ ସମ୍ବନ୍ଧରେ ଯୋଡ଼ି ଗୋଟିଏ ମିଥ୍ୟା

କାମକାହାଣୀ ମଧ୍ୟ ଗପି ଗ୍ଲଲଥାନ୍ତି । ଏବଂ 'ସେ ଶଳାକୁ ଥାନାକୁ ଗ୍ଲଲାଣ କରାଯାଉ'— ନହୁବା "ଗୋଟାଏ ଦାଆ ଚଟାଇ ତା' ପିଠିରେ ଚେଂଖ ଦଆଯାଉ—ଯେମିତି ସେ ଆଉ ଏ କାମ କରିବ ନାହିଁ କି ଆଉ ଏ ଗାଁ ମାଡ଼ିବ ନାହିଁ ।" ବୋଲି ମଧ୍ୟ କେହି କେହି ପ୍ରସ୍ତାବ ଦେଉଥାନ୍ତି । ମୋ ଦେହରେ ଆଉ ଜୀବନ ନ ଥାଏ ।

ଏହି ସମୟରେ ଈଶ୍ୱରଙ୍କ ଆଖି ମୋ ଉପରେ ପଡ଼ିଗଲା । ଏବଂ ଆମ ଦୁହିଁଙ୍କର ଗ୍ଲହାଣୀ ମଧ୍ୟ ମୁହୂର୍ତ୍ତକ ଲାଗି ମିଶିଗଲା । ସଙ୍ଗେ ସଙ୍ଗେ ମୋ ପାଦ ତଳୁ ପୃଥିବୀ ଦବିଗଲା; ମୁଁ ମୋର ଦୁଇ ପାପୁଲିରେ ମୋ ମୁହଁକୁ ଘୋଡ଼ାଇ ଚୁପି ଚୁପି କାନ୍ଦି ଉଠିଲି । ପ୍ରତି ମୁହୂର୍ତ୍ତରେ ମୋ ଭିତରେ କିଏ ମୋତେ ଠେଲୁଥାଏ—ଆରେ ଅଧମ ! ଜଲଦି ଯାଇ ସାନ କକେଇଙ୍କ ଗୋଡ଼ତଳେ ପଡ଼ି ସତକଥାଟା କହିଦେ । ଆଉ ଡେରି କରନା—ଯା—ଯା—ଜଲଦି ଯା······

ମାତ୍ର ନାଃ ! ଶେଷ ପର୍ଯ୍ୟନ୍ତ ସେତିକି କଥା କହିପାରିଲି ନାହିଁ । ସେ ପରିସ୍ଥିତିରେ ସେତିକି ସାହସ ମଧ୍ୟ ମୋର କୁଳାଇଲା ନାହିଁ । ମୁଁ ଜାଣେ—ମୁଁ ଚିରଦିନ ଗୋଟିଏ ଭୀରୁ ଲୋକ । ଦୁର୍ବଳ ଲୋକ । ମିଥ୍ୟାବାଦୀ ଲୋକ । ମୁଁ କୌଣସି କଥାକୁ ନେଇଆଣି ଥୋଇପାରେ ନାହିଁ । ଏବଂ ସେହି ପିଲାଦିନୁ ବହୁ ବହୁ ଘଟଣାରେ ମୁଁ ମୋର କର୍ମ ଗୁଡ଼ିକୁ ଓ ନିଜକୁ ପରୀକ୍ଷା କରି ଦେଖି ଜାଣିଛୁ ଯେ କେବଳ ସବୁ କଥାରେ ହମହମ ହୋଇ କହିବାଟି ମୁଁ ଆଗେଇ ଯାଏ—କିନ୍ତୁ ପରିଣାମଟିକୁ ସମ୍ଭାଳିବାକୁ ମୋର ବଳ ପାଏ ନାହିଁ । ସେତେବେଳକୁ ମୁଁ ନିଜକୁ ସଙ୍କୁଚିତ କରିଦିଏ । ତା ଫଳରେ ଅନ୍ୟ ନିରୀହ ଲୋକମାନେ ମୋ ଦୋଷରୁ ଅକାରଣଟାରେ ଏମିତି ଦଣ୍ଡିତ ଓ ନିର୍ଯ୍ୟାତିତ ହୋଇଥାନ୍ତି···କିନ୍ତୁ ଏହା ମଧ୍ୟ ମୋ ବିଷୟରେ ସମାନ ସତ୍ୟ ଯେ ସେଇ ଦୁଃଖଟିକୁ ନେଇ ମୁଁ ଏକୁଟିଆ ମୋ ଜୀବନଯାକ ସନ୍ତୁଳୁଥାଏ ଏବଂ ସେହି ବ୍ୟକ୍ତିଗତ ବ୍ୟର୍ଥତା ବୋଧରେ ମୁଁ ଜୀବନଯାକ ଘାରି ହୋଇ ଭିତରେ ମନ ମାରି ରହିଥାଏ । ମୋ ଦୁଃଖକୁ ନେଇ ମୁଁ ଆଉ କାହା ଉପରେ ଅଜାଡ଼ିଦିଏ ନାହିଁ । ଆଉ କାହାକୁ ସନ୍ତୁଳେ ନାହିଁ ।

...ସେଦିନ ରାତିରେ ଅଭିରାମଙ୍କ ମଦନପୁରିଆ ଦଳ ଆଉ ଯାତ୍ରା କଲେ ନାହିଁ । କେବଳ ମାଧପୁରିଆ ଯାତ୍ରାଦଳ ପାଟଲୁଗା, ଶାଢ଼ୀ ଇତ୍ୟାଦି ପାଇ ପୁରି ତରକାରି ଖାଇ ଯାତ୍ରାକଲେ । କିନ୍ତୁ ସେଇ ମେଳାର ମେଲା ମଣ୍ଡପ ପାଖ ବରଗଛର ଗୋଟିଏ ଚିଅ ଉପରେ ମୁଁ ଆନମନା ହୋଇ ଏକୁଟିଆ ବସି ରହିଥାଏ । ମୋ ଆଖିରେ ଯାତ୍ରା ଫାତ୍ରା କିଛି ପଡ଼ୁ ନ ଥାଏ । ମୋ ମନ ସନ୍ତପ୍ତ ହୋଇ ଜଳୁଥିଲା । ମୁଁ ଦାରୁଣ ଯନ୍ତ୍ରଣା ଭୋଗୁଥିଲି । ସନ୍ଧ୍ୟା ପୂର୍ବରୁ ବୈକୁଣ୍ଠ ମଉସାଙ୍କ ଘରକୁ ଯାଇ ଅଭିରାମଙ୍କ ଗୋଡ଼ତଳେ ପଡ଼ି କାନ୍ଦି କାନ୍ଦି କ୍ଷମା ମାଗିବି ବୋଲି ମନସ୍ଥ କରି ବହୁବାର ଚେଷ୍ଟା କଲି । ମାତ୍ର ସେତେକ ମଧ୍ୟ ମୋ ଦେହାତ ହୋଇ ପାରିଲା ନାହିଁ । ଅଭିରାମ ପରିଡ଼ା ଓ ତାଙ୍କ ଦଳ ସନ୍ଧ୍ୟା ହୁଡା ଆମ ଗାଁ ଛାଡ଼ି ଚାଲି ଯାଇଥିଲେ । ଅଭିରାମ ମଧ୍ୟ ବୈକୁଣ୍ଠ ମଉସାଙ୍କ ଘରୁ ଚିରଦିନ ଲାଗି ଚାଲିକରି ଛାଡ଼ି ଚାଲିଗଲେ । ଆଉ କ'ଣ ସେ ଏ ଗାଁରେ ରହିପାରିଥାନ୍ତେ ?

ମୁଁ ଏକୁଟିଆଟି ହୋଇ ସେହି ବରଚିଅ ଉପରେ ବସିଥାଏ । ଏହି ସମୟରେ ସମାଜ ମଝିରେ ମାଧପୁର ଯାତ୍ରା ଦଳ ଗୋଟିଏ ପାର୍ଶ୍ୱ ବାହାର କଲେ । ଜଣେ ଡମ ଓ ଡମୁଣୀ ପରସ୍ପରର ଗୀତ ଓ ବଚନକାରେ ମଦନପୁର ଯାତ୍ରାଦଳର ଓସ୍ତାଦ୍ ଓ ରାଜା ଅଭିରାମ ପରିଡ଼ାଙ୍କର ଯୋଡ଼ାରେସ ଓ ମାଡ଼ଖିଆ ପ୍ରସଙ୍ଗକୁ ନେଇ ଢେର ବେଳଯାଏ ବ୍ୟଙ୍ଗ ବିଦ୍ରୂପ କରି ନୃତ୍ୟ କଲେ । ସଭାରେ ତାହା ଦେଖି ଘନ ଘନ କରତାଳି ଓ ହାସ୍ୟରୋଳ ଉଠିଲା । ଏପରିକି ସେମାନେ ନିଜ ଅଭିନୟଟି ଶେଷ କରି ଫେରିଯିବା ବେଳେ ସଭା ମଧ୍ୟରୁ କେହି କେହି ଏନ୍‌କୋର, ଏନ୍‌କୋର ବୋଲି ଚିତ୍କାର ଛାଡ଼ିଲେ ।

ଇତିମଧ୍ୟରେ ମାୟାଧର କୋଉଠି ଥିଲା ମୋତେ ଖୋଜି ଖୋଜି ଆସି ମୋ ପାଖେ ପହଞ୍ଚିଲା ଏବଂ ଜଣେ ଧର୍ମଜ୍ଞ ସାଧୁ ବ୍ୟକ୍ତି ପରି ହସି ହସି କହିଲା—ଦେଖିଲୁ ? ମୁଁ କାଲି କ'ଣ କହୁଥିଲି ? ତୁ ଯୋଉ ଅଧର୍ମ କରିଥିଲୁ ତା'ର ଫଳ ମିଳିଲା ତ ?

ସେହି ମୁହୂର୍ତ୍ତରେ ମାଷ୍ଟାଧର ପ୍ରତି ମୋର ମନ ଘୃଣା ଓ କ୍ରୋଧରେ ଫାଟି ପଡ଼ିଲା । ମୁଁ ତା କଥାର ଜବାବ ନ ଦେଇ ମୁହଁ ବୁଲାଇ ବସିଲି । ମନେ ମନେ ଉକ୍ତିଗୁଡ଼ିକ ଗୈବାଇ ତା ଉଦ୍ଦେଶ୍ୟରେ ମନେ ମନେ କହିଲି—ଅଧର୍ମ ? ଅଧର୍ମ କଲା କଏ ? ଫଳ ପାଇଲା କଏ ? ଶଳା ଭାଷା ଧର୍ମ ଦେଖାଉଛୁ !! ଏଣିକି ମୁଁ ଲକ୍ଷେ ଅଧର୍ମ କରିବି । ମୋର କଏ କ'ଣ କରିବ, ଦେଖିବି ।

…ମୁଁ କିଛି ନ କହିବାରୁ ସେ ମୋତେ ଛାଡ଼ି ଚାଲିଗଲା । ଅତଃପର ମୁଁ ପୃଥିବୀରେ ଆହୁରି ଗଭୀର ଭାବେ ଏକୁଟିଆ ହୋଇଗଲି । ଏଣେ ମୋ ଆଖି ଆଗରେ ଉଜ୍ଜ୍ୱଳ ପେଟ୍ରୋମାକ୍ସ ଆଲୁଅରେ ସହସ୍ରାଧିକ ଦେଖଣାହାରୀଙ୍କ ମଝିରେ ମାଧପୁରିଆ ଖୁବ୍ ବଗୁଲ କ୍ଲାରିଓନେଟ୍ ଡ୍ରମ୍ ବଜାଇ ଓ ଗର୍ଜନ ତର୍ଜନ କରି ମହୋଲ୍ଲାସରେ ଯାହା କରି ଚାଲିଥାନ୍ତି । ମୁଁ କିନ୍ତୁ ସମ୍ପୂର୍ଣ୍ଣ ଏକୁଟିଆ ଉଦାସ ମନ ନେଇ ସେମିତି ବସିଥାଏ । ମୋ ଆଖି-ଆଗରେ ସେହି କାଳରାତି ସେମିତି ସେମିତି ପାହିଗଲା ।……

…ବହୁବର୍ଷ ବିତିଗଲା ଚୁହୁଁ ଚୁହୁଁ ମୋ ଜୀବନରେ । ଚାଳିଶି ବର୍ଷ । ପୃଥିବୀରେ ବହୁ ପରିବର୍ତ୍ତନ ଘଟିଗଲା ଇତିମଧ୍ୟରେ । ପୃଥିବୀର ମଣିଷ ଚନ୍ଦ୍ରଲୋକରେ ପାଦ ଦେଇ, ସେଠୁ ମାଟି ଆଣି ପୃଥିବୀରେ ଥୋଇଲା । ମୋ ଜୀବନ ମଧ୍ୟ ବହୁ ଉତ୍ଥାପନ ମଧ୍ୟ ଦେଇ ଗତିକରି ବର୍ତ୍ତମାନ ଏଇ ଅବସ୍ଥାରେ ଆସି ପହୁଁଚିଛି । ଜୀବନରେ ମୁଁ ବହୁ ପ୍ରକାରର ଦୁଃଖଭୋଗ କରିଛି । ଅନେକ ଦୁଃଖ ମୁଁ ଭୁଲି ଗଲିଣି । କିନ୍ତୁ କେତୋଟି ଦୁଃଖ ମୋର ଗଣ୍ଠିଧନ ହୋଇ ରହିଛି । ସେ ଗୁଡ଼ିକ ମୋର ଅତି ଅନ୍ତରଙ୍ଗ ଦୁଃଖ । ସେମାନେ ମୋତେ ଜୀବନଯାକ ଛାଡ଼ିବେ ନାହିଁ । ସେମାନେ ମୋ ଶବ ସଙ୍ଗେ ମଶାଣିକୁ ଯିବେ । ତା'ପରେ ମୋ ଆତ୍ମା ସଙ୍ଗେ ସ୍ୱର୍ଗକୁ ବା ନରକକୁ ବା ଶୂନ୍ୟକୁ ।

ସେହିସବୁ ଅନ୍ତରଙ୍ଗ ଦୁଃଖ ଗୁଡ଼ିକ ହେଉଛନ୍ତି ବୋଧେ ପାପ । ସେମାନେ ଜୀବନଯାକ ନୀରବରେ କୋଉ ଅତଳ ଅନ୍ତସ୍ତଳରେ ନିଜର ଅଜାଣତରେ ଲୁଚିରହି ଆତ୍ମାକୁ ସନ୍ତପ୍ତ କରୁଥାନ୍ତି ପ୍ରତି ମୁହୂର୍ତ୍ତରେ । ମୋ ଭଳି ଦୁଃଖୀ ଲୋକର ଆତ୍ମା ନିଶ୍ଚେ ନରକରେ ସଲୁଳି ହୁଏ

ବୋଧେ ! କିନ୍ତୁ ମୁଁ କି ନିର୍ଲଜ ! କି ଛଦ୍ମବେଶୀ ! କେତେ କେତେ ଦୁଃଖ ଓ ପାପମାନଙ୍କୁ ମୁଁ ମୋ ଅନ୍ତର ଭିତରେ ଲୁଚାଇ ରଖି ବର୍ତ୍ତମାନ ନିଜକୁ ଜଣେ ମହାଧାର୍ମିକ, ବିଦ୍ୟାବନ୍ତ ସାହିତ୍ୟିକ ବୋଲାଉଛି ! ଏବଂ ସମାଜରେ ଜଣେ ପ୍ରତିଷ୍ଠିତ ବ୍ୟକ୍ତିରୂପେ ନିଜକୁ ଜାହିର କରି ରଖିଛି ! ଏବଂ ସଭା ସମିତିରେ ମୁଖ୍ୟବକ୍ତା, ମୁଖ୍ୟଅତିଥି ସାଜି ଅନ୍ୟମାନଙ୍କୁ ଧର୍ମ, ସାହିତ୍ୟ, ସଂସ୍କୃତି ସମ୍ବନ୍ଧେ ବକ୍ତୃତା ଶୁଣାଉଛି । ମୋର ପୁଅଝିଅମାନେ ତ ଭାବନ୍ତି ମୁଁ ଜଣେ ଆଦର୍ଶ ମଣିଷ ।

କିନ୍ତୁ ନିଜକୁ ଏବେ ଧିକ୍କାର କରି କିଛି ଲାଭନାହିଁ । ପାପ କ'ଣ କେବେ ଲୁଚିରହେ ? କାରଣ ଯୋଉଦିନ ହେଲେ ବି ସେ ପାପ ଆପଣା ଛାଏଁ ଆପଣା ତୁଣ୍ଡରୁ ବା ଲେଖାରୁ ପ୍ରକାଶ ପାଇଯିବ ହିଁ ଯିବ । ଏବଂ ମୋର ଅସଲ ସ୍ୱରୂପକୁ ନିଶ୍ଚିନ୍ତ ଭାବେ ଜଗତ ଆଗରେ ଧରାପକାଇ ଦେବ । ମୁଁ ମୋ ସତ୍ତ୍ୱଭିତରେ ଆତ୍ମଗୋପନ କରି ରହିଥିବା ଦ୍ୱୈତନୀତିକୁ ବା ଦୁର୍ବଳତାକୁ ଶେଷପର୍ଯ୍ୟନ୍ତ ଲୁଚାଇ ରଖି ପାରିବି ନାହିଁ । ମୋ ହାତରେ କଲମ ପଡ଼ିଲେ ସେ ମୋ ଭିତରର ସବୁ ରୁଦ୍ଧ ପ୍ରକୋଷ୍ଠର କବାଟ ଭାଙ୍ଗିଦେଇ ମୋ ଭିତରେ ଯାହାଅଛି ସବୁ ଖୋଲି ପଦାରେ ପକାଇ ଦେବ । ମୁଁ ଜାଣେ—ମୋ ଅପେକ୍ଷା ମୋର କଲମ ଅଧିକ ଶକ୍ତିଶାଳୀ । ତା'ର ମାନ ମହତ୍ତ୍ୱକୁ ଡର ନାହିଁ । ପାପ ପୁଣ୍ୟକୁ ଖାତିର ନାହିଁ ।

ଆଉଦିନକର କଥା । ଆଜକୁ ପାଞ୍ଚବର୍ଷ ତଳେ ୧୯୭୭ ମସିହା ଏପ୍ରିଲ ପହିଲା । ଓଡ଼ିଶାର ଗୋଟିଏ ବିଖ୍ୟାତ ଶିଳ୍ପନଗରୀର ସ୍ୱତନ୍ତ୍ର ଉତ୍କଳ ଦିବସ ମହାସମାରୋହରେ ପାଳିତ ହେଉଥାଏ । ମୁଁ ଯାଇଥାଏ ସେଥିରେ ମୁଖ୍ୟ ବକ୍ତାରୂପେ ଯୋଗ ଦେଇ "ଓଡ଼ିଆ ଜାତୀୟ ସଂସ୍କୃତିର ବୈଶିଷ୍ଟ୍ୟ" ଉପରେ ଭାଷଣ ଦେବାକୁ । ଭାଷଣ ଦେଇ ସାରିଲି । ଖୁବ୍ ପ୍ରଭାବଶାଳୀ ହେଲା ମୋର ଭାଷଣ । ମୁଁ ଓଡ଼ିଶାର ଜାତୀୟ ସଂସ୍କୃତି ମୂଳତଃ ହଳ ଲଙ୍ଗଳ ଧାରୀ କୃଷକର ସଂସ୍କୃତି ବୋଲି ପ୍ରତିପାଦନ କଲି । ସେକଥା ଥାଉ୍ନ୍ତୁ ।

ଭାଷଣ ସରିଲା । ସେହି ରାତିରେ ଉଦ୍ୟୋକ୍ତାମାନଙ୍କ ଭିତରୁ ଜଣେ ଉତ୍ସାହୀ ଏକ୍‌ଜିକ୍ୟୁଟିଭ ଇଞ୍ଜିନିଅର ମୋତେ ତାଙ୍କ ଘରକୁ ରାତ୍ରିଭୋଜନ

ପାଇଁ ନିମନ୍ତ୍ରଣ କରିଥିଲେ । ସେ ମୋଠାରୁ ବୟସରେ ସାନ ଥିଲେ । ମାତ୍ର ଖୁବ୍ ବଳିଷ୍ଠ ଓ ହୃଷ୍ଟପୁଷ୍ଟ ଜୀବନ୍ତ ମନେ ହେଉଥିଲେ । ମୁଁ ଓ ମୋର ଅନ୍ୟଜଣେ ସାହିତ୍ୟିକ ବନ୍ଧୁ ତାଙ୍କ ଘରକୁ ଗଲୁ । ତାଙ୍କ ଡ୍ରଇଁ ରୁମ୍‌ରେ ବସି ଭୋଜନ ପୂର୍ବରୁ ପିଇବା ପାଇଁ ରସ ପାନ କଲାବେଳେ ସେ ଭଦ୍ରଲୋକ କହିଲେ ଯେ ସେ ଆମ ଗାଁ ପାଖର ଲୋକ । ମୁଁ ତାଙ୍କଠାରୁ ତାଙ୍କର ସମସ୍ତ ପରିଚୟ ପାଇ ସାରିଲା ପରେ ହଠାତ୍ ସ୍ୱଭାବସୁଲଭ ଭାବାବେଶରେ ପଚାରିଦେଲି—ଆପଣଙ୍କ ଗ୍ରାମର ଅଭିରାମ ପରିଡ଼ାଙ୍କୁ ଜାଣନ୍ତି ? ସେ ଖୁବ୍ ସଲଜ୍ଜ ଓ ସମ୍ଭ୍ରମ ଭାବେ ହସି ହସି କହିଲେ—ସେ ମୋର ବାପା ହୁଅନ୍ତି ।

ମୁଁ ଚକିତ ହୋଇଗଲି । କିନ୍ତୁ ସେ ତାଙ୍କ ବାପାଙ୍କ ସମ୍ବନ୍ଧେ ଉପସ୍ଥିତ ବିବରଣୀମାନ ଦେଇ ଚାଲିଲେ । ସେ ଖୁବ୍ ବୁଢ଼ା ହୋଇ-ଗଲେଣି । ତାଙ୍କ ଆଖିରେ ପରିଳ ଅପରେସନ ହୋଇଛି । ତାଙ୍କର ହାର୍ଣ୍ଣିଆ ମଧ୍ୟ ଅପରେସନ ହୋଇଛି । ଏବେ ତାଙ୍କ ପେଟରେ କିଛି ଜୀର୍ଣ୍ଣ ହେଉ ନାହିଁ । ରାତିରେ ଭଲ ନିଦ ହେଉନାହିଁ । ସେ ଏବେ ଜିଦ୍ ଧରିଛନ୍ତି ଯେ ମୋତେ ପୁରୁଷୋତ୍ତମ ନେଇ ଚାଲ । ମୁଁ ମଲା ପୂର୍ବରୁ ଥରେ ଗରୁଡ଼ ଖମ୍ବକୁ କୁଣ୍ଢାଇ କାଳିଆକୁ ଦେଖିଆସିବି । ଭାବୁଛି—ଚନ୍ଦନକୁ ତାଙ୍କୁ କାର୍‌ରେ ପୁରୀ ନେଇଯିବି । ମୋର ନିଃଶ୍ୱାସ ପ୍ରଶ୍ୱାସ ଦ୍ରୁତ ହୋଇ ଚାଲିଲା । ମୁଁ ଅନୁରୋଧ କଲି—ଚାଲନ୍ତୁ । ଆଗ ତାଙ୍କୁ ପ୍ରଣାମ କରି ଆସିଲେ ଯାଇ ଭୋଜନ କରିବା ।

ବୃଦ୍ଧଙ୍କୁ ତାଙ୍କ ଶୋଇବା କୋଠରୀରେ ପହଞ୍ଚିଲୁ । ଆମ ସାଙ୍ଗେ ଇଞ୍ଜିନିୟର ସାହେବଙ୍କ ସ୍ତ୍ରୀ ମଧ୍ୟ ଥାନ୍ତି । ଖୁବ ଚମତ୍କାର ଭଦ୍ରମହିଳା । ଭଦ୍ର ଓ ମଧୁର । ପ୍ରଥମେ ସେଇ ଯାଇ ଶଶୁରଙ୍କ ଦେହରେ ହାତମାରି ତାଙ୍କୁ ଉଠାଇଲେ ଓ ମୋର ପରିଚୟ ଦେଲେ । ଘରଭିତରେ ଉଜ୍ଜ୍ୱଳ ବାଲ୍‌ବଲାଇଟ ଜଳିଉଠିଲା । ବୃଦ୍ଧ ବ୍ୟକ୍ତିଜଣେ ଖଟଉପରେ ବସି ଆମ ଆଡ଼କୁ ମୋଟା ଲେନ୍‌ସର ଚଷମାରେ ଚାହିଁ କହିଲେ—ବସ ବାପା, ବସ ।

ତାଙ୍କ ପାଦଦୁଇଟି ଖଟ ତଳକୁ ଓହଳିଥାଏ । ମୁଁ ତାଙ୍କ ପାଦ ଛୁଇଁ ନମସ୍କାର କରିସାରି ତାଙ୍କୁ ଭଲକରି ଦେଖିଲି । ସେ ଖୁବ୍ ଜୀର୍ଣ୍ଣଶୀର୍ଣ୍ଣ

ଦିଶୁଥାନ୍ତି । ମୁଣ୍ଡ ଚନ୍ଦା ହୋଇ ଯାଇଥାଏ ପ୍ରାୟ । ପାଟି ଦନ୍ତହୀନ । ଦୁଇ ଗାଲ ଗାତ ପରି ଦୁଇପଟେ ପାଟିଭିତରକୁ ପଶି ଯାଇଥାଏ । ବେକରେ କିନ୍ତୁ ସାତପ୍ରସ୍ତର ମୋଟା ତୁଳସୀ ମାଳ ଜଡ଼ ହିଥାଏ । ମୁଁ ତାଙ୍କୁ ଧୀରେ ଧୀରେ ପଇଁତ୍ରିଶି ବର୍ଷ ତଳର ବୈକୁଣ୍ଠ ମଉସା, ସଙ୍ଗୀତ ଆସର, ଶୋଭା ମାଉସୀ, ବାପାଯାଏ କଥା ସବୁ ମନେ ଅଛି କି ନାହିଁ ପଚାରିଲି । କେବଳ ସେଇ ବାଘ ଚମଡ଼ାର ଯୋତା କଥାଟି ଲୁଚାଇ ରଖିଲି । କିନ୍ତୁ ମୁଁ ଆଶ୍ଚର୍ଯ୍ୟ ହେଲି—ସବୁ ସେ ମନେ ରଖିଥିଲେ । ସେସବୁ ସମ୍ବନ୍ଧେ କିଛି କହିଲାବେଳେ ତାଙ୍କ ମୁହଁ ହସ ହସ ଦିଶୁଥିଲା । ସାମାନ୍ୟ ଉଜ୍ଜ୍ୱଳ ମଧ୍ୟ ଦିଶୁଥିଲା । ତା'ପରେ ସେ କିଛିସମୟ ଗମ୍ଭୀର ହୋଇ ପୁଣି ମୋ ବାପା ଦଦେଇ ପ୍ରଭୃତିଙ୍କ କଥା ପଚାରିଲେ ଏବଂ ତା ସାଙ୍ଗେ କିଛି ପୃଥକ୍ ସ୍ୱର ଓ ଭଙ୍ଗୀରେ ପଚାରିଲେ, ତୁମର ସେ ସାନ କକେଇ ପରା ଅଳ୍ପ ବୟସରେ ମରିଗଲେ ? ମୁଁ ତୁମ ଗାଁ ଛାଡ଼ିବାର ବର୍ଷେ ନ ପୂରୁଣୁ ? ମୁଁ କହିଲି—ହିଁ ଆଜ୍ଞା ! ହଠାତ୍ ଉବଲ ନଉମୋନିଆ ହେଲା । ଚାଲିଗଲେ ।

ସେଇଠୁ ସେ କିଛିସମୟ 'ହରି ହରି' କହିସାରି ନୀରବ ହେଲେ । ଆଖିବୁଜି ବସିଲେ । ତା'ପରେ କୌଣସି ପ୍ରସଙ୍ଗ ନ ଉଠାଇ ଆଖିମେଲି କେବଳ ମୋର ଉଦ୍ଦେଶ୍ୟରେ କହିଲେ ଖୁବ୍ ଭଦ୍ର ଆଉ ନରମ ଗଳାରେ —ବୁଝିଲ ବାବୁ ! ଜୀବନରେ ଆଉ ସେଇ ଦିନୁଁ ଯୋତା କ ଚଟି ଏ ପାଦରେ ପିନ୍ଧିନାହିଁ ।

ଏତେକ ଶୁଣି ତାଙ୍କର ଇଞ୍ଜିନିଅର ସାହେବ ପୁଅ କ'ଣ ବୁଝିଲେ କେଜାଣି, ହସି ହସି କହିଲେ—ହଁ ଆଜ୍ଞା, ବାପା ଜୀବନଯାକ କେବେ ଚଟି କି ଯୋତା ପିନ୍ଧିଲେ ନାହିଁ । ଚମଡ଼ା ନୁହଁ—ରବର ନୁହେଁ କି ପୋଲଥିନ୍ ବି ନୁହେଁ ।

ଇଞ୍ଜିନିଅରଙ୍କ ମୁହଁରୁ ଛଡ଼ାଇ ନେଇ ତାଙ୍କ ବୋହୂ ଲକ୍ଷ୍ମୀ କହିଲେ—କ'ଣ ସେ ବୁଝିଛନ୍ତି କେଜାଣି, ଯେତେ ବାଧ୍ୟ କଲେ ବି ବାପାଙ୍କର ସେଇ ଗୋଟାଏ ଜିଦ୍—ନା, ନା ଭୂଇଁ ଆଉ ମୋ ପାଦ ଭିତରେ ଆଉ କିଛି ବ୍ୟବଧାନ ମୁଁ ରଖିବି ନାହିଁ । ସେଇ ଗୋଟିଏ କଥା—ମୁଁ ଚଷା ଲୋକ । ମହାପାତ୍ର ନୁହଁ ।

ମୁଁ ନିଶ୍ଚଳ ନୀରବ ହୋଇ ଏଥରକ ତଳକୁ ମୁହଁ ପୋତ ଠିଆ ହୋଇଥାଏ । ଏବଂ ଖଟରୁ ତଳକୁ ଓହ୍ଲାଇ ଭୂଇଁ ସ୍ପର୍ଶ କରିଥିବା ସେହି ହଡ୍ଡୁଆ ରୁକ୍ଷ ଜରାଜୀର୍ଣ୍ଣ ପାଦଦୁଇଟିକୁ ଏକ ଲୟରେ ଚାହିଁ ରହିଥାଏ । ମନେ ମନେ ସେଇ ପଦଯୁଗଳ ଉପରେ ଲକ୍ଷେ ଚମ୍ପା, ଲକ୍ଷେ ପଦ୍ମ, ଲକ୍ଷେ ଗୋଲାପ ଚଢ଼ାଉ ଥାଏ । ତାଙ୍କର ଏକ୍‌ଜଉଟିଭ ଇଞ୍ଜିନିୟର ପୁଅ ଓ ପରମ ସୌଭାଗ୍ୟବତୀ ଲକ୍ଷ୍ମୀ ପ୍ରତିମା ବୋହୂ କେମିତି ଜାଣିବେ ଯେ ଆମ ଦୁହିଁଙ୍କ ଭିତରେ କ ନିଦାରୁଣ ଗଭୀର ସ୍ମୃତିଟିଏ ଗୋପନରେ ଆଡ଼ଜାତ ହେଉଥାଏ ?

ମୁଁ ଭାବୁଥାଏ ଏହି ସେହି ପୂଜନୀୟ ଅଭିରାମ ପରିଡ଼ା, ଅଭିଶପ୍ତ ଗନ୍ଧର୍ବରାଜ, ଯେ ମୋତେ ପ୍ରଥମ କରି ତାଙ୍କ ସଙ୍ଗୀତର ଅପୂର୍ବ ଯାଦୁ-କାଠି ଛୁଆଁଇ ଅପରୂପ ଗନ୍ଧର୍ବ ଲୋକର ସନ୍ଧାନ ଦେଇଥିଲେ । ଗନ୍ଧର୍ବ-ଲୋକର ଅପୂର୍ବ ସୂକ୍ଷ୍ମ ସ୍ପନ୍ଦନ ମୋ ହୃଦୟରେ ପ୍ରଥମ କରି ସୃଷ୍ଟି କରି ଦେଇଥିଲେ । ଏବଂ କଳ୍ପଲୋକର ଅଲୌକିକ ଦୃଶ୍ୟ ଓ ଧ୍ୱନିମାନଙ୍କୁ ବୁଝିବାଲାଗି ମୋ ଭିତରର ଦୃଷ୍ଟି ଓ ଶ୍ରୁତି ଦ୍ୱାରକୁ ଖୋଲି ଦେଇଥିଲେ । ମୁଁ ମନେ ମନେ "ନମୋ ନମୋ ଅଭିରାମ ପରିଡ଼ା" ବୋଲି ଆନନ୍ଦିତ ମନରେ ଜପ କରୁଥାଏ । ମୋର ଡାହାଣ ଆଖିରୁ ଯୁଏଁ ଯୁଏଁ ଧାରେ ଲୁହ ବହି ମୋର ଗାଲ ପାରିହୋଇ ଭୂଇଁ ଉପରେ ପଡ଼ିଲା ଏବଂ ପରେ ପରେ ବାମ ଆଖିରୁ ଆଉ ଟୋପାଏ ଲୁହ ଝରି ମୋର ଆଖିପତା ତଳେ ବିନ୍ଦୁଟିଏ ହୋଇ ଲଟକି ରହିଲା ।

ତା' ପରେ କିଛିକ୍ଷଣ ନୀରବତା ପରେ ସେହି ମହାମାନ୍ୟ ବୃଦ୍ଧ ଗନ୍ଧର୍ବରାଜ ଧୀର ଗଳାରେ କହିଲେ—ହଉ, ଯାଅ ବାବୁ ! ଯାଅ ଭୋଜନ କର । ବହି ଅଧିକ ହେଲାଣି । ଜଗନ୍ନାଥ ତୁମକୁ ସୁଖରେ ରଖନ୍ତୁ ।

ମୁଁ ତାଙ୍କ ପାଦ ଛୁଇଁ ଆଉ ଥରେ ନମସ୍କାର କଲି । ଏବଂ ତାଙ୍କ ଇଞ୍ଜିନିୟର ପୁଅର ହାତ ଧରି ଧୀର ପଦକ୍ଷେପରେ ସେ ଘରୁ ବାହାରି ଆସିଲି ।



# ମହନି କବିରାଜଙ୍କ ଇତିକଥା

ବୈଦ୍ୟରତ୍ନ ଶ୍ରୀ ମୋହନ ଚରଣ ସାହୁଙ୍କ କଥା ଜାଣିଥିବା ଲୋକେ ଏବେ ବୁଢ଼ା ଆମ ଗାଁରେ ଅଛନ୍ତି । କିନ୍ତୁ କେତେ ଆଉ ଦିନେ ହେଲେ ବି ତାଙ୍କ କଥା ପ୍ରସଙ୍ଗ ପକାଇବାର ମୋ କାନ ଶୁଣିନାହିଁ । ଆମ ଗାଁକୁ ବର୍ତ୍ତମାନ ଯୋଉ ଯୁବଗୋଷ୍ଠୀ ଚଳାଉଛନ୍ତି—ଚଳାଉଛନ୍ତି ମାନେ ପକାଉଛନ୍ତି ଓ ଉଠାଉଛନ୍ତି—ସେମାନଙ୍କୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରାଯାଇପାରେ । ବର୍ତ୍ତମାନ ଆମ ଗାଁ ଯେଉଁମାନଙ୍କର ଖାସ୍ ନିୟନ୍ତ୍ରଣ ଭିତରେ ଅଛି—ସେମାନେ ହେଲେ ପ୍ରଥମ ଶ୍ରେଣୀସ୍ଥ ଯୁବନେତା । ଏମାନେ ଦୁଇବର୍ଷ ତଳେ ଦ୍ୱିତୀୟ ଶ୍ରେଣୀର ଥିଲେ । କାରଣ, ସେତେବେଳେ ସେମାନଙ୍କ ଦ୍ୱାରା ସମର୍ଥିତ ଓ ସେମାନଙ୍କୁ ଲାଳିତପାଳିତ କରୁଥିବା ବଡ଼ ବଡ଼ ନେତାମାନେ ନିର୍ବାଚନରେ ହାରି ଶାସନ କ୍ଷମତାରୁ ଅପସରି ଯାଇଥିଲେ । ବର୍ତ୍ତମାନ ସେଇମାନଙ୍କ ଲୋକେ ରାଜ୍ୟ ଓ ଦେଶର ଶାସନ କ୍ଷମତାରେ ଅଛନ୍ତି ବୋଲି ଏହି ଯୁବଗୋଷ୍ଠୀ ଅଧୁନା ଖୁବ୍ ବଳପୂର୍ବା ହୋଇଛନ୍ତି । ତାଙ୍କ ତଳକୁ ଅର୍ଥାତ୍ ୨ୟ ଶ୍ରେଣୀର ଯୁବଗୋଷ୍ଠୀ ହେଉଛନ୍ତି, ସରକାର-ବିରୋଧୀ ଦଳ ନେତାମାନଙ୍କର ଶିଷ୍ୟ ପ୍ରଶିଷ୍ୟ; କିନ୍ତୁ ବୁଝିବାକୁ ଗଲେ ବର୍ତ୍ତମାନ ସରକାରଙ୍କ ବିରୋଧ ଦଳ ବୋଲି ନିର୍ଦ୍ଦିଷ୍ଟ ଭାବେ କିଛି ଅଛି ବୋଲି ମନେହୁଏ ନାହିଁ । ତା'ହେଲେ ବି, ଏଇ ୨ୟ ଶ୍ରେଣୀର ଯୁବ-ଗୋଷ୍ଠୀ ମଧ୍ୟ କମ୍ ପ୍ରତାପୀ ନୁହନ୍ତି । ତାର ମୁଖ୍ୟ କାରଣ ହେଲା—ଏଇ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର ଯୁବଗୋଷ୍ଠୀଙ୍କ ଭିତରେ ନାନାଦି ଉଦ୍ଦେଶ୍ୟପୂର୍ଣ୍ଣ ଗମନାଗମନ ଅଛି—ସଲସୁତୁରା ଅଛି ଓ ଦେବାନେବା ପ୍ରସଙ୍ଗ ମଧ୍ୟ ଅଦ୍ୟାପି ଚାଲୁରହିଛି । ଏଇ ମୁଖ୍ୟ ଦୁଇଗୋଷ୍ଠୀଙ୍କୁ ଛାଡ଼ିଦେଲେ—ଅନ୍ୟ

ଯୁବଗୋଷ୍ଠୀଟି ହେଲେ ବେକାର ଯୁବଗୋଷ୍ଠୀ । ଆମ ଗାଁର ସହର ବୋଲି କୁହାଯାଉଥିବା ଓ ନ କହିଲେ ଅପମାନିତ ହୋଇ ମନକଷ୍ଟ କରୁଥିବା ଓ ରାଗିଯାଉଥିବା ନବଚିନ ବଜାରଟିର ମଧ୍ୟସ୍ଥଳରେ ଯୋଉଠି ବସଷ୍ଟାଣ୍ଡ ହୋଇଛି ଓ ଯୋଉଠି କୈବର୍ତ୍ତକୁଳ-ମିହିର ଶ୍ରୀମାନ ମାଙ୍ଗା ବେହେରାର ସୁପର ମାର୍କେଟ ମାର୍କା ବଗଟ କାଠ କେବିନଟି ରହିଛି—ଏବଂ ଯୋଉ କାବିନ୍ ଭିତରେ ପାନ ସମେତ ମନୋହାରୀ ଦ୍ରବ୍ୟ, ଗୁହା-ଡଷ୍ଟ୍ ପାଉଁଡରଟି ଓ ସେଭେଣ୍ଟିସେଭେନ, ଫାଣ୍ଟା, ଲିମ୍କା, କାମ୍ପାକୋଲା ପ୍ରଭୃତି ଶୀତଳ ପାନୀୟଠାରୁ ଆରମ୍ଭ କରି ବଟାଭାଙ୍ଗ, ମୋଦକ, ଟାବ୍ଲେଟ ଏବଂ ଗୁପ୍ତଭାବରେ ବିଅର, ହୁଇସ୍କି, ରମ୍ ଓ ମହୁଲି ଆଦି ସୁଲଭ ମୂଲ୍ୟରେ ବିକ୍ରୀ ହୁଏ ଏବଂ ଯୋଉଠି ଗୁପ୍ତ ପେଟ୍ରୋଲ, ଡିଜେଲ ମଧ୍ୟ କାରବାର ହୁଏ ବୋଲି ମଙ୍ଗା ବେହେରାର ଈର୍ଷାଳୁ ବିପକ୍ଷବାଦୀମାନେ ସତ-ମିଛ କୁତ୍ସା-ରଟନା କରିଥାନ୍ତି—ସେହି କେବିନ ପାଖରେ ପଡ଼ିଥିବା ବେଞ୍ଚଗୁଡ଼ିକ ଉପରେ ବସି ଅଧା ଗୁହା ଖାଉ ଖାଉ, ଆସୁଥିବା, ଯାଉଥିବା, ରହୁଥିବା ବସ୍‌ଗୁଡ଼ିକର ପଟାପଟ ନମ୍ବରଗୁଡ଼ିକ ଗଣି ଏବଂ ସେଗୁଡ଼ିକର ଡ୍ରାଇଭର, କଣ୍ଡକ୍ଟର ଓ ମାଲିକମାନଙ୍କ ଉପରେ ନାନାଦି ଗୁ ପ୍ତତଥ୍ୟମାନ ଆଲୋଚନା କରୁ କରୁ ସମୟ ବିତାଇ ଦେଉଥିବା ଏହି ବେକାର ଯୁବଗୋଷ୍ଠୀ ଆମ ଗାଁରେ ଯେତେ ଯାହା ମାଡ଼ପିଟ,ଉଜୁଦାରୀ, ଛୁରାମାରି, ଚୋରି, ଡକାୟତି, ଜୁଲମ, ଗୁଣ୍ଡା ଆଦାୟାଦି କାର୍ଯ୍ୟରେ ନିଜକୁ ଉତ୍ସର୍ଗ କରିଥାନ୍ତି । ଏମାନଙ୍କ ବାହାରେ ଯେଉଁ ନବ ତରୁଣଗୋଷ୍ଠୀ ବାଳାରୁଣ ପ୍ରାୟ ଆମ ଗ୍ରାମ ଆକାଶର ପୂର୍ବଦିଗରୁ ଅଳ୍ପ ଅଳ୍ପ ହୋଇ ଉଦୟ ହୋଇ ଆସୁଛନ୍ତି— ସେମାନେ ହେଲେ ନୂଆ ହୋଇ ଆରମ୍ଭ ହୋଇଥିବା ଆମ ଗ୍ରାମର ମହାବିଦ୍ୟାଳୟରେ ବିଭିନ୍ନ ଶ୍ରେଣୀରେ ନାମ ଲେଖାଇଥିବା ଯୁବଗୋଷ୍ଠୀ । ଗ୍ରାମର ପ୍ରତିଷ୍ଠିତ ହାଇସ୍କୁଲର ଦଶମ ଏକାଦଶ ଶ୍ରେଣୀର କିଶୋରମାନେ ହେଲେ ଏମାନଙ୍କର ଏକାନ୍ତ ଅନୁଗତ ଶିଷ୍ୟ ।

ଏଇ ଚତୁର୍ବିଧା ଯୁବଗୋଷ୍ଠୀଙ୍କ ବିଷୟରେ ଏତେ ବର୍ଣ୍ଣନା କରିବାର କାରଣ ହେଲା— ଏମାନେ ସମସ୍ତେ ଗୋଟିଏ କଥାରେ ଏକମତ ଯେ ସେମାନେ ଯୋଉ ଗ୍ରାମରେ ଜନ୍ମଗ୍ରହଣ କରି ଶୁକ୍ଳପକ୍ଷର ଚନ୍ଦ୍ରମାସଦୃଶ ବୃଦ୍ଧି

ଯାଇ ଯାଇ ଅଧୁନା ଏତାଦୃଶ ଯୁବାବସ୍ଥାରେ ଶୋଭମାନ ହୋଇ ଉପନୀତ ହୋଇଛନ୍ତି—ସେ ଗ୍ରାମଟିର ଇତିହାସ କେବଳ ସେମାନଙ୍କଠାରୁ ଆରମ୍ଭ ହୋଇଛି । ତାଙ୍କ ପୂର୍ବରୁ ଏ ଗ୍ରାମର କୌଣସି ଇତିହାସ ନଥିଲା । ଏବଂ ଏହି ଚତୁର୍ବିଧା ଯୁବଗୋଷ୍ଠୀଙ୍କ ବର୍ତ୍ତମାନର କାର୍ଯ୍ୟକଳାପରୁ ମନକୁ ସ୍ୱତଃ ଏହି ସିଦ୍ଧାନ୍ତ ଆସିଯାଉଛି ଯେ ଏହିମାନେ ହିଁ ଆମ ଗ୍ରାମର ଇତିହାସକୁ ତାଙ୍କର ଅମଳରେ ମଧ୍ୟ ଶେଷ କରିଦେବେ । ଆଉ ଭବିଷ୍ୟତ ପାଇଁ କୌଣସି ଇତିହାସ ରହିବ ନାହିଁ—ମାନେ ଆଉ ସେମାନଙ୍କଠାରୁ ଭବିଷ୍ୟତକୁ ଇତିହାସ ପ୍ରସାରିତ ହେବ ନାହିଁ । ଇତିହାସ ସେଇମାନଙ୍କ-ଠାରୁ ଆରମ୍ଭ ହୋଇ ସେଇମାନଙ୍କଠାରେ ଶେଷ ହେବ । ଶେଷ ହେବ କଣ—ଶେଷ ହେଲା ବୋଲି ଜାଣ ।

ଠିକ୍ ଅଛି ବାବୁ ! ଶେଷ ହେବ ଯଦି ଶେଷ ହେଉ—ଶେଷ ହୋଇଯାଉ । କିଏ ମନା କରୁଛି ? କିଏ ବା ମୁମୂର୍ଷୁ ଇତିହାସର ପାଟିରେ ପାଣି ଦେବାକୁ ହଙ୍କ ହଙ୍କ ହେଉଛି ? ଇତିହାସ ଶେଷ ହେବ ତ ଶେଷ ହୋଇଯାଉ । ଜୟମା' ଆମ ଗାଁର ଅଧିଷ୍ଠାତ୍ରୀ କୁଟାମଚଣ୍ଡି ! ସବୁ ଶେଷ କରିଦିଅ ମା' କିନ୍ତୁ ଇତିହାସଟା ଯେ ଏହି ଚତୁର୍ବିଧା ଯୁବଗୋଷ୍ଠୀଙ୍କଠାରୁ ମାତ୍ର ଆରମ୍ଭ ହେଲା—ଏକଥା ତାହା ମିଛ । ଆମ ଗାଁର ଇତିହାସ ଏତେ ଛୋଟିଆ ଇତିହାସ ନୁହେଁ । ସେ ଇତିହାସକୁ ଏଇ କଂଗ୍ରେସ, ଜନତା, ଲୋକଦଳ, ବେକାର, କଲେଜ-ସ୍କୁଲ ଯୁବଗୋଷ୍ଠୀ ତିଆରି କରିନାହାନ୍ତି — କି ତାଙ୍କ ବାପ-ମାଆମାନେ ବି କରିନାହାନ୍ତି । ମୋ ବିଚାରରେ ଅସଲ ଚୋର ତ ତାଙ୍କ ବାପା-ମାଆମାନେ । ଆଜିକାଲିକାର ଟୋକାଟୋକି-ମାନଙ୍କୁ ଦେଖି ମୁଁ ନିରାଶ ହେଲେ ବି ଏମାନଙ୍କ ଉପରେ କେବେ ଦୋଷ ଲଦିଦିଏ ନାହିଁ । ଅସଲି ଦୋଷୀ ହେଉଛନ୍ତି—ଏମାନଙ୍କର ବାପା-ମାଆ, ମାଷ୍ଟ୍ର ଓ ନେତା ପ୍ରଭୃତି ଅଭିଭାବକମାନେ । ସେହିମାନେ ହିଁ ଚୋର । ସେମାନେ ଇତିହାସରୁ ଜନ୍ମ ନେଲେ । ମାତ୍ର ଇତିହାସ ସଙ୍ଗେ ଚୋରି କଲେ । ଘର ଘରେ ଚୋରି କଲେ ଓ ତା' ଫଳରେ ଏମିତି ଗୋଟାଏ ଆତ୍ମଘାତୀ ଇତିହାସକୁ ନିଜ ଔରସରୁ ନିଜ ଉଦରରୁ ଜନ୍ମ କଲେ । ଦୁଃଖ ଦେଶ—!!

ଆହାରେ ମୋ ବାଳୁତବୁଦ୍ଧି ବାସ୍ତଭଆ ଅରକ୍ଷିତଆ, ବାଉଳା ସୁଉଳା, ଆଉପାଗଳଆ ଯୁବା-ଯୁବତୀମାନେ ! ମୁଁ ତୁମମାନଙ୍କୁ ଜମା ଦୋଷ ଦେଉନାହିଁ । ତୁମମାନଙ୍କୁ ଜମା ଅଭିଶାପ ଦେଉନାହିଁ । ତୁମମାନଙ୍କର ଜମା ଅମଙ୍ଗଳ ପାଞ୍ଚୁନାହିଁ । ଯଦିଓ ମୁଁ ଜାଣେ— ଜାଣେ—ତୁମେମାନେ ଯୁଗପ୍ରତ୍ୟୂଷର ଅଭିଶାପ ନେଇ ଜନ୍ମ ହୋଇଚ । ତୁମେମାନେ ତୁମ ପିତା-ମାତାଙ୍କର ପାପଫଳ ବିନା ଦୋଷରେ ଭୋଗୁଛ । ଖାଲି ପିତାମାତା ନୁହେଁ —ତୁମ ମାଷ୍ଟ୍ର-ଅବଧାନମାନଙ୍କର, ତୁମ ମନ୍ତ୍ରୀ ଏମ୍. ଏଲ୍. ଏ.ମାନଙ୍କର— ସମସ୍ତଙ୍କର ପାପଫଳରୁ ଜନ୍ମହୋଇଛ ତୁମେମାନେ—ବଢ଼ିଛ ବି ତୁମେ-ମାନେ । ତୁମମାନଙ୍କର କ ଗୃହ୍ୟ ଅଙ୍ଗରେ ବାଳୁତ ବସ୍ତ୍ର-ବସ୍ତ୍ରାମାନେ !

ହଉ ହଉ । ମୁଁ ତେଣିକି ବର୍ତ୍ତମାନ ବେଶି ମାଡ଼ଯାଉ ନାହିଁ । ସେକଥା ମଧ୍ୟ ବର୍ତ୍ତମାନ ପଡ଼ନ । ବର୍ତ୍ତମାନ ପଡ଼ୁଛି—ଆମ ଗାଁର ଇତିହାସ କଥା । ଇତିହାସ ଭିତରୁ କବିରାଜ ଶିରୋମଣି ଶ୍ରୀ ମୋହନ ଚରଣ ସାହୁଙ୍କ କଥା । ସେ ହେଉଛନ୍ତି ତୁମ ଜେଜେବାପାମାନଙ୍କ ଅମଳର ଲୋକ । କିନ୍ତୁ ସେମାନଙ୍କଠାରୁ ବି ବୟସରେ ବଡ଼ ଥିଲେ ବୋଲି ମୋର ମନେପଡ଼ୁଛି । ଆମ ବଜାର ସାହିର ଶେଷମୁଣ୍ଡରେ ଯେଉଁଠୁ ମୁସଲମାନଙ୍କ ବସ୍ତି ଆରମ୍ଭ ହୋଇଛି—ଗୋଟାଏ ମସ୍ତବଡ଼ ବାଉଁଶବଣ ଆଗେ ସେଠି ଥିଲା । ସେଇ ବାଉଁଶବଣଟା ସେତେବେଳେ ହିନ୍ଦୁମାନଙ୍କ ବସତିଠାରୁ ମୁସଲମାନଙ୍କ ବସ୍ତିକୁ ଅଲଗା କରି ରଖିଥିଲା । ବର୍ତ୍ତମାନ ସେ ଜାଗାର ବର୍ଣ୍ଣନା କରି ଲାଭ ନାହିଁ । କାରଣ, ସେ ବାଉଁଶବଣ କୋଉକାଳୁ ଉଠିଗଲାଣି । ଆଉ ତାର ଭିତରେ ତ ଦେଖୁଛ ଏଇ କେନାଲଟି ଯାଇଛି । ଏବଂ କେନାଲଟିର ଏକଡ଼େ ଯୋଉ ଆଜ୍‌ବେଷ୍ଟସ ଛାଉଣୀ ଚୂନଦିଆ କୋଠାଟି ଦେଖାଯାଉଛି —ଆଉ କୋଠାଟିରେ ଏତେ ବଡ଼ ବଡ଼ ଓଡ଼ିଆ, ଇଂରାଜୀ ଓ ଉର୍ଦ୍ଦୁ ଅକ୍ଷରରେ ସାଇନ୍‌ବୋର୍ଡଟିଏ ମରାହୋଇଛି—"ହାମଦର୍ଦ୍ଦି ଦବାଇଖାନା" ଡାକ୍ତର କେସରମତ ଅଲ୍ଲୀ—ସେଇଠି, ଠିକ୍ ସେଇ ଜାଗାଟି ଥିଲା ଆଜକୁ ଚାଳିଶ ବର୍ଷ ପୂର୍ବେ କବିରାଜ ଶିରୋମଣି ଶ୍ରୀ ମୋହନ ଚରଣ ସାହୁଙ୍କ ଘର-ଜାଗା ଓ କବିରାଜୀ ଔଷଧ ଦୋକାନ । ପଥର-ଖୁଣ୍ଟିବସା, ଉଚ୍ଚ ପିଣ୍ଡାବାଲା, ପାଞ୍ଚଟେଟିଆ ଚାଳଘରଟିଏ ଏବଂ ସେଇ ଚାଳରୁ ମଧ୍ୟ ପୂର୍ବେ

ସାଇନ୍‌ବୋର୍ଡ଼ଟିଏ ଝୁଲୁଥିଲା । ସେଥିରେ ଲେଖାଥିଲା କେବଳ ଓଡ଼ିଆରେ "କବିରାଜ ଶିରୋମଣି ଶ୍ରୀ ମୋହନ ଚରଣ ସାହୁ ।"

ଆମ ପିଲାଏ ତାଙ୍କୁ କେହି ସେ ନାମରେ ଡାକୁ ନ ଥିଲେ । ସମସ୍ତେ ଡାକୁଥିଲେ ମହନା ବଣିଆ କବିରାଜ । ଆମ ଗାଁର ଓ ଆଖପାଖ ଗାଁରେ ସେତେବେଳେ ଆଉ ଦୁଇ ତିନିଜଣ ନାମକରା କବିରାଜ ମଧ୍ୟ ଥିଲେ । ବାମ ନାହାକ କବିରାଜ ଆଉ ମଦନ ଶତପଥୀ କବିରାଜ—ଏ ଦୁହେଁ ଜାଣିଲେ ସେତେବେଳେ ଆଖପାଖ ପଚାଶଖଣ୍ଡ ଗାଁରେ ଧନ୍ୱନ୍ତରୀ ସଦୃଶ । ବାମ କବିରାଜଙ୍କ ଅଞ୍ଜନ ଓଷଦର ଖୁବ୍ ଗୁଣ ପରୀକ୍ଷିତ ହୋଇଥିଲା । ମାତ୍ର ମଦନ କବିରାଜ ଥିଲେ ମୋଦକ ଆଉ ବଟିକା ଓଷଦରେ ବିଶେଷଜ୍ଞ । ଏ ଦୁହିଁଙ୍କ ଛଡ଼ା ଆଉଜଣେ ଗୁଣ୍ଡିକା ଓଷଦର ଚିକିତ୍ସକ ଥିଲେ । ତାଙ୍କ ନାଁ ହେଉଛି ସପନ ମହାନ୍ତି । ସେ ସାଧାରଣ ଚେରମୂଳି ଆଉ ଆମ ବାଡ଼ିରେ ଥିବା ଜଣାଶୁଣା ଗଛଲତାର ପତ୍ର ଓ ଛେଲି ଇତ୍ୟାଦି ହାରା ରୋଗ ଭଲ କରି ଦେଉଥିଲେ । ବାଇଆ କୁକୁର ଓ ବିଲୁଆ କାମୁଡ଼ାର ଓଷଦ ଏବଂ ମନ୍ତ୍ର ଉଭୟ ଜଣାଥିଲା ଆମର କୁମ୍ଭୀପଟିଆ ସନ୍ନ୍ୟାସୀ ନକୁଳି ହୋଇଙ୍କୁ । ଏମାନଙ୍କ ବ୍ୟତୀତ ଆମ ମୁସଲମାନ ବସ୍ତିରେ ଜଣେ ପଠାଣ ଚିକିତ୍ସକ ଥିଲେ । ତାଙ୍କ ନାମ ଏନାମ ଖାଁ । ସେ ଇଉନାନୀ ଚିକିତ୍ସା କରୁଥିଲେ । ତାଙ୍କର ଓଷଦପତ୍ର କୁଆଡ଼େ ସେଣୁ ଆସୁଥିଲା ହିନ୍ଦୁସ୍ଥାନ ବାହାରୁ, ଆରବ, ଇରାନ ପ୍ରଭୃତି ମୁସଲମାନ ଦେଶମାନଙ୍କରୁ । ମୋର ମନେଅଛି, ଏନାମ ଖାଁ ସେତେବେଳେ ଆମ ଘରକୁ ମୋର ବୁଢ଼ାବାପାଙ୍କ ଦେହ-ଦୁଃଖବେଳେ ଥରେ ଦି'ଥର ଆସିଥିଲେ । ଆମ ହିନ୍ଦୁ କବିରାଜଙ୍କଠାରୁ ସେ ଖୁବ୍ ପୃଥକ ଦିଶୁଥିଲେ । ଖୁବ୍ ଡେଙ୍ଗାପାତଳା ମଣିଷ । ଗୋରା ତକ୍-ତକ୍ । ମୁହଁରେ ଧଳା ଦାଢ଼ିରେ ଜାଫ୍ରାନ ଦିଆହୋଇ ନାଲି ହୋଇଥାଏ । ଚନ୍ଦାମୁଣ୍ଡରେ ଯେତିକି ଧଳାବାଳ ଥାଏ ସେତିକି ବି ନାଲି କରା ହୋଇଥାଏ । ଦି'ଆଖିରେ ସୁରମା । ଚକମକିଆ ଲୁଙ୍ଗୀ । ବେକରେ ତାବିଜ୍ । ଦେହରେ କମକୁଟିଆ ପଞ୍ଜାବୀ ଏବଂ ତା' ଉପରେ ଗୋଟିଏ ଜରିଦିଆ ଜାକେଟ । ହାତରେ ଧରିଥାନ୍ତି ଗୋଟିଏ ଚମଡ଼ା ସୁଟକେସ୍ । ସେଥିରେ ଛୋଟ ବଡ଼ କଉଡ଼ିକିଆ ଶିଶିମାନଙ୍କରେ ନାନାପ୍ରକାର ରଙ୍ଗର

ଚୂନା, ଅରକ, ଆଉ ବଟିକା ଔଷଧ ଥାଏ । ଏହାମ୍ ମିଆଁ ସଙ୍ଗେ କଥା-ବାର୍ତ୍ତା ହେଲାବେଳେ ମୋର ବୁଢ଼ାବାପା ତାଙ୍କୁ 'ହାକମ' ବୋଲି ସମ୍ବୋଧନ କରୁଥିଲେ ଓ ତାଙ୍କ ଔଷଧକୁ 'ଦବାଇ' ବୋଲି କହୁଥିଲେ ।

ଏଇସବୁ ବିଶିଷ୍ଟ ଖ୍ୟାତନାମା ସୁନାମଧନ୍ୟ, ସୁପ୍ରତିଷ୍ଠିତ କବିରାଜ-ମାନଙ୍କ ଭିତରେ କବିରାଜ ଶିରୋମଣି ମୋହନ ଚରଣ ସାହୁ ବା ମହନା ବଣିଆ ଥିଲେ ଅତି ନଗଣ୍ୟ । ତାଙ୍କୁ କେହି କବିରାଜ ବୋଲି ଡାକୁ ନ ଥିଲେ । ତାଙ୍କଠାରୁ କେହି ଔଷଧ ଖାଉ ନ ଥିଲେ—କି ତାଙ୍କ ସହିତ କେହି କୌଣସି ରୋଗ ପାଇଁ ପରାମର୍ଶ କରୁ ନ ଥିଲେ । ବରଂ ଲୋକେ ତାଙ୍କ ନାଁ ପଡ଼ିଲେ କହୁଥିଲେ—ମହନା ବଣିଆ ଗୋଟେ ଯମଦୂତ । ତା' ଛାଇ ପଡ଼ିଲେ ରୋଗ ବଢ଼ିଯିବ । ତା ଆଖି ପଡ଼ିଗଲେ, ରୋଗୀର ପଞ୍ଚତ୍ୱ-ପ୍ରାପ୍ତି ସୁନିଶ୍ଚିତ । ଲୋକେ କୁହାକୋହି ହେବାର ମୁଁ ଶୁଣିଛି ଯେ ମହନା ବଣିଆକୁ କବିରାଜୀ ବିଦ୍ୟା ଖୁବ୍ ଜଣା ଅଛି, ଏଥିରେ ସନ୍ଦେହ ନାହିଁ । ତା'ଘରେ ମାଞ୍ଚିଆ ଉପରେ ମାଞ୍ଚିଆଏ କବିରାଜୀ ପୋଥି ଅଛି । ବୁଢ଼ା ସେସବୁ ବିଦ୍ୟା ଖୁବ୍ ସାଧିଛି । ସେଣେ ମଧ୍ୟ କଟକ ଆଉ ପୁରୀରେ ଖୁବ୍ ବଡ଼ ବଡ଼ ବୈଦ୍ୟକବିରାଜଙ୍କ ପାଖେ ରହି ଶିକ୍ଷ୍ୟାନ କରି ବୁଢ଼ା ରୋଗୀର ନାଡ଼ନକ୍ଷତ୍ର ରହସ୍ୟ ସବୁ ଜାଣିଛି । ଚେରମୂଳୀ ରସ ରସାୟନ ବିଦ୍ୟା ମଧ୍ୟ ତାକୁ ଖୁବ୍ ଜଣା । ହେଲେ କଣ ହେବ, ସେଇଟା ବିଷହସ୍ତାଟାଏ । ତା ହାତ ବାଜିଲେ ଅମୃତ ବି ବିଷ ହୋଇଯିବ । ଆଉ ମଧ୍ୟ ସେଇଟା ବିଷ ଆଖିଆଟାଏ । ଗୃହିଁଦେଲେ ଗ୍ରେଟିଆ କାଛୁଟାଏ ବି ବିସର୍ପିଯିବ । ଛ ମାସ ଯାଏ ଘାଆ ଶୁଖିବ ନାହିଁ ।

ମହନା ବଣିଆ କବିରାଜଙ୍କର ଏ ପ୍ରକାର ଦୁର୍ନାମ ପଛରେ କେତେ ସତ, କେତେ ମିଛ—ମୁଁ ଜାଣିନି, କିନ୍ତୁ ମୋର ମନେହୁଏ—ଲୋକମାନଙ୍କର ତାଙ୍କ ପ୍ରତି ଏଭଳି ବିରୂପ ମନୋଭାବ ପାଇଁ ତାଙ୍କର ଅଦ୍ଭୁତ କୁତ୍ସିତ ଚେହେରାଟା ନିଶ୍ଚୟ ଦାୟୀ ଥିଲା । ମୁଁ ତାଙ୍କ ବିଷୟରେ ସୁଜାଣ ହେଲା ବେଳକୁ ତାଙ୍କର ବୟସ ନିଶ୍ଚୟ ଷାଠିଏରୁ କିଞ୍ଚିତ ଅଧିକା ହୋଇଥିଲା । ସେ ଜାତିରେ ସୁନାରି ବଣିଆ ଥିଲେ । କିନ୍ତୁ ସୁନା-ରୁପା

ବ୍ୟବସାୟ ନ କରି ସେ ଆଜୀବନ ଏହି ବୈଦ୍ୟବୃତ୍ତିରେ ମାତିଥିଲେ । ତାଙ୍କର ଆୟୁର୍ବେଦ ବିଜ୍ଞାନରେ କେତେଦୂର ପ୍ରବେଶ ଥିଲା କେଜାଣି— କିନ୍ତୁ ମୋର ଧାରଣା, ଜଣେ ଡାକ୍ତର ବା ଚିକିତ୍ସକଙ୍କର ବାହ୍ୟ ଚେହେରାଟା ଆଗ ଖୁବ୍ ଭଲ ହେବା ଦରକାର । ଏପରି ସୁସ୍ଥ, ସବଳ, ପ୍ରାଣବନ୍ତ, ସୌମ୍ୟ ଆଶା ଆଶ୍ୱାସନା ପ୍ରଦାୟକ ଚେହେରା ନ ଥିଲେ କେହି ଚିକିତ୍ସକ ହେବା ଲାଗି ଆଶା-ଉଦ୍ୟମ କରିବା ଉଚିତ ନୁହେଁ ।

ମଦନ କବିରାଜ ଥିଲେ ବାଙ୍ଗୁରା ମଣିଷଟିଏ । ଦେହର ରଙ୍ଗ ଧାନଉଁସୁଆ ହାଣ୍ଡି ପରି । ମୁଣ୍ଡଟି ଚନ୍ଦା ଓ ସବୁଦା ତୈଳାକ୍ତ । ଗୁଣ୍ଡିଟା ଭିତରକୁ ସାମାନ୍ୟ ପଶିଯିବା ଫଳରେ ପିଠିଟା କୁଜା ଦେଖାଯାଏ । ଗୋଡ଼ ଦି'ଟା ସରୁ ସରୁ ଓ ଫଟକଟା । ସେ ପିନ୍ଧିଥାନ୍ତି ସବୁବେଳେ ତେଲଚିକିଟା ଗାମୁଛାଟାଏ । ବେକରେ ତିନିସରି ତେଲ ଚିକଟା ତୁଳସୀମାଳ । ବାହୁ, ଗଣ୍ଡି ଓ ମଥାରେ ତିଳକ ଛାପା । ଆଉ ଖଣ୍ଡିଏ ତେଲଚିକଟା ଗାମୁଛା କାନ୍ଧରେ ପଡ଼ିଥାଏ । ମୁହଁର ଦୁଇପଟ ହନୁ ସାମାନ୍ୟ ଉଚ୍ଚା । ନାକଟି ଛୋଟ ଓ ମୋଟା । ଓଠ ଦୁଇଟା ଖୁବ୍ ଲମ୍ବା ଓ ପାଟିରେ ଝାଉଁଟି ବେଢ଼ଙ୍ଗିଆ ଦାନ୍ତ । ସେ କାହା ମୁହଁକୁ ଚାହାନ୍ତି ନାହିଁ । ଯଦି କେ ସମସ୍ତଙ୍କ ପ୍ରତି ତାଙ୍କର ଘୃଣା କିନ୍ତୁ ତାଙ୍କ ଚାହାଣି ଥରେ ଦେଖିଦେଲେ, ଆଉ ଦେଖିବାକୁ ଇଚ୍ଛା ହେବ ନାହିଁ । କେମିତି ଗୋଟେ ବିଚକିଟିଆ ନାଳିଚିଆ ଚାହାଣି ଯାହା, ବେଳେ ବେଳେ କୌଣସି କୌଣସି ପ୍ରାଣୀଙ୍କ ଆଖିରେ ଦେଖାଯାଏ । ସତକଥା—ମଦନ କବିରାଜଙ୍କ ଚେହେରାକୁ ସହ୍ୟ କରିବା ଘୋର କଷ୍ଟକର ।

ତା'ଛଡ଼ା, ମଦନ କବିରାଜଙ୍କର ଆଉ ଗୋଟାଏ ବଦଭ୍ୟାସ ଥିଲା । ସେ ଦିନକୁ ପାଞ୍ଚଥର ଗାଧୋଇବେ । ପୁଣି ସବୁଥର ନଈକୁ ଗାଧୋଇ ଯିବେ । ସେ ଗାଧୋଇ ସାରି ଓଦାଳିକୁ ମୁହଁପୋଛି ଫଟକଟା ଗୋଡ଼ରେ ଡେଇଁ ଡେଇଁ ଘରକୁ ଫେରି ଆସିଲାବେଳେ, ଯଦି କିଏ ଜଣେ ତାଙ୍କ ଆଗରେ ପରସ୍ତ୍ରୀ କରୁଥିବାର ଦେଖିଦେବେ, କିବା ଛେପ କି ଖଙ୍କାର ପକାଇବାର ଦେଖିଦେବେ—ତା'ହେଲେ ସାଙ୍ଗେ ସାଙ୍ଗେ ସେଠି ଥୁକ୍କନା

ଠିଆ ହୋଇଯିବେ ଏବଂ "ହାତ୍ ଶଃଳା ତୋ' ମା' ମରୁ"—ବୋଲି କହି ପୁଣିଥରେ ପଛକୁ ଫେରିଯିବେ । ନଈରେ ଯାଇ ଆଉ ଗୋଟେ ବୁଡ଼ ମାରି ପୁଣି ଫେରିବେ । ଏଥରକ ବି ଯଦି ସେମିତି ଦୃଶ୍ୟ ତାଙ୍କ ଆଗରେ ପଡ଼ିଲା—ତେବେ ପୁଣି ଥରେ ନଈକି ଲେଉଟି ଯାଇ ଗାଧୋଇ ଆସିବେ । ଦିନେ ଦିନେ ଖେଚଡ଼ା ଟୋକାମାନେ ତାଙ୍କ ଗାଧୋଇଯିବା ବାଟରେ ଠିଆହୋଇ ତାଙ୍କୁ ଚିଡ଼େଇବା ପାଇଁ ବାରମ୍ବାର ଛେପ ଖଙ୍କାର ପକାନ୍ତି ଏବଂ ପ୍ରତିଥର ମଦନ କବିରାଜ "ହାତ୍ ଶଃଳା ତୋ' ମା' ମରୁ"—ଏତିକ ମାତ୍ର ଭର୍ତ୍ସନା ବାକ୍ୟ କହି ନଈକୁ ଯାଇ ଗାଧୋଇ ଫେରନ୍ତି । ଶୁଣାଯାଇଛି ଯେ ଦିନେ ଦିନେ ମଦନ କବିରାଜଙ୍କୁ ଏଥିପାଇଁ ପଚିଶ ଥର ନଈରେ ଯାଇ ଗାଧୋଇ ଘରକୁ ଫେରିବାକୁ ପଡ଼ିଛି । ବର୍ତ୍ତମାନ ବୁଝୁଛି —ମଦନ କବିରାଜ ଏ ବ୍ୟାପାରରେ ଖୁବ୍ ଶୁଚିବାୟୁଗ୍ରସ୍ତ ବ୍ୟକ୍ତି ଥିଲେ ।

କିନ୍ତୁ ମୁଁ ଆଶ୍ଚର୍ଯ୍ୟ ହୁଏ—ମଦନ କବିରାଜଙ୍କୁ ତ କେହି ରୋଗ ବୈରାଗରେ ପଚାରନ୍ତି ନାହିଁ—ତାଙ୍କଠାରୁ ଔଷଧ ମଉଷଧି ଖା'ନ୍ତି ନାହିଁ— ତା'ହେଲେ ପ୍ରତିଦିନ ମଦନ ବୁଢ଼ା ତାଙ୍କ ଘରେ ଏତେ ଚେରମୂଳ ଆଣି ଜମାକରନ୍ତି କାହିଁକି ? ସବୁବେଳେ ଏଣୁତେଣୁ କୁଟାକୁଟି କରନ୍ତି କାହିଁକି ? ଆଉ ମଧ୍ୟ ସବୁଦିନେ ତାଙ୍କ ଘର ଭିତରେ କଣ ଗୋଟାଏ ଔଷଧ ରନ୍ଧା ହେଉଥିବା ବାସନା ଯେ ରାସ୍ତା ପର୍ଯ୍ୟନ୍ତ ଭାସି ଆସୁଥାଏ, ତାର କାରଣ କଣ ? ସେ ପ୍ରତିଦିନ ଏତେ ମୋଦକ, ବଟିକା, ରସାୟନ ତିଆରି କରନ୍ତି ତେବେ କାହାପାଇଁ ? କେଉଁ ଉଦ୍ଦେଶ୍ୟରେ ?

ଏଠି କହିରଖୁଛି ଯେ ସେତେବେଳେ ମୋର ସାଙ୍ଗପିଲାମାନେ କେହି ମଦନ କବିରାଜଙ୍କ ଛାଇ ମାଡ଼ନ୍ତି ନାହିଁ । ଅଧିକାଂଶ ପିଲା ତାଙ୍କୁ ଡରନ୍ତି—କିମ୍ବା ଘୃଣା କରନ୍ତି । ବୁଢ଼ା ବି ପିଲାମାନଙ୍କୁ ଦେଖିଲେ ଖେଙ୍କାରି ଉଠେ -- ଶଃଳା ଅବାଜା, ବାଜୁଙ୍ଗାଗୁଡ଼ାକ ! କାହିଁକି ମୋ ଆଗରେ ଠିଆ ହୋଇଛ ବେ ?

ଆମେ ସେଦିନ ପର୍ଯ୍ୟନ୍ତ ଜାଣି ନ ଥିଲୁ ଯେ ମଦନ କବିରାଜଙ୍କର ପିଲାପିଲି ନ ଥିଲେ । ବହୁ କାଳୁ ତାଙ୍କର ସ୍ତ୍ରୀ ମରି ଯାଇଥିଲେ । ସେ

ଆଉ ବିଶେଷ୍ଣ ଥର ପାଇଁ ବିବାଦ କର ନ ଥିଲେ । ଘରେ କେବଳ ସ୍ତ୍ରୀକରଟିଏ । ଗାଈ ଗୃହ ପାଞ୍ଚୋଟି । ସବୁଗୁଡ଼ିକ ଦୁଧିଆଳୀ । ମୋଦକ ପ୍ରସ୍ତୁତ ତିଆରି ହେବା ଲାଗି ଖାଣ୍ଟି ଦୁଧ ଆଉ ଘିଅ ଦରକାର । ମହାନ୍ତ ସେଥିଲାଗି ବାହାର ଘିଅ ଦୁଧ ଉପରେ ନିର୍ଭର କରନ୍ତି ନାହିଁ । ତାଙ୍କ ଦାଣ୍ଡଘରେ ଗୋଟିଏ ବଡ଼ ଆଲମାରି ଥାଏ ଏବଂ କେତେଗୁଡ଼ିଏ ଶିକା ଟଙ୍ଗା ହୋଇଥାଏ । ସେଇ ସବୁଥିରେ ବିଭିନ୍ନ ମାଟିହାଣ୍ଡିରେ ଓ କାଚପାତ୍ରରେ ଔଷଧମାନ ଥାଏ ।

ମୋର ଦିନେ ତାଙ୍କ ଘରକୁ ଯିବାର ସୌଭାଗ୍ୟ ଘଟିଗଲା । ସେଦିନ ମହାନ୍ତ କବିରାଜ ତାଙ୍କ ଦାଣ୍ଡ ବାରଣ୍ଡାରେ ଚୁପ୍‌ଚାପ୍ ବସି ରହିଥିଲେ । ମୁଁ ହଠାତ୍ ସେବାଟେ ଯାଉ ଯାଉ କଣ ଭାବି କେଜାଣି, ତାଙ୍କ ଉଦ୍ଦେଶ୍ୟରେ ନମସ୍କାରଟାଏ କରିଦେଲି । ସେତିକରେ ସେ ଖୁବ୍ ଖୁସି ହୋଇ ମତେ ଡାକିଲେ । ମୁଁ ଧୀରେ ଧୀରେ ଟିକେ ଇଚ୍ଛା ବିରୁଦ୍ଧ ଅନିଚ୍ଛାରେ ତାଙ୍କ ପାଖକୁ ଗଲି । ସେ ଉଠି ଠିଆହୋଇ ପଡ଼ିଲେ ଓ ମୋ କାନ୍ଧରେ ହାତରଖି ଖୁବ୍ କଅଁଳ କଣ୍ଠରେ କହିଲେ—କ'ଣ ହେଉଛି ? ପାଠ ମନେ ରହୁନି ? ସ୍ମୃତିଶକ୍ତି ଲୋପ ? ବୁଦ୍ଧି ମାନ୍ଦ୍ୟ ? ଠିକ୍ ଅଛି । ହଉ ଆ ଆ ଭିତରକୁ ଆ । ତା' ବ୍ୟବସ୍ଥା ମୁଁ କରିଦେଉଛି ।

ଆମେ ଦୁହେଁ ଭିତରକୁ ଗଲୁ । ଗୋଟାଏ ମସିଣା ଉପରେ ସେ ମୋତେ ବସାଇଥିଲେ । ମୋର ନାଡ଼ି ଧରି ତେର ବେଳଯାଏ ଆଖିବୁଜି ବସିଲେ । ତା'ପରେ ସେଇ ଅଳ୍ପ ଅନ୍ଧାରିଆଘରେ ମୋ ପେଟ ପ୍ରଭୃତି ଚିପିଲେ । ମୋ ଆଖି ଓ ଜିଭ ଦେଖିଲେ । ତା'ପରେ ଅଳ୍ପ ଆଖିବୁଜି ସାମାନ୍ୟ ଧ୍ୟାନାନ୍ତେ କହିଲେ—ମୁଣ୍ଡରେ ପ୍ରତିଦିନ ଦୁଇଥର ମଧ୍ୟମ-ନାରାୟଣ ତୈଳ ମାଲିସ କରିବ । ପେଟପାଇଁ ଦୁଇଟି ଔଷଧ ଦେଉଛି । ଚିନ୍ତାମଣି ଚତୁର୍ମୁଖ ମୋଦକ । ଦିନକୁ ଦୁଇଟିକରି ଖାଇବ । ଆଉ ଗୋଟିଏ ହେଲା—ସ୍ମୃତିସୁଧା ବଟୀ । ଦିନକୁ ଦୁଇଟା ଯାଏ ଅନ୍ଦାଜ କଞ୍ଚା ଦୁଧରେ ମିଶାଇ ପିଇବ । ମାସ ଦି'ଟା ଏତେକ ବ୍ୟବହାର କରିସାରି ମୋ ପାଖକୁ ପୁଣି ଥରେ ଆସିବ । ଏତିକରେ ଠିକ୍ ସବୁ ଆସିଯିବ । କିଛି ଚିନ୍ତା ନାହିଁ ।

ଆୟୁର୍ବେଦରେ କଣ ନାହିଁ ବାବୁ ? ସବୁ ଅଛି, ଖାଲି ସବୁ ଦ୍ରବ୍ୟକୁ ଠିକ୍ ଠିକ୍ ଜାଣି, ବିଭିନ୍ନ ଅନୁମାନ ଅନୁପାତରେ ଔଷଧ ତିଆରି କରିବ । ତା'ପରେ ରୋଗୀର ନାଡ଼ିନକ୍ଷତ୍ର ଆଉ ରୋଗ ଲକ୍ଷଣ ମଧ୍ୟ ସଠିକ ଜାଣିପାରିବା ଦରକାର । ଶେଷକଥା ହେଲା—ଯେ ବୈଦ୍ୟ ହେବ ସେ ଆସ୍ତିକ ହୋଇଥିବା ଦରକାର । ଶୁଚିମନ୍ତ ହୋଇଥିବା ଦରକାର । ସବୁ ଔଷଧର ମାଲିକ ହେଲେ କିଏ ଜାଣୁ ବାପା ? ଏଇ ଚନ୍ଦ୍ର । ତାଙ୍କ ନାଁ ପରା ଔଷଧୀଶ । ଯେମିତି ରାତି ହେବ—ଚନ୍ଦ୍ର କଣ କରିବେ ନା ସବୁ ଗଛବୃକ୍ଷ ଭିତରକୁ ଟିକେ ଟିକେ କରି ଅମୃତ ଭରିବେ । ଏ ଯେତେ ଗଛବୃକ୍ଷ, ଗୁଳ୍ମ ଲତାଦି ରହିଛନ୍ତି ସବୁରି ଭିତରେ ରହିଛି ଅମୃତ । କୋଉ ରୋଗକୁ କୋଉ ଅମୃତ ଲାଗିବ ତାକୁ ଯେ ଜାଣିବ, ସେ ଆସ୍ତିକ ନ ହେଲେ, ଶୁଦ୍ଧପୂତ ନ ହେଲେ ନେଇଆଣି ଥୋଇ ପାରିବ ନାହିଁ । ସେଇ ଚନ୍ଦ୍ର ପୁଣି ରହିଲେ ଯାଇ ମହାଦେବଙ୍କ ମୁଣ୍ଡରେ । ଆଉ ହନୁମାନ ହେଉଛନ୍ତି ମହାଦେବଙ୍କର ଅବତାର । ତେଣୁ ଚନ୍ଦ୍ର, ମହାଦେବ, ହନୁମାନ—ଏଇ ତିନିଦେବତାଙ୍କୁ ସନ୍ତୁଷ୍ଟ ନ କଲେ କେହି ବୈଦ୍ୟ ହୋଇପାରିବେ ନାହିଁ ।

ସେଥର ମୁଁ ସାହସ ପାଇ ଅପ୍ରାସଙ୍ଗିକ ଭାବେ ପଚାରି ଦେଲି—ଆପଣଙ୍କୁ କାହିଁକି ଏ ଗାଁରେ କେହି ଡାକନ୍ତି ନାହିଁ ? ଆପଣ ତ ଏତେ-ବଡ଼ କବିରାଜ ?

ମଦନ କବିରାଜ ସାମାନ୍ୟ ମାତ୍ର ଆହତ ନ ହୋଇ କହିଲେ—ଆରେ ବାବୁ ! ଏ ଗାଁରେ କିଏ ଭଲ ଆରୋଗ୍ୟ ଚାହୁଁଛି କହିଲୁ ? ଅସଲି ଔଷଧ ଖାଇବା ପାଇଁ ଏ ଗାଁରେ କିଏ ଲୋକ ଅଛନ୍ତି ? ତୁମର ବୁଢ଼ାବାପା କେତେ ବଡ଼ଲୋକ ! ସେ ତ ସେଇ ପଠାଣ କବିରାଜଠୁଁ ଔଷଧ ଖାଉଛନ୍ତି । ସେ ପଠାଣ ଭଲ କଣ ଜାଣେ ? ସେଗୁଡ଼ାକ ହେଲେ ବିଧର୍ମୀ । ଅନାସ୍ତିକ । ଯେମିତି ଦେଖୁନୁ—ଏ ଯୋଉ ନୂଆ ଡାକ୍ତରଖାନା ହେଉଛି—ନାଲି ନେଳି ପାଣି ଦଉଛି—ସେ ଡାକ୍ତରଟା କଣ ଜାଣେ ? ଖାଲି ଫିରିଙ୍ଗୀ ବିଷଗୁଡ଼ାକ ପାଣିରେ ମିଶାଇ ରୋଗୀଙ୍କୁ ପିଆଉଛି । ଏସବୁ ବିଦେଶୀ ମ୍ଲେଚ୍ଛ ଦେଶର ବିଷ ଖୁଆଇ ସେ ଆମ ଲୋକଙ୍କୁ ହରମଦ କରିବେ ବୋଲି ମସୁଧା କରିଛନ୍ତି । ଏ ଆମର ହେଲା ଆୟୁର୍ବେଦ । ଏ ହେଲା ପଞ୍ଚମ ବେଦ ।

ଧନ୍ୱନ୍ତରୀ ଆଉ ଅଶ୍ୱିନୀକୁମାରଦ୍ୱୟ ଏହାର ସ୍ରଷ୍ଟା । ସେଇମାନଙ୍କୁ ଏହାର ପ୍ରୟୋଗ ଜଣା । କଣ କମି ଔଷଧ ଆମ ଆୟୁର୍ବେଦରେ ଅଛି ବାପ ? ଏ ଗାଁରେ ଏ ମୂର୍ଖଙ୍କୁ କଣ ଜଣା ଅଛି ? ଏ ଯେଉଁ ଔଷଧ ଦେଖୁଛୁ—ସବୁ ମୁଁ ପଠାଇ ଦିଏ ଚେଣେ କଟକ । କଟକରେ ସୁଦାମ କବିରାଜଙ୍କ ପାଖରେ ରହି ମୁଁ ଏ ବିଦ୍ୟା ଶିଖିଛି । ଏସବୁ ମୋଦକ, ବଟିକା ମୁଁ ସେଇଠିକି ପଠାଇଦିଏ । ସୁଦାମ କବିରାଜ ସାକ୍ଷାତ ଧନ୍ୱନ୍ତରୀ । ମହଣ ମହଣ ମୋଦକ ତାଙ୍କଠାରୁ ଗଡ଼ଜାତ ରାଜାମାନେ କିଣି ନଅନ୍ତି । ମୋ ଔଷଧ ସବୁ ସେଇଠିକି ଯାଏ । ସେଇ ଜାଣିଛନ୍ତି ଏ ଔଷଧର ଗୁଣ । ହେଇ ଦେଖ୍ ! ମୁଁ ଦେଖେଇ ଦେଉଛି ।

ମଦନ କବିରାଜ ଆଲମିରା ଓ ଶିକାରୁ ବିଭିନ୍ନ କାଚ ଜାର୍ ଓ ହାଣ୍ଡିମାନ ଆଣି ମୋ ଆଗରେ ଥୋଇଲେ ଓ ପରମ ଉତ୍ସାହରେ କହି ଚାଲିଲେ—

ହେଇଟି ଦେଖ ! ଏ ହେଲା 'ବୃହତ୍ ଚନ୍ଦ୍ରପ୍ରଭା ଗୁଟିକା ।' ଏଇଟା ଦେଖ—'ସର୍ବବୃହତ୍ ଚନ୍ଦ୍ରୋଦୟ ମକରଧ୍ୱଜ ।' ହେଇଟି ଦେଖ— 'ସ୍ୱର୍ଣ୍ଣଘଟିତ ବସନ୍ତ କୁସୁମାକର ମୋଦକ ।' ଏହା ଭିତରେ ରହିଛି— ବିଶୁଦ୍ଧ ଛାଗଳାଦ୍ୟ ଘୃତ । ୟାକୁ ଦେଖ—ଆୟୁର୍ବେଦ ଗଗନର ରସାୟନ ଭାସ୍କର 'ଚ୍ୟବନପ୍ରାଶ ।' ଏଇ ଦେଖ—'ଶିଳାଜତୁ ରସାୟନ ।' ଆଉ ଏଇଟା ଦେଖ—ପାରଦଘଟିତ—ବଙ୍ଗ ଭସ୍ମ । ଏ ହେଲା—ମଦନାନନ୍ଦ ମୋଦକ । ଏଇ ଦେଖ—କାମେଶ୍ୱର ମୋଦକ । ଏଠି ଅଛି ଶତାବରୀ ମୋଦକ ।

ମଦନ କବିରାଜଙ୍କର କଣ ହେଲା କେଜାଣି ସେ ଦୁଇଘଣ୍ଟାକାଳ ମୋତେ ସେଠାରେ ବସାଇ ତାଙ୍କ ପ୍ରସ୍ତୁତ ଯାବତୀୟ ଔଷଧ ମୋତେ ଦେଖାଇ ତାର ଗୁଣାଗୁଣ ଉପରେ ଅତ୍ୟନ୍ତ ଆବେଗ ଆଗ୍ରହର ବକ୍ତୃତା ଦେଇ ଚାଲିଲେ । ମୋ ଆଗରେ ନାନାଦି ଗୁଟିକା, ମୋଦକ ଭସ୍ମ, ଘୃତ, ସାଲସା, ଅରିଷ୍ଟାଦି ଥୁଆ ହୋଇଥିଲା । ଘରଭିତରଟି ସାମାନ୍ୟ ଅନ୍ଧାରିଆ ଥିଲା ଓ ତା ଭିତରେ ବିଚିତ୍ର ବାସ୍ନା ସବୁ ବାହାରୁଥିଲା । ମୁଁ ନିସ୍ତବ୍ଧ ହୋଇ

ସେ ସବୁ ଦେଖୁଥାଏ ଓ ମଦନ କବିରାଜଙ୍କ ମୁଖରୁ ଅନର୍ଗଳ ଆୟୁର୍ବେଦ ଶୁଣୁଥାଏ । କିଛି କିଛି ବୁଝୁଥାଏ । ଅନେକ କଥା ବୁଝିପାରୁ ନ ଥାଏ ।

ପ୍ରାୟ ଦୁଇଘଣ୍ଟା କାଳ ଗପି ସାରିବା ପରେ ସେ ମୋତେ ଗୋଟିଏ କାଗଜରେ କେତୋଟି ମୋଦକ ଦେଲେ ଓ ଆଉ ଖଣ୍ଡିଏ କାଗଜରେ କେତୋଟି ବଟିକା ବି ଦେଲେ । ସେଇଠୁ କହିଲେ, ଯିଏ ଯାହାକୁ ଯେପରି କହିଲି ସେପରି ଖାଇବୁ । କାଲିକି ଗୋଟିଏ ଶିଶି ଆଣି ଆସିବୁ ମୁଁ ସେଥିରେ ପାଏ ଅନ୍ଦାଜ ମଧ୍ୟମନାରାୟଣ ତେଲ ଦେବି । ତାକୁ ମୁଣ୍ଡରେ ଦିନକୁ ଦୁଇଥର ମାଲିସ କରିବୁ । ସାମାନ୍ୟ ଟିକେ ମଧ୍ୟ ନାକପୁଡ଼ା ଭିତରେ ପୂରାଇ ଭିତରକୁ ଶୋଷିବୁ । ମୋ ପାଖେ ବଳକା ଶିଶି ନ ଥାଏ । ଘରୁ କାଲି ଶିଶିଟିଏ ଆଣିବୁ । ଆସିବୁ ନଶ୍ଚେ......

ମୁଁ ହଁ ଭରି, ଔଷଧତକ ଧରି ଉଠିଲି । ମନେ ପଡ଼ିଗଲା ଔଷଧ ପାଇଁ ପଇସା ଦେବାକୁ ହୁଏ । ସେଇଠୁ ମୁଁ କହିଲି—ମୋ ପାଖେ ତ ଏତେକ ଔଷଧ ପାଇଁ ପଇସା ନାହିଁ ବର୍ତ୍ତମାନ, କାଲି ଆଣିବି ।

ମଦନ କବିରାଜ କହିଲେ—ଆରେ ଯାଃ ! ପଇସା ? ତୋ ଠାରୁ ମୁଁ ପଇସା ନେବି ? ପଇସା ମୋର କ'ଣ ହେବ ? ମୋର କିଏ ଖାଇବାକୁ ଅଛି ? ନଅଟା ନା' ଛଅଟା ? କଟକ ସୁଦାମ କବିରାଜ ମୋତେ ଢେର ପଇସା ଦେଇଛି । ମୁଁ ଏ ଔଷଧ ଦଉଛି । ପନ୍ଦର ଦିନ ପାଇଁ ବ୍ୟବହାର କର । ଫଳ ନିଶ୍ଚୟ ପାଇବୁ । ତା' ହେଲେ ତୁମ ଇସ୍କୁଲିଆ ସାଙ୍ଗମାନଙ୍କୁ କହିବୁ । ସମସ୍ତେ ଆସି ଏଠୁ ଔଷଧ ନେଇଯିବେ । ଆଉ ପରୀକ୍ଷା ପାଇଁ ଭୟ ରହିବ ନାହିଁ । ଯୋଉ ବହି ପଢ଼ିବୁ—ଗୋଟାସୁଦ୍ଧା ମନ ଭିତରେ ଛପି ହୋଇଯିବ । ଏ ଔଷଧର ଏମିତି ମହିମା । ଆୟୁର୍ବେଦଟି ଏ ? ଏକଣ ଫିରିଙ୍ଗୀ ନାଲିପାଣି ହୋଇଛି । ନା' ପଟାଣିଆ ଚୂର୍ଣ୍ଣ ହୋଇଛି ? ନଅ ! ଏତେକ ସେମିତି ମାଗଣାରେ ସେବନ କର । ମୋର ନାଁ ଦରକାର । ଏ ଗାଁର ମୂର୍ଖମାନେ ମୋତେ ଜାଣି ନାହାନ୍ତି । ସେମାନଙ୍କ ଆଖିରେ ଦାମ କବିରାଜ, ମଦନ କବିରାଜ, ଏନାମ ମିଆଁ ଧନ୍ୱନ୍ତରୀ । ଆରେ ବାବୁ ! ସେମାନେ ଏ ଆୟୁର୍ବେଦ ସବୁ ଭଲ ସାଧିଛନ୍ତି ? ଖାଲି ଗୁଡ଼ାଏ ଏଣୁତେଣୁ

ଛେଲ, ତେରମୂଳ ଚୂନା କର ଲୋକଙ୍କୁ ଭଣ୍ଡାଉଛନ୍ତି । ଏ ଶଃଳା ଗାଁ ଲୋକେ ବି ସେମିତି । ଶଳାଙ୍କୁ କନଅରକଂଟ ଗୁଣ୍ଡ ବାଟି ଦେଲେ ବି ଖାଇ-ପିବେ । ଶଃଳାଙ୍କୁ ଅମୃତ ଛୁଇବ ନାହିଁ । ସେମିତି ମରୁଛନ୍ତି ଶଳେ ! ମହନ କବିରାଜ ଏଇ ଶଳା ମୂର୍ଖଙ୍କୁ ଖାତିର କରନ୍ତୁ ? କଂଟକର ସୁଦାମ କବିରାଜ ମୋର ଗୁଣ ଜାଣନ୍ତି । ମୋର ହାତ ତିଆର ମହଣ ମହଣ ମୋଦକ ଛଡିଣି ଗଡ଼ଜାତରେ ରଜା ମହାରାଜାମାନେ ଖାଉଛନ୍ତି । ଏ ଶଃଳା ଗାଁ ବାଲା ମରନ୍ତୁ କି ରହନ୍ତୁ—ମୋର କି ଯାଏ ? ଶାସ୍ତ୍ର କହୁଛି ଭଲ ବୈଦ୍ୟ ହାତରେ ପଡ଼ିଛେ ମରିବ ମୂର୍ଖ ଅନାଡ଼ି ବୈଦ୍ୟହାତରେ ଆରୋଗ୍ୟ ହେବ ନାହିଁ ।···ହଉ ହଉ ବାପ ! ତୁ ଯାଆ । ଯେମିତି କହିଲି —ସେମିତି ଏ ଔଷଧ ବ୍ୟବହାର କରିବୁ । ଆଉ ମନେରଖ କାଲି କିଣିଟାଏ ଆଣି ମନେକରି ନେଇଯିବୁ ମଥା ପାଇଁ ମଧ୍ୟମନାରାୟଣ ତୈଳ ।

ମୁଁ ବିମାତ ଭାବେ ହଁ ଭରି ନମସ୍କାର ଜଣାଇ ତାଙ୍କଠାରୁ ସେଦିନ ବିଦାୟ ନେଇ ଆସିଲି । କାହିଁକି କେଜାଣି, ମହନ କବିରାଜଙ୍କ ପ୍ରତି ମୋର ଅନ୍ତରରେ କିଛି ବିଷାଦଭାବ ଜାତ ହେଲା । ସେଇ ବିଷାଦରୁ ମଧ୍ୟ ସୃଷ୍ଟି ହେଲା କିଛି ସମ୍ଭ୍ରମଭାବ—କିଛି ଭକ୍ତିଭାବ । ଆଉ କିଛି ବିଶ୍ୱାସ ମଧ୍ୟ । ······

ପନ୍ଦର ଦିନ ଖଣ୍ଡେ ବିତିଗଲା । ସେତେବେଳେ ମୋଦକ, ବଟିକା ଓ ତୈଳ ନିୟମିତ ବ୍ୟବହାର କରିଥିଲି । ମାତ୍ର ତାର ବିଶେଷ କିଛି ଫଳ ହେଲା ବୋଲି ମନେହେଲା ନାହିଁ । ମୁଁ ଔଷଧକୁ ନିନ୍ଦୁନାହିଁ । କବିରାଜ ଶିରୋମଣି ମୋହନ ଚରଣ ସାହୁ ବା ମହନ କବିରାଜଙ୍କୁ ନିନ୍ଦୁନାହିଁ । ଅସଲ କଥା ହେଲା ମୋ ନିଜର ପ୍ରକୃତି ଓ ମୋର ନିଜ ବୁଦ୍ଧି ବୃତ୍ତିର ସୀମା । ଗଣିତ ପଢ଼ାହେଲା ବେଳେ ଯେ ହଲଧାବସନ୍ତ ଚଢ଼େଇ କୋଉଠି ବସା କରିଛି କଥା ଭାବୁଥିବ, ତାର ପେଟରେ ଯେତେ ଚିନ୍ତାମଣି ଚତୁର୍ମୁଖ ବା ସ୍ୱର୍ଣ୍ଣ ଭସ୍ମଯୁକ୍ତ ମୋଦକ ବଟିକା ଭର୍ତ୍ତିକଲେ, କି ତାର ମଥାରେ ଯେତେ ମଧ୍ୟମନାରାୟଣ ତୈଳ ମାଲିସ କଲେ, ତାର କି ଉପକାର ହେବ ? କିଛି ହେବ ନାହିଁ । ହେଲା ମଧ୍ୟ ନାହିଁ । ବରଂ ଦିନକୁ ଦିନ ମୁଁ ବେଶି ବେଶି ଅନ୍ୟମନସ୍କ ହେଲି । ଯେତେ ଘୋଷାଘୋଷି କଲେ ବି କିଛି ମନେ ରହିଲା ନାହିଁ । ମୋର ନିର୍ବୁଦ୍ଧିଆ ଓ ଗଧପଣିଆ ଶିକ୍ଷକମାନଙ୍କ

ଆଖିରେ ବେଶି ବେଶି ଧରାପଡ଼ିଲା । ଅବଶ୍ୟ, ଏଥିଲାଗି ବହୁ କାରଣ ଦାୟୀ ଥିଲା । ମୋ ନିଜ ପ୍ରକୃତିରେ ବହୁ ଦୋଷ ଥିଲା । ମୁଁ ବଡ଼ ଚଗଲା ଥିଲି । ବାର କଥାରେ ମୁଣ୍ଡ ପୂରାଉଥିଲି । ମୋର ବିନ୍ଦୁମାତ୍ର ଏକାଗ୍ରତା ନ ଥିଲା । ଖୁବ୍ ଚଞ୍ଚଳ ପ୍ରକୃତିର ପିଲା ଥିଲି ମୁଁ । ମୋ ମନ ଥିଲା ବଡ଼ ଅଥୟ । ମୁହୂର୍ତ୍ତିକେ ଏଠି ତ, ଆଉ ମୁହୂର୍ତ୍ତିକୁ ଆଉ ଠାଏ । ତେଣୁ ମୁଁ ଔଷଦ ବା କବିରାଜଙ୍କ ଦୋଷ ଦେବି କାହିଁକି ? ପବିତ୍ର ଓ ଗଭୀର ଆୟୁର୍ବେଦ ଶାସ୍ତ୍ରକୁ ନିନ୍ଦିବି କାହିଁକି ? ତା'ଛଡ଼ା ମଦନ କବିରାଜଙ୍କ ଔଷଦର ଗୁଣ ଥାଉ ନଥାଉ ମୁଁ କିଣ ଆଉ ମଦନ କବିରାଜଙ୍କୁ ନିନ୍ଦା କରିପାରିବି ? ଆମ ଗ୍ରାମବାସୀ ତାଙ୍କ ବିରୁଦ୍ଧରେ ଯୋଉସବୁ କଥା କହନ୍ତି—ଯଥା ବିଷଦୃଷ୍ଟି ଆଟାଏ ବା ବିଷହସ୍ତାଟାଏ—ତା' ମଧ୍ୟ କିଣ ମୁଁ ତାଙ୍କ ପ୍ରତି ପ୍ରୟୋଗ କରିପାରିବି ? ମଦନ କବିରାଜଙ୍କ ସଙ୍ଗେ ମୋର ଭାବ ହୋଇ ଯାଇଥିଲା । ତାଙ୍କ କବିରାଜୀ ମହିମା ମୋ ପକ୍ଷରେ ଥିଲା ଅବାନ୍ତର । ସେହିଦିନଠାରୁ ମୁଁ ତାଙ୍କ ପ୍ରତି ଆକୃଷ୍ଟ ହୋଇ ଯାଇଥିଲି । ଆଉ ସେ ମଧ୍ୟ ମୋ ପ୍ରତି । କ'ଣ ବା ଏହାର କାରଣ ଥାଇପାରେ ? ମୁଁ ତାଙ୍କ ସ୍ମୃତିଶକ୍ତିବର୍ଦ୍ଧକ ବା ବୁଦ୍ଧିମାନ୍ଦ୍ୟନାଶକ ଔଷଧ ବିଷୟରେ ମୋ ସାଙ୍ଗପିଲାମାନଙ୍କୁ କିଛି କହି ନାହିଁ । ତାଙ୍କ ଔଷଧର ଗୁଣାଗୁଣ ପ୍ରଚାର କରିନାହିଁ । ସେକଥା ମୁଁ ଭୁଲି ଯାଇଛି । ସେ ମଧ୍ୟ ମୋତେ ଆଉ ଦିନେ ସେ କଥା ପଚାରି ନ ଥିଲେ । କେବଳ ସେଇ ଗୋଟିଏ ଦିନ । ମୁଁ ତାଙ୍କର ଔଷଧ ଶେଷ କରିଥାଏ ଓ ତାର କିଛି ଫଳାଫଳ ନ ପାଇ ବୁଲୁଥାଏ । ମାତ୍ର ମୋର କିଛି ସେଥିଲାଗି ଅବଶୋଷ୍ ନ ଥାଏ । ପ୍ରାୟ ମାସେ ଖଣ୍ଡେ ଗତ ହୋଇଗଲା । ଦିନେ ଆମ ସ୍କୁଲ୍ ପଢ଼ାଆରେ ମୋର ତାଙ୍କ ସଙ୍ଗେ ହଠାତ୍ ମୁହାଁମୁହିଁ ହୋଇଗଲା । ସେ ନଈ ଆଡ଼ୁ ଗାଧୋଇ ସାରି ସେମିତି ଶୁଚିମନ୍ତ ହୋଇ ସରୁ ଫରକଟା ଗୋଡ଼ରେ ଏଣ୍ଡୁଅ ପରି ତେଇଁ ତେଇଁ ତଳକୁ ମୁହଁପୋତି କମ୍ପିତ ଭଙ୍ଗୀରେ ଘରକୁ ଫେରୁଥିଲେ । ମୋତେ ଦେଖିବା ମାତ୍ରେ 'ଥ' ହୋଇ ଛିଡ଼ା ହୋଇଗଲେ । ମୁଁ ତାଙ୍କୁ ନମ୍ର ଭାବରେ ନମସ୍କାର କଲି । ସେ କହିଲେ—ଆରୋଗ୍ୟ ଭବ, ଆୟୁଷ୍ମାନ ଭବ ! ସେଇଠୁ ସେ ମୋତେ ତାଙ୍କ ପଛେ ପଛେ ଘର ପର୍ଯ୍ୟନ୍ତ ଅନୁସରଣ କରିବାକୁ ନିର୍ଦ୍ଦେଶ ଦେଲେ । ମୁଁ ତାଙ୍କ ପଛେ ପଛେ ମନ୍ତ୍ରଚାଳିତବତ୍ ଅଭିଭୂତ ହୋଇ ଚାଲିଲି ।

ଘରେ ପହଞ୍ଚି ସେ ମୋ ଲାଗି ଖଣ୍ଡିଏ ମସିଣା ପାରିଦେଇ ମୋତେ ବସିବାକୁ କହିଲେ । ତା'ପରେ ସେ ଘଣ୍ଟାଏ କାଳ ପୂଜା-ପୂଜ କଲେ । ଶଙ୍ଖ ଘଣ୍ଟି ବଜାଇଲେ । ସେଇଠୁ କଣ୍ଟା ଉଖୁଡ଼ା ଆଉ କଦଳୀ ଭୋଗ ଆଣି ମୋ ହାତରେ ଧରାଇଦେଇ କହିଲେ—ଖା' ଖା' ପ୍ରସାଦ ଖା' । ମୁଁ ସେତେକ ଆଗ୍ରହରେ ଖାଇ ପାଣି ପିଇଲି । ସେଇଠୁ ସେ ମୋ ପାଖରେ ସଇଥିଲଆ ହୋଇ ବସିଲେ । କହିଲେ— କେଉଁ ଶ୍ରେଣୀ ତୋର ହେଲାଣି ? ମୁଁ କହିଲି—ସପ୍ତମ ଶ୍ରେଣୀ । ସେ କହିଲେ – ମଧୁ ରାଓଙ୍କ ସାହିତ୍ୟ ପ୍ରସଙ୍ଗ ପଢ଼ୁଛୁ ? ମୁଁ କହିଲି, ହଁ । ସେ ପଚାରିଲେ—କିଏ ପଢ଼ାଉଛନ୍ତି ? ଇନ୍ଦ୍ରମଣି ପଣ୍ଡିତେ ନା ବଳଭଦ୍ର ପଣ୍ଡିତେ ? ମୁଁ କହିଲି—ବଳଭଦ୍ର ପଣ୍ଡିତେ । ମୋ କଥା ଶୁଣି ମଦନ କବିରାଜ ତାଙ୍କର ଦୁଇହାତ କପାଳରେ ଯୋଡ଼ି କହିଲେ—ଆଃ ! ଯେମିତି ପଣ୍ଡିତ ଏ ଖଣ୍ଡମଣ୍ଡଳରେ ନାହାନ୍ତି । ଯେମିତି ଜ୍ଞାନ ! ସେମିତି ଆଗ୍ରହ ! ହେଲେ ସେ ଆଉ ବେଶିଦିନ ବଞ୍ଚିପାରିବେ ନାହିଁ । ମୁଁ ତାଙ୍କ ନାଡ଼ୀ ଦେଖିଛି । ଖୁବ୍ ହେଲେ ବର୍ଷେ ଛଅମାସ ଯାଏକ ନ ଯାଏ ।

ଏକଥା ଶୁଣି ମୋ ମନ ବଡ଼ ଖରାପ ହୋଇଗଲା । ବଳଭଦ୍ର ପଣ୍ଡିତଙ୍କୁ ଆମେମାନେ ଖୁବ୍ ଭଲ ପାଉଥିଲୁ । ଖୁବ୍ ସମ୍ମାନ ଭକ୍ତି କରୁଥିଲୁ । ସେଭଳି ଶିକ୍ଷକ ମୁଁ ଆଉ ଜୀବନରେ ଦେଖିନାହିଁ । ସେ ସାହିତ୍ୟ ଓ ଅଙ୍କ ଉଭୟ ପଢ଼ାଉଥିଲେ । ଅଙ୍କ କ୍ଲାସରେ ସେ ମୋତେ ଖୁବ୍ ପିଟୁଥିଲେ । ସମସ୍ତଙ୍କୁ ପିଟୁଥିଲେ । ମାତ୍ର ସାହିତ୍ୟ କ୍ଲାସରେ ସେ ଯେତେବେଳେ କବିତା ପଢ଼ାନ୍ତି—ଆମେ ସତେକି ସ୍ୱପ୍ନରାଜ୍ୟକୁ ଉଡ଼ିଯାଉଁ । ଯେପରି ଗମ୍ଭୀର ସୁଲଳିତ କଣ୍ଠସ୍ୱର—ସେହିଭଳି ବୁଝାଇବା ପ୍ରଣାଳୀ । ତାଙ୍କ ବିଷୟରେ ଅଗୁଣିକ ଏମିତି ଅଶୁଭ ଖବର ଶୁଣି ମୋ ମନ ବିରାଶ ହୋଇଗଲା ।

ସେଇଠୁ ମଦନ କବିରାଜ କହିଲେ—'ଜୀବନଚିନ୍ତା' କବିତା ପଢ଼ା ହେଲାଣି ? ଦେଖି ଗାଇଲୁ ! ମୁଁ ଉତ୍ସାହିତ ହୋଇ ଗାଇ ଚାଲିଲି—'ରେ ଆତ୍ମନ୍ ନିଦ୍ରା ପରିହରି—ଫେଡ଼ି ଚିନ୍ତାର ଲୋଚନ, କର କର ନିରୀକ୍ଷଣ, ନିଃଶବ୍ଦେ ଜୀବନସ୍ରୋତ ଧାଉଁଛି କପରି, ଭେଟିବାକୁ ମୃତ୍ୟୁସିନ୍ଧୁ କରାଳ ଲହରୀ ।' ସେଇଠୁ ଶେଷଯାଏ ଏକା ନିଃଶ୍ୱାସକେ ଆବେଗରେ ଗାଇଗଲି ।

ସେ ଆଖିବୁଜି ଧ୍ୟାନସ୍ଥ ହୋଇ ଶୁଣୁଥିଲେ । ଆବୃତ୍ତି ଶେଷରେ ଆଖିଟାଖୋଲି ମୋ ମୁଣ୍ଡରେ ହାତ ରଖିଲେ । ମୋ ମୁଣ୍ଡକୁ ଆଉଁସିଲେ । କହିଲେ— ଠିକ୍ । ଠିକ୍ କାମ କରୁଛି । ଔଷଦ ଠିକ୍ କାମ କରୁଛି । ତା' ନ ହେଲେ ଏତେବଡ଼ କବିତା ପୁଣି ମଧୁସୂଦନଙ୍କ 'ଜୀବନ ଚିନ୍ତା' ଭଳିଆ କବିତା ତୋ'ଭଳି ପିଲା ପକ୍ଷରେ ଆମୂଳଚୂଳ ମନେରଖିବା ଅସମ୍ଭବ ହୋଇଥାନ୍ତା । ବାଃ ଯାଃ । ଆଉ ଏଥର ଚିନ୍ତାନାହିଁ । ଏମ: ଏ: ଯାଏ ପଢ଼ିଯା' । ଏଣିକି ସବୁ ତୋର ମନେରହିବ । ସୁଦାମ କବିରାଜଙ୍କ ଶିଷ୍ୟ ମୁଁ । ଏ ହେଲା ଆୟୁ-ର୍ବେଦ । ଔଷଧ ନ ଧରି ଯିବ କୁଆଡ଼େ ? ମଧ୍ୟମନାରାୟଣ ତୈଳ, ଚିନ୍ତାମଣି ଚତୁର୍ମୁଖ, ଆଉ ସ୍ମୃତିସୁଧା ବଟୀ ! ବାଃ ବାଃ ! ଠିକ୍ କାମ କରୁଛି । ଏ ଶଃଳା ଗାଁବାଲା କୋଉଠୁ ବୁଝିବେ ? ଶଳା ମୂର୍ଖ ! ସେଇ ହାମ କବିରାଜ ଆଉ ଏନ୍ତାମ ମିଆଁଠୁ ବିଷ ଖାଉଥାଅ—ମରୁଥାଅ ।···ହଉ ଠିକ୍ଅଛି । ଆଜି ସେ ଔଷଦ ଖାଇବା ଦରକାର ନାହିଁ । ମୁଁ ତତେ ଆଜି ଏ ତୈଳଟି ଦେଉଛି । ବୃହତ୍ ବ୍ରାହ୍ମୀ ତୈଳ । ଏହା ନିୟମିତ ଭାବେ ମସ୍ତିଷ୍କରେ ମାଲିସ କଲେ ସ୍ମୃତିଶକ୍ତି ବୃଦ୍ଧିପାଇବା ସଙ୍ଗେ ସଙ୍ଗେ, ମସ୍ତିଷ୍କ ଦାହ, ମଥା ଘୂର୍ଣ୍ଣନ, ଅପସ୍ମାର, ମୂର୍ଚ୍ଛାଦି ଦୂରହୁଏ ଓ ମସ୍ତିଷ୍କର କୁପିତ ବାୟୁ ଶାନ୍ତହୋଇ ସୁନିଦ୍ରା ହୋଇଥାଏ । ତୁ ଯାକୁ ନିୟମିତ ବ୍ୟବହାର କର । ତୁ ଏମ: ଏ: ପଢ଼ିବାଯାଏ, ମୁଁ ତୋତେ ମାଗଣାରେ ଏ ତୈଳ ଯୋଗାଉଥିବି । ତୁ ଉଚ୍ଚଶିକ୍ଷା ପ୍ରାପ୍ତହୋଇ ଏହି ଗ୍ରାମର ମୁଖ ଉଜ୍ଜ୍ୱଳ କର । ଏ ଶଃଳା ଗାଁରେ ଆଉ ମଣିଷ ନାହାନ୍ତିରେ ବାବୁ ! ଶଃଳା ମୂର୍ଖଗୁଡ଼ାକ ! ହାମ କବିରାଜ ଆଉ ଏନ୍ତାମ ମିଆଁଠୁଁ ଔଷଦ ନାଁରେ ବିଷଖାଇ ଏ ଶଃଳାଏ ଦିନେ ସମସ୍ତେ ମରିବେ । ମୁଁ କହିଦେଉଛି ବାବୁ—ଲେଖିଦେଉଛି ।

ମୁଁ ଚୁପ୍‌ଚାପ୍ ବସି ରହିଥାଏ । ସେ ବ୍ରାହ୍ମୀତୈଳ ଶିଶିଟିଏ ମୋ ପାଖରେ ଆଣି ରଖିଲେ । ସେଇଠୁ ଆଲମାରି ଖୋଲି ଆଉଗୋଟିଏ ଗେଡ଼ା ମୋଟା ଶିଶି କାଢ଼ି ସେଥିରୁ ପ୍ରାୟ କୋଡ଼ିଏ ତିରିଶିଟି ବଟିକା କାଢ଼ି, ତାକୁ ଗୋଟିଏ କାଗଜରେ ବାନ୍ଧି ମୋର ଅତି ପାଖକୁ ଲାଗିଆସି ଖୁବ୍ ଧୀରେ ଫୁସ୍ ଫୁସ୍ କରି କହିଲେ, ମୁଁ ତତେ ଆଉ ଗୋଟିଏ ମୂଲ୍ୟବାନ ମହୌଷଧି ଦେଉଛି । କାହାକୁ ଏ କଥା ପ୍ରକାଶ କରିବୁ ନାହିଁ । ଏହାର ନାମ ହେଉଛି 'ମହାଶୁକ୍ରଧାରଣ ବଟୀ' । ସାମାନ୍ୟ କଞ୍ଚାଦୁଧରେ ଟୋପାଏ

ବରଷୀର ପକାଇ ଗୋଳାଇବୁ । ଏଇ ବଟିରୁ ଗୋଟିଏ ଚନ୍ଦନ ପ୍ରେଣ୍ଡରେ ଘୋରି ସେତିକ ସେଇ ଦୁଧରେ ମିଶାଇ ରାତିରେ ଶୋଇବା ପୂର୍ବରୁ ପିଇଦେବୁ । ବାସ୍—ଏହା ଏହିପରି ଭାବରେ ସେବନ କଲେ—ଯୁବକର ତେଜବୀର୍ଯ୍ୟ ବୃଦ୍ଧି ପ୍ରାପ୍ତ ହୋଇ ତାର ଶୁକ୍ର ଅତିଶୟ ଗାଢ଼ ହୋଇଥାଏ ଏବଂ ଆଦୌ ସ୍ଖଳନ ହୁଏନାହିଁ । ସ୍ୱପ୍ନଦୋଷ ସ୍ୱପ୍ନରେ ସୁଦ୍ଧା ଦେଖାଦିଏ ନାହିଁ । ଏହା କିଶୋର ଓ ଯୁବକମାନଙ୍କ ପାଇଁ ବ୍ରହ୍ମଚର୍ଯ୍ୟ ରକ୍ଷା ଦିଗରେ ଅବ୍ୟର୍ଥ ମହୌଷଧ । ସ୍ୱୟଂ ଶୁକ୍ରାଚାର୍ଯ୍ୟ ଏହାକୁ ପ୍ରସ୍ତୁତ କରି ନିଜେ ସେବନ କରୁଥିଲେ ।

ଏହାପରେ ସେ ମତେ କିଶୋର ଓ ଯୁବକ ଲାଗି ଶୁକ୍ର ଧାରଣ କିଭଳି ଉପଯୋଗୀ ସେ ସମ୍ବନ୍ଧେ ଗୋଟିଏ ଭାଷଣ ଦେଲେ । ସେ କହିଲେ, ଆୟୁର୍ବେଦରେ କଥିତ ଅଛି ଯେ—ଜୀବନଂ ବିନ୍ଦୁ ଧାରଣଂ ମରଣଂ ଶରଣଂ ବିନ୍ଦୁ ପାତେନ । ବିନ୍ଦୁଏ ଶୁକ୍ର ଭିତରେ ବ୍ରହ୍ମ ଅବସ୍ଥାନ କରିଥାନ୍ତି । ଅସମୟରେ କାମିନୀଚିନ୍ତା କଲେ କିମ୍ବା ହସ୍ତ ମୈଥୁନାଦି କର୍ମରେ ଲିପ୍ତ ରହିଲେ—କିମ୍ବା ସ୍ୱପ୍ନଦୋଷ ଫଳରେ କିଶୋର ଓ ଯୁବକଙ୍କର ଯେଉଁ ରେତପାତ ହୋଇଥାଏ ତା' ଫଳରେ ତାର ଶରୀର ଓ ମସ୍ତିଷ୍କରେ ବହୁ ଦୋଷ ଦେଖାଦିଏ । ଅକାରଣରେ ଓ ଅସମୟରେ ଶୁକ୍ର ନଷ୍ଟହେବା ଫଳରେ ଅକାଳବାର୍ଦ୍ଧକ୍ୟ, ଅକାଳ କେଶପକ୍ୱତା, ଶିରୋଘୂର୍ଣ୍ଣନ, ଶିର-ବ୍ୟଥା, ସ୍ମୃତିଶକ୍ତି ନାଶ, ହୃତ୍ପନ୍ଦନାଦି ବିଲକ୍ଷଣମାନ ଦେଖାଦିଏ ଓ ଅତିଲେ ପୁରୁଷତ୍ୱ ବିନଷ୍ଟ ହୋଇ ସେ ବ୍ୟକ୍ତି ଆତ୍ମହତ୍ୟା କରିବା ପାଇଁ ଆଗଭର ହୋଇଥାଏ । କିନ୍ତୁ ଯୌବନ ଆସିବା ମାତ୍ରେ ମାନବ ସନ୍ତାନ ଚିତ୍ତରେ ଇତର ପ୍ରାଣୀ ନ୍ୟାୟ କାମ ଭାବ ଜାତ ହୁଏ ଓ ସେ କନ୍ଦର୍ପ ପୀଡ଼ାରେ ଅଥୟ ହୋଇ ଯଥ ତଥ ଯେନତେନ ପ୍ରକାରେଣ ରେତସ୍ଖଳନ କରି ଆନନ୍ଦ ପାଇବାକୁ ଅସ୍ଥିର ହୋଇ ନାନାଦି କୁଉପାୟ ଅବଲମ୍ବନ କରିଥାଏ । ଏହି ହେତୁରୁ ଅସୁରମାନଙ୍କର ଗୁରୁ ଓ ମୃତସଞ୍ଜୀବନୀ ସୂତ୍ରର ଉଦ୍ଭାବକ ମହର୍ଷି ଶୁକ୍ରାଚାର୍ଯ୍ୟ ମାନବ ଯୁବକର ବ୍ରହ୍ମଚର୍ଯ୍ୟ ଧାରଣ ପନ୍ଥାକୁ ସୁଗମ କରିବା ପାଇଁ ଏହି 'ଶୁକ୍ରଧାରଣ ବଟୀ'ର ସୂତ୍ର ଉଦ୍ଭାବନ କରିଛନ୍ତି । ମୁଁ ଜାଣିପାରୁଛି···ତୁ କୈଶୋର ଅବସ୍ଥା ଅତିକ୍ରମ କରୁଅଛୁ ଏବଂ ଅଚିରେ ଯୌବନରେ ପଦାର୍ପଣ କରିବୁ । ଆଧୁନିକ ଯୁଗରେ ଲୋକ-

ସମାଜରେ କାମଭାବର ପ୍ରାବଲ୍ୟ ଦେଖାଯିବା କାରଣରୁ ତୁ ନିଶ୍ଚୟ ଛାତ୍ରାବାସରେ ବହୁ କୁପ୍ରକୃତିର ପିଲାଙ୍କ ସହିତ ମିଶି ତୋର ବ୍ରହ୍ମଚର୍ଯ୍ୟ ନଷ୍ଟକରି ବସିବୁ । ଏହି ବ୍ରହ୍ମଚର୍ଯ୍ୟ ନଷ୍ଟ ହେଲେ—ଆଉ ତୋର ଶରୀର ଓ ମସ୍ତିଷ୍କ ସୁସ୍ଥ ରହିବ ନାହିଁ । ଏହି କାରଣରୁ ମୁଁ ତୋତେ ତୋର ହିତଲାଗି ଏହି 'ଶୁକ୍ରଧାରଣ ବଟୀ' ଦେଉଛି । ତୁ ଏହାକୁ ଗୋପନରେ ନିୟମିତ ସେବନ କରିବୁ । ଦେଖିବୁ, ଏହାର ସୁଫଳ ଅଚିରେ ଫଳିବ । ଏହାପରି ଭାବେ ସୁସ୍ଥ ମସ୍ତିଷ୍କ ଓ ସୁସ୍ଥ ଶରୀରରେ ତୁ ତୋର ବିଦ୍ୟା-ସାଧନରେ ଲାଗି ଯା' । ଏମ୍. ଏ. ପାସ୍ କରିସାରି ବଡ଼ ହାକିମ ହୁଅ । ଏହି ଗ୍ରାମର ମୁଖ ଉଜ୍ଜ୍ୱଳ କର । (ପ୍ରକାଶ ଥାଉକି—ଆଜକୁ ଚାଳିଶି ପଇଁଚାଳିଶି ବର୍ଷ ପୂର୍ବେ ଆମ ଗ୍ରାମବାସୀଙ୍କ ପକ୍ଷରେ ଏମ୍. ଏ. ପାସ୍ ବ୍ୟାପାରଟି ଏଭରେଷ୍ଟ ଆରୋହଣ ସଦୃଶ ମହା ଦୁଃସାଧ୍ୟ ଥିଲା ।)

ତା'ପରେ ମୁଁ ସେ ଔଷଧତିକ ଧରି ଉଠି ଠିଆହେଲି ଏବଂ ଆଉ କିଛି କଥା ନ କହି ମୁଣ୍ଡ ନୁଆଁଇ ନମସ୍କାର କରି ବିଦାୟ ନେବାକୁ ବସିଲି । ସେ ମୁଣ୍ଡରେ ହାତରଖି ମୋତେ ଅତି ଅନ୍ତରରୁ ଆଶୀର୍ବାଦ କଲେ ଏବଂ ଏଇସବୁ ଔଷଧ ନେଇ ନିୟମିତ ବ୍ୟବହାର କରିବାକୁ ବାରମ୍ବାର ବିନା ସଙ୍କୋଚରେ ଆସିବାକୁ କହିଲେ । ମୁଁ ଚାଲି ଆସିଲି ।

ତା'ପରେ ଛ'ମାସ ବିତିଗଲା । ମୁଁ ସେ ଔଷଧତିକ ଖାଇ ଶେଷ କରିଦେଲି । ମୁଣ୍ଡରେ ସେ ବ୍ରାହ୍ମୀତୈଳ ଲଗାଇ ଶେଷ କଲି । ତା'ପରେ ମୋର ମାଇନର କେନ୍ଦ୍ର ପରୀକ୍ଷା ହେଲା । ମୁଁ ମାଇନର ପାସ୍ କରିସାରି ଗାଁ ଠାରୁ ଦୂରରେ ଗୋଟିଏ ପ୍ରସିଦ୍ଧ ହାଇସ୍କୁଲରେ ନାଁ ଲେଖାଇ ଛାତ୍ରା-ବାସରେ ରହି ପାଠପଢ଼ିଲି ଏବଂ ସେ କେତେବର୍ଷ ଭିତରେ ମୁଁ ଆଉ ମହନକବିରାଜଙ୍କ ପାଖକୁ ଯାଇନାହିଁ । ବାଟରେ ଘାଟରେ ବି ତାଙ୍କର ଦେଖା ପାଇନାହିଁ । ଇଚ୍ଛାକରି ମଧ୍ୟ ତାଙ୍କୁ ଦେଖା କରିନାହିଁ । କାରଣ ମୋ ମନରେ ତାଙ୍କପ୍ରତି ଶ୍ରଦ୍ଧା ଓ ଭକ୍ତି ଥିଲେ ବି ଇତିମଧ୍ୟରେ ତାଙ୍କ ପ୍ରତି ଗୋଟାଏ ଭୟ ମଧ୍ୟ ଆସିଯାଇଥିଲା । କ୍ରମଶଃ ଯୌବନରେ ପଦାର୍ପଣ କରୁଥିଲି ଏବଂ ଯୌବନସୁଲଭ ନାନାଦି ଗୁଣ ଓ ଦୁର୍ଗୁଣାଦି ମୋ'ଠାରେ ପ୍ରକାଶ ପାଉଥିଲା । ମୋର ବହୁତ ସାଙ୍ଗ-ସୁଖ ହେଲେ । ସେମାନଙ୍କର

ଭିତରେ ଭଲ ପ୍ରକୃତି ଖରାପ ପ୍ରକୃତି ଉଭୟ ଧରଣର ପିଲାଥିଲେ । ମୁଁ କିନ୍ତୁ ସମସ୍ତଙ୍କୁ ସମାନ ଭଲ ପାଉଥିଲି ଓ ସବୁ ଧରଣର ସାଙ୍ଗମାନଙ୍କଠାରୁ ଭଲ ମନ୍ଦ ସବୁକିଛି ଶିଖିଯାଇଥିଲି ଏବଂ ସେମାନେ ମଧ୍ୟ ମୋ ଠାରୁ ବହୁ ଭଲମନ୍ଦ ଗୁଣ ଶିଖି ନେଇଥିଲେ । ଆମେ କେତେଜଣ ବଡ଼ି ସକାଳୁ ଉଠି ଗାଧୋଇ, ଧ୍ୟାନକରି, ବ୍ୟାୟାମ କରି ବ୍ରହ୍ମଚର୍ଯ୍ୟ ଶିଖୁଥିଲୁ ଏବଂ ବ୍ରହ୍ମଚର୍ଯ୍ୟ ପାଳନ ସମ୍ବନ୍ଧେ କେତେକ ବହି ମଧ୍ୟ ପଢ଼ିଲୁ । କିନ୍ତୁ ଏ ସବୁ ସତ୍ତ୍ୱେ ବ୍ରହ୍ମଚର୍ଯ୍ୟ ବ୍ୟାପାରଟି ସ୍ୱାଭାବିକ ଭାବରେ ତା'ବାଟରେ ଗତି କରୁଥିଲା ଓ ସୁନ୍ଦରୀ ରମଣୀ ଓ ଝିଅମାନଙ୍କୁ ଦେଖିବା ଲାଗି ଓ ସେମାନଙ୍କ କଥା ଶୁଣିବା ଲାଗି ମୋତେ କ୍ରମଶଃ ଖୁବ୍ ସୁଖ ଲାଗୁଥିଲା । ଏବଂ ମୋର ଚତୁଃପାର୍ଶ୍ୱରେ ସେଇସବୁ ସୁନ୍ଦରୀ ଝିଅ ଓ ରମଣୀମାନଙ୍କ ଅବସ୍ଥିତି ଦେଖି ମୋତେ ଏ ସଂସାର ଖୁବ୍ ସୁଖ ଲାଗୁଥିଲା । ଏବଂ ଈଶ୍ୱରଙ୍କ ପ୍ରତି ମଧ୍ୟ ଖୁବ୍ ମନ ଆକୃଷ୍ଟ ହେଉଥିଲା । ଏ ସବୁ ଭିତରେ ମୁଁ ଆଉ ମଦନ କବିରାଜଙ୍କ ପାଖକୁ ଯିବାକୁ ଆଗ୍ରହୀ ହେଲିନାହିଁ । ମୋର ଭୟ ହେଉଥିଲା – ସେ ମୋତେ ଏଥର ନିଶ୍ଚୟ ବ୍ରହ୍ମଚର୍ଯ୍ୟାଦି ବିଷୟରେ ପଚାରିବେ ଓ ମୋତେ ପୁନଶ୍ଚ ଶୁକ୍ରଧାରଣ ବଟିକା ଖାଇବା ପାଇଁ ଦେବେ ଓ ମୁଣ୍ଡରେ ବାସ୍ନା ତେଲ ପରିବର୍ତ୍ତେ ସେଇ ଗନ୍ଧିଆ ବ୍ରାହ୍ମୀ ତେଲ ଲଗାଇବାକୁ ବାଧ୍ୟ କରିବେ । ଏବଂ ମୁଁ ତାଙ୍କୁ ଶ୍ରଦ୍ଧା ଓ ଭକ୍ତି କରୁଥିବି । ହେଲେ ମୋର ଏହି ସୁଖୋଲ୍ଲାସମୟ ସ୍ୱଚ୍ଛନ୍ଦଜୀବନକୁ ବାଧ୍ୟ ହୋଇ ତାଙ୍କର ଉପଦେଶାନୁସାରେ ଚଳାଇ ଅତ୍ୟନ୍ତ ଦୁଃଖିତ ହେବି ।

ସତକୁ ସତ ମୁଁ ଛୁଟିରେ ଗ୍ରାମକୁ ଗଲେ ବି ତିନି ଚାରିବର୍ଷକାଳ ଆଉ ତାଙ୍କୁ ଦେଖାଦେଲି ନାହିଁ । ତାଙ୍କୁ ଲୁଚି ଲୁଚି ରହିଛି । ଏହାପରେ ମୁଁ ମାଟ୍ରିକ ପାସ୍ କରି ରେଭେନ୍ସା କଲେଜରେ ନାମ ଲେଖାଇ ପ୍ରଥମ ବାର୍ଷିକ କଳା ଶ୍ରେଣୀରେ ପଢ଼ିଲି । ପଶ୍ଚିମ ଛାତ୍ରାବାସରେ ରହିଲି । ଏଣିକି ଜୀବନର ଗତି ଖୁବ୍ ଦ୍ରୁତଗତିରେ ବଦଳି ଗଲା । ମୋର ବି ବହୁ ବୁଦ୍ଧି, ଜ୍ଞାନ ହୋଇଗଲା । ବହୁ ବଡ଼ ବଡ଼ ଲୋକଙ୍କ ସହିତ ମିଶିଲି । ବହୁ ବିଷୟ ଜାଣିଲି । ବହୁ କଥାରେ ମନଦେଲି । ବହୁ ବାଟରେ ଗମିଲି । ବର୍ତ୍ତମାନ ମୁଁ ଜଣେ ଉଚ୍ଚଶିକ୍ଷିତ ନବଯୁବକ । ଏବେ ମୋ ପାଇଁ ମଦନ କବିରାଜର ସ୍ମୃତି ଅବାନ୍ତର । ମଦନ କବିରାଜ, ନା, ଫଅନ କବିରାଜ !

ଆରେ ଚଲ୍ ! ଶୁକ୍ରଧାରଣବଟୀ, ବୃହତ୍ ବ୍ରାହ୍ମୀ ତୈଳ—ଚନ୍ଦ୍ରାମଣି ଚତୁର୍ମୁଖ ନା ଚିନ୍ତାମଣି ପଞ୍ଚମୁଖ । ଆରେ ଚଲ୍ ! ଫୁସ୍ !—

ଦୁଇବର୍ଷ ପରେ । ଆଇ: ଏ: ପରୀକ୍ଷା ଦେଇସାରି ଗ୍ରୀଷ୍ମଛୁଟିରେ ଗ୍ରାମକୁ ଆସିଥାଏ । ଦିନେ ହଠାତ୍ ଶୁଣିଲି—ମଦନ କବିରାଜ ମରିଗଲେ । କଅଣ ହୋଇଥିଲା ତାଙ୍କର ? କୋଷରେ ଗୋଟାଏ ଘାଆ ହେଲା । ସେ ଘାଆ ଶୁଖିଲା ନାହିଁ—ମାଡ଼ି ମାଡ଼ି ଗଲା । ସମଗ୍ର ଦେହ ପଚିସଡ଼ି ଗଲା । ପୋକମାଛି ବେଢ଼ିଲେ । ସେ ମରିଗଲେ ।

ମୋର ହୃଦୟ ରୁଦ୍ଧ ହୋଇଗଲା । ମୁହୂର୍ତ୍ତକ ଲାଗି ମୋତେ ସବୁଆଡ଼ ଅନ୍ଧାର ଦେଖାଗଲା । ମଦନ କବିରାଜ ମରିଗଲେ ? ଏମିତି ଭାବେ ମରିଗଲେ ? କଣ ତାଙ୍କୁ ହୋଇଥିଲା ? କାନ୍‌ସର ? ହଁ-ହଁ, କାନ୍‌ସର । କାନ୍‌ସର ଛଡ଼ା ତାଙ୍କୁ ଆଉ କଏ ମାରିପାରିଥାନ୍ତା ? ସାପୁଆ କେଳା ସେଇ ସାପ କାମୁଡ଼ାରେ ହିଁ ମରେ । ମଦନ କବିରାଜ ଚାଲିଗଲେ ।

ତା'ପରେ ଆଜ ସୁଦ୍ଧା ପୁଣି ତେତିଶି-ଚଉତିରିଶି ବର୍ଷ ଗତ ହୋଇଗଲାଣି । ମଦନ କବିରାଜଙ୍କ ଘର କିଛିଦିନ ମଧ୍ୟରେ ଭାଙ୍ଗିଗଲା ଛୁଏଁ ଛୁଏଁ । ତା' ପରେ ତାଙ୍କ ଘରଡିହ ମଧ୍ୟ ନିଲାମ ଉଠିଗଲା । ଆମ ଗାଁଟି ଇତି ମଧ୍ୟରେ ସହର ହେବାକୁ ଆରମ୍ଭ କଲା ଏବଂ ବଜାର ମଧ୍ୟ ମୁସଲମାନ ବସ୍ତିଯାଏ ବଢ଼ିଗଲା । ବର୍ତ୍ତମାନ ମଦନ କବିରାଜଙ୍କ ସେଇ ବାସଡ଼ିହ ଉପରେ ଯୋଉ ଆସ୍‌ବେଟସ୍ ଛାଉଣି ପକ୍କା ଘରଟି ଏଠିକି ସ୍ପଷ୍ଟ ଦେଖାଯାଉଛି—ସେ ଘରର ସାଇନ୍‌ବୋର୍ଡ଼ଟିକୁ ଚାହଁ । ସେଥିରେ ଓଡ଼ିଆ, ଇଂରାଜୀ ଓ ଉର୍ଦ୍ଦୁ ଲିପିରେ କଣ ଲେଖାହୋଇଛି ।

"ହାମ୍‌ଦର୍ଦ୍ଦ ଦବାଇଖାନା"

ଡାକ୍ତର କେରମତ ଅଲ୍ଲୀ

ପରାମର୍ଶ ସମୟ ସକାଳ ୮ରୁ ୧୨ଟା ।

ଅପରାହ୍ଣ—୪ଟାରୁ ୯ଟା ।

ପରାମର୍ଶ ଫିସ୍—୫ ଟଙ୍କା ମାତ୍ର ।

